# କବିବର ରାଧାନାଥ ଓ ତାଙ୍କ ସାହିତ୍ୟ



ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ

# କବିବର ରାଧାନାଥ

ଓ

# ତାଙ୍କ ସାହିତ୍ୟ

ଲେଖକ—

ପଣ୍ଡିତ ଶ୍ରୀ ସୂର୍ଯ୍ୟନାରାୟଣ ଦାଶ, ଏମ୍. ଏ.

# ଦ୍ୱିପଦ

'କବିବର ରାଧାନାଥ ଓ ତାଙ୍କ ସାହିତ୍ୟ' ଲେଖାରେ ବହୁ ଗ୍ରନ୍ଥ, ପ୍ରବନ୍ଧ ପ୍ରଭୃତିର ସାହାଯ୍ୟ ନେବାକୁ ହୋଇଛି । ଲେଖକ କବିଙ୍କ ସମସାମୟିକ ହୋଇ ନଥିଲେ ପତ୍ରଲେଖା ଓ ପତ୍ରକଥା ଉପରେ ବିଶେଷ ଭାବରେ ନିର୍ଭର କରିବାକୁ ହୁଏ ।

ମୋର ସ୍ୱାସ୍ଥ୍ୟ ପ୍ରାୟ ଦୁଇବର୍ଷ ହେଲା ଭଲ ନଥିବାରୁ ମୁଁ ଯଥେଷ୍ଟ ଧ୍ୟାନ ଦେବାରୁ ବଞ୍ଚିତ ହୋଇଛି । ସୁଧୀବର୍ଗ ଉଦାର ହୃଦୟରେ ଭ୍ରମ ଥିଲେ କ୍ଷମା ଦେବେ । କବିଙ୍କର ବିଶିଷ୍ଟ କୃତିମାନଙ୍କର ଆଲୋଚନା କେବଳ ଏଥିରେ ସନ୍ନିବେଶିତ ହୋଇଛି ।

ଏ ଗ୍ରନ୍ଥ ମୁଦ୍ରଣ ଓ ପ୍ରକାଶରେ କଟକ ଟ୍ରେଡିଂ କମ୍ପାନୀର ଶ୍ରୀ ସର୍ବେଶ୍ୱର ମିଶ୍ର ବିଶେଷ ଆଗ୍ରହ ପ୍ରକାଶ କରିଥିବାରୁ ମୁଁ ତାଙ୍କଠାରେ ଋଣୀ ।

**ଶ୍ରୀ ସୂର୍ଯ୍ୟନାରାୟଣ ଦାଶ**

# ସୂଚୀପତ୍ର

ବିଷୟ | ପୃଷ୍ଠା

ପରିଚ୍ଛେଦ—



---

# ପ୍ରଥମ ପରିଚ୍ଛେଦ

## କବିଙ୍କ ସମୟ, ବାସସ୍ଥାନ, ବଂଶପରିଚୟ

## ତତ୍କାଳୀନ ଦେଶର ଅବସ୍ଥା

କବିବର ରାଧାନାଥଙ୍କ ଜୀବନୀ ସହିତ ଓଡ଼ିଶାର ଶିକ୍ଷା ଓ ସଂସ୍କୃତିର ସମ୍ପର୍କ ରହିଛି । ଓଡ଼ିଶାର ଶିକ୍ଷା ଓ ସାହିତ୍ୟର ଉନ୍ନତି ସହିତ ତାଙ୍କର କର୍ମମୟ ଜୀବନ ବହୁଭାବରେ ଜଡ଼ିତ ।

ରାଧାନାଥ ଖ୍ରୀ : ୧୮୪୮ରେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଓଡ଼ିଶାର ଅବସ୍ଥା ସେତେ ଉନ୍ନତ ନଥିଲା । ଇଂରେଜମାନେ ଖ୍ରୀ ୧୮୦୩ ରେ ଓଡ଼ିଶାକୁ ଜୟ କରିଥିଲେ ମଧ୍ୟ ଏହାର ପ୍ରାୟ ଅର୍ଦ୍ଧଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶାର ଉନ୍ନତି ଦିଗରେ ଉଲ୍ଲେଖଯୋଗ୍ୟ କୌଣସି କାର୍ଯ୍ୟ କରି ନାହାନ୍ତି କହିଲେ ଚଳେ । ପୂର୍ବେ ମୁସଲମାନ ଓ ମରହଟ୍ଟା ରାଜତ୍ୱରେ ଓଡ଼ିଶାରେ ଶିକ୍ଷା-ପଦ୍ଧତିର କୌଣସି ପରିବର୍ତ୍ତନ ହୋଇନଥିଲା । ପାର୍ଶିଭାଷା ସରକାରୀ ଭାଷାର କାର୍ଯ୍ୟ କରୁଥିଲା । ଅବଧାନଙ୍କ ଚାଟଶାଳୀ ଓ ସଂସ୍କୃତ ପଣ୍ଡିତଙ୍କ ଟୋଲ ବା ସଂସ୍କୃତ ପାଠଶାଳା ଶିକ୍ଷାକ୍ଷେତ୍ରର ସମ୍ବଳ ଥିଲା । ଫଳରେ ରାଜକାର୍ଯ୍ୟ ଚଳାଇବା ପାଇଁ ଯେଉଁ ଧରଣର ଶିକ୍ଷା ଦରକାର ପଡ଼ୁଥିଲା, ତାହା କେବଳ ଅଳ୍ପସଂଖ୍ୟକ ଲୋକ ପାଇ

ହେବାର ବ୍ୟବସ୍ଥା ମଧ୍ୟ ସରକାର କରୁନଥିଲେ । ବଙ୍ଗ ପ୍ରଦେଶ ସହିତ ଓଡ଼ିଶାର ଯୋଡ଼ାହିଁ ଓଡ଼ିଶାର କାଳ ହୋଇଥିଲା । ପୂର୍ବରୁ ମୁସଲମାନ ଓ ମରହଟ୍ଟାମାନଙ୍କ ଅମଳରେ ଓଡ଼ିଆମାନଙ୍କ ଅବସ୍ଥା ଏତେ ହୀନ ହୋଇ ନଥିଲେ ମଧ୍ୟ ଆଦୌ ସନ୍ତୋଷଜନକ ନଥିଲା । ପାର୍ଶୀଭାଷାରେ ସବୁ ସରକାରୀ କାଗଜପତ୍ର ଚଳୁଥିବାରୁ ଓଡ଼ିଆମାନେ ସରକାରୀ ଚାକିରୀ ପାଇବାରେ କଷ୍ଟ ଅନୁଭବ କରୁଥିଲେ । ପାର୍ଶୀ-ଅଭିଜ୍ଞ ଅଳ୍ପସଂଖ୍ୟକ ଓଡ଼ିଆ ହିଁ ସରକାରୀ ଦପ୍ତରରେ ସ୍ଥାନ ପାଉଥିଲେ ।

ଇଂରେଜମାନେ ଓଡ଼ିଶା ଦଖଲ କରିବାର ଦୁଇବର୍ଷ ପରେ ପାର୍ଶୀ ସହିତ ଓଡ଼ିଆକୁ ମଧ୍ୟ ସରକାରୀ ଭାଷାରୂପେ ଗ୍ରହଣ କରାଗଲା । ଏହା କେବଳ ଆଂଶିକ ଥିଲା କହିଲେ ଚଳେ । କାରଣ,ଓଡ଼ିଶାବାସୀଙ୍କ ସହିର ପତ୍ରାଳାପ ପ୍ରଭୃତିରେ କେବଳ ଓଡ଼ିଆ ଭାଷା ବ୍ୟବହୃତ ହେବାର ବ୍ୟବସ୍ଥା ରହିଲା । ଅବଶ୍ୟ ଏହାଦ୍ୱାରା ସରକାରୀ ଦପ୍ତରରେ ଓଡ଼ିଆ ମୋହରିରମାନଙ୍କର ସଂଖ୍ୟା ବୃଦ୍ଧି ପାଇଥିଲା । କିନ୍ତୁ ଉଚ୍ଚ ପଦ ସବୁ 'ବିଦେଶୀୟ'ମାନଙ୍କ ହାତରେ ହିଁ ରହିଲା । ବଙ୍ଗ ଦେଶର ଅଧିବାସୀ ବଙ୍ଗାଳୀ ଓ ମୁସଲମାନମାନେ ଉଚ୍ଚ ଦରମାର ଲୋଭରେ ସ୍ୱଦେଶକୁ ତ୍ୟାଗ କରି କୁଟୁମ୍ବସହ ଓଡ଼ିଶାକୁ ଆସି ସ୍ଥାୟୀଭାବରେ ବସବାସ କରିବାକୁ ଆରମ୍ଭ କଲେ । ଏମାନଙ୍କ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଓଡ଼ିଶାର ପୁରୁଣା ଅଧିବାସୀମାନଙ୍କର ବିପତ୍ତି ବୃଦ୍ଧି ପାଇଥିଲା । ଏହାପୂର୍ବରୁ ଯେଉଁ ବଙ୍ଗାଳୀ ଓ ମୁସଲମାନ ମାନେ ଓଡ଼ିଶାରେ ସ୍ଥାୟୀ ଭାବରେ ରହି ଆସିଥିଲେ, ସେମାନେ ମଧ୍ୟ 'ନବାଗତ'ଙ୍କ ଯୋଗୁଁ ଅସୁବିଧା ଭୋଗ କଲେ । ସେତେବେଳେ ଓଡ଼ିଶାର ଅବସ୍ଥା ଏତେ କଦର୍ଯ୍ୟ ହୋଇଯାଇଥିଲା ଯେ କଟକ କଲେକ୍ଟର ଖ୍ରୀ ୧୮୨୧ ରେ ସରକାରଙ୍କୁ ଜଣାଇଥିଲେ ଯେ ତାଙ୍କ

ଅଧୀନରେ ଥିବା ଓଡ଼ିଆ କର୍ମଚାରୀମାନଙ୍କ ଭିତରୁ କେହି ଜଣେ ହେଲେ ମାସିକ ଟ ୧୦ (ଦଶ)ରୁ ବେଶୀ ଦରମା ପାଉଥିବା ଲୋକ ନାହାନ୍ତି । ସେ ପୁଣି ଜଣାଇଥିଲେ ଯେ ସେ ସବୁବେଳେ ଚାକରୀ କ୍ଷେତ୍ରରେ ଓଡ଼ିଆମାନଙ୍କୁ ଅଗ୍ରାଧିକାର ଦେଉଥିଲେ ମଧ୍ୟ ବର୍ତ୍ତମାନ ସାଧାରଣ ମୋହରିର ହେବାପାଇଁ ଜଣେ ହେଲେ ଉପଯୁକ୍ତ ଓଡ଼ିଆ ନାହାନ୍ତି ।

ଖ୍ରୀ ୧୮୩୮ ପର୍ଯ୍ୟନ୍ତ ଉଲ୍ଲେଖଯୋଗ୍ୟ ବିଦ୍ୟାଳୟ ଆଦୌ ନଥିଲା କହିଲେ ଚଳେ । କେବଳ ଦୁଇ ତିନୋଟି ସ୍ଥାନରେ ଖ୍ରୀଷ୍ଟିୟାନ୍ ମିସ୍‌ନାରୀମାନେ ବିଦ୍ୟାଳୟ ପ୍ରତିଷ୍ଠା କରି ସଂଗଠିତ ଭାବରେ ଶିକ୍ଷା ଦେଉଥିଲେ । ଅବଶ୍ୟ ସଂସ୍କୃତ ଟୋଲ ଓ ଅବଧାନମାନଙ୍କ ଚାଟଶାଳୀର ସଂଖ୍ୟା କମ୍ ନ ଥିଲା । ବଡ଼ ବଡ଼ ଜମିଦାରମାନେ ସଂସ୍କୃତ ଟୋଲ ବସାଇ ସଦାବର୍ତ୍ତ ଖଞ୍ଜି ଛାତ୍ରମାନଙ୍କୁ ସଂସ୍କୃତ ଶିକ୍ଷା ଦେଉଥିଲେ । ଏହି ଟୋଲମାନଙ୍କରେ କେବଳ ଉଚ୍ଚ ଶ୍ରେଣୀର ହିନ୍ଦୁମାନେ ଏହି ସୁବିଧା ପାଉଥିଲେ । ଚାଟଶାଳୀରେ ମଧ୍ୟ ସଂଗଠିତ ଶିକ୍ଷା ନଥିଲା ।

ଖ୍ରୀ ୧୮୩୮ରେ ସରକାର ସର୍ବପ୍ରଥମେ ପୁରୀରେ ଶିକ୍ଷାନୁଷ୍ଠାନଟିଏ ଖୋଲିଥିଲେ । କିନ୍ତୁ ଲୋକଙ୍କ ଆଡ଼ୁ ଉପଯୁକ୍ତ ଆଗ୍ରହ ଅଭାବ ହେବାରୁ ଏହାର ଉନ୍ନତି ହୋଇପାରିଲା ନାହିଁ । ଖ୍ରୀ ୧୮୪୧ରେ ସରକାର କଟକରେ ଗୋଟିଏ ଉଚ୍ଚ ଇଂରେଜୀ ବିଦ୍ୟାଳୟ ପ୍ରତିଷ୍ଠା କଲେ । ଏହି ବିଦ୍ୟାଳୟଟି କ୍ରମେ ବୃଦ୍ଧି ପାଇଲା । ଅବଶ୍ୟ ପ୍ରଥମ ଅବସ୍ଥାରେ ଓଡ଼ିଆ ଛାତ୍ରଙ୍କ ଅପେକ୍ଷା ବଙ୍ଗାଳୀ ଛାତ୍ରଙ୍କ ସଂଖ୍ୟା ହିଁ ବେଶି ଥିଲା । କାରଣ, ସେତେବେଳେ ଶାସନକ୍ଷେତ୍ରରେ ବହୁ ବଙ୍ଗାଳୀ ଉଚ୍ଚ ପଦରେ ଥିଲେ ଏବଂ ସେମାନେ ଏହି ଶିକ୍ଷାନୁଷ୍ଠାନର ପୂର୍ଣ୍ଣ ସୁଯୋଗ ନେଉଥିଲେ । ଖ୍ରୀ ୧୮୪୫ରେ କଟକଜିଲ୍ଲାରେ ଆଉ ଦୁଇଟି ସ୍କୁଲ ବସିଲା ଏବଂ

ଖ୍ରୀ ୧୮୪ ରେ ମଧ୍ୟ ଗୋଟିଏ ସ୍କୁଲ ବସିଥିଲା । ଖ୍ରୀ ୧୮୫୩ରେ ବାଲେଶ୍ୱରରେ ସରକାର ଇଂରେଜୀ ସ୍କୁଲଟିଏ ବସାଇଲେ ଏବଂ ପୁରୁଣା ସ୍କୁଲଟିର ପୁନରୁଦ୍ଧାର ମଧ୍ୟ ହେଲା ।

ଖ୍ରୀ ୧୮୫୪ରେ ବ୍ରିଟିଶ ସରକାର ଇଂରେଜ ମାଧ୍ୟମରେ ଭାରତରେ 'ଆଧୁନିକ ଶିକ୍ଷା'ର ପ୍ରବର୍ତ୍ତନ ପାଇଁ ସିଦ୍ଧାନ୍ତ ଗ୍ରହଣ କଲେ । ଏହାଫଳରେ ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେକ ସ୍କୁଲ ଖୋଲିଲା । ଖ୍ରୀ ୧୮୫୯ ସୁଦ୍ଧା ଓଡ଼ିଶାରେ ମୋଟରେ ୨୯ଟି ପ୍ରାଥମିକ ବିଦ୍ୟାଳୟ ଚାଲୁଥିଲା ।

ଉଚ୍ଚଶିକ୍ଷା ଦିଗରେ ଲୋକଙ୍କ ଭିତରେ ଆଗ୍ରହ ପ୍ରକାଶ ପାଇଥିଲେ ମଧ୍ୟ ବହୁ ଛାତ୍ର ଉପଯୁକ୍ତ ସୁଯୋଗ ନ ପାଇ ଉଚ୍ଚଶିକ୍ଷା-ଲାଭରୁ ବଞ୍ଚିତ ହେଉଥିଲେ । ବ୍ରିଟିଶ୍ ସରକାର ରାଜା, ଜମିଦାର, ଧନୀ ମାନଙ୍କର ପିଲାମାନଙ୍କୁ ଶିକ୍ଷା ଦେବାପାଇଁ ବିଶେଷ ଧ୍ୟାନ ଦେଉ ନ ଥିବାରୁ ସାଧାରଣ ମଧ୍ୟବିତ୍ତ କିମ୍ବା ଗରିବ ଓଡ଼ିଆ ପରିବାରର ପିଲାମାନେ ଉଚ୍ଚଶିକ୍ଷା ସୁବିଧା ପାଇପାରୁ ନଥିଲେ । ବିଶେଷତଃ ଉଚ୍ଚଶିକ୍ଷା ପାଇଁ କଲିକତା ଯିବାକୁ ହେଉଥିଲା । ସେତେବେଳେ କଲିକତାକୁ ଯିବାପାଇଁ ବହୁ କଷ୍ଟ ସହ୍ୟ କରିବାକୁ ହେଉଥିଲା । ଅସଂଖ୍ୟ ନଦୀନାଳ ପାର ହୋଇ କେତେ ଲୋକ ଚାଲି ଚାଲି ସେଠାରେ ପହଞ୍ଚୁଥିଲେ । କେହି କେହି ବାଲେଶ୍ୱର ଜିଲ୍ଲାର ଚାନ୍ଦବାଲି ନଦୀବନ୍ଦର ପର୍ଯ୍ୟନ୍ତ ଯାଇ ସେଠାରୁ ଷ୍ଟିମର ସାହାଯ୍ୟରେ ଯାଉଥିଲେ । ଉଭୟ ଯାହା ବ୍ୟୟସାଧ୍ୟ ଥିଲା । କଲିକତାରେ ରହିବାପାଇଁ ଉପଯୁକ୍ତ ସ୍ଥାନ ଗରିବ ଛାତ୍ରମାନଙ୍କୁ ମିଳୁ ନ ଥିଲା । ଯେଉଁମାନେ ଓଡ଼ିଶାର ରାଜା, ମହାରାଜାମାନଙ୍କ ପିଲାଙ୍କ ପାଖରେ ଯାଇ ସେମାନଙ୍କ ବସାରେ ରହୁଥିଲେ, ସେମାନେ କେବଳ ଉଚ୍ଚଶିକ୍ଷାର ସୁଯୋଗ ପାଉଥିଲେ । ବର୍ଦ୍ଧିଷ୍ଣୁ ଉଚ୍ଚ

କର୍ମଚାରୀ ଓ ବଙ୍ଗୀୟ ଜମିଦାରମାନଙ୍କ ପିଲାମାନଙ୍କ ପକ୍ଷରେ ଏ ସବୁ ଅସୁବିଧା ନ ଥିଲା । କିନ୍ତୁ ମଧ୍ୟବିତ୍ତ ଓ ଗରିବ ପରିବାରର ବଙ୍ଗୀୟ ପିଲାମାନେ ମଧ୍ୟ ଓଡ଼ିଆ ପିଲାମାନଙ୍କ ପରି ଅସୁବିଧା ଭୋଗ କରୁଥିଲେ । ଏହି ସବୁ କାରଣରୁ ଖ୍ରୀ୧୮୭୮ ପର୍ଯ୍ୟନ୍ତ ମୋଟରେ ୫୮ ଜଣ ଓଡ଼ିଶାର ଛାତ୍ର କଲିକତା ବିଶ୍ୱବିଦ୍ୟାଳୟର ଏଣ୍ଟ୍ରାନ୍‌ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ସେମାନଙ୍କ ଭିତରେ କେବଳ ୧୦ ଜଣ ଓଡ଼ିଆ ଛାତ୍ର ଥିଲେ ।

କିନ୍ତୁ ଏସବୁ ଅସୁବିଧା ସତ୍ତ୍ୱେ ଆଧୁନିକ ଶିକ୍ଷାର ପ୍ରସାର ଧୀର ମନ୍ଥର ଗତିରେ ହେଉଥିଲା । ଖ୍ରୀ ୧୮୪୮ ବେଳକୁ ଓଡ଼ିଶାରେ ମୋଟରେ ୯ଟି ବିଦ୍ୟାଳୟ ଥିଲା ଏବଂ ମୋଟ ୨୭୯ ଜଣ ଛାତ୍ର ଏଠାରେ ଶିକ୍ଷା ଲାଭ କରୁଥିଲେ । ଖ୍ରୀ ୧୮୫୮ ଅର୍ଥାତ୍ ଦଶ ବର୍ଷ ପରେ ବିଦ୍ୟାଳୟ ସଂଖ୍ୟା ୨୯କୁ ଓ ଛାତ୍ର ସଂଖ୍ୟା ୧୦୪୬କୁ ବୃଦ୍ଧି ପାଇଥିଲା । ଏହା ପୁଣି ବୃଦ୍ଧି ପାଇ ଆଉ ଦଶ ବର୍ଷ ବେଳକୁ ଅର୍ଥାତ୍ ଖ୍ରୀ ୧୮୬୮ ସରିକି ବିଦ୍ୟାଳୟ ସଂଖ୍ୟା ୬୩ ଓ ଛାତ୍ର ସଂଖ୍ୟା ୪୦୪୩ ହୋଇଥିଲା ।

ଓଡ଼ିଶାକୁ ଇଂରେଜମାନେ ଜୟ କରିବା ପରେ ୬୦ ବର୍ଷ ଭିତରେ ଆଧୁନିକ ଶିକ୍ଷାର ଗତି ଏତିକି ମାତ୍ର ସମ୍ଭବ ହୋଇଥିଲା । ଆଧୁନିକ ଶିକ୍ଷା ପ୍ରତି ଲୋକଙ୍କର ଉଦାସୀନତା, ଦାରିଦ୍ର୍ୟ, ସୁଯୋଗ-ହୀନତା ଓ ସରକାରଙ୍କ ଅକ୍ଷମଣୀୟ ନିଷ୍କ୍ରିୟତା ଏଥିପାଇଁ ମୁଖ୍ୟତଃ ଦାୟୀ । ରକ୍ଷଣଶୀଳ ଲୋକେ ଆଧୁନିକ ଶିକ୍ଷାପ୍ରତି ଆଦୌ ଆଗ୍ରହୀ ନ ଥିଲେ; ବରଂ, ଏହାର ବିରୋଧ କରୁଥିଲେ । ଇଂରେଜ ପାଠ ପଢ଼ିଲେ "ଜାତିଯିବ" "ଖ୍ରୀଷ୍ଟିଆନ୍ ହୋଇଯିବ" ପ୍ରଭୃତି ଅସାର ଯୁକ୍ତିର ଅବତାରଣା ହେଉଥିଲା । ସ୍ଥଳବିଶେଷରେ ନୂତନ ଆଗ୍ରହୀମାନଙ୍କ ପ୍ରତି କଠୋର ସାମାଜିକ ଦଣ୍ଡ ବିଧାନ ମଧ୍ୟ କରା-

ଯାଉଥିଲା । ସରକାରୀ ସ୍କୁଲଗୁଡ଼ିକୁ ବିଧର୍ମୀମାନଙ୍କର କୂଟବ୍ୟୂହ ବୋଲି ଧାରଣା ଜାତ ହୋଇଥିବାରୁ ତଥାକଥିତ ରକ୍ଷଣଶୀଳ-ମାନଙ୍କଠାରୁ ନବ୍ୟ ଆଗ୍ରହୀମାନେ ବହୁ ନିର୍ଯ୍ୟାତନା ସହ୍ୟ କରିଥିଲେ । ଖ୍ରୀ୧୮୬୦ ସରିକି ମଧ୍ୟ ଏହି ମନୋଭାବ ଥିଲା । ପୁରୀ ସ୍କୁଲରେ ଜଣେ ଉପଯୁକ୍ତ ଓଡ଼ିଆଙ୍କୁ ସଂସ୍କୃତ ପଣ୍ଡିତ ରୂପେ ନିଯୁକ୍ତ କରାଯାଇଥିଲା । 'ରକ୍ଷଣଶୀଳ' ମାନଙ୍କ ପକ୍ଷରୁ କେହି କେହି ତାଙ୍କ ଏହି ନିଯୁକ୍ତି ଗ୍ରହଣକୁ ଅତି କଟୁ ସମାଲୋଚନା କରିଥିଲେ ଏବଂ ବର୍ଷେ ଦୁଇବର୍ଷ ପର୍ଯ୍ୟନ୍ତ ତାଙ୍କୁ ଜାତିରୁ ବାସନ୍ଦ କରିଦେଇଥିଲେ । ଏହି ଘଟଣାରେ ଦେଶରେ ଏକ ଚହଳ ପଡ଼ିଯାଇଥିଲା । କିନ୍ତୁ ସୌଭାଗ୍ୟକୁ ଏହି ଅବସ୍ଥା ସ୍ଥାୟୀତ୍ୱ ଲାଭ କରିପାରିଲା ନାହିଁ । କ୍ରମେ ଆଧୁନିକ ଶିକ୍ଷା ଉନ୍ନତି ପଥରେ ଗତି କରିବାକୁ ଲାଗିଲା ।

ବିଦ୍ୟାଳୟମାନଙ୍କର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଉପଯୁକ୍ତ ଶିକ୍ଷାପ୍ରାପ୍ତ ଶିକ୍ଷକଙ୍କର ଆବଶ୍ୟକତା ମଧ୍ୟ ବୃଦ୍ଧି ପାଇଲା । ପୂର୍ବର 'ଅବଧାନ' ରୀତିରେ ଅଭ୍ୟସ୍ତ ଶିକ୍ଷକମାନେ ମଧ୍ୟ ଆଧୁନିକ ଶିକ୍ଷାଦାନ ପଦ୍ଧତିରେ ଶିକ୍ଷାଲାଭ କରିବା ପାଇଁ ଆଗ୍ରହୀ ହେଲେ । ଫଳରେ ଖ୍ରୀ୧୮୬୯ରେ କଟକରେ ସରକାର 'ନର୍ମାଲ ସ୍କୁଲ' ପ୍ରତିଷ୍ଠା କଲେ ଏବଂ ଏଠାରୁ ଛାତ୍ରମାନେ ଟ୍ରେନିଂ ପାଇବାରୁ ଅଳ୍ପ କେତେବର୍ଷ ଭିତରେ ଟ୍ରେନିଂପ୍ରାପ୍ତ ଶିକ୍ଷକମାନଙ୍କର ସଂଖ୍ୟା ବହୁତ ବୃଦ୍ଧି ପାଇଲା । ଏହି ନୂତନ ଶିକ୍ଷକମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ଯାଇ ବିଦ୍ୟାଳୟମାନଙ୍କରେ ନିଯୁକ୍ତି ପାଇଲେ ଏବଂ ବହୁ ସ୍ଥାନରେ ନୂତନ ସ୍କୁଲ ମଧ୍ୟ ପ୍ରତିଷ୍ଠା କରିବାରେ ପ୍ରଧାନ ସହାୟକ ହେଲେ । ଏହା ଫଳରେ କ୍ରମେ ଆଧୁନିକ ଶିକ୍ଷା ପ୍ରସାର ଲାଭ କଲା । କିନ୍ତୁ ଏହାର ଗତି ଧୀର ମନ୍ଥର ଥିଲା ବୋଲି ହିଁ ବୋଲିବାକୁ ହେବ । କାରଣ, ଉଚ୍ଚ ଶିକ୍ଷାଲାଭ ପାଇଁ ଓଡ଼ିଶାରେ ସେ ପର୍ଯ୍ୟନ୍ତ କୌଣସି ସୁବିଧା ନ ଥିଲା; କଲିକତା ହିଁ ସବୁ ଆଶାଭରସାର ସ୍ଥଳୀ ଥିଲା ।

ରାଧାନାଥଙ୍କୁ ୨୦ବର୍ଷ ବୟସ ହେବା ପର୍ଯ୍ୟନ୍ତ ଓଡ଼ିଶାର ଶିକ୍ଷାର ଅବସ୍ଥା ଏହାହିଁ ଥିଲା । ଏହାର ଦୋଷଗୁଣ ସବୁ ରାଧାନାଥଙ୍କୁ ଅଙ୍ଗେ ଲଭେଇବାକୁ ପଡ଼ିଥିଲା ।

## ଜନ୍ମସ୍ଥାନ—କେଦାରପୁର ଗ୍ରାମ

ବାଲେଶ୍ୱର ଜିଲ୍ଲାର କାଂଶବାଂଶ ନଦୀର ଉତ୍ତର କୂଳରେ ସୋର ଗୋଟିଏ ସମୃଦ୍ଧିଶାଳୀ ଗ୍ରାମ । ପୂର୍ବକାଳରେ ଏଠାରେ ସୁରଥ-ନାମକ ଜଣେ ରାଜା ରାଜତ୍ୱ କରୁଥିଲେ । ସୁରଥଙ୍କ ନାମ ଅନୁସାରେ ଏହି ଗ୍ରାମର ନାମ 'ସୋର' ହୋଇଥିବା ଲୋକ ମୁଖରୁ ଶୁଣାଯାଏ । କିନ୍ତୁ କବିବର ରାଧାନାଥ ସୋରକୁ 'ଶୂରଭୂମି' ନାମରେ ପରିଚିତ କରାଇଛନ୍ତି । ଏହି ପ୍ରସିଦ୍ଧ ପ୍ରାଚୀନ ଗ୍ରାମର ଦକ୍ଷିଣ ପୂର୍ବ ଦିଗରେ ପ୍ରାୟ ଏକକ୍ରୋଶ ଦୂରରେ କେଦାରପୁର ଗ୍ରାମ । ଗ୍ରାମଟି ବାଲେଶ୍ୱର ସହରଠାରୁ ପ୍ରାୟ ୩୫ମାଇଲ ଦୂର ହେବ । ଏହି ଗ୍ରାମରେ ଏକ ବଙ୍ଗୀୟ କାୟସ୍ଥ ପରିବାରରେ ରାଧାନାଥ ଜନ୍ମଗ୍ରହଣ କରିଥିଲେ ।

## ରାୟବଂଶଙ୍କ କେଦାରପୁରରେ ବସତିସ୍ଥାପନ

ଏହି କେଦାରପୁର ଗ୍ରାମରେ ବହୁବର୍ଷ ହେଲା କେତେକ ବଙ୍ଗାଳୀ ପରିବାର ନିବାସ କରି ଆସୁଅଛନ୍ତି । ଓଡ଼ିଶାରେ ମରହଟ୍ଟା ରାଜତ୍ୱ କିମ୍ବା ତାର ବହୁ ବର୍ଷ ପୂର୍ବରୁ ଏମାନେ ବଙ୍ଗ ପ୍ରଦେଶରୁ ଆସି ଏଠାରେ ବସବାସ କରିଥିବାର ଅନୁମାନ ହୁଏ । ଏହି ଗ୍ରାମର ପୂର୍ବ ଇତିହାସ ସମ୍ବନ୍ଧରେ ଏହିପରି ଶୁଣାଯାଏ :—

ବାଲେଶ୍ୱର ଜିଲ୍ଲାର ବହୁ ବଙ୍ଗୀୟ ଜମିଦାରବଂଶ ଅତି ପ୍ରାଚୀନ କାଳରୁ ମେଦିନୀପୁର, ବାଙ୍କୁଡ଼ା, ବର୍ଦ୍ଧମାନ ପ୍ରଭୃତି ଅଞ୍ଚଳରୁ ଆସି ସେଠାରେ ବସବାସ କରିଥିଲେ । ଏହି ଜିଲ୍ଲାର ଜମିଦାରମାନଙ୍କ ଭିତରେ କାଉପୁରର 'ରାୟ ମହାଶୟ' ବଂଶ ଏକ ପ୍ରସିଦ୍ଧ ବଂଶ ରୂପେ ପରିଚିତ । ପୂର୍ବେ ମରହଟ୍ଟା ରାଜତ୍ୱ ସମୟରେ ମଧ୍ୟ

ସେମାନଙ୍କର 'କାଉପୁର ଜମିଦାରୀ'ର କ୍ଷେତ୍ର ବହୁ ବିସ୍ତୃତ ଥିଲା; ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ସୋର ସହରର ଉତ୍ତରସୀମା ପର୍ଯ୍ୟନ୍ତ ସେମାନଙ୍କର ଜମିଦାରୀର ସୀମା ଥିଲା । ମରହଟ୍ଟା ରାଜତ୍ୱ ସମୟରେ ତତ୍କାଳୀନ ଜମିଦାରଙ୍କ କନିଷ୍ଠ ଭ୍ରାତା ପୂର୍ଣ୍ଣାନନ୍ଦ ରାୟ ସୋର ନିକଟରେ ଏକ ନୂତନ ଗ୍ରାମ ନିର୍ମାଣ କରି ସେଠାରେ ସପରିବାର ନିବାସ କଲେ । ଏହି ଗ୍ରାମଟି 'ରାୟପୁର' ନାମରେ ପରିଚିତ । ଏହି ଗ୍ରାମଟି ମରହଟ୍ଟା କର୍ମଚାରୀ ଓ ଲୁଣ୍ଠନକାରୀ ସୈନିକ (ବର୍ଗୀ) ମାନଙ୍କ-ଦ୍ୱାରା ବାରମ୍ବାର ଅତ୍ୟାଚାରର କ୍ଷେତ୍ର ହେବାରୁ ପୂର୍ଣ୍ଣାନନ୍ଦଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ମଦନମୋହନ ରାୟ ନିକଟସ୍ଥ ଅନ୍ୟ ଏକ ନିରାପଦ ସ୍ଥାନରେ ଏକ ନୂତନ ଗ୍ରାମ ସ୍ଥାପନ କରି ରାୟପୁରରୁ ଉଠି ଆସି ଏହିଠାରେ ସକୁଟୁମ୍ବ ବାସ କଲେ । ଗ୍ରାମଟି ଶସ୍ୟଶ୍ୟାମଳା ପ୍ରାନ୍ତର ମଧ୍ୟରେ ସ୍ଥାପିତ ହୋଇ ଥିବାରୁ ପ୍ରାକୃତିକ ଅବସ୍ଥିତି ଦୃଷ୍ଟିରୁ ଏହାର ନାମ 'କେଦାରପୁର' ରଖିଲେ । ଏହିଠାରେ ପ୍ରାୟ ସବୁ ପାଠକର ଲୋକଙ୍କର ଗୃହ ଅଛି । ଗ୍ରାମ ସ୍ଥାପନକର୍ତ୍ତା ଜମିଦାର ମଦନ ମୋହନ ରାୟଙ୍କ ଅନ୍ତେ ତାଙ୍କ ପୁତ୍ର କୃଷ୍ଣ ପ୍ରସାଦ ଓ ତାଙ୍କଅନ୍ତେ ତାଙ୍କ ପୁତ୍ର ଜୟନାରାୟଣ ଜମିଦାରୀର ଅଧିକାରୀ ହେଲେ । ରାଧାନାଥଙ୍କ ମାତା ତାରିଣୀ ଜୟନାରାୟଣଙ୍କର ଦ୍ୱିତୀୟ ପୁତ୍ର ଭଗବତ ନାରାୟଣଙ୍କର କନ୍ୟା ।

## ରାୟ ବଂଶର ପରିଚୟ

ରାଧାନାଥଙ୍କ ପୂର୍ବପୁରୁଷମାନେ 'ଦେ' ଉପାଧିରେ ଭୂଷିତ ଥିଲେ । କେଦାରପୁରର ପ୍ରାୟ ଦଶ କୋଶ ଦୂରରେ ଥିବା 'ହରିମଲଙ୍ଗ' ଗ୍ରାମରେ ଏହି 'ଦେ'ବଂଶର ଆଦିପୁରୁଷ ଲକ୍ଷ୍ମୀନାରାୟଣ ଦେ

ବଙ୍ଗ ଦେଶର ମେଦିନୀପୁର ଜିଲ୍ଲାର ଅନ୍ତର୍ଗତ ରାଧାନଗରରୁ ଆସି ଏଠାରେ ନିବାସ କରିଥିଲେ । କାୟସ୍ଥ ମଣ୍ଡଳୀରେ 'ଦେ' ବଂଶର ସମ୍ମାନ ଯଥେଷ୍ଟ ଥିଲା । ଏହି ବଂଶ ସହିତ କେଦାର ପୁରର 'ରାୟ' ବଂଶର ସମ୍ବନ୍ଧ ସ୍ଥାପନ, ଉଭୟ ବଂଶ ସମ୍ମାନ ବୃଦ୍ଧି କରିଥିଲା । କେଦାରପୁରର ରାୟ ବଂଶର ବିସ୍ତାର ସଙ୍ଗେ ସଙ୍ଗେ ବୈବାହିକ ସମ୍ବନ୍ଧ ପାଇଁ ନିଜ ସମସ୍କନ୍ଧ ଅନ୍ୟ ବଂଶ ସହିତ ବନ୍ଧୁତା ଆବଶ୍ୟକ ବିବେଚିତ ହୋଇଥିଲା । ଲକ୍ଷ୍ମୀ ନାରାୟଣଙ୍କ ଦୁଇ ଭ୍ରାତା ଉଦୟନାରାୟଣ ଓ ନାରାୟଣପ୍ରସାଦ ପାର୍ଶୀ ଭାଷାରେ ସୁଶିକ୍ଷିତ ଥିବାରୁ ରାଜକାର୍ଯ୍ୟରେ ସେମାନେ ସମ୍ମାନ ଲାଭ କରିଥିଲେ । ସେତେବେଳେ ରାଜକାର୍ଯ୍ୟରେ ପାର୍ଶି ଭାଷା ପ୍ରଧାନ ରାଜଭାଷା ରୂପେ ଚଳୁଥିଲା । ନାରାୟଣପ୍ରସାଦଙ୍କର ପାର୍ଶି ଭାଷାରେ ବେଶି ଦଖଲ ଥିଲା । ଏହାଙ୍କ ଦକ୍ଷତା ଦେଖି ଜୟନାରାୟଣ ଦେ ମହାଶୟ ଏହାଙ୍କୁ କେଦାରପୁରକୁ ଆଣି ସେଠାରେ ରଖାଇଲେ । ଜମିଦାରଙ୍କ ଅନୁଗ୍ରହରେ ନାରାୟଣ ପ୍ରସାଦଙ୍କ କୌଳିକ ଉପାଧି 'ଦେ' ପରିବର୍ତ୍ତିରେ 'ରାୟ' ହେଲା । ଜୟ-ନାରାୟଣ ଦେ ଙ୍କ କନ୍ୟା ତାରିଣୀଙ୍କ ସହିତ ନାରାୟଣ ପ୍ରସାଦଙ୍କର ବିବାହ ହୋଇଥିଲା । ନାରାୟଣପ୍ରସାଦଙ୍କ ଚରିପୁତ୍ର—ସୁନ୍ଦରନାରାୟଣ, ବଳରାମ ପ୍ରସାଦ, ଜଗନ୍ନାଥ ପ୍ରସାଦ ଓ ରମାନାଥ ( ଜାହ୍ନବୀ ରାୟ ) । ସୁନ୍ଦର ନାରାୟଣ, କବିବର ରାଧାନାଥଙ୍କ ପିତା । ନାରାୟଣ ପ୍ରସାଦ ଲକ୍ଷ୍ମୀନାରାୟଣ ଦେ ଙ୍କର ସପ୍ତମ ବଂଶଧର । ଲକ୍ଷ୍ମୀନାରାୟଣଙ୍କ ପୁତ୍ର ଜୟଦେବ, ତାଙ୍କ ପୁତ୍ର ଚନ୍ଦ୍ରଶେଖର, ତାଙ୍କ ପୁତ୍ର ବ୍ରଜବଲ୍ଲଭ, ତାଙ୍କ ପୁତ୍ର କାଳିଚରଣ, ତାଙ୍କ ପୁତ୍ର ରାମନାରାୟଣ, ତାଙ୍କ ପୁତ୍ର ନାରାୟଣ ପ୍ରସାଦ । ଏହି ଦେ ବଂଶ ଦକ୍ଷିଣ ରାଢ଼ିୟ କାୟସ୍ଥ ।

———

# ଦ୍ୱିତୀୟ ପରିଚ୍ଛେଦ

## ବାଲ୍ୟଜୀବନ ଓ ବିଦ୍ୟାଶିକ୍ଷା

ନାରାୟଣ ପ୍ରସାଦ ରାୟଙ୍କ ବଂଶ ସେ ସମୟରେ ସେ ଅଞ୍ଚଳରେ ଉଚ୍ଚ ଶିକ୍ଷିତ ଥିବାରୁ ଲୋକେ ଆଦର ଓ ସମ୍ମାନ କରୁଥିଲେ । ନିଜେ ନାରାୟଣ ପ୍ରସାଦ ଉଚ୍ଚ ଶିକ୍ଷିତ ଥିବାରୁ ତାଙ୍କର ପୁତ୍ରମାନଙ୍କୁ ଉଚ୍ଚ ଶିକ୍ଷା ଦେବାରେ ଅବହେଳା କରିନଥିଲେ । ବିଶେଷତଃ ସେ ସମୟରେ କେଦାରପୁର ଗ୍ରାମର ଅବସ୍ଥା ମଧ୍ୟ ବିଦ୍ୟାଶିକ୍ଷା ପ୍ରତି ଅନୁକୂଳ ଥିଲା । କାୟସ୍ଥ, ବ୍ରାହ୍ମଣ, ମୁସଲମାନ ଓ ଅନ୍ୟ ସମ୍ପ୍ରଦାୟର ବହୁ ଶିକ୍ଷିତ ଲୋକ ସେ ଗାମରେ ଥିଲେ । ପାର୍ଶି ଭାଷାରେ ଟିକ୍କୁ ମିଆଁ, ସଂସ୍କୃତରେ ଆର୍ତ୍ତତ୍ରାଣ ନନ୍ଦ ଓ ସଦାଶିବ ନନ୍ଦ ପ୍ରଭୃତି ଉଚ୍ଚକୋଟୀର ପଣ୍ଡିତମାନଙ୍କଠାରୁ ନାରାୟଣ ପ୍ରସାଦ ତାଙ୍କର ପୁତ୍ରମାନଙ୍କର ବିଦ୍ୟା ଶିକ୍ଷାର ବ୍ୟବସ୍ଥା କରିଥିଲେ । ଜ୍ୟେଷ୍ଠପୁତ୍ର ସୁନ୍ଦରନାରାୟଣ ଟିକ୍କୁ ମିଆଁଙ୍କଠାରୁ ପାର୍ଶି ଶିଖିଥିଲେ ଏବଂ ପଣ୍ଡିତମାନଙ୍କ ସାହାଯ୍ୟରେ ବଙ୍ଗଳା, ଓଡ଼ିଆ ଓ ସଂସ୍କୃତ ଶିକ୍ଷା କରିଥିଲେ । ସୁନ୍ଦରନାରାୟଣ ବାଲେଶ୍ୱର କଲେକ୍ଟରଙ୍କ କଚେରୀରେ ସଦର କାନୁନ୍‌ଗୋ କାମରେ ନିଯୁକ୍ତ ହୋଇଥିଲେ । ତାଙ୍କର ଅନ୍ୟ ତିନି ଭାଇ ମଧ୍ୟ ରାଜକାର୍ଯ୍ୟରେ ନିଯୁକ୍ତ ଥିଲେ । ବଳରାମ ପ୍ରସାଦ ନିମକ ଦାରୋଗା, ଜଗନ୍ନାଥ ପ୍ରସାଦ ମଧ୍ୟ ନିମକ ଦାରୋଗା, ରମାନାଥ କଲେକ୍ଟର କଚେରୀରେ ମୋହରୀର (ଗୁମାସ୍ତା, କରଣି) କାମ କରୁଥିଲେ । ଚାରି ଭାଇ ଅର୍ଥ ଉପାର୍ଜ୍ଜନ କରୁଥିବାରୁ ପରିବାରର ଅବସ୍ଥା ସ୍ୱଚ୍ଛଳ ଥିଲା ଏବଂ ସେମାନଙ୍କ ଶିକ୍ଷାଦୀକ୍ଷା ଯୋଗୁଁ ମଧ୍ୟ ଜିଲାରେ ପରିବାରର ସମ୍ମାନ ବୃଦ୍ଧି ପାଇଥିଲା । ପରିବାରର ଏହି ସମ୍ମାନ ଦେଖି ଜମିଦାର ଭଗତ ନାରାୟଣ ରାୟ ମହାଶୟ

ନିଜ କନ୍ୟା ତାରଣୀଙ୍କୁ ସୁନ୍ଦର ନାରାୟଣଙ୍କ ସହିତ ବିବାହ କରାଇଥିଲେ ।

ଶକାବ୍ଦ ୧୭୭୧ ଆଶ୍ୱିନ ୧୫ ଦିନ (ବା ଶୁକ୍ଳପକ୍ଷ ପ୍ରତିପଦଭୁକ୍ତ ଦ୍ୱିତୀୟା) ଖ୍ରୀ ୧୮୪୮ ସେପ୍ଟେମ୍ବର ତା ୨୮ରିଖ ଗୁରୁବାର ରାତି ୭ ଦଣ୍ଡ ସମୟରେ ରାଧାନାଥଙ୍କର ଜନ୍ମ ହୋଇଥିଲା । ରାଧାନାଥ ବେଶି କାଳ ମାତୃକୋଳରେ ଲାଳନ ପାଳନର ସୁଖ ଭୋଗ କରି ପାରି ନଥିଲେ । ତାଙ୍କ ଜନ୍ମର ଗୃରିବର୍ଷ ପରେ ତାଙ୍କର ଭ୍ରାତା ଯଦୁନାଥଙ୍କର ଜନ୍ମ ହେଲା । ଏହାର ପ୍ରାୟ ବର୍ଷକ ଭିତରେ ମାତା ତାରଣୀ ଦାସୀ ସଂସାର ତ୍ୟାଗ କଲେ । ତାରଣୀ ଜଣେ ଆଦର୍ଶ ଗୃହିଣୀ ଓ ମାତା ଥିଲେ । ତାଙ୍କର ସ୍ୱଭାବ ଅତି ସରଳ ଥିଲା । ଦୁଃଖୀ ଦରିଦ୍ରଙ୍କ ପ୍ରତି ତାଙ୍କର ବହୁ ମମତା ଥିଲା ଓ ମୁକ୍ତହସ୍ତରେ ସେ ସାହାଯ୍ୟ କରୁଥିଲେ । ତାଙ୍କର ଏହି ଦୟା ଓ ଦାନଶୀଳତା ଯୋଗୁଁ ଲୋକେ ତାଙ୍କୁ ଅତି ସ୍ନେହ କରୁଥିଲେ ।

ତାରଣୀଙ୍କ ମୃତ୍ୟୁ ପରେ ସୁନ୍ଦର ନାରାୟଣ ଶିଶୁସନ୍ତାନ ଦୁଇଟିର ଲାଳନପାଳନ ପାଇଁ ଚିନ୍ତିତ ହୋଇ ପଡ଼ିଲେ । ସେ ସରକାରୀ ଚାକରୀ କରୁଥିବାରୁ ବାଲେଶ୍ୱରରେ ରହିବାକୁ ବାଧ୍ୟ ହେଉଥିଲେ ଏବଂ ଏହି ପ୍ରବାସ ଯୋଗୁଁ ସେ ସନ୍ତାନମାନଙ୍କର ଲାଳନପାଳନରେ ତ୍ରୁଟି ହେବାର ଆଶଙ୍କା କରୁଥିଲେ । ଏ ଦୁର୍ଦ୍ଦଶାରୁ ରକ୍ଷା ପାଇବା ପାଇଁ ସେ ବାଧ୍ୟ ହୋଇ ତାରଣୀଙ୍କ ମୃତ୍ୟୁର ବର୍ଷକ ପରେ ଦ୍ୱିତୀୟ ଥର ଦାରପରିଗ୍ରହ କରିଥିଲେ । ଯାଜପୁରର ଶ୍ରୀ ଶମ୍ଭୁନାଥ ସିଂହଙ୍କ କନ୍ୟା ରୂପ ଦାସୀଙ୍କୁ ସେ ବିବାହ କଲେ । ରୂପ ଦାସୀ ରାଧାନାଥ ଓ ଯଦୁନାଥଙ୍କୁ ସ୍ୱଗର୍ଭଜାତ ସନ୍ତାନ ସ୍ୱରୂପ ବ୍ୟବହାର କରୁଥିଲେ । ରୂପ ଦାସୀଙ୍କ ଗର୍ଭରୁ ସୀତାନାଥ, ହରିନାଥ, ନାମକ ଦୁଇପୁତ୍ର ଓ ସ୍ୱର୍ଣ୍ଣମୟୀ ନାମ୍ନୀ ଏକ କନ୍ୟା ଜନ୍ମଗ୍ରହଣ କରିଥିଲେ ।

ପିଲାଙ୍କ ବିଦ୍ୟାଶିକ୍ଷାର ଉନ୍ନତି ପାଇଁ ସୁନ୍ଦର ନାରାୟଣ ବହୁ ଚେଷ୍ଟା କରୁଥିଲେ । ଯୋରଠରେ ଭର୍ଣ୍ଣାକୁଲାର୍ ସ୍କୁଲ ତାଙ୍କ ଯତ୍ନରେ ସ୍ଥାପିତ ହୋଇଥିଲା । ସୁନ୍ଦର ନାରାୟଣ ମିଷ୍ଟଭାଷୀ, କର୍ତ୍ତବ୍ୟନିଷ୍ଠ, ସଚ୍ଚରିତ୍ର ଓ ଦେଶହିତୈଷୀ ଥିଲେ । ଏହି କାରଣରୁ ତାଙ୍କୁ କଲେକ୍ଟର ବିମ୍ସ୍ ସାହେବ, ଅମଲାମାନେ ଓ ଲୋକ ସାଧାରଣ ସ୍ନେହ ଓ ଆଦର କରୁଥିଲେ । ସେ ନିଜେ ବିଦ୍ୟାଚର୍ଚ୍ଚା କରୁଥିଲେ । ଇଂରେଜୀ,ବଙ୍ଗଳା, ପାର୍ସି ଓ ଓଡ଼ିଆ ଭାଷାର କାବ୍ୟ କବିତାଦି ଆଲୋଚନା କରି ଆନନ୍ଦ ଉପଭୋଗ କରୁଥିଲେ । ସର୍ବସାଧାରଣଙ୍କ ହିତକର ପ୍ରତ୍ୟେକ କାର୍ଯ୍ୟରେ ସେ ପୂର୍ଣ୍ଣପ୍ରାଣରେ ସହଯୋଗ କରୁଥିଲେ । ବାଲ୍ୟକାଳରୁ ପିତାଙ୍କର ସଦ୍‌ଗୁଣର ପ୍ରଭାବ ରାଧାନାଥଙ୍କ ଜୀବନରେ ପଡ଼ିଥିଲା ।

ସନ୍ତାନମାନଙ୍କର ଶିକ୍ଷା ପାଇଁ ସୁନ୍ଦର ନାରାୟଣ ନିଜ ଗୃହରେ ପାଠଶାଳାଟିଏ ସ୍ଥାପନ କରି ସେଠାରେ ଜଣେ ଅବଧାନଙ୍କୁ ଶିକ୍ଷକ-ରୂପେ ନିଯୁକ୍ତ କରିଥିଲେ । ନାରାୟଣ ନାୟକ ପ୍ରଥମ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ରାଧାନାଥଙ୍କ ମାତା ତାରିଣୀ ଦାସୀଙ୍କର ଅକାଳମୃତ୍ୟୁ ହୋଇଯିବାରୁ ଚାଟଶାଳୀଟି କେଦାରପୁର ଜମିଦାର ରାୟ ମହାଶୟଙ୍କ ଚଣ୍ଡୀ ମଣ୍ଡପକୁ ଉଠିଗଲା । ନାୟକଙ୍କ ଚାଟଶାଳୀରେ ବିଦ୍ୟାଶିକ୍ଷାର କଠୋରତା ଥିଲା ।

ପୂର୍ବକାଳରେ ଅବଧାନମାନଙ୍କ ଶାସନ ଅତି କଠୋର ଥିଲା । ଛାତ୍ରମାନେ ପାଠଶାଳାକୁ ଠିକ୍ ସମୟରେ ନ ଆସିଲେ କଠୋର ଦଣ୍ଡ ପାଉଥିଲେ । ଶିକ୍ଷାରେ ଅବହେଳା ଦେଖାଦେଲେ ମଧ୍ୟ ଅବଧାନମାନେ ଦଣ୍ଡ ଦେଉଥିଲେ । ବର୍ତ୍ତମାନ ମଧ୍ୟ କୌଣସି କୌଣସି ସ୍ଥାନରେ ପୂର୍ବପରି ପଠନ ଓ ଦଣ୍ଡବ୍ୟବସ୍ଥା ଥିବା ଦେଖାଯାଏ । ଠିକ୍ ସମୟରେ ପାଠଶାଳାରେ ଉପସ୍ଥିତ ନହେଲେ ବେତେ ଦ'ବେତ ଦିଆଯାଉଥିଲା । ପଠନରେ ଅବହେଳା କମ୍ବା

ଅନ୍ୟମନସ୍କତା ଦେଖାଗଲେ ଛାତ୍ରକୁ ଦୁଇ ତିନି ଘଣ୍ଟା ଦଣ୍ଡାୟମାନ ରହିବା ପାଇଁ ଆଦେଶ ହେଉଥିଲା । ସ୍ଥଳବିଶେଷରେ ଏକ ଗୋଡ଼ରେ ଠିଆ ହେବା ଦଣ୍ଡ ମଧ୍ୟ ଥିଲା । ଶିକ୍ଷକଙ୍କ କଠୋର ଶାସନ ଭୟରେ ଗୁଣୀ ବାଳକ ରାଧାନାଥ ପଠନରେ ହେଳା କରୁ ନଥିଲେ । ସେ ତିନିବର୍ଷ ଭିତରେ ବର୍ଣ୍ଣଶିକ୍ଷା, ପଣକିଆ, ଜମିଜମା, କୁଣ୍ଠା, ଭିଆଣ, ଛାନ୍ଦବୋଲି ପ୍ରଭୃତି ଶେଷ କରିପାରିଥିଲେ । ଅଙ୍କ ଶିକ୍ଷା ପ୍ରତି ତାଙ୍କର ବିଶେଷ ଆଗ୍ରହ ଥିବାରୁ ଶ୍ରେଣୀରେ ଏଥିରେ ତାଙ୍କର ବିଶେଷ ପାରଦର୍ଶିତା ଦେଖାଯାଉଥିଲା । ଏହି ବାଲ୍ୟାବସ୍ଥାରୁ ଓଡ଼ିଆ ପ୍ରାଚୀନ କବିମାନଙ୍କର ଛାନ୍ଦ ବୋଲିବାକୁ ସେ ଅତ୍ୟନ୍ତ ସୁଖ ପାଉଥିଲେ ।

ଚାଟଶାଳୀ ପାଠ ଶେଷ କରି ରାଧାନାଥ ସ୍ୱଗ୍ରାମର ଏକ କ୍ରୋଶ ଦୂରରେ ଥିବା ସୋରରେ ନବପ୍ରତିଷ୍ଠିତ ଭର୍ଣ୍ଣାକୁଲର୍ ସ୍କୁଲରେ ଅଧ୍ୟୟନ ଆରମ୍ଭ କଲେ । ଏହି ସ୍କୁଲରେ ସଂସ୍କୃତଜ୍ଞ ପଣ୍ଡିତ ସଦାଶିବ ନନ୍ଦ ଓ ତାଙ୍କ ବଡ଼ ଭାଇ ପଣ୍ଡିତ ଆର୍ତ୍ତତ୍ରାଣ ନନ୍ଦଙ୍କଠାରୁ, ରାଧାନାଥ ସଂସ୍କୃତ ଶିକ୍ଷା କରିଥିଲେ ।

ଏଠାରେ ଦୁଇତିନି ବର୍ଷ ପଢ଼ିବା ପରେ ରାଧାନାଥ ବାଲେଶ୍ୱର ଗଲେ । ସେଠାରେ ତାଙ୍କର ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହି ବାଲେଶ୍ୱର ଜିଲ୍ଲା ସ୍କୁଲରେ ଏକାଦଶ ବର୍ଷ ବୟସରେ ଖ୍ରୀ ୧୮୬୮ରେ ଶିକ୍ଷା ଆରମ୍ଭ କଲେ ।

---

# ତୃତୀୟ ପରିଚ୍ଛେଦ

## ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷା

ରାଧାନାଥ ବାଲେଶ୍ୱରରେ ଇଂରେଜୀ ଶିକ୍ଷା ଆରମ୍ଭ କଲା ସମୟର ଅବସ୍ଥା ସହିତ ବର୍ତ୍ତମାନର ଅବସ୍ଥା ତୁଳନା କଲେ ସେ ସମୟରେ 'ନବ୍ୟ' ଶିକ୍ଷାର ଅବସ୍ଥା ଯେ ନିତାନ୍ତ ଶିଶୁ ଅବସ୍ଥାରେ ଥିଲା ଏଥିରେ ସନ୍ଦେହ ନାହିଁ । ସେ ସମୟରେ ପାର୍ଶି ଓ ଉର୍ଦ୍ଦୁ ଭାଷାର ବିଶେଷ ଚର୍ଚ୍ଚା ଥିଲା । ସାଧାରଣତଃ ପିଲାମାନେ ଅବଧାନଙ୍କ ଚଟଶାଳୀରେ ପଢ଼ି, ବର୍ଣ୍ଣପରିଚୟ, ପଣକିଆ, କମଳଲୋଚନ ପ୍ରଭୃତି ଶିଖୁଥିଲେ । ପରେ ଅଙ୍କ ଶିକ୍ଷା ହେଉଥିଲା । ଭାଗବତ ବୋଲି ଶିଖି ସାରିଲେ ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣ, ଉପେନ୍ଦ୍ରଭଞ୍ଜଙ୍କ କାବ୍ୟମାନଙ୍କରୁ କେତୋଟି ଛାନ୍ଦ ମୁଖସ୍ଥ କରୁଥିଲେ । 'ଇଂରେଜ-ଶିକ୍ଷା' ଦେଶରେ ବେଶି ପ୍ରଚଳିତ ନଥିବାରୁ ଇଂରେଜ ପଢ଼ୁଆଙ୍କ ସଂଖ୍ୟା ଅତି ଅଳ୍ପ ଥିଲା । ଏଣ୍ଟ୍ରାନ୍‌ସ୍ ବର୍ତ୍ତମାନର ମାଟ୍ରିକୁ୍ୟଲେଶନ୍ ପାସ୍ କଲେ ଅତି ଉଚ୍ଚ ଶିକ୍ଷା ଲାଭ ହେଲା ବୋଲି ଲୋକେ ଭାବୁଥିଲେ । ସଂଗତିସମ୍ପନ୍ନ ଲୋକେ ନିଜ ପୁତ୍ରମାନଙ୍କୁ ଉଚ୍ଚ ଶିକ୍ଷା ପାଇଁ କଲିକତା ପଠାଉଥିଲେ । ସେଠାରେ କଲେଜ ଶିକ୍ଷାଲାଭର ବ୍ୟବସ୍ଥା ଥିଲା । ଓଡ଼ିଶାରେ ଭର୍ଣ୍ଣାକୁଲାର ସ୍କୁଲର (ମଧ୍ୟ ଇଂରେଜୀ ସ୍କୁଲ୍) ଶିକ୍ଷା ହିଁ ସେତେବେଳକୁ ଉଚ୍ଚଶିକ୍ଷାର ଆସନ ଗ୍ରହଣ କରିଥିଲା । ୧୮୩୫ ଖ୍ରୀଷ୍ଟାବ୍ଦଠାରୁ ଦେଶରେ ନବ୍ୟ ଶିକ୍ଷାର ପ୍ରଚଳନ ପାଇଁ ସରକାର ସ୍ଥିର କରି ସେ ଦିଗରେ ଉଦ୍ୟମ କରିବାରୁ 'ଉଚ୍ଚଶିକ୍ଷା'ର ବାଟ କ୍ରମେ ଉନ୍ମୁକ୍ତ ହେଲା ।

ବାଲେଶ୍ୱରରେ ୧୮୫୩ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ ପ୍ରଥମେ ହାଇସ୍କୁଲ୍ (ଜିଲ୍ଲାସ୍କୁଲ) ସ୍ଥାପିତ ହେଲା ।

ସେତେବେଳେ ଉପଯୁକ୍ତ ଘର ନଥିବାରୁ ବଙ୍ଗଳା ଛାତ୍ରବୃତ୍ତି ସ୍କୁଲ୍‌କୁ ଟିକିଏ ବଢ଼ାଇ ଦେଇ ସେଠାରେ ହାଇସ୍କୁଲ୍ ପ୍ରଥମେ ବସିଲା । ସରକାର ନିଜେ ଏହି ସ୍କୁଲର ଭାର ନେଇଥିଲେ । ପ୍ରଥମେ ଦୁଇତିନି ଜଣ ଶିକ୍ଷକ ରହି କାର୍ଯ୍ୟ ଚଳାଉଥିଲେ । ସ୍କୁଲପରିଚାଳନା ସମ୍ପର୍କରେ ପରାମର୍ଶ ଦେବା ପାଇଁ ଗୋଟିଏ ସ୍ଥାନୀୟ କମିଟି ନିଯୁକ୍ତ ହୋଇଥିଲା । କମିଟିର ସଭ୍ୟମାନେ ସାମୟିକ ସ୍କୁଲକୁ ଯାଇ ଛାତ୍ରମାନଙ୍କୁ ପରୀକ୍ଷା କରୁଥିଲେ । ଜିଲ୍ଲା କଲେକ୍ଟରଙ୍କ ତତ୍ତ୍ୱାବଧାନରେ ସ୍କୁଲ୍ ଚାଲୁଥିଲା ।

ରାଧାନାଥ ବିଦ୍ୟାଳୟରେ ଆରମ୍ଭରୁ କୃତିତ୍ୱ ଦେଖାଉଥିଲେ । ପ୍ରତିବର୍ଷ ପରୀକ୍ଷାରେ ସେ ପ୍ରାୟ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ତାଙ୍କର ଅଧ୍ୟୟନସ୍ପୃହା ଆଦର୍ଶସ୍ଥାନୀୟ ଥିଲା । ସେ ସ୍ଥାନୀୟ ବିଦ୍ୱାନ, ଶାସ୍ତ୍ରଜ୍ଞ ପଣ୍ଡିତ ଓ ଭଦ୍ରବ୍ୟକ୍ତିମାନଙ୍କ ସାହଚର୍ଯ୍ୟ ଲାଭ କରିଥିବାରୁ ତାଙ୍କର ଚିନ୍ତା କ୍ରମଶଃ ଉନ୍ନତ ହେଉଥିଲା । ବିଜ୍ଞଲୋକଙ୍କ ସାହଚର୍ଯ୍ୟ ଓ ଅଧ୍ୟବସାୟୀ ଶିକ୍ଷକମାନଙ୍କ ଶାସ୍ତ୍ରାନୁଶୀଳନ ତାଙ୍କର ଅଧ୍ୟୟନ-ସ୍ପୃହାକୁ ବର୍ଦ୍ଧିତ କରିଦେଇଥିଲା ! ସେ ଏଥିରେ ଏତେଦୂର ନିମଜ୍ଜିତ ହୋଇଥିଲେ ଯେ, ଅବସର-ବିନୋଦନ ସମୟଟି ମଧ୍ୟ ସେ ଅଧ୍ୟୟନରେ ଅତିବାହିତ କରିଦେଉଥିଲେ । ଦୁର୍ବଳସ୍ୱାସ୍ଥ୍ୟ ଯୋଗୁଁ ମଧ୍ୟ ସେ ବାହାରେ ଆମୋଦପ୍ରମୋଦ କିମ୍ବା ଅବସର ବିନୋଦନରେ କାଳାତିପାତ କରିବା ପାଇଁ ମନ କରୁନଥିଲେ । ପାଠ୍ୟପୁସ୍ତକ ବ୍ୟତୀତ ସେ ଅନ୍ୟାନ୍ୟ ଉପାଦେୟ ପୁସ୍ତକ ମଧ୍ୟ ଅଧ୍ୟୟନ କରୁଥିଲେ । କଠିନଶବ୍ଦର ଅର୍ଥ ଜାଣିବା ପାଇଁ ବିଦ୍ୟାଳୟକୁ ସେ ଗୋଟିଏ ଅଭିଧାନ ସାଙ୍ଗରେ ନେଉଥିଲେ ।

ଏହି ଶିକ୍ଷା ସମୟରେ ସେ ମୌଲବୀ ଗୋଲାମ୍ ରସୁଲଙ୍କଠାରୁ ପାର୍ଶୀ ଓ ଉର୍ଦ୍ଦୁ ଭାଷା ଓ ସାହିତ୍ୟ ଶିକ୍ଷା କରିଥିଲେ ।

ସେ ଜଣେ ବହୁଗ୍ରନ୍ଥାଧ୍ୟାୟୀ ଛାତ୍ର ବୋଲି ପରିଚିତ ହେଉଥିଲେ । ସ୍କୁଲରେ ସେ ଅନ୍ୟାନ୍ୟ ଛାତ୍ରମାନଙ୍କ ସହିତ ଅତି ସୁନ୍ଦର ବ୍ୟବହାର କରୁଥିଲେ । ତାଙ୍କର ବିନୟ, କର୍ତ୍ତବ୍ୟନିଷ୍ଠା ଓ ସେବା ଯୋଗୁଁ ସେ ବହୁତ ଆଦର ପାଉଥିଲେ । ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ ପ୍ରଭୃତି ସମସ୍ତ ବିଷୟରେ ତାଙ୍କର ସମାନ ଅନୁରାଗ ଥିଲା ଏବଂ ପ୍ରତ୍ୟେକ ବିଷୟରେ ତାଙ୍କର ଜ୍ଞାନ ତାଙ୍କର ସହାଧ୍ୟାୟୀମାନଙ୍କଠାରୁ ବେଶୀ ଥିଲା । ଏହି କାରଣରୁ ସେ ପ୍ରାୟ ପ୍ରତିବର୍ଷ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ ଏବଂ ପୁରସ୍କାର ପାଉଥିଲେ । ଥରେ ବାଲେଶ୍ୱରର ଜିଲ୍ଲା ମାଜିଷ୍ଟ୍ରେଟ୍ ଟୁଗୁଡ୍ (Too Good) ସାହେବ ସ୍କୁଲ ପରିଦର୍ଶନ କରିବାକୁ ଆସିଥିଲେ ଏବଂ ରାଧାନାଥଙ୍କ ଶ୍ରେଣୀର ଛାତ୍ରମାନଙ୍କୁ ଜ୍ୟାମିତିର ଗୋଟିଏ କଠିନ ପ୍ରଶ୍ନ ପଚାରିଥିଲେ ରାଧାନାଥଙ୍କ ଛଡ଼ା ଅନ୍ୟ କେହି ଛାତ୍ର ତାହାର ଉତ୍ତର ଦେଇ ପାରିନଥିଲେ ; ସାହେବ ଏଥିରେ ପ୍ରୀତ ହୋଇ ରାଧାନାଥଙ୍କୁ କୋଡ଼ିଏ ଟଙ୍କା ପୁରସ୍କାର ଦେଇଥିଲେ । ରାଧାନାଥ ଖ୍ରୀ୧୮୬୪ରେ ଜିଲ୍ଲାସ୍କୁଲର ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କରୁଥିଲେ ।

ଖ୍ରୀ ୧୮୬୭ ରେ ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲରେ ପ୍ରବେଶିକା ପରୀକ୍ଷା ଦେଇଥିଲେ ଏବଂ ଏହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ତିନିଜଣ ଛାତ୍ରଙ୍କ ଭିତରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଏହା ଫଳରେ ସେ କଲେଜରେ ପଢ଼ିବାପାଇଁ ମାସିକ ଚଉଦ ଟଙ୍କା ବୃତ୍ତି ସରକାରଙ୍କଠାରୁ ପାଇଲେ ।

ଉଚ୍ଚଶିକ୍ଷା ଲାଭ କରିବା ପାଇଁ ରାଧାନାଥଙ୍କ ମନ ଡାକୁଥିଲେ ମଧ୍ୟ ତାଙ୍କର ଦେହ କଷ୍ଟ ସହିବା ପାଇଁ ପ୍ରସ୍ତୁତ ନ ଥିଲା । ପିତା ସୁନ୍ଦରନାରାୟଣଙ୍କ ଶାସନପ୍ରଣାଳୀ ତାଙ୍କ ଶାରୀରିକ ଦୁର୍ବଳତାର ଏକ ପ୍ରଧାନ କାରଣ ଥିଲା । ପିଲାମାନଙ୍କର ଭୋଜ୍ୟବସ୍ତୁ ପ୍ରତି ସୁନ୍ଦର-

ନାରାୟଣଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ଜିଭକୁ ଭଲ ଲାଗିଲା ଭଳି ରୁଚିକର ଓ ସୁଖକର ଖାଦ୍ୟ ଖାଇଲେ ପିଲାମାନେ କାଳେ ବ୍ୟସନରେ ମାତିବେ ଏବଂ ଅଯଥା ବଡ଼ଲୋକ ଚାଲ୍ ବାହାର କରିବେ, ଏହି ଆଶଙ୍କାରେ ସେ ପିଲାମାନଙ୍କ ଭୋଜ୍ୟବସ୍ତୁ ଅତି ସରଳ ଓ ସାଧାରଣ ହେବା ଉଚିତ ବୋଲି ଭାବୁଥିଲେ ଏବଂ ଏହାକୁ କାର୍ଯ୍ୟରେ ମଧ୍ୟ ପରିଣତ କରୁଥିଲେ। ପରିମିତ ଆହାର ପ୍ରତି ତାଙ୍କର ବିଶେଷ ନଜର ଥିଲା । ପିଲାମାନଙ୍କୁ ସେ ବେଶୀ ଖାଇବାକୁ ମନା କରୁଥିଲେ । ପିତାଙ୍କ ନିୟମ ପାଳନ କରି ଚଳୁଥିବାରୁ ରାଧାନାଥ କେବେହେଲେ ଭଲ କରି ପେଟ ଭରି କିଛି ଖାଇପାରୁନଥିଲେ । ଏହା ଫଳରେ ସେ ସ୍ୱଳ୍ପ-ଆହାରୀ ହୋଇ ପଡ଼ିଥିଲେ ଏବଂ ଏହିପରିଭାବରେ ସମଗ୍ର ଜୀବନ ଯାପନ କରିଥିଲେ ।

ଦୈନନ୍ଦିନ ତାଙ୍କର ଜୀବନଯାପନ ପ୍ରଣାଳୀ ମଧ୍ୟ ତାଙ୍କୁ ଉତ୍ତମ ସ୍ୱାସ୍ଥ୍ୟ ରଖିବାରେ ସାହାଯ୍ୟ କରିନଥିଲା । ସେତେବେଳକୁ ବାଲେଶ୍ୱର ସ୍କୁଲଟି ବେଶ୍ୟାସାହି ନିକଟରେ ଥିବାରୁ କେତେକ ଛାତ୍ର ନଷ୍ଟଭ୍ରଷ୍ଟ ହୋଇଯିବାର ଆଶଙ୍କା ଥିଲା । ସେଥିଯୋଗୁଁ ସୁନ୍ଦରନାରାୟଣ ରାଧାନାଥଙ୍କୁ କୁସଂସର୍ଗରୁ ଦୂରରେ ରଖିବାପାଇଁ ପ୍ରଗାଢ଼ ଯତ୍ନ କରିଥିଲେ । ପୁତ୍ରର ପ୍ରତ୍ୟେକ ଚାଲିଚଳନ ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ସ୍କୁଲକୁ ଯିବା ଓ ଆସିବା ସମୟ ଛଡ଼ା ଅନ୍ୟ କୌଣସି ସମୟରେ ରାଧାନାଥଙ୍କୁ ସେ କେବେ ଏକୁଟିଆ ବାହାରକୁ ଛାଡ଼ୁ ନଥିଲେ; ବୁଲାଚାଲା ସମୟରେ ମଧ୍ୟ ସେ ରାଧାନାଥଙ୍କୁ ସାଙ୍ଗରେ ନେଇ ବୁଲିଯାଉଥିଲେ । ଅନ୍ୟ ସମୟରେ ନିଜେ ସୁନ୍ଦରନାରାୟଣ ପୁତ୍ରଙ୍କୁ ବହୁ ନୀତି-ଉପଦେଶ ବାକ୍ୟ କଣ୍ଠସ୍ଥ କରାଉଥିଲେ ଏବଂ ବଙ୍ଗଳା ଓ ଓଡ଼ିଆ ପୁରାଣାଦି ପାଠ କରାଉଥିଲେ । ନିଜେ ପଢ଼ି ବୁଝିବାପାଇଁ ମଧ୍ୟ ସେ ରାଧାନାଥଙ୍କୁ ନିର୍ଦ୍ଦେଶ

ଦେଉଥିଲେ । ରାତିରେ ପଠନ ବେଳେ ରାଧାନାଥ ସ୍ୱାସ୍ଥ୍ୟ ଓ ଦୃଷ୍ଟିଶକ୍ତି ହାନିହେବା ଭୟରେ କିରୋସିନୀପ ନଜାଳି ତେଲଦୀପ ଜାଳୁଥିଲେ ।

ରାଧାନାଥ ଜିଲ୍ଲା ସ୍କୁଲରେ ଅଧ୍ୟୟନ ଆରମ୍ଭ କଲାବେଳେ ସବୁ ଶିକ୍ଷକ ବଂଗବାସୀ ଥିଲେ । ପରେ ଦୁଇଜଣ ଓଡ଼ିଆ ଶିକ୍ଷକ ଯୋଗ ଦେଲେ । ପଣ୍ଡିତ ଆର୍ତ୍ତତ୍ରାଣ ନନ୍ଦ ଭଦ୍ରକ ଛାତ୍ରବୃତ୍ତି ସ୍କୁଲରୁ ଏଠାକୁ ଆସିଥିଲେ । କଟକର ଶ୍ରୀ ଗୌରୀଶଙ୍କର ରାୟ ହୁଗୁଳି କଲେଜରୁ ଦ୍ୱିତୀୟ ଛାତ୍ରବୃତ୍ତି ପରୀକ୍ଷା ଦେଇସାରି ଏଠାରେ ଅସ୍ଥାୟୀଭାବରେ ଶିକ୍ଷକରୂପେ ଯୋଗ ଦେଇଥିଲେ । ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀ ବିଶ୍ୱନାଥ ସିଂହ । ସେ ଅନ୍ୟ ସ୍କୁଲକୁ ବଦଳି ହେବାରୁ ତାଙ୍କ ସ୍ଥାନରେ ଦ୍ୱିତୀୟ ଶିକ୍ଷକ ଶ୍ରୀନାଥ ସୋମ ହେଡ଼ମାଷ୍ଟର ହେଲେ । ସେ ସମୟରେ ଶିକ୍ଷକମାନେ ଛାତ୍ରମାନଙ୍କ ଶିକ୍ଷା ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ସେତେବେଳକୁ ଶିକ୍ଷା ବ୍ୟବସାୟରେ ପରିଣତ ହୋଇ ନ ଥିବାରୁ ଶିକ୍ଷକମାନେ ନିଜର ସମ୍ମାନ ରକ୍ଷା କରିବା ପାଇଁ ନିଜ କର୍ତ୍ତବ୍ୟରେ ଅବହେଳା କରୁନଥିଲେ । ଛାତ୍ରମାନଙ୍କ ସଂଖ୍ୟା ମଧ୍ୟ ବେଶି ନଥିବାରୁ ପ୍ରତ୍ୟେକ ଛାତ୍ରର ଅଭାବ, ଅସୁବିଧା ଦେଖିବା-ପାଇଁ ସେମାନେ ସମୟ ପାଉଥିଲେ । ଏହା ଛଡ଼ା, ସେ ସମୟରେ ଶିକ୍ଷକ ଓ ଛାତ୍ରମାନଙ୍କ ଭିତରେ ପୂର୍ବକାଳର ଗୁରୁଶିଷ୍ୟ ସମ୍ପର୍କ କେତେକ ପରିମାଣରେ ବିଦ୍ୟାଳୟମାନଙ୍କରେ ମଧ୍ୟ ବିଦ୍ୟମାନ ଥିବାରୁ ହୃଦୟବତ୍ତାର ପ୍ରଭାବ ଉଭୟଶ୍ରେଣୀ ଉପରେ ପଡ଼ୁଥିଲା । ସେହି ସମୟରେ ଶିକ୍ଷକମାନେ ଛାତ୍ରମାନଙ୍କୁ ପୁତ୍ରବତ୍ ସ୍ନେହ କରୁଥିଲେ । ଏଥିରେ ବ୍ୟତିକ୍ରମ ଯେ ଦେଖାଯାଉନଥିଲା, ଏହା ନୁହେଁ । କିନ୍ତୁ ଏହାର ସଂଖ୍ୟା ଅତି କମ୍ । ଶ୍ରୀନାଥ ସୋମ ଜଣେ ଆଦର୍ଶ ଶିକ୍ଷକ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀନାଥ ନିଜ ଆଚରଣ-ବ୍ୟବହାର ଦ୍ୱାରା ଛାତ୍ରମାନଙ୍କୁ ବହୁ ଉପଦେଶ ଶିକ୍ଷା ଦେଉଥିଲେ । ଛାତ୍ରମାନଙ୍କୁ ବିଦ୍ୟାଳୟରେ ଓ ବାହାରେ ଯେପରି ସୁଶିକ୍ଷା ଓ ସଚ୍ଚରିତ୍ରଗଠନର ସୁଯୋଗ ମିଳିବ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ପରିଛନ୍ନତା, ସୁଖାଦ୍ୟ, ଉତ୍ତମ-ଜଳ ବ୍ୟବହାର କରିବାକୁ ଛାତ୍ରମାନଙ୍କୁ ଉପଦେଶ ଦେଉଥିଲେ ଏବଂ ସେମାନେ କାର୍ଯ୍ୟତଃ ଏହା କରୁଛନ୍ତି କି ନାହିଁ ସେ ଦେଖୁଥିଲେ । ପଠନ ସମୟରେ ଛାତ୍ରମାନେ ଯେପରି ପଠିତ ବିଷୟକୁ ଉତ୍ତମରୂପେ ବୁଝି ମନେ ରଖିପାରନ୍ତି, ସେଥିପ୍ରତି ଲକ୍ଷ୍ୟ ରଖୁଥିଲେ । ଛାତ୍ରମାନଙ୍କ ପ୍ରତି ତାଙ୍କର ମମତା ଓ ଆତ୍ମୀୟତା ଛାତ୍ରମାନଙ୍କୁ ଚରିତ୍ର ଗଠନ କରିବାରେ ବହୁତ ସାହାଯ୍ୟ କରିଥିଲା । ଛାତ୍ରମାନଙ୍କୁ ସେ ପୁତ୍ରବତ୍ ସ୍ନେହ କରୁଥିଲେ ମଧ୍ୟ ସଦାଚାରରେ ବ୍ୟତିକ୍ରମ ଦେଖିଲେ ତୀବ୍ର ଭର୍ତ୍ସନା କରୁଥିଲେ । ଆତ୍ମନିର୍ଭରଶୀଳ ହେବା ପାଇଁ ସେ ଛାତ୍ରମାନଙ୍କୁ ଉପଦେଶ ଦେଉଥିଲେ ଏବଂ ପରିଶ୍ରମୀ ଛାତ୍ରମାନଙ୍କୁ ଦେଖିଲେ ଖୁସି ହେଉଥିଲେ ।

ସେ ସମୟର ଶିକ୍ଷାଦାନ ବ୍ୟବସ୍ଥାରେ "ଘନିଷ୍ଠତା" ଉପରେ ବେଶୀ ଜୋର୍ ଦିଆଯାଉଥିଲା । ଅଧିକାଂଶ ପାଠ୍ୟପୁସ୍ତକ ଭାବଗର୍ଭକ ଥିଲା ଏବଂ ଛାତ୍ରମାନଙ୍କ ବୟସ ଅନୁପାତରେ ବିଚାର କଲେ ପାଠ୍ୟ-ପୁସ୍ତକଗୁଡ଼ିକ ଅତି "ଉଚ୍ଚ" ହୋଇ ଯାଉଥିଲେ ମଧ୍ୟ ଶିକ୍ଷକମାନେ ବହୁଶ୍ରମ ସ୍ୱୀକାର କରି ତାହା ଛାତ୍ରମାନଙ୍କ ଆୟତ୍ତାଧୀନ ହେଲା ଭଳି ପଢ଼ାଉଥିଲେ । 'ଇଂରେଜୀରେ "ପ୍ରେସିଡେନ୍‌ସି ରିଡ଼ର" Presidency Reader)ରୁ ଆରମ୍ଭ କରି ପଦ୍ୟ ଓ ଗଦ୍ୟର ନାନା ସଙ୍କଳନ-ପୁସ୍ତିକା ମଧ୍ୟଦେଇ ପ୍ରସିଦ୍ଧ କବି ଏବଂ ଗ୍ରନ୍ଥାକାରଙ୍କ ବିବିଧ ରଚନା ସମ୍ବଳିତ ପୁସ୍ତକମାନ ଛାତ୍ରଗଣଙ୍କୁ ପଢ଼ିବାକୁ ହେଉଥିଲା । ଭୂଗୋଳ,

ଇତିହାସ, ପାଟୀଗଣିତ, ବୀଜଗଣିତ, ଜ୍ୟାମିତି ଓ ପରିମିତି ବିଷୟକ ସମସ୍ତ ପୁସ୍ତକ ୟୁରୋପୀୟ ଗ୍ରନ୍ଥକାରଙ୍କ ପ୍ରଣୀତ ଥିଲା ।" ଇଂରେଜୀ ଶିକ୍ଷାରେ ବିଶେଷ ଧ୍ୟାନ ଦିଆଯାଉଥିଲା । ଶିକ୍ଷକ ପ୍ରଥମେ ମାତୃ-ଭାଷାରେ ଅର୍ଥ ବୁଝାଉଥିଲେ । ଛାତ୍ରମାନେ ବିଷୟ ବୁଝିସିବାପରେ ଇଂରେଜୀ ପ୍ରତିଶବ୍ଦ ବସାଇ ଶିକ୍ଷକ ପାଠ ବୁଝାଉଥିଲେ । ପାଠଟି ଭଲ ଭାବରେ ବୁଝିପାରିବା ପରେ ଛାତ୍ରମାନେ ପୁସ୍ତକର ସାହାଯ୍ୟ ନ ନେଇ ଅର୍ଥ ବୋଧ କରିପାରିଲେ କି ନାହିଁ, ତାହା ଶିକ୍ଷକ ପରୀକ୍ଷା କରୁଥିଲେ । ପରେ ପଦାନ୍ୱୟ (parsing) ଶିକ୍ଷା ଦିଆ-ଯାଉଥିଲା । "ଏହି ରୀତିରେ ପାଞ୍ଚ ସାତ ଦିନ ଶିକ୍ଷା ଦିଆ ପରେ ଷଷ୍ଠ ଦିନ ବା ପ୍ରତି ସପ୍ତାହର ଶନିବାରରେ ପଠିତାଂଶର ତାତ୍ପର୍ଯ୍ୟ ଶିକ୍ଷକ ଛାତ୍ରମାନଙ୍କଠାରୁ ଆଦାୟ କରୁଥିଲେ । ଇତିହାସ ମଧ୍ୟ ଏହି ରୀତିରେ ପଢ଼ାଯାଉଥିଲା । ଶବ୍ଦର ଅର୍ଥ ଛାତ୍ରମାନଙ୍କୁ ଅଭିଧାନ ଦେଖି ଲେଖିବାକୁ ହେଉଥିଲା । ଯେଉଁ ଦରିଦ୍ର ଛାତ୍ରର ଅଭିଧାନ ନଥାଏ, ସେ ଛୁଟି ଘଣ୍ଟାରେ ସ୍କୁଲର ଗ୍ରନ୍ଥଶାଳାରୁ ତାହା ପାଇଥାଏ । ପୂର୍ବରୁ ଏହି ଅଭିଧାନ ଦେଖି ଲେଖିବା ରୀତି ଛାତ୍ରମାନଙ୍କର ଆତ୍ମନିର୍ଭରତା ଏବଂ ଜ୍ଞାନର ଆୟତ୍ତୀକରଣରେ ଯେପରି ସହାୟ ହେଉଥିଲା, ବର୍ତ୍ତମାନ ତଦାଭାବରେ ଶ୍ରମକଷ୍ଟ ବିମୁଖରେ ଛାତ୍ରମାନେ ନିତାନ୍ତ ପରମୁଖାପେକ୍ଷୀ ହୋଇ ଅଧ୍ୟବସାୟପଥରୁ ବିଚ୍ୟୁତ ହେଉଅଛନ୍ତି । ବର୍ଷକଯାକ ଆଳସ୍ୟରେ କ୍ଷେପଣ କରି ପରୀକ୍ଷାର ପୂର୍ବ ମୁହୂର୍ତ୍ତରେ ରାତିଜାଗରଣ ପୂର୍ବକ ଗୁଡ଼ାଏ ମୁଖସ୍ଥ କରିବାରେ ଅନେକ ଛାତ୍ର ପକ୍ଷପାତୀ ଥିବା ଦେଖାଯାଆନ୍ତି ; ସେତେବେଳେ ସେପରି ରୀତି ଦେଖା ନଥିଲା । ଛାତ୍ରମାନେ ନିଜର ଅଧ୍ୟବସାୟ ବଳରେ ଯେଉଁ ସଂସ୍କାର ଲାଭ କରୁଥିଲେ, ତାହା ଏପରି ହୃଦୟସ୍ପୃଷ୍ଟ ହୋଇ ଯାଉଥିଲା ଯେ, ସହଜରେ ବିସ୍ମୃତ ହେଉ ନଥିଲା ।" (ରାଂଜୀ· ୨୯।୩୦ ପୃଷ୍ଠା)

ରାଧାନାଥ ବିଦ୍ୟାଶିକ୍ଷା ସମୟରି ବଡ଼ ନିରାଡ଼ମ୍ବରରେ କଟାଇ ଦେଇଥିଲେ । ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶ୍ରେଣୀରେ ଅଧ୍ୟୟନ କରିବା ସମୟରେ ସେ ପ୍ରଥମେ ଯୋତା ବ୍ୟବହାର କଲେ । ତାଙ୍କର ଅମାୟିକ ସ୍ୱଭାବ ଯୋଗୁଁ କେତେକ ଦୁଷ୍ଟପ୍ରକୃତିର ଛାତ୍ର ତାଙ୍କୁ ସମୟ ସମୟରେ "ମଫସଲିଆ" କହି ବ୍ୟଙ୍ଗ କରୁଥିଲେ । କିନ୍ତୁ ରାଧାନାଥ ସେଥିରେ ବିଚଳିତ ହେଉନଥିଲେ । ସେ ଚରିତ୍ରବାନ୍ ଓ ମେଧାବୀ ଛାତ୍ର ଥିବାରୁ ସମସ୍ତେ ତାଙ୍କୁ ଆଦର କରୁଥିଲେ ।

ଖ୍ରୀ ୧୮୭୩ ଡିସେମ୍ବର ମାସରେ ରାଧାନାଥଙ୍କ ବାଲେଶ୍ୱରରେ ସ୍କୁଲ ଶିକ୍ଷା ସମାପ୍ତ ହୋଇଥିଲା ।

## କଲିକତାରେ ଶିକ୍ଷା

ରାଧାନାଥ ସରକାରୀ ବୃତ୍ତି ପାଇ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାପାଇଁ କଲିକତା ଗଲେ । ସେ ସମୟରେ କଲିକତା ଯିବାକୁ ହେଲେ ବଡ଼ କଷ୍ଟ ଭୋଗ କରିବାକୁ ହେଉଥିଲା । ଚାରିପାଞ୍ଚଜଣ ଏକଜୁଟ୍ ନହେଲେ ଯିବା ନିରାପଦ ନଥିଲା । ରାଧାନାଥ ବାବୁ ଅମାୟିକ ସ୍ୱଭାବର ଛାତ୍ର ଥିବାରୁ ତାଙ୍କ ସଙ୍ଗରେ ତାଙ୍କ ସାନ କକା ( ସୁନ୍ଦର ନାରାୟଣଙ୍କ ସାନ ଭାଇ ) ରମାନାଥ ରାୟ କଲିକତା ଯାଇଥିଲେ । କେତେକ ଲୋକ ବାଲେଶ୍ୱର କିମ୍ବା ଚାନ୍ଦବାଲିରୁ ଜାହାଜରେ କଲିକତା ଯାଉଥିଲେ ଏବଂ ଆଉ କେତେକ ପଦଯାତ୍ରାରେ ପହଞ୍ଚୁଥିଲେ । ପାଖ ପାଖ ଜାଗାର ଲୋକେ ସାଧାରଣରେ ପଦଯାତ୍ରାହିଁ ପସନ୍ଦ କରୁଥିଲେ । ପୁଣି ଯେଉଁମାନଙ୍କର ସମୁଦ୍ରଯାତ୍ରା ନିରାପଦ ନୁହେଁ ବୋଲି ଧାରଣା ଥିଲା, ସେମାନେ ଚାଲିକରି ଯିବାହିଁ ଶ୍ରେୟ ମଣୁଥିଲେ । କଲିକତା ଯିବା ବାଟରେ ସ୍ଥାନେ ସ୍ଥାନେ ଚଟି (ବିଶ୍ରାମଘର, ସରେଇ

ଘର ) ଘର ଥାଏ । ସେଠାରେ ବାଟୋଇମାନେ ରାତ୍ରରେ ବିଶ୍ରାମ ନିଅନ୍ତି ଏବଂ ରନ୍ଧାବଢ଼ା କରି ଖାଆନ୍ତି । "ସେ ସମୟରେ କଲିକତା ଯିବାକୁ ବଡ଼ ବଡ଼ ରଥୀମାନେ ଶଙ୍କି ଯାଉଥିଲେ । ପାଞ୍ଚସାତଜଣ ସାଙ୍ଗ ନହୋଇ ଏକୁଟିଏ ଯିବାକୁ କାହାରି ଭରସା ପାଉନଥିଲା । ବାଲେଶ୍ୱରଠାରୁ ଚଳନ୍ତିରେ ପାଞ୍ଚ ଛଅ ଦିନର ବାଟ, ସେ ବାଟ ମଧ୍ୟ ନିତାନ୍ତ କଦର୍ଯ୍ୟ । ବର୍ଷାଦିନରେ ଯେପରି ଆଣ୍ଠୁଆଣି କାଦୁଅ, ଶୀତଦିନରେ ସେହିପରି ଚେକଟିଆ, ଖରାଦିନେ ଆଣ୍ଠୁଏ ଧୂଳି । ତହିଁରେ ପୁଣି ସରେଇ ଘରେ ଚୋରଷେଇ । ନଦୀପାରି ସମୟରେ ଠିକାଦାର ନାଉରିମାନଙ୍କର ଅତ୍ୟାଚାର ବଳିପଡ଼ୁଥିଲା । ତାହା ଉପରେ ପୁଣି ଚୋରି ଡକାୟତଙ୍କ କଥା ତ ଉପରାନ୍ତ ଅଛି ।" (ରା: ଜା: ପୃ ୩୬) । କଲିକତାରେ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେବା ପରେ ରାଧାନାଥ ଏଫ୍.ଏ ପଢ଼ିବା ଉଦ୍ଦେଶ୍ୟରେ ଖ୍ରୀ୧୮୭୪ରେ ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇଲେ । ବଂଗର ସୁପ୍ରସିଦ୍ଧ ଲେଖକ ଶ୍ରୀ ନବୀନଚନ୍ଦ୍ର ସେନ (ପରେ ଡେପୁଟି କଲେକ୍ଟର ହୋଇ ଓଡ଼ିଶାରେ ଚାକିରୀ କରିଥିଲେ) ରାଧାନାଥଙ୍କ ସହପାଠୀ । କଲେଜରେ ସେ ସମୟରେ ରମେଶଚନ୍ଦ୍ର ଦତ୍ତ, ବିହାରୀଲାଲ ଗୁପ୍ତ, ପ୍ରଫୁଲଚନ୍ଦ୍ର ଗଙ୍ଗୋପାଧ୍ୟାୟ, ଆନନ୍ଦମୋହନ ବସୁ ପ୍ରଭୃତି ଅଧ୍ୟୟନ କରୁଥିଲେ । ସହପାଠୀମାନଙ୍କ ମଧ୍ୟରେ ନବୀନଚନ୍ଦ୍ରଙ୍କ ସହିତ ରାଧାନାଥଙ୍କର ଘନିଷ୍ଠ ବନ୍ଧୁତ୍ୱ ହୋଇଥିଲା ।

କଲିକତାର ଜଳବାୟୁ ରାଧାନାଥଙ୍କ ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ହେଲା ନାହିଁ । ପୂର୍ବରୁ ତ ସେ ଅଳ୍ପାହାରୀ ଥିଲେ ଏବଂ ତାଙ୍କର ଶାରୀରିକ ଆକାର ମଧ୍ୟ ତାଙ୍କର ସ୍ୱାସ୍ଥ୍ୟର ପରିଚୟ ଦେଉନଥିଲା । ପନ୍ଦର ଷୋଳ ବର୍ଷ ବୟସରେ ମଧ୍ୟ ସେ ଦଶ ବାରବର୍ଷର ପିଲା ଭଳି ଦିଶୁଥିଲେ ; ସେ ଅତି ଶୀର୍ଣ୍ଣକାୟ ଥିଲେ । ଅଳ୍ପ ସମୟ

ଅବସ୍ଥାନ କରିବା ପରେ ସେଠାରେ ରାଧାନାଥଙ୍କ ସ୍ୱାସ୍ଥ୍ୟଭଙ୍ଗ ହେଲା, ଆମାଶୟ ରୋଗରେ ସେ ଘନ ଘନ ପୀଡ଼ିତ ହେଲେ । ଉଚ୍ଚ ଶିକ୍ଷା ଏହି ଭଗ୍ନସ୍ୱାସ୍ଥ୍ୟରେ ସମ୍ଭବ ନଥିବା ଦେଖି ସେ କଲିକତା ତ୍ୟାଗ କରି ସ୍ୱଗ୍ରାମକୁ ଫେରିଆସିଲେ ।

ରାଧାନାଥ ବାଲେଶ୍ୱର ଜିଲ୍ଲାରେ ପ୍ରଥମ ଏଣ୍ଟ୍ରାନ୍ସ ପାଶ୍ କରିଥିବା ଛାତ୍ର । ସେତେବେଳେ ଏଣ୍ଟ୍ରାନ୍ସ ପାଶ୍ କରିଥିବା ଲୋକଙ୍କ ସଂଖ୍ୟା ମଧ୍ୟ ଜିଲ୍ଲାରେ ଅଳ୍ପ ଥିଲା । ସେହି କାରଣରୁ ଏଣ୍ଟ୍ରାନ୍ସ ପାଶ୍ କରିଥିବା ଲୋକଙ୍କୁ ଦେଖିଲେ ଲୋକେ ଶ୍ରଦ୍ଧା କରୁଥିଲେ । ସେତେବେଳେ ବାଲେଶ୍ୱର ସ୍କୁଲର ହେଡ୍ ମାଷ୍ଟର କି ସେକେଣ୍ଡ ମାଷ୍ଟର କେହି ହେଲେ ଏଣ୍ଟ୍ରାନ୍ସ ପାଶ୍ କରି ନଥିଲେ କାରଣ, ଏହି ବର୍ଷ ପରୀକ୍ଷାର ପୂର୍ବ ବର୍ଷଠାରୁ ଏଣ୍ଟ୍ରାନ୍ସ ପରୀକ୍ଷା ଆରମ୍ଭ ହୋଇଥିଲା । ଇଂରେଜୀ ଉଚ୍ଚଶିକ୍ଷା ଲାଭ କରି ପରୀକ୍ଷାରେ ଯଶସ୍ୱୀ ହୋଇଥିବାରୁ ରାଧାନାଥଙ୍କ ପ୍ରତି ଲୋକଙ୍କର ଶ୍ରଦ୍ଧା ମଧ୍ୟ ବୃଦ୍ଧି ପାଇଥିଲା । ଜଣେ ଏଣ୍ଟ୍ରାନ୍ସ ପାସ୍ କରିଥିବା ଶିକ୍ଷକ କ୍ୱଚିତ୍ ମିଳୁଥିବାରୁ ତାଙ୍କୁ ଦେଖିବା ପାଇଁ ଲୋକଙ୍କ ମନରେ ସଶ୍ରଦ୍ଧ କୌତୂହଳ ଜାଗ୍ରତ ହୋଇଥିଲା । ଶତାଧିକ ଲୋକ ତାଙ୍କୁ ଦେଖିବା ପାଇଁ ତାଙ୍କ ବସାଠାକୁ ଯାଇଥିଲେ ଏବଂ ସମ୍ମାନ ପ୍ରଦର୍ଶନ କରିଥିଲେ । କାଳକ୍ରମେ ଜିଲାରେ ବହୁ ମେଧାବୀ ଛାତ୍ର ଇଂରେଜୀରେ ଉଚ୍ଚ ଶିକ୍ଷା ଲାଭ କରିବାରୁ ଲୋକଙ୍କ ମନରୁ କୌତୂହଳ ଆପେ ଆପେ ଲୋପ ପାଇଗଲା ।

———

# ଚତୁର୍ଥ ପରିଚ୍ଛେଦ

## ଶିକ୍ଷକତା : ନଅଙ୍କ ଦୁର୍ଭିକ୍ଷ : ଗ୍ରନ୍ଥରଚନା

କଲିକତାରୁ ଫେରି ରାଧାନାଥ ସ୍ୱଗ୍ରାମରେ କିଛି ସମୟ ରହିଲେ । ସେହି ସମୟରେ ତାଙ୍କର ପିଉସୀ ପୁଅ ଭାଇ (କଟକଜିଲ୍ଲା ଅନ୍ତର୍ଗତ ଗୃହୁଁପାଳ ନିବାସୀ) ଜଗମୋହନ ରାୟ ନୂତନ ହୋଇ କଟକରେ ଡେପୁଟି କଲେକ୍ଟର ନିଯୁକ୍ତ ହୋଇଥାଆନ୍ତି । ରାଧାନାଥଙ୍କ ଭଳି ମେଧାବୀ ଯୁବକ ଘରେ ବସିରହିବା ସେ ପସନ୍ଦ କଲେନାହିଁ । ସୁନ୍ଦରନାରାୟଣଙ୍କ ପରିବାରର ବୃଦ୍ଧି ସଙ୍ଗେ ସଙ୍ଗେ ଖର୍ଚ୍ଚ ମଧ୍ୟ ବୃଦ୍ଧି ପାଇଲା । ତାଙ୍କ କୁଟୁମ୍ବଙ୍କ ଭରଣପୋଷଣଙ୍କ ପାଇଁ ଧନ ବ୍ୟବସ୍ଥା କରିବା ମଧ୍ୟ କିଛି ସହଜ ନଥିଲା । ଏହା ଉପରେ ପୁଣି ରାଧାନାଥଙ୍କ ଉଚ୍ଚଶିକ୍ଷା ପାଇଁ ଅଧିକା ବ୍ୟୟ ବହନ କରିବା ତାଙ୍କ ପକ୍ଷରେ ମଧ୍ୟ କଷ୍ଟକର ହୋଇ-ଥାଆନ୍ତା । ପୁଣି, ରାଧାନାଥଙ୍କ ସ୍ୱାସ୍ଥ୍ୟ ସେତେ ଭଲ ନଥିବାରୁ ଉଚ୍ଚଶିକ୍ଷା ପାଇଁ ତାଙ୍କର ଶାରୀରିକ ଶକ୍ତି ଯଥେଷ୍ଟ ହେବ ନାହିଁ, ସେ ବିଷୟରେ ମଧ୍ୟ ସନ୍ଦେହ ଥିଲା । ଏହି ସବୁ କାରଣରୁ ସୁନ୍ଦରନାରାୟଣ ପୁତ୍ରଙ୍କର ଉଚ୍ଚଶିକ୍ଷାର ଆଶା ଛାଡ଼ି ଦେଇଥିଲେ । ଭଣଜା ଜଗମୋହନ ପ୍ରସ୍ତାବ କଲେ ଯେ, ଯଦି ରାଧାନାଥ କଟକରେ ରହି ଏଫ୍. ଏ. ପଢ଼ନ୍ତି ତାହା-ହେଲେ ସେ ସମସ୍ତ ବ୍ୟୟ ବହନ କରିବେ ଏବଂ ଉଚ୍ଚ ଶିକ୍ଷା ପାଇଁ କଲିକତା ଗଲେ, ସେଠାର ଯାବତୀୟ ବ୍ୟୟ ମଧ୍ୟ ସେ ବହନ କରିବେ । ଏକେ ତ ସ୍ୱାସ୍ଥ୍ୟଭଙ୍ଗର ଆଶଙ୍କା, ଦୁଇରେ, ପିତାଙ୍କର ଆର୍ଥିକ ଅବସ୍ଥାର ଅସ୍ୱଚ୍ଛଳତା, ଏହି କାରଣରୁ ରାଧାନାଥ ଜଗମୋହନ ରାୟଙ୍କ ପ୍ରସ୍ତାବରେ ରାଜି ହେଲେ ନାହିଁ । ପିତାଙ୍କୁ

କୁଟୁମ୍ବ ଚଳାଇବାରେ ଏତିକି ବେଳେ ସାହାଯ୍ୟ କରିବା କର୍ତ୍ତବ୍ୟ ମନେ କରି ସେ ଚାକିରି କରିବା ପ୍ରତି ଧ୍ୟାନ ଦେଲେ । ବାଲେଶ୍ୱର ଜିଲ୍ଲାସ୍କୁଲରେ ତୃତୀୟ ଶିକ୍ଷକପଦ ଖାଲି ହେବାରୁ ରାଧାନାଥ ଖ୍ରୀ ୧୮୭୪ ମେ ମାସ ତା୧୪ରିଖରେ ସେଥିରେ ନିଯୁକ୍ତ ହେଲେ । ସେତେବେଳକୁ ତାଙ୍କର ବୟସ ୧୭ ମାତ୍ର । ସେତେବେଳେ ବାଲେଶ୍ୱର ଜିଲ୍ଲାସ୍କୁଲରେ ଥିଲେ ହେଡ଼ମାଷ୍ଟର ଶ୍ରୀ ଗଙ୍ଗାଧର ଆଚାର୍ଯ୍ୟ ( ଦରମା ଟ୧୦୫୲ ), ଦ୍ୱିତୀୟ ଶିକ୍ଷକ ବିଶ୍ୱନାଥ ଚକ୍ରବର୍ତ୍ତୀ (ଦରମା ଟ୫୦୲), ତୃତୀୟ ଶିକ୍ଷକ ରାଧାନାଥ ରାୟ (ଦରମା ଟ୩୦୲), ଚତୁର୍ଥ ଶିକ୍ଷକ ରଙ୍ଗଲାଲ ରାୟ (ଦରମା ଟ୨୦୲), ପଞ୍ଚମ ଶିକ୍ଷକ ରାଧିକାପ୍ରସାଦ କୁଣ୍ଡୁ (ଦରମା ଟ୧୫୲), ଏବଂ ପଣ୍ଡିତ ଶ୍ରୀ ଆର୍ତ୍ତତ୍ରାଣ ନନ୍ଦ (ଦରମା ଟ୨୦୲) । ସେହିବର୍ଷ ଜୁନ୍ ତା୨୩ରିଖରେ ରାଧାନାଥ ତୃତୀୟ ଶିକ୍ଷକ ପଦରେ ସ୍ଥାୟୀ ହେଲେ ।

## ନଅଙ୍କ ଦୁର୍ଭିକ୍ଷ

୧୮୬୬ ଖ୍ରୀଷ୍ଟାବ୍ଦରେ ଯେଉଁ ଭୟାବହ ଦୁର୍ଭିକ୍ଷ ଓଡ଼ିଶାକୁ ଗ୍ରାସ କଲା, ତାହା ଦେଶରେ ସାଧାରଣରେ "ନଅଙ୍କ ଦୁର୍ଭିକ୍ଷ" ନାମରେ ପରିଚିତ । ସେହିବର୍ଷ ପୁରୀର ରାଜା ଦିବ୍ୟସିଂହ ଦେବଙ୍କ ନଅ ଅଙ୍କ । ସେହି ଦୁର୍ଭିକ୍ଷରେ ଓଡ଼ିଶାର ସମଗ୍ର ଲୋକସଂଖ୍ୟାର ପ୍ରାୟ ଏକତୃତୀୟାଂଶ ମରିଗଲେ । ଯେଉଁମାନେ ବା ବଞ୍ଚିରହିଲେ କିଏ କେତେ ଦୁଃଖକଷ୍ଟରେ ଜୀବନ ବଞ୍ଚାଇ ରଖିଲେ ତାହାର ଇୟତ୍ତା ନାହିଁ । ୧୮୬୫ରେ ଅଳ୍ପ ଫସଲ ହୋଇଥିଲା । ତାହାର ପର ବର୍ଷ ଫସଲ ଏକାବେଳକେ ନଷ୍ଟ ହୋଇଗଲା । ଲାଗେ ଲାଗେ ଦୁଇବର୍ଷ ଫସଲ ନଷ୍ଟହୋଇଯିବାରୁ ଦେଶରେ ଖାଦ୍ୟାଭାବ ଦେଖାଗଲା । ସେତେବେଳକୁ ପୁଣି ସରକାରଙ୍କ ଦ୍ୱାରା ଲୁଣମରା

ବ୍ୟବସାୟ ଆରମ୍ଭ ହେବାରୁ ଲୋକଙ୍କ ହାତରୁ ତାହା କାଢ଼ି ନିଆଗଲା । ଯେଉଁ ଲକ୍ଷାଧିକଲୋକ ଲୁଣମାରି ଲୁଣ ବ୍ୟବସାୟ କରି ବଞ୍ଚୁଥିଲେ, ସେମାନେ ଅର୍ଥାଭାବ ଅନୁଭବ କଲେ । ସାଧାରଣ କୃଷୀ ମୂଲିଆଙ୍କ ହାତରେ ମଧ୍ୟ ପଇସା ନଥିଲା ଏବଂ ସମଗ୍ର ଦେଶରେ ଫସଲ ନଷ୍ଟ ହୋଇଯିବାରୁ କୃଷି ଉପରେ ନିର୍ଭର କରୁଥିବା ବହୁଲୋକ ବେକାର ହୋଇ ବସିଲେ । ଖାଦ୍ୟାଭାବ ସହିତ ଅର୍ଥାଭାବ ସହଯୋଗ କରି ଦେଶକୁ ସର୍ବସ୍ୱାନ୍ତ କରିଦେଲା । ସରକାରୀ ହାକିମମାନେ ଦେଶରେ ଏ ଉତ୍କଟ ଖାଦ୍ୟାଭାବ ଓ ଅର୍ଥାଭାବର ପ୍ରକୃତ ଅବସ୍ଥାକୁ ଉପଲବ୍ଧି କରି ପାରିଲେ ନାହିଁ । ଦେଶରେ ଧନୀ, ବ୍ୟବସାୟୀ ଓ ଜମିଦାର-ମାନେ ଯଥେଷ୍ଟ ଧାନ ମହଜୁଦ୍ ରଖିଛନ୍ତି ବୋଲି ସେମାନଙ୍କର ଧାରଣା ହେଲା । ଧାନଦର ବୃଦ୍ଧି ପାଇଲେ ବ୍ୟବସାୟ ସୂତ୍ର ଅନୁସାରେ ସେମାନେ ମହଜୁତ ରଖିଥିବା ଧାନକୁ ବିକ୍ରି କରିବେ, ଏହି ଆଶା ସେମାନଙ୍କର ହେଲା । ଓଡ଼ିଶା ବାହାରୁ ଧାନ ଆମଦାନୀ କଲେ ଦେଶଭିତରେ ମହଜୁତ ଥିବା ଧାନ ବାହାରକୁ ଆସିବା ସମ୍ଭବ ନୁହେଁ, ଏହି ଧାରଣା ମଧ୍ୟ ହାକିମମାନଙ୍କର ହୋଇଥିଲା । ଫଳରେ ପ୍ରଥମରୁ ସରକାରୀ ଉଦ୍ୟମରେ ଓଡ଼ିଶା ବାହାରୁ ଧାନ ଆମଦାନୀ କରିବା ଚେଷ୍ଟାରେ ଅବହେଳା ହେଲା । ଲୋକଙ୍କୁ ଉପଯୁକ୍ତ ପରି-ମାଣରେ ଧାନ ଓ ପଇସା ସାହାଯ୍ୟ ଦେଇ (ଦୁର୍ଭିକ୍ଷର ଆଶଙ୍କା ହେବା ଦିନଠାରୁ) ବଞ୍ଚାଇ ରଖିବାର ଉଦ୍ୟମ ସରକାରଙ୍କ ଆଡ଼ୁ ହେଲା ନାହିଁ । ଏହି ଅବହେଳା ଯୋଗୁଁ ଅନ୍ନାଭାବରେ ଲକ୍ଷ ଲକ୍ଷ ଲୋକ ପୋକମାଛି ପରି ମଲେ । ୧୮୬୬ର ଫେବୃୟାରୀ ମାର୍ଚ୍ଚଠାରୁ ଆରମ୍ଭ କରି ନଭେମ୍ବର ପର୍ଯ୍ୟନ୍ତ ଏହି ନଅ ଦଶମାସ ଓଡ଼ିଶାରେ ମୃତ୍ୟୁ ଦେବତାଙ୍କର ବିଭତ୍ସ ତାଣ୍ଡବ ଲୀଳା ଦେଖା ଦେଲା । ପୃଥିବୀର ଇତିହାସରେ ଏଭଳି ଭୟାବହ କାଣ୍ଡ କେବେ ଦେଖା ଦେଇ

ନଥିଲା । ଲୋକେ ଅନ୍ନକଷ୍ଟରେ ପଶୁ ପାଲଟି ମଧ୍ୟ ଜୀବନ ରକ୍ଷା କରି ପାରିଲେ ନାହିଁ । ଦେଶଟା କାଙ୍ଗାଳ ହୋଇଗଲା । ଜାତିବର୍ଣ୍ଣ, ବାଳ-ବୃଦ୍ଧ, ଧନୀଦରିଦ୍ର ନିର୍ବିଶେଷରେ ଲୋକେ 'ହା ଅନ୍ନ, ହା ଅନ୍ନ' ହୋଇ ପାଗଳ ପରି ବୁଲିଲେ । ଗ୍ରାମକୁ ଗ୍ରାମ ଲୋକଶୂନ୍ୟ ହୋଇଗଲା । ଦେଶର ସର୍ବତ୍ର ପୂତିଗନ୍ଧମୟ ଶବରେ ଆଚ୍ଛାଦିତ ହୋଇଗଲା । ମନୁଷ୍ୟ ମାଂସ ମନୁଷ୍ୟ ଖାଇଲେ । ଲୋକେ ଗୋରୁ ଗାଈ ଭଳି ଏଣେ ତେଣେ ବୁଲିଲେ । ଛୁଆପାଟିରୁ ଆହାର ଛଡ଼ାଇ ମା' ଖାଇଲା । କିଏ କେଉଁଠି ମଲା, ତାର ଠିକଣା କେହି ଜାଣିଲେ ନାହିଁ ।

ନଅଙ୍କ ଦୁର୍ଭିକ୍ଷର କରାଳ ଦୃଶ୍ୟ ତରୁଣ ରାଧାନାଥଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା । ମାନବ ଚରିତ୍ର ଶିକ୍ଷା କରି 'ମାନବିକତା'ର ମର୍ଯ୍ୟାଦା ସେ ବୁଝିପାରିଥିଲେ ।

୧୮୬୪, ୧୮୬୫, ୧୮୬୬, ୧୮୬୭, ଏ ଚ୍ଛରିବର୍ଷ ଓଡ଼ିଶାର ଲୋକେ ଏତେ ହତୋତ୍ସାହ ଓ ହୀନବଳ ହୋଇଯାଇଥିଲେ ଯେ କୌଣସି ଉଚ୍ଚ ଅଭିଳାଷ ପୋଷଣକରି ଉନ୍ନତିପଥରେ ଯାତ୍ରୀ ହେବାର ସୌଭାଗ୍ୟ କାହାରି ହେଲେ ନଥିଲା କହିଲେ ଚଳେ । ୧୮୬୭ରେ ଲୋକେ ଟିକିଏ ଆଶ୍ୱସ୍ତ ମଣିଲେ, କିନ୍ତୁ ଦୁର୍ଭିକ୍ଷର କଷାଘାତର ଚିହ୍ନ ଲିଭି ନଥିଲା । ରାଜପୁରୁଷମାନେ ନିଜର ଅବହେଳା ବିଳମ୍ବରେ ବୁଝିପାରିଥିବାରୁ ସେମାନଙ୍କ ଚେଷ୍ଟାରେ ବେଶି ଫଳ ଫଳିବା ପାଇଁ ଅବକାଶ ନଥିଲା । ସେତେବେଳକୁ ନେଡ଼ିଗୁଡ଼ି କହୁଣୀକୁ ଗଳିଯାଇ ଥିଲା । ତତ୍କାଳୀନ ଓଡ଼ିଶାର କମିଶନର ରେଭେନ୍ସାଙ୍କ ଅବହେଳା ଯୋଗୁଁ ଓଡ଼ିଶାରେ ଲକ୍ଷ ଲକ୍ଷ ଲୋକ ମଲେ । ଏଥିରେ ବଙ୍ଗଲାଟ ଇଡେନ୍‌ଙ୍କ ଭାଗ ମଧ୍ୟ କମ୍ ନଥିଲା । ଏହି ଅବହେଳାର ଫଳ ସ୍ୱରୂପ ଯେଉଁ ଭୟାବହ କାଣ୍ଡ ଘଟିଗଲା, ସେଥିପାଇଁ ସମଗ୍ର ଜଗତରେ

ବ୍ରିଟିଶ ସରକାରଙ୍କ କାର୍ଯ୍ୟକୁ ଘୋର ନିନ୍ଦା ହେଲା ଏବଂ ବ୍ରିଟିଶ୍ ଶାସନରେ ଓଡ଼ିଶା ଦୁର୍ଭିକ୍ଷ ଏକ କଳଙ୍କ ସ୍ୱରୂପ ରହିଲା ।

ନଅଙ୍କ ଦୁର୍ଭିକ୍ଷ ଓଡ଼ିଶା ଇତିହାସରେ ଏକ ମହା ଶଙ୍କଟ ସମୟ । ଏହାର ଭୟାବହ ଆକ୍ରମଣରୁ ଓଡ଼ିଶା ଅଳ୍ପକେ ରକ୍ଷା ପାଇଯାଇ- ଥିଲେହେଁ ଶରୀର କ୍ଷତବିକ୍ଷତ ଓ ଶ୍ରୀହୀନ ହୋଇଯାଇଥିଲା । ରକ୍ଷା ପାଇଯାଇଥିବା ଲୋକେ ଏହି ଭୟାବହ ଚିତ୍ରକୁ ସ୍ମରଣ କରିବା ମାତ୍ରେ ଶଙ୍କିତ ହୋଇଯାଉଥିଲେ । ବଞ୍ଚିରହିବା ପାଇଁ କେବଳ ବ୍ୟକ୍ତିଗତ ଉଦ୍ୟମ ଯଥେଷ୍ଟ ନୁହେଁ, ଏହା ସାଙ୍ଗକୁ ବଳିଷ୍ଠ ସରକାରୀ ଉଦ୍ୟମ ମଧ୍ୟ ଆବଶ୍ୟକ, ଲୋକେ ଏହା ଉପଲବ୍ଧି କଲେ । ହୃଦୟ- ମରୁଭୂମିରେ ପୁଣି ଆଶାର ସଞ୍ଚାର ଦେଖାଗଲା । ସରକାର ଓ ପ୍ରଜା ଉଭୟେ ଜାଗି ଉଠିଲେ । ନଅଙ୍କ ଦୁର୍ଭିକ୍ଷକୁ ଇଂରେଜଶାସନର ଅପାରଗତାର ଏକ କଳଙ୍କ ବୋଲି ସମଗ୍ର ଜଗତରେ ମତ ପ୍ରକାଶ ପାଇବାରୁ ସରକାର ପ୍ରଜାଙ୍କର ହିତ ଦିଗରେ ମନ ଧ୍ୟାନ ଦେଲେ । ଲୋକେ ମଧ୍ୟ ଜୀବିକା ଅର୍ଜନ କରିବା ପାଇଁ ବିବିଧ ବୃତ୍ତି ଅବଲମ୍ବନ କଲେ । ଶଙ୍କଟ ତାଡ଼ନାରେ ଛିଣ୍ଡିଯାଇଥିବା ତନ୍ତ୍ରୀକୁ ପୁଣି ଯୋଡ଼ିବା ପାଇଁ ଲୋକେ ଉଦ୍ୟମ କଲେ ।

ଦୁର୍ଭିକ୍ଷର କରାଳ କଷାଘାତରେ ଦେଶର ବହୁ ଉଦ୍ୟମୀ, ମେଧାବୀ ଯୁବକ ବିଦ୍ୟାଧ୍ୟୟନର ଧାରାକୁ ଅବ୍ୟାହତ ରଖିବାକୁ ସମର୍ଥ ହୋଇ ପାରି ନଥିଲେ । ଦୁର୍ଭିକ୍ଷ ପରେ ଏମାନେ ପୁଣି ନୂତନ ତେଜରେ ଏ ଦିଗରେ ଅଗ୍ରସର ହେଲେ । ବାଲେଶ୍ୱର ଜିଲ୍ଲାରେ ରାଧାନାଥ ପ୍ରମୁଖ ବହୁ ମେଧାବୀ ଯୁବକ ଜ୍ଞାନାର୍ଜନ ଦିଗରେ ମନଃପ୍ରାଣ ଢାଳିଦେଲେ ।

## ଜ୍ଞାନବୃଦ୍ଧି ପାଇଁ ନବଉଦ୍ୟମ

ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ନିଜର ଜ୍ଞାନ ବୃଦ୍ଧି ପାଇଁ ରାଧାନାଥ ପ୍ରଗାଢ଼ ଅଧ୍ୟବସାୟ କଲେ । ସେସମୟର ବଂଗଳା ସାହିତ୍ୟର ଅତି ଉପାଦେୟ ଗ୍ରନ୍ଥ, ଇଂରେଜୀ ଭାଷାରେ ପ୍ରକାଶିତ ବିଶ୍ୱବିଖ୍ୟାତ କବି ଓ ଦାର୍ଶନିକମାନଙ୍କ ଗ୍ରନ୍ଥ ଓ ଉତ୍କଳ-ସାହିତ୍ୟର ବହୁ ପ୍ରାଚୀନ ଗ୍ରନ୍ଥପାଠ ଓ ଆଲୋଚନା କରିବାରେ ସେ ନିଜକୁ ନିୟୋଜିତ କଲେ । ବିଶେଷତଃ ବଙ୍ଗଳା, ଓଡ଼ିଆ ଓ ଇଂରେଜୀ ଭାଷାରେ ପ୍ରକାଶିତ ଶ୍ରେଷ୍ଠ କବିମାନଙ୍କର କାବ୍ୟକବିତା ସେ ମନ ଧ୍ୟାନ ଦେଇ ଅଧ୍ୟୟନ କରୁଥିଲେ ।

ସଂସ୍କୃତ ସାହିତ୍ୟ ଅଧ୍ୟୟନ ପାଇଁ ସେ ଉଦ୍ୟମ କଲେ । ଏହି ସମୟରେ ପଣ୍ଡିତ ସଦାଶିବ ନନ୍ଦ ବାଲେଶ୍ୱର ଜିଲ୍ଲାସ୍କୁଲକୁ ପଣ୍ଡିତଶିକ୍ଷକ ରୂପରେ ବଦଳି ହୋଇ ଆସିଥିଲେ । ତାଙ୍କ ସାହାଯ୍ୟରେ ସଂସ୍କୃତର ଶ୍ରେଷ୍ଠ କାବ୍ୟସବୁ ପଢ଼ିବା ଆରମ୍ଭ କଲେ । ଅତି ଅଳ୍ପ-କାଳ ମଧ୍ୟରେ ନିଜ ଅସାଧାରଣ ଅଧ୍ୟବସାୟ ଯୋଗୁଁ ସେ ବହୁ ଗ୍ରନ୍ଥ ଅଧ୍ୟୟନ କରିପାରିଥିଲେ ।

ତାଙ୍କର କାବ୍ୟବ୍ୟାକରଣାଦି ପଢିବାରେ ବିଶେଷ ଆଗ୍ରହ ଥିବାରୁ ବିଶିଷ୍ଟ ପଣ୍ଡିତମାନଙ୍କ ଠାକୁ ଯାଇ ସେମାନଙ୍କ ସହିତ ଚର୍ଚ୍ଚା କରୁଥିଲେ । ସେ ଯାହାଠାରୁ ଯାହା ଶିକ୍ଷା କରିଛନ୍ତି, ତାଙ୍କଠାରେ ଚିରକୃତଜ୍ଞ ରହିଛନ୍ତି । ତାଙ୍କର ଶିକ୍ଷାଗୁରୁଙ୍କ ପ୍ରତି ଅତି ଉଚ୍ଚ ଧରଣର ଭକ୍ତି ଥିଲା । ତାଙ୍କର ବାଲ୍ୟକାଳର ଗୁରୁମାନଙ୍କୁ ମଧ୍ୟ ମୃତ୍ୟୁ ପର୍ଯ୍ୟନ୍ତ ସେ ଭୁଲି ନଥିଲେ ଏବଂ ସେମାନଙ୍କୁ ସାମୟିକ ଯଥୋଚିତ ସାହାଯ୍ୟ କରୁଥିଲେ । ସହାଧ୍ୟାୟୀ ବନ୍ଧୁମାନଙ୍କ ପ୍ରତି ମଧ୍ୟ ତାଙ୍କର ଯଥେଷ୍ଟ ସ୍ନେହ ଓ ଶ୍ରଦ୍ଧା ଥିଲା । ତାଙ୍କର ପିଲାଦିନର ଅନ୍ତରଙ୍ଗ

ବନ୍ଧୁମାନଙ୍କୁ ସେ କେବେ ହେଲେ ପାଶୋରି ନାହାନ୍ତି ; ଯେଉଁମାନଙ୍କ ସହିତ ଅତି ଘନିଷ୍ଠ ଭାବରେ ବନ୍ଧୁତା ହୋଇଥିଲା, ସେମାନଙ୍କ ସହିତ ତାଙ୍କର ସେହି ସ୍ନେହମୟ ପ୍ରାଣପୂର୍ଣ୍ଣ ମମତା ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲା ।

## ବିଦ୍ୟାଧ୍ୟୟନ ସମୟର ବନ୍ଧୁମଣ୍ଡଳୀ

ବିଦ୍ୟାଧ୍ୟୟନ ସମୟର ବନ୍ଧୁମାନଙ୍କ ଭିତରେ ଫକୀରମୋହନ ସେନାପତି, ଦାମୋଦର ପ୍ରସାଦ ଦାସ, କୁମାର ବୈକୁଣ୍ଠନାଥ ଦେ, ରସିକଚନ୍ଦ୍ର ଦେ, ଦ୍ରୁତ୍ତୁତ ପ୍ରଧାନ । ଏମାନଙ୍କ ଭିତରେ ସେନାପତି ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବହୁ ଉପାଦେୟ ଗ୍ରନ୍ଥ ରଚନା କରି ଅମର ହୋଇଛନ୍ତି । ସେ ଉତ୍କଳ ସମ୍ମିଳନୀ ଆନ୍ଦୋଳନରେ ଜଣେ ପ୍ରଧାନ ନେତା ହେଲେ । କୁମାର ବୈକୁଣ୍ଠନାଥ ବାଲେଶ୍ବରର ପ୍ରସିଦ୍ଧ ଜମିଦାରଙ୍କ ପୁତ୍ର । ସେ ମଧ୍ୟ ଓଡ଼ିଶାର ବିବିଧ ଦିଗରେ ଉନ୍ନତି ପାଇଁ ବହୁ ଦାନ କରିଛନ୍ତି ଏବଂ ନିଜେ ମଧ୍ୟ କାର୍ଯ୍ୟ କରିଛନ୍ତି । ସେ ମଧ୍ୟ ଉତ୍କଳ ସମ୍ମିଳନୀର ପ୍ରଧାନ ନେତାମାନଙ୍କ ଭିତରେ ଜଣେ । ସେ ରାଧାନାଥଙ୍କ ଅନ୍ତରଙ୍ଗ ବାଲ୍ୟବନ୍ଧୁ ଥିଲେ । ଦାମୋଦର ଦାସଙ୍କ ଯତ୍ନରେ ବାଲେଶ୍ବରରେ ସର୍ବପ୍ରଥମେ ଉତ୍କଳ ପ୍ରେସ ନାମକ ଛାପାଖାନା ସ୍ଥାପିତ ହୋଇଥିଲା ଏବଂ "ସମ୍ବାଦ ବାହିକା" ନାମକ ପତ୍ରିକା ଏଠାରୁ ପ୍ରକାଶିତ ହେଉଥିଲା । ରାଧାନାଥ ଏହି ପତ୍ରିକାରେ ବରାବର ଲେଖୁଥିଲେ । ଦାସଙ୍କ ଘରେ ଭଲ ପୁସ୍ତକାଳୟଟିଏ ଥିଲା । ବଙ୍ଗଳା, ଇଂରେଜୀ, ଓଡ଼ିଆ ଭାଷାର ବହୁମୂଲ୍ୟ ପୁସ୍ତକ ସେଠାରେ ଥିଲା । ରାଧାନାଥ ଓ ତାଙ୍କର ବନ୍ଧୁମାନେ ଅବସର ସମୟରେ ପ୍ରତିଦିନ ସେଠାକୁ ଯାଇ ପୁସ୍ତକପାଠ କରିବା ସଙ୍ଗେ ସଙ୍ଗେ ନାନା ପ୍ରସଙ୍ଗର ଚର୍ଚ୍ଚା ମଧ୍ୟ କରୁଥିଲେ ।

ଫକୀରମୋହନଙ୍କ ସହିତ ରାଧାନାଥଙ୍କର ମଧ୍ୟ ଘନିଷ୍ଠ ବନ୍ଧୁତ୍ୱ ଥିଲା । ସେ ଦୁହେଁ ପ୍ରତ୍ୟହ ବାଲେଶ୍ୱରର ଗଡ଼ଗଡ଼ିଆ ପୋଖରୀ ହୁଡ଼ାରେ ବସି କିଛି ସମୟ ନାନା ପ୍ରସଙ୍ଗ ଆଲୋଚନା କରୁଥିଲେ । ଏହାପରେ ଦାମୋଦର ବାବୁଙ୍କ ଘରକୁ ଯାଇ ସେଠାରେ ଏକତ୍ର ସମସ୍ତେ ନାନା ବିଷୟର ଚର୍ଚ୍ଚା କରୁଥିଲେ ।

---

# ପଞ୍ଚମ ପରିଚ୍ଛେଦ

## ପୁରୀରେ ରାଧାନାଥ

ବାଲେଶ୍ୱର ଜିଲ୍ଲା ସ୍କୁଲରେ ରାଧାନାଥ ତୃତୀୟ ଶିକ୍ଷକ ରୂପେ ପ୍ରାୟ ପାଞ୍ଚବର୍ଷକାଳ କାର୍ଯ୍ୟ କରିଥିଲେ । ୧୮୬୮ ଜାନୁଆରୀ ତା୧୯ରିଖରେ ସେ ପୁରୀ ଜିଲ୍ଲାସ୍କୁଲକୁ ଦ୍ୱିତୀୟ ଶିକ୍ଷକ ରୂପେ ବଦଳି ହେଲେ । ସେତେବେଳେ ସ୍କୁଲର ହେଡ୍‌ମାଷ୍ଟର ଥିଲେ ବଙ୍ଗବାସୀ କୁଞ୍ଜବିହାରୀ ମୁଖୋପାଧ୍ୟାୟ ।

## ଏଫ୍. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ

ପୁରୀ ଜିଲ୍ଲା ସ୍କୁଲରେ ଶିକ୍ଷକ ଥିବାବେଳେ ସେ ଏଫ୍.ଏ. ପରୀକ୍ଷା ଦେଇ ପାଶ୍ କଲେ ।

### ବିବାହ

ଖ୍ରୀ ୧୮୭୦ରେ ବାଲେଶ୍ୱର ଜିଲ୍ଲାର ପ୍ରସିଦ୍ଧ ରେମୁଣା ଗ୍ରାମରେ ଚନ୍ଦ୍ରମୋହନ ଆଦିତ୍ୟଙ୍କ ଏକମାତ୍ର କନ୍ୟା ଚରଣମଣିଙ୍କ ସହିତ ରାଧାନାଥଙ୍କ ବିବାହ ହୋଇଥିଲା । ସେହି ବର୍ଷ (୧୮୭୦ ଖ୍ରୀଷ୍ଟାବ୍ଦ) ତାଙ୍କର 'କବିତାବଳି' ଦ୍ୱିତୀୟଭାଗ ପ୍ରକାଶିତ ହୋଇଥିଲା ।

## ସ୍ୱାସ୍ଥ୍ୟଭଙ୍ଗ

ପୁରୀରେ ଥିବା ସମୟରେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ସେ ଡେପୁଟି କଲେକ୍ଟର ହେବା ପାଇଁ ଯୋଗ୍ୟତା ହାସଲ କରିବାରେ ମନ ଦେଇଥିଲେ । ଏଥିପାଇଁ ଯେଉଁ ଆଇନ୍ ପରୀକ୍ଷା ହେଉଥିଲା ତାହା ସକାଶେ ସେ ଅତିମାତ୍ରାରେ ପରିଶ୍ରମ କରିବାରୁ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା ଏବଂ ଫଳରେ ସେ ସେହି ଯୋଗ୍ୟତା ହାସଲ କରିପାରିଲେ ନାହିଁ । ଏହାପରେ ତାଙ୍କୁ ଉତ୍କଟ ଶ୍ୱାସରୋଗ ଆକ୍ରମଣ କଲା । ରୋଗ ଏତେ ପ୍ରବଳ ହୋଇଥିଲା ଯେ ଏକାଦିକ୍ରମେ ସେ ଦୁଇତିନୋଟି ଶବ୍ଦ ଉଚ୍ଚାରଣ କରିପାରୁନଥିଲେ । ଏହି ରୋଗ-ଦ୍ୱାରା ସେ ଅତ୍ୟନ୍ତ ଦୁର୍ବଳ ହୋଇ ପଡ଼ିଲେ । ରୋଗର ଚିକିତ୍ସା କରିବାପାଇଁ ସେ କାର୍ଯ୍ୟରୁ କିଛି ସମୟ ଛୁଟି ନେଲେ । ବହୁ ଚିକିତ୍ସା ପରେ ସେ ଆରୋଗ୍ୟଲାଭ କଲେ । କିନ୍ତୁ ତାଙ୍କର ଦୁର୍ବଳତା ବହୁପରିମାଣରେ ରହିଲା । ତାଙ୍କର ଶରୀର ଜୀର୍ଣ୍ଣଶୀର୍ଣ୍ଣ ହୋଇ ପଡ଼ିଲା । ଏହି ରୋଗର ଏକ ଔଷଧ ସ୍ୱରୂପ ରାଧାନାଥ ପ୍ରତିଦିନ ଅଫିମ ଖାଇବା ଆରମ୍ଭ କଲେ ଏବଂ ନାସ ମଧ୍ୟ ବ୍ୟବହାର କଲେ । ଏହାଦ୍ୱାରା ତାଙ୍କର ରୋଗର ପ୍ରକୋପ କେତେକ ପରିମାଣରେ କମିଥିଲା ଏବଂ ସେ ଆରାମବୋଧ କରୁଥିଲେ । ସେ ମୁହୁର୍ମୁହୁ ନସ୍ୟ ଗ୍ରହଣ କରିବାକୁ ବାଧ୍ୟ ହେଉଥିଲେ । ଏହି ରୋଗ ରାଧାନାଥଙ୍କୁ ବଡ଼ ଚିନ୍ତିତ କରି ପକାଇଥିଲା । ତାଙ୍କର ଭବିଷ୍ୟତ ଉନ୍ନତି, ସୁଖସ୍ୱାଚ୍ଛନ୍ଦ୍ୟ, ସାହିତ୍ୟାଲୋଚନା ଓ ଗ୍ରନ୍ଥରଚନାଦିରେ ଏହା ଏକ ପ୍ରଧାନ ପ୍ରତିବନ୍ଧକ ହେବ ବୋଲି ସେ ଆଶଙ୍କା କରି ବିବ୍ରତ ହୋଇ-ପଡ଼ୁଥିଲେ ।

ପୁରୀରେ ସେ ଶିକ୍ଷକ ଥିଲାବେଳେ ମଧୁସୂଦନ ରାଓ (ଭକ୍ତକବି) ତାଙ୍କର ପ୍ରିୟ ଛାତ୍ର ଥିଲେ ଏବଂ ଦୁହିଙ୍କ ମଧ୍ୟରେ ପ୍ରଗାଢ଼ ସ୍ନେହ ଥିଲା ।

# ଭୂତ ପେଷଣ

ପୁରୀରେ ଅବସ୍ଥାନ କରୁଥିବାବେଳେ ରାଧାନାଥଙ୍କ ବସାରେ କେହି ଭୂତ କ ସାର-ପେଷଣ କରିବାରୁ ଉପଦ୍ରବ ହୋଇଥିଲା । "ରାଧାନାଥ ଯେଉଁ ବସାରେ ଅବସ୍ଥାନ କରୁଥିଲେ, ତାହା ବେମରାମତି ହୋଇଥିବାରୁ ବସାର ମାଲିକଙ୍କୁ ଅନେକଥର କହି ଅନେକ ମିନତି କରି ସୁଦ୍ଧା ସେ ମରାମତି କଲେନାହିଁ । ଏଣୁ ନିରୂପାୟ ହୋଇ ରାଧାନାଥ ଅନ୍ୟ ବସାରେ ଅବସ୍ଥାନ କରିବାକୁ ବାଧ୍ୟ ହେଲେ । ଯେଉଁଦିନଠାରୁ ସେ ଅନ୍ୟ ବସାକୁ ଉଠିଗଲେ ତହିଁର ପରଦିନଠାରୁ ତାହାଙ୍କର ରନ୍ଧା ଭାତ ଏବଂ ଜଳଖିଆ ପ୍ରଭୃତିରେ ପ୍ରତିଦିନ ହାଡ଼ ବାହାରିଲା । ବଜାରରୁ ପୁରି କିଣି ଆଣି ଖାଇଲେ ମଧ୍ୟ ତହିଁରେ ହାଡ ବାହାରିଲା । ଶୋଇବା ଘରର ଚାଳ ଉପରେ ରାତିରେ ସବୁବେଳେ ଦୁମ୍‌ଦାମ ଶବ୍ଦ ଅନବରତ ହେଉଥାଏ । କେବଳ ମହାପ୍ରସାଦ ଆଣି ଖାଇଲେ ସେଥିରୁ ହାଡ଼ ବାହାରୁ-ନଥାଏ । ଏହିପରି ପ୍ରାୟ ଦୁଇମାସ ଚାଲିଲା । ମହାପ୍ରସାଦ ଅନେକ ବିଳମ୍ବରେ ମିଳୁଥିବାରୁ ଅଧିକାଂଶ ଦିନ ତାଙ୍କୁ ସ୍କୁଲକୁ ଉପବାସରେ ଯିବାକୁ ହେଉଥିଲା । ଏହି ଘଟଣାରେ ଦିନେ ଶିକ୍ଷକମାନେ ଏକତ୍ର ହୋଇ ସମସ୍ୱରରେ କହିଲେ, ଏସବୁ ପୂଜାହାରି ଚାକରଙ୍କର ଦୋଷରୁ ଘଟୁଛି, ସେମାନେ ସ୍ୱୟଂ ଥରେ ରାନ୍ଧି ଦେଖିବେ । ଅଗଣାରେ ଗୋଟିଏ ବଡ଼ ମଶାରି ଟଙ୍ଗାଯାଇ ମଶାରି ମଧ୍ୟରେ ଚୁଲି ପ୍ରସ୍ତୁତ ହେଲା । ଶିକ୍ଷକମାନଙ୍କ ମଧ୍ୟରୁ ଦୁଇଜଣ ବଜାରକୁ ଯାଇ ଚାଉଳ କିଣି ଆଣିଲେ । ଦୁଇଜଣ କୂଅରୁ ପାଣି କାଢ଼ି, ନୂତନ ହାଣ୍ଡି ଧୋଇ, ପାଣି ଛାଣି ହାଣ୍ଡିରେ ପୂରାଇ ଚାଉଳକୁ ଭଲ ରୂପରେ ବାଛି ଓ ଧୋଇ, ଚୁଲ୍ଲୀରେ ହାଣ୍ଡି ବସାଇ ଜାଳ ଦେଲେ ଓ ସମସ୍ତେ ମଶାରି ଚାରିପାଖରେ ଘେରି ବସିଲେ । ମାତ୍ର ଭାତ ଫୁଟିବା ସମୟରେ

ଗୋଟିଏ ଶବ୍ଦ ହାଣ୍ଡିରୁ ବାହାରିଲା ; ଦେଖିବାବେଳକୁ ହାଣ୍ଡିରେ ଗୋଟିଏ ହାଡ଼ । ଏହା ଦେଖି ସମସ୍ତେ ସ୍ତବ୍ଧ ହେଲେ ଏବଂ ସେତେବେଳେ ଅନ୍ୟଲୋକେ କହିଲେ "ଘର-ପେଷିବା ଫଳରୁ ଏହା ହେଉଛି ।" (ରା.ଜୀ. ପୃ୫୧) । ପରେ ପୂର୍ବବସାର ମାଲିକଙ୍କୁ ଲୁହାପୁଚ୍ଛା କରିବାରୁ ସେ ବସା ମରାମତି କରିଦେଲେ ଓ ରାଧାନାଥ ସେଠାକୁ ପୁଣି ଉଠିଗଲେ ।

## ଶିକ୍ଷାଦାନ ରୀତି

ରାଧାନାଥ ଛାତ୍ରମାନଙ୍କ ହୃଦବୋଧ ହେଲା ଭଳି ପାଠ୍ୟ ବିଷୟ ବୁଝାଉଥିଲେ । ସ୍କୁଲକୁ ଯିବା ପୂର୍ବରୁ ପାଠ୍ୟ ବିଷୟଗୁଡ଼ିକ ପ୍ରାତଃକାଳରେ ଅନୁଶୀଳନ କରି ପ୍ରସ୍ତୁତ ହୋଇ ଯାଉଥିଲେ । ପାଠ୍ୟ ବିଷୟକୁ ଉତ୍ତମରୂପେ ଅନୁଶୀଳନ କରିସାରି ପରେ ସହଜ ସରଳ ଭାବରେ ପିଲା ବୁଝାଉଥିଲେ । "ତାଙ୍କର ଅଧ୍ୟାପନାର ପ୍ରଧାନ ବୈଶିଷ୍ଟ୍ୟ ଏତିକି ଥିଲା ଯେ, ସେ ଥରେ ପଢ଼ାଇଲେ ତାହା ଉପରେ ନୂତନ କିଛି ଜ୍ଞାତବ୍ୟ ଅଥବା ଶ୍ରୋତବ୍ୟ ବିଷୟ ଅବଶିଷ୍ଟ ରହିଯାଉନଥିଲା । ଯେତେ ଦିଗରୁ ବିଷୟର ଆଲୋଚନା କରି ହେବ, ତାହା ନ କରି ସେ ନିବୃତ୍ତ ହେଉନଥିଲେ । ତାଙ୍କ ଅଧ୍ୟାପନା ମଧ୍ୟରେ ଯେଉଁ ଆନ୍ତରିକତା ଥିଲା, ସେଥିରେ ଅଧ୍ୟାପନା ସମସ୍ତଙ୍କ ପ୍ରାଣକୁ ସ୍ପର୍ଶ କରୁଥିଲା । ତାହାଙ୍କର ପଢ଼ାଉଥିବା କ୍ଲାସରେ ସ୍କୁଲର ଖାତିପ୍ରଦ ଗାମ୍ଭୀର୍ଯ୍ୟ ନଥିଲା । ବରଂ ତାହା ଆନନ୍ଦର ହାଟରେ ପରିଣତ ହେଉଥିଲା । ସେ ଏପରି ସରସ ଭାବରେ ପଢ଼ାଉଥିଲେ ଏବଂ ପଢ଼ାଇବା ବେଳେ ଏପରି ସରସ ମନ୍ତବ୍ୟ ପ୍ରକାଶ କରୁଥିଲେ ଯେ, ସମସ୍ତ ଛାତ୍ର ହସି ହସି ଅସ୍ଥିର ହେଉଥିଲେ । ଅତି ଅଶିଷ୍ଟ, ଅଶାନ୍ତ ଓ ଅନାବିଷ୍ଟ ଛାତ୍ର ମଧ୍ୟ ତାହାଙ୍କ କ୍ଲାସରେ ଶାନ୍ତ ହୋଇ ନିବିଷ୍ଟଚିତ୍ତରେ ତାହାଙ୍କ ଅଧ୍ୟାପନା ଶୁଣୁଥିଲେ ।

ଥରେ କ୍ଲାସରେ ଗୋଟିଏ ଛାତ୍ର ତାହାର ବୃହତ୍ ଦନ୍ତ ବିକଶିତ କରି ହସି ଉଠିବାରୁ ରାଧାନାଥ ତାହାକୁ କହିଲେ,—"ବାବା ! ଏଠାରେ ମୂଳାର ଦୋକାନ ଖୋଲିଦେଇଛ କି ?"(ସ୍ୱ.ଗ୍ରା) ।

## ପୁରୀରୁ ବାଙ୍କୁଡ଼ାକୁ ବଦଳି

ପୁରୀ ଜିଲ୍ଲା ସ୍କୁଲରେ ପ୍ରାୟ ତିନିବର୍ଷ ଦ୍ୱିତୀୟ ଶିକ୍ଷକ ପଦରେ କାର୍ଯ୍ୟ କରିବା ପରେ ଖ୍ରୀ ୧୮୭୨ ଜାନୁଆରୀ ତା୧୦ରିଖରେ ରାଧାନାଥଙ୍କର ବଂଗର ବାଙ୍କୁଡ଼ା ଜିଲ୍ଲାସ୍କୁଲକୁ ଦ୍ୱିତୀୟ ଶିକ୍ଷକ ରୂପରେ ବଦଳି ହେଲା । ସେଠାରେ ରାଧାନାଥ ନିଜର ସ୍ୱଭାବସୁଲଭ ବିନୟ, ନମ୍ରତା, ପାଣ୍ଡିତ୍ୟ ଓ ସରଳ ବ୍ୟବହାର ଯୋଗୁଁ ଛାତ୍ର ଓ ଶିକ୍ଷିତ-ସମାଜର ଆଦର ଓ ଭକ୍ତି ଲାଭ କରିଥିଲେ ।

## ରାଧାନାଥ ଡେପୁଟି ଇନ୍‌ସ୍‌ପେକ୍ଟର ହେଲେ

ବାଙ୍କୁଡ଼ା ସ୍କୁଲରେ ଛଅମାସ କାର୍ଯ୍ୟ କରିବା ପରେ ରାଧାନାଥଙ୍କୁ ବଂଗ ସରକାର ବାଲେଶ୍ୱର ଜିଲ୍ଲାର ଡେପୁଟି ଇନ୍‌ସ୍‌ପେକ୍ଟର ପଦରେ ୧୮୭୨ ଜୁଲାଇ ତା୨୬ରିଖରେ ନିଯୁକ୍ତ କଲେ । ଏ ନିଯୁକ୍ତି ରାଧାନାଥଙ୍କର ଉନ୍ନତିର ପଥ ପରିଷ୍କାର କରିଦେଲା ଏବଂ ଓଡ଼ିଶାର ଉନ୍ନତି ଦିଗରେ କାର୍ଯ୍ୟ କରିବା ପାଇଁ ସେ ସୁଯୋଗ ପାଇଲେ ।

## ଗ୍ରନ୍ଥରଚନା ଓ ସାହିତ୍ୟ ଆଲୋଚନା

ଆଠବର୍ଷ ବୟସରେ ରାଧାନାଥ ତାଙ୍କର ବଙ୍ଗଳା ଗ୍ରନ୍ଥ "କବିତାବଳୀ" ରଚନା କରିଥିଲେ ଏବଂ ଏହାକୁ ଖ୍ରୀ ୧୮୬୮ରେ ପ୍ରକାଶ କଲେ । ଏହାପରେ ଓଡ଼ିଆରେ "ଇଟାଲୀୟ ଯୁବା" ନାମକ କ୍ଷୁଦ୍ର ଉପନ୍ୟାସ ଲେଖିଥିଲେ । ପ୍ରଥମେ ଇଂରେଜୀରୁ ଅନୁବାଦ କରି ଗ୍ରନ୍ଥଟି ଲେଖିଥିଲେ । ବାଲ୍ୟବନ୍ଧୁ ଫକୀରମୋହନଙ୍କୁ ସମଗ୍ର

ଗ୍ରନ୍ଥଟି ପଢ଼ି ଶୁଣାଇଥିଲେ । ମାସିକ ପତ୍ରିକା "ଉତ୍କଳ ଦର୍ପଣ"ରେ ବହିଟି ଖ୍ରୀ ୧୮୭୩ରେ କ୍ରମଶଃ ପ୍ରକାଶିତ ହୋଇଥିଲା । ଏହା ପରେ ଏହିବର୍ଷ (୧୮୭୩) ସେ "ବିବେକୀ" ଗ୍ରନ୍ଥଟି ଏହି ମାସିକ ପତ୍ରିକା "ଉତ୍କଳ ଦର୍ପଣ"ରେ ଧାରାବାହିକଭାବରେ ପ୍ରକାଶ କରିଥିଲେ ।

ଏହି ସମୟରେ ଓଡ଼ିଆ ଭାଷାରେ ବିଦ୍ୟାଳୟରେ ପଠନୋ-ପଯୋଗୀ ପୁସ୍ତକର ଅଭାବ ଥିଲା ଏବଂ ଓଡ଼ିଆ ଛାତ୍ରମାନଙ୍କର ଅସୁବିଧା ମଧ୍ୟ ହେଉଥିଲା । କେତେକ ବଙ୍ଗୀୟ ସରକାରୀ କର୍ମଚାରୀ ଏହି ଅସୁବିଧାର ସୁଯୋଗ ନେଇ ଓଡ଼ିଆ ଭାଷାକୁ ଉଠାଇଦେଇ ଓଡ଼ିଆ ପାଠ୍ୟ ପୁସ୍ତକ ସ୍ଥାନରେ ବଙ୍ଗଳା ପାଠ୍ୟ ପୁସ୍ତକ ପ୍ରଚଳନ କରିବା ପାଇଁ ଉଦ୍ୟମ କଲେ । ଏହି ବଙ୍ଗୀୟ କର୍ମଚାରୀମାନଙ୍କ କୁପରାମର୍ଶରେ ସରକାର ଓଡ଼ିଆ ପାଠ୍ୟପୁସ୍ତକ ସ୍ଥାନରେ ବଙ୍ଗଳା ପାଠ୍ୟପୁସ୍ତକ ପ୍ରଚଳନ କରିବା ପାଇଁ ପ୍ରସ୍ତାବ ମଧ୍ୟ କରିଥିଲେ । କିନ୍ତୁ ଗୌରୀଶଙ୍କର ରାୟ, ବିଚିତ୍ରାନନ୍ଦ ଦାସ, ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ଫକୀରମୋହନ ସେନାପତି ପ୍ରଭୃତି ଏହାର ଘୋର ପ୍ରତିବାଦ କରିବାରୁ ଏହି ପ୍ରସ୍ତାବ ରହିତ ହେଲା । ଫକୀରମୋହନ, ରାଧାନାଥ ପ୍ରଭୃତି ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ ରଚନା କରି ପ୍ରକାଶ କରିବାରୁ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ କ୍ରମେ ଦୂର ହୋଇଥିଲା ।

ବଙ୍ଗଦେଶର ବିଜ୍ଞ ଲୋକେ ପ୍ରାଚୀନ ଓଡ଼ିଆସାହିତ୍ୟର ସମୃଦ୍ଧ ଅବସ୍ଥା ସମ୍ବନ୍ଧରେ ଅବହିତ ନଥିବାରୁ ଓଡ଼ିଆ ଭାଷାର ମର୍ଯ୍ୟାଦା ସମ୍ବନ୍ଧରେ କିଛି ଧାରଣା କରି ପାରୁନଥିଲେ । ଓଡ଼ିଶାରେ ଓଡ଼ିଆ ଭାଷା ସ୍ଥାନରେ ବଙ୍ଗ ଭାଷା ପ୍ରଚଳନ କରିବାପାଇଁ ଯେଉଁ ବଙ୍ଗୀୟ ସରକାରୀମାନେ ଉଦ୍ୟମ କରୁଥିଲେ, ସରକାରୀ କଳରେ

ସେମାନଙ୍କ ପ୍ରଭାବ ଯଥେଷ୍ଟ ଥିଲା । ଇଂରେଜ ହାକିମମାନଙ୍କୁ ଭ୍ରମରେ ପକାଇ ଏପରି ଏକ ପ୍ରସ୍ତାବକୁ ଅନୁମୋଦିତ କରାଇନେବା ନିମନ୍ତେ ଏହି "କୁଚକ୍ରୀ"ମାନେ ସବୁ ପ୍ରକାର ଉଦ୍ୟମ କରିଥିଲେ । କିନ୍ତୁ ଓଡ଼ିଶାର ଭୂମୁଳ ପ୍ରତିବାଦ ଫଳରେ ଏହି ଉଦ୍ୟମ ପଣ୍ଡ ହୋଇ ଯାଇଥିଲା । ବଙ୍ଗଦେଶରେ ପ୍ରାଚୀନ ଓଡ଼ିଆ ସାହିତ୍ୟର କିଞ୍ଚିତ ପରିଚୟ ଦେଇ ସେମାନଙ୍କ ମନରୁ ଭ୍ରମ ଧାରଣା ଦୂର କରିବା ନିମନ୍ତେ ରାଧାନାଥ ଚେଷ୍ଟା କରି ସଫଳ ହୋଇଥିଲେ । ସେ ନିଜେ ବହୁ ପରିଶ୍ରମ କରି ଓଡ଼ିଆ ପ୍ରାଚୀନ-ସାହିତ୍ୟର ଚର୍ଚ୍ଚା କରିଥିଲେ । କଟକଜିଲ୍ଲା ଝଙ୍କଡ଼ ଗ୍ରାମର ଜଣେ ବାଞ୍ଛା ଅବଧାନଙ୍କ ସାହାଯ୍ୟରେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି ବିଖ୍ୟାତ କବିମାନଙ୍କର ଉତ୍କୃଷ୍ଟ କାବ୍ୟଗୁଡ଼ିକ ପାଠ କରିଥିଲେ ଏବଂ ଆଲୋଚନାରେ ବହୁ ସମୟ ଅତିବାହିତ କରୁଥିଲେ । ରାଧାନାଥ, ଉପେନ୍ଦ୍ର, ଦୀନକୃଷ୍ଣ ପ୍ରଭୃତିଙ୍କ ଲୋକପ୍ରିୟ ଛାନ୍ଦଗୁଡ଼ିକୁ ରାଗରାଗିଣୀ ସହ ଗାୟନ କରୁଥିଲେ । ବଂଗ ଦେଶରେ ଏହି କବିମାନଙ୍କୁ ପରିଚିତ କରାଇବା ଉଦ୍ଦେଶ୍ୟରେ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି ବିଖ୍ୟାତ କବିମାନଙ୍କ ସମ୍ବନ୍ଧରେ ବଂଗ ଭାଷାରେ କବିତା ଲେଖିଥିଲେ ଏବଂ ଏଗୁଡ଼ିକ "କବିତାବଳୀ" ପୁସ୍ତକରେ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ବଂଗ ଦେଶରେ ଉତ୍ତମରୂପେ ପ୍ରଶଂସିତ ହୋଇଥିଲା ।

ରାଧାନାଥ ସାହିତ୍ୟଚର୍ଚ୍ଚା କରିବା ସଙ୍ଗେ ସଙ୍ଗେ ସଂଗୀତଚର୍ଚ୍ଚା ମଧ୍ୟ କରୁଥିଲେ । ତାଙ୍କର ବାଲ୍ୟବନ୍ଧୁ ସଂଗୀତପ୍ରେମୀ ଓ ସୁଗାୟକ ରସିକଚନ୍ଦ୍ର ଦେ ଏଥିରେ ତାଙ୍କର ପ୍ରଧାନ ସହାୟକ ଥିଲେ ।



# ଷଷ୍ଠ ପରିଚ୍ଛେଦ

## ଶିକ୍ଷା-ହାକିମ ରାଧାନାଥ

ରାଧାନାଥ ବାଲେଶ୍ୱରରେ ଡେପୁଟି ଇନ୍‌ସ୍‌ପେକ୍ଟର ହୋଇ ଆସିବା ପରେ ତାଙ୍କର ବଙ୍ଗଳା ଭାଷାରେ ଲିଖିତ "କବିତାବଳୀ" ୨ୟ ଭାଗ ବାଲେଶ୍ୱରର କୁମାର ବୈକୁଣ୍ଠନାଥ ଦେଙ୍କ ଆର୍ଥିକ ଆନୁକୂଲ୍ୟରେ ପ୍ରକାଶିତ ହେଲା ।

ଜିଲ୍ଲାରେ ଶିକ୍ଷାର ଉନ୍ନତି ଓ ପ୍ରସାର ପାଇଁ ଏକ ସୁଚିନ୍ତିତ ପରିକଳ୍ପନା ଓ ନିୟମାବଳୀ ଅନୁସାରେ ଶିକ୍ଷାନୁଷ୍ଠାନଗୁଡ଼ିକ ଚଳିବା ଆବଶ୍ୟକ ବୋଲି ସେ ମନେକରୁଥିଲେ । ଏହି ଲକ୍ଷ୍ୟରେ ସେ କେତେଗୁଡ଼ିଏ ନିୟମ ପ୍ରଣୟନ କରିଥିଲେ ଏବଂ ନିଜେ ସେଗୁଡ଼ିକ ପାଳନ କରିବାପାଇଁ ଚେଷ୍ଟା କରୁଥିଲେ । ଏହାଦ୍ୱାରା ଶିକ୍ଷାନୁଷ୍ଠାନ, ଶିକ୍ଷକ ଓ ସେ ନିଜେ ବହୁ ପରିମାଣରେ ଉପକୃତ ହୋଇଥିଲେ । ଶୃଙ୍ଖଳାରକ୍ଷା ଦିଗରେ ଏହା ବହୁତ ସାହାଯ୍ୟ କରିଥିଲା । ନିଜ ପାଇଁ ଓ ଶିକ୍ଷକମାନଙ୍କ ପାଇଁ ଏପରିଭାବରେ ନିୟମାବଳୀ ରଚନା କରିଥିଲେ :—

### କାର୍ଯ୍ୟପ୍ରଣାଳୀ ନିର୍ଣ୍ଣୟ

୧ । ପ୍ରତିମାସର ପ୍ରଥମ ସପ୍ତାହ ସଦରରେ ରହିବାକୁ ହେବ । କୌଣସି ଅଲଙ୍ଘନୀୟ ଘଟନାଦ୍ୱାରା ବାଧ୍ୟ ନହେଲେ ମାସର ବାକି ସମସ୍ତ ମଫସଲରେ କଟିବ ।

୨ । ଯେବେ ନଗଦ ଖର୍ଚ୍ଚର ହିସାବ ରଖାଯାଉନଥାଏ, ତେବେ ତାହା ରଖିବାକୁ ହେବ ।

୩ । ଅଫିସରୁ ପ୍ରେରିତ ପ୍ରତ୍ୟେକ କାଗଜର ନକଲ ରଖାଯିବ । ନକଲ ନରଖି କିଛି କାଗଜ ଅଫିସରୁ ପଠାଯିବନାହିଁ ।

୪ । ସେହିଦିନ ସରକାରୀ କାମ କରେ ବା ନକରେଁ, ପ୍ରତିଦିନର ଡାଏରି (ଦୈନିକ ବିବରଣୀ) ରଖାଯିବ ।

୫ । ଗ୍ରାମ୍ୟଶିକ୍ଷକମାନେ ପ୍ରତିମାସରେ ନଚାତ୍ପକ୍ଷରେ ଦୁଇମାସରେ ଥରେ ଦରମା ପାଇବେ ।

୬ । ଫାରମ୍‌ମାନଙ୍କର ପ୍ରତ୍ୟେକ ସ୍ତମ୍ଭ ପୂରଣ କରାଯିବ ।

୭ । ଯେତେବେଳେ ପ୍ରଥମ ଥର କୌଣସି ସ୍କୁଲର ପରିଦୃଷ୍ଟ ହେବ, ପ୍ରତ୍ୟେକ କ୍ଲାସରେ ପଠିତ ପୁସ୍ତକ, ପ୍ରତ୍ୟେକ କ୍ଲାସରେ ଛାତ୍ରଦତ୍ତ ବେତନ, କ୍ଲାସରେ ପଢ଼ାଉଥିବା ଶିକ୍ଷକଙ୍କ ନାମ, ଶିକ୍ଷକଙ୍କ ଯୋଗ୍ୟତା ଓ କ୍ଲାସରେ ଶିକ୍ଷା ଦେବାର ଶକ୍ତି, ସ୍କୁଲରେ ଦିଆ ଯାଉଥିବା ଛୁଟିଦିନମାନ, ଚିନ୍ନ ଚିନ୍ନ ଭାବରେ ଗୋଟିଏ ବହିରେ ଲେଖାରହିବ । ଏହି ପୁସ୍ତକରେ ପ୍ରତି ସ୍କୁଲପାଇଁ କିଛି କିଛି ଦୃଷ୍ଟି ରଖାଯିବ ।

୮ । ସ୍କୁଲର ପରିଚାଳକ କମିଟିଙ୍କ ଇଚ୍ଛା ଅନୁସାରେ ପାଠ୍ୟ-ନିର୍ଘଣ୍ଟ ଓ ଛୁଟିଦିନମାନ ସବୁ ସ୍କୁଲରେ ସମାନ ହେବ ।

୯ । ଭଦ୍ରବ୍ୟକ୍ତିମାନଙ୍କ ବସତିକୁ ଯିବାସମୟରେ କେବଳ ସେଠାର ସ୍କୁଲ ପରିଦର୍ଶନ ନକରି ଗ୍ରାମର ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ଘରକୁ ଯିବାକୁହେବ । ମୁଁ ସେ ଗ୍ରାମବାସୀଙ୍କ ମଧ୍ୟରୁ ଜଣେ ବୋଲି ସମସ୍ତେ ଦେଖିବେ । ଯେଉଁମାନେ ମଫସଲକୁ ଯାଇ ସରକାରୀ ହାକିମଙ୍କ ଢଙ୍ଗଢାଙ୍ଗ ଦେଖାନ୍ତି, ସେମାନଙ୍କୁ ଲୋକେ ସାଧାରଣତଃ ଭଲ ପାଆନ୍ତି ନାହିଁ ।

୧୦ । ଯେବେ ସମ୍ଭବପର ହେବ, ତେବେ ବାଲେଶ୍ୱର ଜିଲ୍ଲା ପାଇଁ ଗୋଟିଏ ପତ୍ରିକାର ପ୍ରତିଷ୍ଠା ଦିଗରେ ଚେଷ୍ଟା କରିବ ।

୧୧ । ଯେଉଁ ଲୋକମାନଙ୍କ ସଂସ୍ରବରେ ଡିଷ୍ଟ୍ରିକ୍ଟ ଇନ୍‌ସ୍‌ପେକ୍ଟର ଆସନ୍ତି, ସେମାନଙ୍କର ସୁଖବୃଦ୍ଧି କରିବା ପାଇଁ ତାଙ୍କର ବହୁତ

ସୁଅବସର ଅଛି । ଏହି ସୁ ଅବସରମାନଙ୍କ ପୂର୍ଣ୍ଣ ସଦ୍‌ବ୍ୟବହାର କରିବାକୁ ମୁଁ ଚେଷ୍ଟା କରିବି ।

ଏହି ନିୟମାବଳୀ ତାଙ୍କର ଉପକାର କରିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ମଧ୍ୟ ଉପକାର କରିଛି । ସେତେବେଳେ ଗ୍ରାମ୍ୟ ସ୍କୁଲର ଶିକ୍ଷକମାନେ ନିୟମିତଭାବରେ ଦରମା ନପାଇ ବଡ଼ ହଇରାଣ ହେଉଥିଲେ । ସମୟ ସମୟରେ ଇନ୍‌ସ୍‌ପେକ୍ଟରଙ୍କ ଅଫିସର ଅବହେଳା ଯୋଗୁଁ ପାଞ୍ଚସାତ ମାସ ପର୍ଯ୍ୟନ୍ତ ମଧ୍ୟ ଦରମା ପାଉ-ନଥିଲେ । ଏହାଦ୍ୱାରା ଶିକ୍ଷକମାନେ ଅର୍ଥାଭାବରେ ପଡ଼ିବା ସଙ୍ଗେ ସଙ୍ଗେ ଶିକ୍ଷାଦେବାରେ ମଧ୍ୟ ଅବହେଳା ଦେଖାଉଥିଲେ । ଗ୍ରାମର ଲୋକଙ୍କ ସହିତ ମିଳାମିଶା କରିବାଦ୍ୱାରା ଲୋକମାନଙ୍କ ମନରେ ସରକାରୀ ହାକିମଙ୍କ ପ୍ରତି ଯେଉଁ "ଦୂରରେ ରହିବା" ବ୍ୟବହାର ଦେଖାଉଥିଲେ ତାହା ବହୁପରିମାଣ ହ୍ରାସ ପାଇଯାଉଥିଲା । ଏହାଦ୍ୱାରା ଶିକ୍ଷକ, ସ୍କୁଲ ଓ ଗ୍ରାମମାନଙ୍କର ସବୁପ୍ରକାର ଅଭାବ ଅସୁବିଧା ସମ୍ପର୍କରେ ହାକିମଙ୍କ ସ୍ପଷ୍ଟ ଧାରଣା ହୋଇଯାଉଥିଲା ଏବଂ ପ୍ରତିକାର ପନ୍ଥା ଅବଲମ୍ବନ କରିବାକୁ ମଧ୍ୟ ସୁବିଧା ହେଉଥିଲା ।

ବାଲେଶ୍ୱରରେ ସ୍କୁଲବିଭାଗର ଡେପୁଟି ଇନ୍‌ସପେକ୍ଟର ରୂପରେ ରାଧାନାଥ ପ୍ରାୟ ପାଞ୍ଚବର୍ଷ ରହିଥିଲେ । ଏହି କାଳ ମଧ୍ୟରେ ରାଜା ବୈକୁଣ୍ଠନାଥ ଦେ, ଫକୀରମୋହନ ସେନାପତି, ମଧୁସୂଦନ ରାଓ ପ୍ରଭୃତି ବନ୍ଧୁମାନଙ୍କ ସହ ରାଧାନାଥ ବହୁସମୟ ସାହିତ୍ୟା-ଲୋଚନା କରୁଥିଲେ ଏବଂ ଗ୍ରନ୍ଥ ରଚନାରେ ନିଜକୁ ନିୟୋଜିତ କରିଥିଲେ । ବୈକୁଣ୍ଠନାଥ ଦେ "ଦେ ପ୍ରେସ" ସ୍ଥାପନ କରି ଛୋଟ ବଡ଼ କେତେପ୍ରକାର ଓଡ଼ିଆ ବହି ପ୍ରକାଶ କରିଥିଲେ । ରାଧାନାଥ ଓ ତାଙ୍କ ଭାଇ ସୀତାନାଥ ରାୟଙ୍କର କେତେଖଣ୍ଡି ପାଠ୍ୟ ପୁସ୍ତକ ଏହି ପ୍ରେସରୁ ବୈକୁଣ୍ଠନାଥଙ୍କ ବ୍ୟୟରେ ମୁଦ୍ରିତ ହୋଇଥିଲା ।

ରାଧାନାଥଙ୍କର କାଳିଦାସଙ୍କ "ମେଘଦୂତ"ର ଅନୁବାଦ ଏଠାରେ ପ୍ରକାଶିତ ହୋଇଗଲା ପରେ ମଧୁସୂଦନ ରାଓ ଓ ରାଧାନାଥ ଉଭୟଙ୍କ ଲିଖିତ "କବିତାବଳୀ" ଏହି ସମୟରେ ପ୍ରକାଶିତ ହୋଇଥିଲା । ୧୮୭୩ରେ "ବିବେକୀ" ପ୍ରକାଶିତ ହୋଇଥିବାର ଜଣାଯାଏ ।

## ପିତୃବିୟୋଗ

ଖ୍ରୀ ୧୮୭୩ ରେ ବସନ୍ତ ରୋଗରେ ରାଧାନାଥଙ୍କ ପିତା ସୁନ୍ଦରନାରାୟଣଙ୍କର ମୃତ୍ୟୁ ହୋଇଥିଲା । ସୁନ୍ଦରନାରାୟଣ ଜଣେ ସଚ୍ଚୋଟ, ବୁଦ୍ଧିମାନ କର୍ମଚାରୀ ଥିବାରୁ ସରକାରୀ ହାକିମ ଓ ଜନ-ସାଧାରଣ ତାଙ୍କୁ ଆଦର ଓ ସମ୍ମାନ କରୁଥିଲେ । ପିତାଙ୍କ ମୃତ୍ୟୁ ପରେ ସମଗ୍ର ପରିବାରର ଭରଣପୋଷଣ ଭାର ରାଧାନାଥଙ୍କ ଉପରେ ପଡ଼ିଲା । ତିନି କକେଇ (କାକା), ତିନି ଭାଇ, ଗୋଟିଏ ଅବିବାହିତା ଭଉଣୀ ଓ ଏମାନଙ୍କର ପରିବାରବର୍ଗ ମଧ୍ୟ ତାଙ୍କ ଉପରେ ନିର୍ଭର କଲେ । ଏତେ ବଡ଼ ଭାର ବହନ କରିବା କିଛି ସହଜ ବ୍ୟାପାର ନୁହେଁ । ନିଜ ରୋଜଗାର ବଳରେ ଏମାନଙ୍କୁ ଚଳେଇବା ଅତି କଷ୍ଟକର ହୋଇପଡ଼ିଥିଲା । ରାଧନାଥ ଅତି ସାବଧାନ ହୋଇ ଚଳି ସମସ୍ତଙ୍କୁ ଚଳାଇଲେ । ପରେ ତାଂକର କକାମାନେ ଭିନ୍ନ ଭିନ୍ନ ସରକାରୀ ପଦରେ ନିଯୁକ୍ତ ହୋଇପିବାରୁ ରାଧାନଥଂକ ଉପରେ ପଡ଼ିଥିବା ଭାର ଟିକିଏ ଉଶ୍ବାସ ହେଲା ।

## ଡେପୁଟି ଇନ୍‌ସ୍‌ପେକ୍‌ଟର ରାଧାନାଥଙ୍କ କାର୍ଯ୍ୟକଳାପ

ଡେପୁଟି ଇନ୍‌ସ୍‌ପେକ୍ଟର ହିସାବରେ ରାଧାନାଥଙ୍କ କାର୍ଯ୍ୟ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲା । ପ୍ରାଥମିକ ଶିକ୍ଷାରେ ବାଲେଶ୍ବର ଜିଲ୍ଲା ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା ।

ତାଂକର କାର୍ଯ୍ୟକୁଶଳତା ଯୋଗୁଁ ସମୁଦାୟଭାବରେ ଶିକ୍ଷକ ଓ ଛାତ୍ରମାନଂକର ଉନ୍ନତି ସାଧିତ ହୋଇଗଲା । ତାଂକର ବୁଦ୍ଧିମତ୍ତା, ଅଧ୍ୟବସାୟ, କର୍ତ୍ତବ୍ୟନିଷ୍ଠା, ଆନ୍ତରିକତା ଯୋଗୁଁ ଏହା ସମ୍ଭବ ହୋଇଥିଲା । ସରକାରୀ କର୍ମଚାରୀରୂପରେ ଜିଲ୍ଲାରେ ଶିକ୍ଷାଦାନ କାର୍ଯ୍ୟ ସମ୍ପର୍କରେ ଯେତେ ତତ୍ତ୍ୱ ନେବା ଆବଶ୍ୟକ ତାହାଠାରୁ ସେ ବେଶୀ ତତ୍ତ୍ୱ ନେଉଥିଲେ । ଜିଲ୍ଲା ସ୍କୁଲମାନଙ୍କରେ ଶିକ୍ଷକ ପଦରେ ଅଧିଷ୍ଠିତ ଥିବା ସମୟରେ ମଧ୍ୟ ସେ ସବୁଠାରେ ପ୍ରଶଂସିତ ହୋଇଛନ୍ତି । ଓଡ଼ିଆ ବିଭାଗର ସ୍କୁଲ ଜଏଣ୍ଟ ଇନ୍‌ସ୍‌ପେକ୍ଟର ଶ୍ରୀ ନନ୍ଦକିଶୋର ଦାସ, ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ଜନ୍ ବିମ୍‌ସାହେବ, ପୁରୀଜିଲ୍ଲା ସ୍କୁଲ ସ୍ଥାୟୀ କମିଟିର ସମ୍ପାଦକ ଆର୍. ଏଚ୍. ଗ୍ରୀଭ୍‌ସ୍, ସ୍କୁଲ ବିଭାଗ ଇନ୍‌ସପେକ୍ଟର ଆର. ଜେ. ମାର୍ଟିନ୍, ବାଲେଶ୍ୱର ଅସ୍ଥାୟୀ କଲେକ୍ଟର ଟି. ନରମନ୍ ପ୍ରଭୃତିଙ୍କ ଉଚ୍ଚ ପ୍ରଶଂସା ଏହାର ପ୍ରମାଣ । ରାଧାନାଥ ପୁରୀରେ ଶିକ୍ଷକ ଥିଲାବେଳେ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହୋଇଥିଲା । ଏହା ସତ୍ତ୍ୱେ ସେ ବି.ଏ. ପାଶ୍ କରିବାପାଇଁ ମନ ବଳାଇଥିଲେ ଏବଂ ପଢ଼ାପଢ଼ିରେ ସୁବିଧା ହେବା ଆଶାରେ ଅନ୍ୟତ୍ର ବଦଳି ଲୋଡ଼ିଥିଲେ ।

ଶିକ୍ଷକ ହିସାବରେ ରାଧାନାଥଙ୍କ କାର୍ଯ୍ୟ ଅତି ପ୍ରଶଂସନୀୟ ଥିବା ସରକାରୀ ରିପୋର୍ଟମାନଂକରୁ ମଧ୍ୟ ଜଣାଯାଏ । ସେ ଜଣେ ଆଦର୍ଶ ଶିକ୍ଷକ ରୂପରେ ପରିଚିତ ହୋଇଥିଲେ । ୧୮୭୦ ଓ ତତ୍ପରବର୍ତ୍ତୀ ଶିକ୍ଷାବିଭାଗର ରିପୋର୍ଟମାନଙ୍କରେ ରାଧାନାଥଙ୍କ ସମ୍ବନ୍ଧରେ ଡିଭିଜନାଲ୍ ଇନ୍‌ସ୍‌ପେକ୍ଟର ବହୁ ପ୍ରଶଂସା କରିଛନ୍ତି । ସେ ଦକ୍ଷ, କର୍ତ୍ତବ୍ୟପରାୟଣ, କର୍ମଠ ଥିବା ଲିଖିତଅଛି । ହାକିମ ପୁଣି ଲେଖିଛନ୍ତି— "ସ୍ଥୂଳତଃ ମୋ ଚାକିରୀକାଳ ମଧ୍ୟରେ ତାଙ୍କ ଭଳି ଜଣେ କର୍ମଠ ଶିକ୍ଷକ କେବେ ଦେଖିନାହିଁ ।"

ଶିକ୍ଷାବିଭାଗର ଜଣେ ହାକିମ ହିସାବରେ ମଧ୍ୟ ସେ ଖୁବ୍ ଖ୍ୟାତିଲାଭ କରିଥିଲେ । ଜଣେ ମାଜିଷ୍ଟ୍ରେଟ୍ ୧୮୭୫-୭୬ ଶିକ୍ଷା-ରିପୋର୍ଟରେ ଲେଖିଛନ୍ତି ଯେ, ତାଙ୍କ କାର୍ଯ୍ୟକାଳ ମଧ୍ୟରେ ରାଧାନାଥ ସ୍କୁଲ ଡେପୁଟୀ ଇନ୍‌ସ୍‌ପେକ୍ଟର ରୂପେ ନିଜର ସୁରୁଚିରୁ କାର୍ଯ୍ୟକଳାପ, ନିରବଚ୍ଛିନ୍ନ କର୍ତ୍ତବ୍ୟନିଷ୍ଠା ଓ ବିଶେଷ କର୍ତ୍ତବ୍ୟପରାୟଣତାରେ ଖ୍ୟାତି ଅର୍ଜ୍ଜନ କରିଥିଲେ ।

## ଜଏଣ୍ଟ ଇନ୍‌ସ୍‌ପେକ୍ଟର ପଦରେ ରାଧାନାଥ

ବାଲେଶ୍ୱରରେ ରାଧାନାଥ ପ୍ରାୟ ପାଞ୍ଚବର୍ଷ କାଳ ଡେପୁଟି ଇନ୍‌ସ୍‌ପେକ୍ଟର ପଦରେ କାର୍ଯ୍ୟକରିବା ପରେ ଖ୍ରୀ ୧୮୭୭ ନଭେମ୍ବର ତା ୨୭ ରିଖରେ ଓଡ଼ିଶାବିଭାଗର ଜଏଣ୍ଟ ଇନ୍‌ସ୍‌ପେକ୍ଟର ପଦକୁ ଉନ୍ନୀତ ହେଲେ ।

ଓଡ଼ିଶା ବିଭାଗରେ ଥିବା ମୋଗଲବନ୍ଦି ଓ ଗଡ଼ଜାତର ସ୍କୁଲଗୁଡ଼ିକ ଜଏଣ୍ଟ ଇନ୍‌ସ୍‌ପେକ୍ଟରଙ୍କ କର୍ତ୍ତୃତ୍ୱାବଧାନରେ ଥିଲା । ସେତେବେଳେ ସାଧାରଣତଃ ସୁଆରି, ବଳଦଗାଡ଼ି, ଘୋଡ଼ା, ହାତୀ, ଡଙ୍ଗା ପ୍ରଭୃତି ସାହାଯ୍ୟରେ ଯିବାଆସିବା କରିବାକୁ ପଡ଼ୁଥିଲା । ସମସ୍ତ ସମୟରେ ଦଶ ପନ୍ଦର ମାଇଲ ପର୍ଯ୍ୟନ୍ତ ରାସ୍ତା ମଧ୍ୟ ଚାଲିଚାଲି ଯିବାକୁ ପଡ଼ୁଥିଲା । ବଡ଼ ବଡ଼ ହାକିମମାନଙ୍କର ଷ୍ଟେଟ ଚାକରିଆଙ୍କ ଭଳି ଅସୁବିଧା ନଥିଲା । ସେମାନଙ୍କର ଖର୍ଚ୍ଚ ମଧ୍ୟ କମ୍ ହେଉଥିଲା । କାରଣ ଗଡ଼ଜାତକୁ ବହୁତ କମ୍ ଶିକ୍ଷିତ ଓ ଉଚ୍ଚ ରାଜକର୍ମଚାରୀ ଯାଉଥିବାରୁ ଗଡ଼ଜାତ ରାଜାମାନେ ଜଣେ କେହି ଉଚ୍ଚ କର୍ମଚାରୀ ଯିବା ଇଚ୍ଛା ପ୍ରକାଶ କରିବା ସଙ୍ଗେ ସଙ୍ଗେ ନିଜ ବ୍ୟୟରେ ଯାନବାହନର ବ୍ୟବସ୍ଥା କରୁଥିଲେ ଏବଂ ସଙ୍ଗେ ସଙ୍ଗେ ରହିବାଣି ସମୟର ସମସ୍ତ ବ୍ୟୟ ନିଜେ ବହନ କରୁଥିଲେ । ରାଧାନାଥଙ୍କ ଭଳି ଜଣେ ବିଜ୍ଞ, ଉଚ୍ଚ ପ୍ରଶଂସିତ ଦେଶପ୍ରେମୀ ଓ କବି

ଉଚ୍ଚ ରାଜକର୍ମଚାରୀ ହିସାବରେ ଗଡ଼ଜାତକୁ ଯିବାବେଳେ ସବୁଠାରେ ରାଜୋଚିତ ସମ୍ମାନ ଓ ଚର୍ଚ୍ଚା ଲାଭ କରିଥିଲେ ।

ରାଧାନାଥ ସମଗ୍ର ଗଡ଼ଜାତ ଓ ମୋଗଲବନ୍ଦି ଅଞ୍ଚଳ ବୁଲିବାକୁ ଏବେ ଯେଉଁ ସୁବିଧା ପାଇଲେ, ସେ ପୂର୍ଣ୍ଣ ଭାବରେ ତା'ର ସଦ୍‌ବ୍ୟବହାର କରିଲେ । ଉତ୍କଳର ପ୍ରକୃତି ପର୍ଯ୍ୟବେକ୍ଷ-ଣରେ ତାଙ୍କର କବିଜୀବନ ପୂର୍ଣ୍ଣତା ଲାଭକରିବାକୁ ସୁଯୋଗ ପାଇଲା । ତତ୍‌କାଳୀନ ବହୁ ଉତ୍କଳପ୍ରେମୀ ରାଜା ମହାରାଜା, ଧନୀ-ଜମିଦାର, କବି, ଲେଖକ ଓ ସାଧାରଣ ନାଗରିକଙ୍କ ସାହଚର୍ଯ୍ୟ ଲାଭକରିବା ସୌଭାଗ୍ୟ ତାଙ୍କୁ ମିଳିଲା । ଉତ୍କଳରେ ସରସ୍ୱତୀଙ୍କର ଆରାଧନା ନୂତନ ରୂପରେ ଦେଖାଦେଲା । ସାହିତ୍ୟର ସର୍ବାଙ୍ଗୀନ ଉନ୍ନତିପାଇଁ ନୂତନ ଉନ୍ମାଦନା ମଧ୍ୟ ସୃଷ୍ଟି ହୋଇଥିଲା ।

ରାଧାନାଥ ଗଡ଼ଜାତ ଭ୍ରମଣରେ ଏକାଦିକ୍ରମେ ଦୁଇତିନିମାସ ଅତିବାହିତ କରୁଥିଲେ । କଟକରୁ ବାହାରି ଆଠଗଡ଼, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଆଠମଲ୍ଲିକ, ଅନୁଗୁଳ, ତାଳଚେର, ପାଲଲହଡ଼ା, କେଉଁଝର ଓ ମୟୂରଭଞ୍ଜ ଯାଇ ପୁଣି କଟକକୁ ଫେରି ଆସିବାରେ ଦୁଇତିନି ମାସ ଲାଗିଯାଉଥିଲା । ସେ ସମୟରେ ବାଟଘାଟର ସୁବିଧା ଆଦୌ ନ ଥିଲା । ଘୋର ଜଙ୍ଗଲ ଭିତରେ ଯିବାକୁ ହେଉଥିଲା । ହାତୀ, ସବାରି, ବଳଦଗାଡ଼ି ସାହାଯ୍ୟରେ ଭ୍ରମଣ କରିବାକୁ ହେଉଥିଲା । ସବୁ ସ୍ଥାନରେ ହାତୀ ମିଳିବାର ସୁବିଧା ମଧ୍ୟ ହେଉନଥିଲା । ରାଧାନାଥ ସବାରିରେ ଗଲେ, ଭୃତ୍ୟମାନେ ବଳଦଗାଡ଼ି ବା ହାତୀ ଉପରେ ଚଢ଼ି ଯାଉଥିଲେ । ଭ୍ରମଣ ବେଳେ ରାଧାନାଥ ଭୃତ୍ୟମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ବିଶେଷ

ଦୃଷ୍ଟି ଦେଉଥିଲେ । ସବାର୍ଡ଼ କ ଦ୍ୱାରା ନମିଳିଲେ ତାଙ୍କ ପାଇଁ ଖଣ୍ଡେ ଓ ଚାକରମାନଙ୍କ ପାଇଁ ଖଣ୍ଡେ ଏପରି ଦୁଇଖଣ୍ଡ ଟାଙ୍ଗର ବ୍ୟବସ୍ଥା କରୁଥିଲେ । ଚାକରମାନେ ଯେପରି ଚାଲି ଚାଲି କଷ୍ଟ ନ ପାଇବେ ସେଥିପ୍ରତି ଦୃଷ୍ଟି ରଖୁଥିଲେ ।

ଜଏଣ୍ଟ ଇନ୍‌ସ୍‌ପେକ୍ଟର ରୂପେ ରାଧାନାଥ ବଡ଼ ବିଚକ୍ଷଣତା ସହକାରେ କାର୍ଯ୍ୟ କରୁଥିଲେ । ଓଡ଼ିଶାରେ ମଧ୍ୟ ଭର୍ଣ୍ଣାକୁଲର ଓ ମଧ୍ୟ ଇଂରେଜ ଶିକ୍ଷାର ଉନ୍ନତି ମୁଖ୍ୟତଃ ତାଙ୍କର ସୁବିବେଚନା-ପୂର୍ଣ୍ଣ କର୍ତ୍ତୃତ୍ୱର ଫଳ । ଏହା ବିଭାଗୀୟ ଉଚ୍ଚ କର୍ମକର୍ତ୍ତାମାନେ ମଧ୍ୟ ସ୍ୱୀକାର କରୁଥିଲେ । ସ୍କୁଲ ବିଭାଗର ତଦାନିନ୍ତନ ଡିରେକ୍ଟର ଏ. ଡବଲ୍ୟୁ. କ୍ରଫ୍ଟ (A. W. Croft) ଶିକ୍ଷାବିଭାଗର ବାର୍ଷିକ ରିପୋର୍ଟମାନଙ୍କରେ ରାଧାନାଥଙ୍କର କାର୍ଯ୍ୟର ପ୍ରଶଂସା କରିଛନ୍ତି । ୧୮୭୮-୭୯ ରିପୋର୍ଟରେ ଲେଖିଛନ୍ତି – "ଓଡ଼ିଶାର ମଧ୍ୟ ଭର୍ଣ୍ଣାକୁଲାର ଓ ମଧ୍ୟ ଇଂରାଜୀ ଶିକ୍ଷାର ଉନ୍ନତି ମୁଖ୍ୟଭାବରେ ଜଏଣ୍ଟ ଇନ୍‌ସ-ପେକ୍ଟରଙ୍କ ସୁବିବେଚନାପୂର୍ଣ୍ଣ ନିୟନ୍ତ୍ରଣର ଫଳ । ଏଥିରେ ଓ ଅନ୍ୟାନ୍ୟ ବିଭାଗରେ ମଧ୍ୟ ସେ ତାଙ୍କ ଦାୟିତ୍ୱ ତୁଲାଇବାରେ ଯେଉଁ କର୍ମପ୍ରବଣତା ଓ ସୁବିବେଚନା ଦେଖାଇଅଛନ୍ତି ତାହା ସର୍ବତୋ-ଭାବେ ସ୍ୱୀକାର୍ଯ୍ୟ ।" (ଅନୁବାଦ) । ଓଡ଼ିଆ ବିଭାଗର କମିସନର ଏ. ସ୍ମିଥ୍ (A. Smith)ମଧ୍ୟ ବହୁତ ପ୍ରଶଂସା କରିଛନ୍ତି ।

ଜଏଣ୍ଟ ଇନ୍‌ସ୍‌ପେକ୍ଟର ଥାଇ କର୍ତ୍ତବ୍ୟପାଳନରେ ସେ ଯେଉଁ କୁଶଳତା ଦେଖାଇଛନ୍ତି ତା'ର ଫଳସ୍ୱରୂପ ତାଙ୍କର ପଦୋନ୍ନତି ହେବା ଆଶା କରାଯାଉଥିଲା । ସେ ମଧ୍ୟ ପଦ ଜନିତ କେତେକ ଅସୁବିଧା ଭୋଗ କରୁଥିଲେ । ସେ ସମ୍ପର୍କରେ କମିସନର ସ୍ମିଥ୍

ସାହେବ ଦରକାରଙ୍କୁ ୧୮୭୯-୮୦ର ତାଙ୍କ ଶିକ୍ଷାବିଭାଗ ରିପୋର୍ଟରେ ଜଣାଇଥିଲେ, ଜଏଣ୍ଟ ଇନ୍‌ସ୍‌ପେକ୍ଟର ଡେପୁଟି ଇନ୍‌ସପେକ୍ଟରଙ୍କ ଦରମା ପାଇ କାମ ଚଳାଉଥିବାରୁ ଓ ତାଙ୍କ ଅଧୀନରେ ଥିବା ଡେପୁଟି ଇନ୍‌ସ୍‌ପେକ୍ଟରଙ୍କ କାର୍ଯ୍ୟର ତତ୍ତ୍ୱାବଧାନ କରୁଥିବାରୁ ପଦାଧିକାରରେ କେତେକ ଅସଙ୍ଗତ ଦେଖାଯାଉଅଛି । ତାଙ୍କର ଗସ୍ତଖର୍ଚ୍ଚ ଓ ଭତ୍ତାର ପରିମାଣ କମାଇଦେବାରୁ ଗଡ଼ଜାତର ସ୍କୁଲ ପରିଦର୍ଶନ ବେଳେ ହାତରୁ ବହୁତ ଖର୍ଚ୍ଚ ହେଉଛି । ସେ ବର୍ତ୍ତମାନ ଜଣେ ପ୍ରଥମ ଶ୍ରେଣୀସ୍ଥ ଡେପୁଟି ଇନ୍‌ସ୍‌ପେକ୍ଟରଙ୍କ ଦରମା କେବଳ ପାଉଛନ୍ତି । ଏହା ଯଥେଷ୍ଟ ନୁହେଁ । ତାଙ୍କର କାର୍ଯ୍ୟ ସନ୍ତୋଷଜନକ ଥିବାରୁ ତାଙ୍କର ବର୍ତ୍ତମାନ ଅବସ୍ଥାର କିଛି ଉନ୍ନତି କରାଗଲେ ସେ ସୁଖି ହେବେ ବୋଲି କମିଶନର ସରକାରଙ୍କୁ ଜଣାଇଥିଲେ । ୧୮୭୯ ଅପ୍ରେଲ ପହିଲାରେ ସ୍କୁଲ ବିଭାଗର ପଶ୍ଚିମ ଓ ବିହାର ସର୍କଲ୍‌ର ଇନ୍‌ସ୍‌ପେକ୍ଟର ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କୁ ସ୍ୱାଧୀନଭାବରେ ଓଡ଼ିଶା ଡିଭିଜନ୍‌ର ସ୍କୁଲବିଭାଗର ଦାୟିତ୍ୱ ଦେବା ବାଞ୍ଛନୀୟ, ଏହା ସରକାରଙ୍କୁ ଜଣାଇଲେ । ସେ ଲେଖିଥିଲେ ଯେ, "ବାବୁ ରାଧାନାଥ ରାୟଙ୍କୁ ସ୍ୱାଧୀନ ଭାବରେ ଓଡ଼ିଶା ସ୍କୁଲ ସମୂହର ଇନ୍‌ସ୍‌ପେକ୍ଟର କରିବା ଓ ତାଙ୍କର ବେତନ ବଢ଼ାଇବାଦ୍ୱାରା ତାଙ୍କ ପଦକୁ ଉନ୍ନୀତ କରିବାର ଉପଯୋଗୀତା ସେ ସୂଚନା କରୁଛନ୍ତି । ସେ ବର୍ତ୍ତମାନ ଅନୁଭବ କରୁଛନ୍ତି ଯେ ସ୍ୱାଧୀନଭାବରେ ଗୋଟିଏ ସର୍କଲ୍‌ର ଭାର ଗ୍ରହଣ କରିବା ପାଇଁ ସେ ସର୍ବଥା ସମର୍ଥ ଅଟନ୍ତି ଏବଂ ସେ ଉତ୍ତରୂପେ ଶିକ୍ଷିତ, ବିଚକ୍ଷଣ ଓ ପୂର୍ଣ୍ଣକର୍ତ୍ତବ୍ୟନିଷ୍ଠ ବୋଲି ଟମ୍‌ସ ନର୍ମାନ୍ ଓ ସାହେବମାନେ ଯେଉଁ ମତ ପ୍ରକାଶ କରିଥିଲେ ତାହା ସେ ସମ୍ପୂର୍ଣ୍ଣ ହୃଦୟରେ ସମର୍ଥନ କରୁଛନ୍ତି ।"

# ସପ୍ତମ ପରିଚ୍ଛେଦ

## ରାଧାନାଥ ଓ ଭୂଦେବ ମୁଖର୍ଜୀ

ରାଧାନାଥ ବାବୁ ଓଡ଼ିଶା ସ୍କୁଲ୍ ବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ଥିଲା ବେଳେ ଭୂଦେବ ମୁଖୋପାଧ୍ୟାୟ (ମୁଖର୍ଜୀ) ପଶ୍ଚିମ ଓ ବିହାର ଡ଼ିଭିଜନର ସ୍କୁଲ ଇନ୍‌ସପେକ୍ଟର । ତାଙ୍କୁ ପ୍ରାୟ ପ୍ରତିବର୍ଷ ଶିକ୍ଷାନୁଷ୍ଠାନ ପରିଦର୍ଶନ ପାଇଁ ଓଡ଼ିଶାକୁ ଆସିବାକୁ ହେଉଥିଲା । ସେ ଓଡ଼ିଶାରେ କଟ୍ଟିହିନ ରହି ବାଲେଶ୍ୱରଠାରୁ ପୁରୀପର୍ଯ୍ୟନ୍ତ ଗସ୍ତ କରି ବିଭିନ୍ନ ସ୍କୁଲ୍ ପରିଦର୍ଶନ କରୁଥିଲେ । ସେତେବେଳେ ରାଧାନାଥ ତାଙ୍କ ସହିତ ପ୍ରାୟ ରହୁଥିଲେ ଏବଂ ଦୁହେଁ ସାଙ୍ଗ ହୋଇ ଗସ୍ତ କରୁଥିଲେ । ଏହି ସମୟରେ ପରସ୍ପରକୁ ଉତ୍ତମରୂପେ ଚିହ୍ନିବାପାଇଁ ଉଭୟଙ୍କୁ ସୁବିଧା ମିଳିଥିଲା । ପ୍ରଥମେ ପ୍ରଥମେ ରାଧାନାଥଙ୍କ ସମ୍ବନ୍ଧରେ ଭୂଦେବ ବାବୁଙ୍କର କେତେକ ଭୁଲ୍ ଧାରଣା ଥିଲା । କିନ୍ତୁ ତାଙ୍କ ନିକଟକୁ ଆସିବାରୁ ଓ ଦୁହେଁ ମିଳିମିଶି ବହୁସମୟ ରହିବାରୁ ରାଧାନାଥଙ୍କୁ ସେ ଉତ୍ତମ ରୂପେ ଚିହ୍ନିପାରିଲେ ଏବଂ ତାଙ୍କର ବିଦ୍ୟା, ବୁଦ୍ଧି, ସଦ୍‌ଗୁଣ ଓ ମିଷ୍ଟ ବ୍ୟବହାରିରେ ସେ ତନ୍ମୟ ହୋଇଯାଇଥିଲେ । ରାଧାନାଥଙ୍କ ପ୍ରତି ତାଙ୍କର ସ୍ନେହ ଅତି ଘନିଷ୍ଠ ହୋଇଯାଇଥିଲା ଏବଂ ଭୂଦେବ ବାବୁ ରାଧାନାଥଙ୍କୁ ତାଙ୍କ ନିଜ ପରିବାରର ଜଣେ ବୋଲି ଭାବୁଥିଲେ ।

ଭୂଦେବ ବାବୁ ୧୮୮୨ରେ ରାଧାନାଥଙ୍କୁ ସାଙ୍ଗରେ ନେଇ ସ୍ୱଗ୍ରାମ ଚନ୍ଦସୁର (ଚୁଁଚୁଡ଼ା) ଜି. ହୁଗୁଲି, ବଙ୍ଗ ପ୍ରଦେଶ)ରେ କିଛି ଦିନ ରଖିଥିଲେ । ସେ ସାଙ୍ଗରେ ରାଧାନାଥଙ୍କୁ ନେଇ ଗୟା, ପାଟଣା ପ୍ରଭୃତି ବହୁ ବିଶିଷ୍ଟ ସ୍ଥାନ ଭ୍ରମଣ କରିଆସିଥିଲେ ।

ଭୂଦେବଙ୍କ ସଂସର୍ଗରେ ଆସି ରାଧାନାଥଙ୍କର ଜୀବନର ପଥ ଉଜ୍ଜ୍ୱଳମୟ ହେଲା । ସେ ସମୟରେ ଭୂଦେବ ମୁଖର୍ଜୀଙ୍କ ଭଳି ମେଧାବୀ, କର୍ମନିଷ୍ଠ, ସତ୍ୟବାନ୍, ସଦାଶୟୀ, ସୁପଣ୍ଡିତ ବ୍ୟକ୍ତି ଖୁବ୍ ଅଳ୍ପ ସଂଖ୍ୟକ ଥିଲେ । ବଙ୍ଗପ୍ରଦେଶରେ ଭୂଦେବ ମୁଖର୍ଜୀ ଓ କୃଷ୍ଣଦାସ ପାଲଙ୍କୁ ଇଂରେଜଶାସକମାନେ ମଧ୍ୟ ଭକ୍ତି କରୁଥିଲେ ଏବଂ ସେମାନଙ୍କ କଥାରେ ବିଶ୍ୱାସ ରଖୁଥିଲେ । ଭୂଦେବ ଜଣେ ବହୁଶାସ୍ତ୍ରଦର୍ଶୀ ପଣ୍ଡିତ ଥିଲେ ଏବଂ ୟୁରୋପୀୟ ଚିନ୍ତାଧାରାର ଏବଂ ମୁଖ୍ୟ ବିକାଶ ସହିତ ଘନିଷ୍ଠଭାବରେ ପରିଚିତ ଥିଲେ । "ସାମାଜିକ ନାନା ବିଷୟରେ ତାଙ୍କ ମତ ଉଦାର ହେଲେହେଁ ଜୀବନର ଗତିବିଧି ନିୟନ୍ତ୍ରଣରେ ଓ ଧର୍ମୀଷ୍ଠଗତ ବିଷୟମାନଙ୍କରେ ସେ ଜଣେ ନିଷ୍ଠାପର ହିନ୍ଦୁ । ଦର୍ଶନଶାସ୍ତ୍ରରୂପେ ଓ ଧର୍ମଜୀବନର ନିୟାମକ ବିଧାନ ରୂପେ ବେଦାନ୍ତ ଦର୍ଶନରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତାଙ୍କ ଆଧ୍ୟାତ୍ମ-ଜୀବନର ସମସ୍ତ ପ୍ରୟୋଜନ ଏହାଦ୍ୱାରା ମେଣ୍ଟୁଥିବା କଥା ସେ ବରାବର କହୁଥିଲେ ।" (ଅନୁବାଦ) ବଙ୍ଗର ଶିକ୍ଷା ବିଭାଗର ଡ଼ିରେକ୍ଟରଙ୍କ ଏହି ଉକ୍ତି ଯେ ଅକ୍ଷରେ ଅକ୍ଷରେ ସତ୍ୟ ଏଥିରେ କୌଣସି ସନ୍ଦେହ ନାହିଁ । ଭୂଦେବଙ୍କ ସମ୍ବନ୍ଧରେ ବିଖ୍ୟାତ ଐତିହାସିକ ରୋପର ଲେଥ୍‌ବ୍ରିଜ୍ (Roper Lethbridge) ଥରେ ମନ୍ତବ୍ୟ କରିଥିଲେ—(ଅନୁବାଦ) "ବିଦ୍ୟାସାଗର ପୁରୁଣା ଯୁଗର ଉଚ୍ଚମନା ବଦାନ୍ୟ ଓ ମେଧାବୀ ବ୍ରାହ୍ମଣଙ୍କ ଆଦର୍ଶ । କୃଷ୍ଣଦାସ ପାଲ ଦୟା, ବିଚକ୍ଷଣତା ଓ ବହୁମୁଖୀ ପ୍ରତିଭାର ମୂର୍ତ୍ତିମାନ ବିଗ୍ରହ । କିନ୍ତୁ ଉତ୍ତର ବୟସରେ ଭୂଦେବଙ୍କଠାରେ ଏହିଦୁଇ ମହାପୁରୁଷଙ୍କର ସଦ୍‌ଗୁଣାବଳୀ ଏକାଧାରରେ ଦୃଷ୍ଟ ହୋଇଥିଲା ।" ବଙ୍ଗର ଲାଟ ଏଡ଼େନ୍ (Sir Ashley Eden) ତାଙ୍କ ସମ୍ବନ୍ଧରେ ଥରେ ଲେଖିଥିଲେ— "...ଭୂଦେବଙ୍କଠାରେ ଉଚ୍ଚାଙ୍ଗ ଯୋଗ୍ୟତା ବହୁତ ଥିଲା ଓ ତାଙ୍କ

ଦେଶବାସି-ସୁଲଭ ଦୋଷ ଅତ୍ୟଳ୍ପ ଥିଲା । ମୋର ବିଶ୍ୱାସ, ପ୍ରତି ଦଶଜଣ ସିଭିଲିଆନ୍‌ଙ୍କ ଭିତରୁ ଖୁବ୍ ବେଶୀ ହେଲେ ପାଞ୍ଚଜଣ ମାତ୍ର ତାଙ୍କ ପରି ବିବେକୀ ।” (ଅନୁବାଦ)

ଭୂଦେବ ବାବୁ ସାମାନ୍ୟ ଅବସ୍ଥାରୁ ଉଠିଉଠି ବଙ୍ଗପ୍ରଦେଶର ଶିକ୍ଷାବିଭାଗର ଡିରେକ୍ଟରପଦ ପର୍ଯ୍ୟନ୍ତ ଯାଇଥିଲେ । ବଙ୍ଗଭାଷାରେ ସେ ପ୍ରାୟ ୧୩-୧୪ ଖଣ୍ଡ ପୁସ୍ତକ ରଚନା କରିଥିଲେ । ଏଗୁଡ଼ିକ ଭିତରେ ପାରିବାରିକ ପ୍ରବନ୍ଧ, ଆଚାର ପ୍ରବନ୍ଧ, ପୁଷ୍ପାଞ୍ଜଳି ପ୍ରଭୃତି ପ୍ରଧାନ । ସେ ବିଖ୍ୟାତ “ଏଡୁକେଶନ୍ ଗେଜେଟ୍”ର ସମ୍ପାଦକ ମଧ୍ୟ ଥିଲେ । ଏହି ଏଡୁକେଶନ୍ ଗେଜେଟ୍‌ରେ ସେ ଓଡ଼ିଆ ଭାଷା ଓ ସାହିତ୍ୟର ଗୌରବ ସମ୍ବନ୍ଧରେ ସାମୟିକ ପ୍ରବନ୍ଧମାନ ପ୍ରକାଶ କରି ସେହି ସମୟରେ ଓଡ଼ିଶାରୁ ଓଡ଼ିଆଭାଷା ଲୋପକରିବା ପାଇଁ ଯେଉଁ କେତେଜଣ ବଙ୍ଗୀୟ ରାଜକର୍ମଚାରୀ ଓ ବିଶିଷ୍ଟ ବ୍ୟକ୍ତି ଚେଷ୍ଟା କରୁଥିଲେ, ତାହାକୁ ବିଫଳ କରିବାରେ ସାହାଯ୍ୟ କରିଥିଲେ ।

ରାଧାନାଥଙ୍କ ସହିତ ଭୂଦେବଙ୍କ ପ୍ରଥମ ପରିଚୟ ଓ ପରେ ତାଙ୍କ ସହିତ ଘନିଷ୍ଠତାର ସଂକ୍ଷିପ୍ତ ବିବରଣ ନିଜେ ରାଧାନାଥ ସୂଚନା ଆକାରରେ ଲିପିବଦ୍ଧ କରି ପରେ (ଭୂଦେବଙ୍କ ମୃତ୍ୟୁ ପରେ) ପ୍ରକାଶ କରିଥିଲେ । ସେଥିରୁ କିଛି ଉଦ୍ଧୃତ ହେଲା—(ରା.ଜୀ. ୯୭-୧୦୬) କିଛି :

“ପୂଜ୍ୟପାଦ ଭୂଦେବ ମୁଖୋପାଧ୍ୟାୟଙ୍କର ଓଡ଼ିଶାକୁ ଶୁଭାଗମନ ମୋ ଜୀବନର ଗୋଟିଏ ପ୍ରଧାନ ଘଟଣା । ତାହାଙ୍କ ଚରଣରେ ମୁଁ ଯେତେଦୂର ଋଣୀ, କୌଣସି ବଙ୍ଗବାସୀଙ୍କ ନିକଟରେ ସେତେଦୂର ଋଣୀ ନୁହେ । ସେ ଯେତେ ଦିନ ଜୀବିତ ଥିଲେ, ତାହାଙ୍କୁ ଦେବତା ମନେ କରି ତାହାଙ୍କର ଶ୍ରୀଚରଣକୁ ମୁଁ ଭକ୍ତିପୁଷ୍ପରେ ପୂଜା କରିଅଛି । ବର୍ତ୍ତମାନ ସେ ଲୋକାନ୍ତରଗାମୀ ହୋଇଥିଲେ ମଧ୍ୟ ମୋ ଦୃଷ୍ଟିରେ ସେ ସର୍ବଦା ଜୀବିତ ଥିବେ ।

"ସେ ସର୍ବପ୍ରଥମରେ ଯେତେବେଳେ ଓଡ଼ଶାକୁ ଆସିଥିଲେ, ତହିଁ ପୂର୍ବରୁ ତାହାଙ୍କ ନିକଟରେ ମୁଁ ଆଦୌ ପରିଚିତ ନ ଥିଲି । ମୋ ସମ୍ବନ୍ଧରେ ସେ କିଯୁତ୍‌ପରିମାଣରେ କୁସଂସ୍କାରବିଶିଷ୍ଟ ମଧ୍ୟ ଥିଲେ । ଏ କଥା ସେ ସ୍ୱୟଂ ମୋ ସମକ୍ଷରେ ସ୍ୱୀକାର କରିଥିଲେ ।

"ସର୍ବ ପ୍ରଥମରେ ସେ କଟକରେ ଉପସ୍ଥିତ ହେଲେ । ମୁଁ ତାଙ୍କ ସମଭିବ୍ୟାହାରରେ ପୁରୀ ଯାହାକଲି । ପୁରୀ ପଥରେ ପ୍ରଥମେ ତାହାଙ୍କ ସହିତ ମୁଁ ବାଲିଅଣ୍ଟା ଚଟିରେ ଅବସ୍ଥାନ କରୁଥିବା କାଳରେ ସେ କୌଣସି କାରଣରୁ ମୋ ଉପରେ ବିରକ୍ତ ହୋଇ ତାହାଙ୍କ ମତ ସମର୍ଥନ ଉଦ୍ଦେଶ୍ୟରେ ଜର୍ମାନ କବି ଗେଟେଙ୍କର କୌଣସି ଗ୍ରନ୍ଥର ଗୋଟିଏ ବାକ୍ୟ ଉଦ୍ଧାର କଲେ । ସୌଭାଗ୍ୟକ୍ରମେ ମୁଁ ସେହି ବହି ପଢ଼ିଥିଲି । ମୁଁ ତାହାଙ୍କ କଥା ସମର୍ଥନପୂର୍ବକ କହିଲି, "ଆଜ୍ଞା ହଁ ! ଆପଣ ଯେଉଁ ବାକ୍ୟ ଉଦ୍ଧାର କଲେ, ତାହା ଠିକ୍ ସତ୍ୟ, କିନ୍ତୁ ଏ ସ୍ଥଳରେ ତାହାର ପ୍ରୟୋଗ ଠିକ୍ ହେଲା ନାହିଁ ।" ସେ ଆହୁରି ବିରକ୍ତ ହୋଇ କହିଲେ, "ତୁମେ କଅଣ ବୁଝି 'ହଁ' ଭରିଲ ? ତୁମେ କଅଣ ଗେଟେଙ୍କର ନାମ ଶୁଣିଛ ? ତାଙ୍କ ବହିର ତୁମେ କୌଣସି ଖବର ରଖ କି ?"

"ଆଜ୍ଞା ! ମୁଁ ଅବଶ୍ୟ ମୂଳ ବହି ପଢ଼ି ନାହିଁ, ଅନୁବାଦ ପଢ଼ିଥିଲି ।"

"ଅନୁବାଦର କଥା ମୁଁ କହୁଛି । ମୁଁ କଅଣ ଆଉ ମୂଳବହି ପଢ଼ିଅଛି ?"

"ଆଜ୍ଞା ! ମୁଁ ସେହି ଅନୁବାଦହିଁ ପଢ଼ିଥିଲି ।"

"ତୁମେ ଏ ବହି ପଢ଼ିଛ ? ଗେଟେଙ୍କର ଆଉ କୌଣସି ବହିର ନା କହିପାର ?"

ମୁଁ କେତେକ ବହିର ନାମ କହିଲି । ସେହି ପୁସ୍ତକଗୁଡ଼ିକ ମୁଁ ପଢ଼ିଥିଲି । ତାହାଙ୍କ ଆଦେଶାନୁସାରେ ମୁଁ ଏହି ବହିଗୁଡ଼ିକର ସ୍ଥୂଳ ବୃତ୍ତାନ୍ତ ତାହାଙ୍କୁ କହିଲି । ସେ ଅଳ୍ପକ୍ଷଣ ନୀରବ ରହି କହିଲେ —

"ତୁମର ପଢ଼ିବାର ଅଭ୍ୟାସ ରହିଛି ଦେଖିଲି । ମୁଁ ଏହା ଆଶା କରି ନ ଥିଲି । ତୁମେ କି କି ଭାଷା ଜାଣ ?"

ମୋହର ଉତ୍ତର ପାଇ ସେ କହିଲେ, "ତୁମେ ତୁମର ଜୀବନର ପୂର୍ବ ଘଟଣାମାନ ସ୍ଥୂଳରେ କହ । ମୁଁ ଶୁଣିଲି ଯେ, ତୁମେ କେବଳ ଏଣ୍ଟ୍ରାନ୍ସ ପାଶ୍ କରିଥିଲ, କଲେଜରେ ପଢ଼ି ନାହିଁ । ବର୍ତ୍ତମାନ ଦେଖୁଛି ମୋହର ମତ ପରିବର୍ତ୍ତନ କରିବାକୁ ହେବ ।"

ମୁଁ ମୋହର ସମସ୍ତ ବକ୍ତବ୍ୟ ସ୍ଥୂଳରେ ନିବେଦନ କଲି । ଆହାରାନ୍ତେ ସେ ପତ୍ରାଦି ଲେଖିବସିଲେ । ୨।୩ ଘଣ୍ଟା ଉତ୍ତାରୁ ଡକାଇ କହିଲେ, "ଏହିଗୁଡ଼ିକ ପଢ଼ି ଯାଅ ।"

ମୁଁ ପତ୍ରଗୁଡ଼ିକ ପଢ଼ିଲି । ଭୂଦେବ ବାବୁ ତାହାଙ୍କର କେତେଗୁଡ଼ିଏ ନିତାନ୍ତ ଘନିଷ୍ଠ ବନ୍ଧୁଙ୍କୁ ଏହି ପତ୍ରଗୁଡ଼ିକ ଲେଖିଥିଲେ । ପତ୍ର-ସମୂହରେ ମୋ ସମ୍ବନ୍ଧରେ କେତେକ ବିବରଣ ଦେଇ ଉପ-ସଂହାରରେ ମୋ ବିଷୟରେ ସେମାନଙ୍କର ପୂର୍ବ ମତ ପରିବର୍ତ୍ତନ କରିବା ସକାଶେ ସେ ପ୍ରତ୍ୟେକ ବନ୍ଧୁଙ୍କୁ ଅନୁରୋଧ କରିଥିଲେ । ମୁଁ ତାହାଙ୍କର ଉଦାରତା ଏବଂ ପ୍ରଶସ୍ତ ମନସ୍ୱିତା ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି ।

ବାଲିଅନ୍ତାରୁ ଆମ୍ଭେମାନେ ଭୁବନେଶ୍ୱର ଗଲୁଁ । ଭୁବନେଶ୍ୱରର ପ୍ରାଚୀନ କୀର୍ତ୍ତିରାଜି ଦେଖି ସେ ଆହ୍ଲାଦ ଏବଂ ବିସ୍ମୟରେ ଗଦ୍‌ଗଦ ହେଲେ । ଓଡ଼ିଶା ପ୍ରତି ତାହାଙ୍କର ଭକ୍ତି ବଢ଼ି ଉଠିଲା ।

ଭୁବନେଶ୍ୱର ପରିତ୍ୟାଗ କରି ଆମ୍ଭେମାନେ ଶରଦେଈପୁର ଚଟିରେ ଅବସ୍ଥାନ କଲୁଁ । ସେଠାରେ ଅବସ୍ଥାନ ସମୟରେ ଭୁବନେଶ୍ୱରର ପ୍ରାଚୀନ ଆର୍ଯ୍ୟ କୀର୍ତ୍ତିରାଜି ପ୍ରସଙ୍ଗରେ ଅନେକ କଥୋପକଥନ ହେଲା । ଏହି ପ୍ରସଙ୍ଗରୁ ସ୍ୱଭାବତଃ ସଂସ୍କୃତ ସାହିତ୍ୟର କଥା ମଧ୍ୟ ଉଠିଲା । ଓଡ଼ିଶାରେ ସଂସ୍କୃତ ଶ୍ଳୋକସମୂହ ଲୋକେ ସ୍ୱର ସଂଯୋଗରେ ପଢ଼ିଥାଆନ୍ତି, ଏହି କଥା ଶୁଣି ସେ ମୋତେ ସ୍ୱର ସଂଯୋଗରେ କୌଣସି ଗୋଟିଏ ଶ୍ଳୋକ ପଢ଼ିବାକୁ କହିଲେ । ମୁଁ ମେଘଦୂତର ନିମ୍ନୋକ୍ତ ଶ୍ଳୋକ ମନ୍ଦାକ୍ରାନ୍ତା ଛନ୍ଦରେ ଆବୃତ୍ତି କଲି—

'ତାଂ ଜାନୀଥା ପରିମିତକଥାଂ ଜୀବିତଂ ମେ ଦ୍ୱିତୀୟଂ
ଦୂରୀଭୂତେ ମୟି ସହଚରେ ଚକ୍ରବାକୀମିବୈକାଂ ।
ଗାଢ଼ୋତ୍କଣ୍ଠାଂ ଗୁରୁଷୁ ଦିବସେଷ୍ୱେଷୁ ଗଚ୍ଛତ୍ସୁ ବାଲାଂ
ଜାତାଂ ମନ୍ୟେ ଶିଶିରମଥିତାଂ ପଦ୍ମିନୀ ବାନ୍ୟରୂପାଂ ।"

ଶ୍ଳୋକ ଶୁଣି ତାହାଙ୍କର ବିଶାଳ ନେତ୍ରରୁ ଅଶ୍ରୁଧାରା ପ୍ରବାହିତ ହେଲା । ଶ୍ଳୋକଦ୍ୱାରା ଯେପରି ତାହାଙ୍କ ହୃଦୟରେ କୌଣସି ଅନିର୍ବଚନୀୟ ଅନୁଭୂତି ଉପୁଜି ଉଠିଲା । ସେ ହଠାତ୍ କହି ଉଠିଲେ "ଆହା ! କି ସାହିତ୍ୟ ! କି କୀର୍ତ୍ତି ! ଆମ୍ଭେମାନେ କଅଣ ହୋଇ ଗଲୁଣି !"

ସଂସ୍କୃତ ସାହିତ୍ୟ ପ୍ରସଙ୍ଗରେ ଅନୁସଙ୍ଗତଃ ଉତ୍କଳ-ସାହିତ୍ୟ କଥା ଉଠିଲା । ଉତ୍କଳର ସର୍ବପ୍ରଧାନ କବି ଉପେନ୍ଦ୍ରଭଞ୍ଜଙ୍କର ସର୍ବପ୍ରଧାନ କାବ୍ୟ ବୈଦେହୀଶ ବିଳାସରୁ ମୁଁ କେତେଗୁଡ଼ିଏ ଉତ୍କୃଷ୍ଟ କବିତା ଆବୃତ୍ତି କରି ତାହାର ବ୍ୟାଖ୍ୟା ମଧ୍ୟ କରିଦେଲି ।"

କବିପ୍ରବର ଉପେନ୍ଦ୍ରଭଞ୍ଜଙ୍କର ଯେଉଁ ଯୋଡ଼ିଏ କବିତାଂଶ ରାଧାନାଥ ୬ ଭୂଦେବଙ୍କୁ ଶୁଣାଇ ମୁଗ୍ଧ କରିଥିଲେ ତାହା ନିମ୍ନରେ ପ୍ରଦତ୍ତ ହେଲା—

ଲବଣ୍ୟବତୀର—

ମନ ଦେଇ ଶୁଣ କୋବଦେ ନୃପସୁତା ସୁକେଶୀ,
କୂଳରେ ବକୁଳ ମୂଳରେ ପୀଠ ଉପରେ ବସି । ୧ ।
ସରସୀ ଶୋଭିତ ଅନାଇ ମନ ନେଇ ଲୋଭିତ,
ତଟଘଟନା ବଦ୍ରୁମରେ ପକ୍ଷୀପନ୍ତ ବମ୍ବ ତ । ୨ ।
କ ମାଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି,
ଅବମାବନତା ବସ୍ତ୍ରାରେ କବା କଣିବା ଇଚ୍ଛି । ୩ ।
ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ମାରଣର ପ୍ରଣତ,
ସୁବେଣୀ ପଭଣ ଭବ କ ତହିଁ ନିବେଣୀ ଖ୍ୟାତ । ୪ ।
ପାପଦଣ୍ଡୀ ଲଭ ମଗ୍ନଳପନ୍ତ ବଏ ଭଉଁସି,
ବଡ଼ ବଡ଼ଶିକ ବେଢ଼ି କ ଶୋଭ ଚୂର୍ଣ୍ଣ ଚଉଁସି । ୫ ।
ଜଳ ଜମ୍ବାଳ ଅବଳରେ ଜନମନ ହରୁଛି,
ଜଳ ନିର୍ମଳରେ ଆଦର ଆଦରଶୁଁ ପାରୁଛି । ୬ ।
ଗଣ୍ଡାର ଗୁଣକୁ ପଣ୍ଡିତଠାରୁ ଗୃହୀତ କରି,
ନର୍ତ୍ତକୀଠାବରୁ ଭଉଁଶି ଶିକ୍ଷା ପଗ ଏହାରି । ୭ ।
ଅମୃତ ସଙ୍ଗତେ ହୋଇଛି ମିତ ମଧୁରଗୁଣେ,
ବଧୂର ସ୍ନେହକୁ ବଧୂର କରେ ଶୀତଳପଣେ । ୮ ।

ବୈଦେହୀଶ ବଳାସରୁ :—

ବଦନ ପୂରିଅଛି ହାସ ହରଷେ
ବକର୍ତ୍ତନଜଂପାଇ ଶ୍ରୀରାମ ପାଶେ ଯେ
ବବର୍ତ୍ତନ ସନ୍ତାପ ହେଲା ପ୍ରଭୁର
ବାହୁଡ଼େ କାର୍ଯ୍ୟ କରି ଦକ୍ଷିଣଣ୍ଡୁର ଯେ । ୧ ।

ବୋଲୁଁ ବୋଇଲେ ରାମ ହେ ମିତ୍ର ! ବସ
ବଡ଼ ମଙ୍ଗଳଯୁକ୍ତ ଭାଷ ତ ଭାଷ ଯେ
ବଧିର ବ୍ୟାଧି ସତେ ଶ୍ରୁତିରୁ ଯିବ
ବୈଦ୍ୟଦୂତ ଉଦନ୍ତ ଔଷଧି ଦେବ ଯେ । ୨ ।
ବିଳମ୍ବକୁ କି ମହାପିପାସୀ ସହି
ବାରିପୂର୍ଣ୍ଣ କାସାର ଦେଖାଅ କାହିଁ ଯେ
ବୃହସ୍ପତି ଚଳନେ ବରଷେ ଘନ
ବିଘ୍ନରେ ତଥା ଧ୍ୱସ୍ତ କଲେ ମୋ ବନ ଯେ । ୩ ।

ସେ ସ୍ତବର ସୌନ୍ଦର୍ଯ୍ୟରେ ଚମତ୍କୃତ ଏବଂ ମୁଗ୍ଧହୋଇ କହିଲେ, "ଏହି ଓଡ଼ିଶାକୁ ବଙ୍ଗାଳୀମାନେ ପୁଣି ବେହେବାର ଦେଶ ବୋଲି କହନ୍ତି ।" ଏହା କହି ସେ ଭଞ୍ଜକବିଙ୍କର ଜୀବନୀ ଏବଂ ରଚନା ସମ୍ବନ୍ଧରେ ମୋତେ ଅନେକ ପ୍ରଶ୍ନ କଲେ । ମୋ ନିକଟରୁ ଭଞ୍ଜକବିଙ୍କର କବିତା ସେ ମଧ୍ୟେ ମଧ୍ୟେ ଶୁଣୁଥିଲେ ଏବଂ ସେହି ରଚନାର ସେ ଏତେ ଦୂର ପକ୍ଷପାତୀ ହୋଇଥିଲେ ଯେ, ଓଡ଼ିଶାରୁ ହୁଗୁଳୀ ପ୍ରତ୍ୟାବର୍ତ୍ତନ କରି କୌଣସି ଲବ୍ଧପ୍ରତିଷ୍ଠ ବଙ୍ଗୀୟ କବିଙ୍କ ହସ୍ତରେ ମୋତେ ଲକ୍ଷ୍ୟ କରି ଗୋଟିଏ ଆଶୀର୍ବାଦ ସୂଚକ କବିତା ଲେଖାଇ ତାହା ଏଡୁକେଶନ୍ ଗେଜେଟରେ ମୁଦ୍ରିତ କରାଇଥିଲେ । ଏହା ୧୮୭୯ ସାଲର ମେ ମାସ ୨୩ ତାରିଖର ଏଡୁକେଶନ ଗେଜେଟ୍‌ରେ ପ୍ରକାଶିତ ହୋଇଥିଲା ।

ଶରଦେଈପୁରଠାରୁ ଆମ୍ଭେମାନେ ପୁରୀ ଗଲୁଁ । ପୁରୀରେ ୨।୩ ଦିନ ମାତ୍ର ଅବସ୍ଥାନ କରି ପୁଣି କଟକକୁ ଫେରି ଆସିଲୁଁ । ସେ ମୋ ଉପରିସ୍ଥ କର୍ମଚାରୀ ଥିଲେହେଁ ତାହାଙ୍କର ସହବାସ ମୋ ପକ୍ଷରେ ଉତ୍ସବମୟ ବୋଧ ହେଉଥିଲା । ସରକାରୀ କାର୍ଯ୍ୟ କରି ଆମ୍ଭେମାନେ ଯେତେବେଳେ ଅବସର ପାଉଥିଲୁଁ, ସେତେବେଳେ

ଇଂରାଜୀ, ସଂସ୍କୃତ ଏବଂ ଓଡ଼ିଆ ସାହିତ୍ୟର ଅନୁଶୀଳନ କରୁଥିଲୁ । ଅଧିକାଂଶ ସମୟରେ କାଳିଦାସ ଏବଂ ଭବଭୂତିଙ୍କ ରଚନାର ଆଲୋଚନା ହେଉଥିଲା । ସେ ପ୍ରତିଥର ଓଡ଼ିଶାରେ ୧୦।୧୫ ଦିନରୁ ଅଧିକ ରହୁ ନ ଥିଲେ, କିନ୍ତୁ ଏହି ୧୦।୧୫ ଦିନ ମଧ୍ୟରେ ମୁଁ ତାହାଙ୍କ ନିକଟରୁ ଯେତେ ଦୂର ଶିକ୍ଷାଲାଭ କରୁଥିଲି, ସମସ୍ତ ବର୍ଷରେ ସେଭଳି ଶିକ୍ଷାଲାଭ ମୋ ପକ୍ଷରେ ଦୁର୍ଘଟ ହେଉଥିଲା । ସମୟ ସମୟରେ ମୁଁ ସାହିତ୍ୟଚର୍ଚ୍ଚା ପ୍ରସଙ୍ଗରେ ତାହାଙ୍କଦ୍ୱାରା କିରୂପ ଭର୍ତ୍ସିତ ହେଉଥିଲି ଏହାର ଗୋଟିଏ ଉଦାହରଣ ଦେଉଅଛି ।

କାଳିଦାସଙ୍କର ଅଦ୍ଭୁତ ଉପମାପାରିପାଟ୍ୟ ସେନି ଦିନେ କଥୋପକଥନ ହେଉଥିଲା । ମୁଁ ସେହି ପ୍ରସଙ୍ଗରେ ନିମ୍ନୋକ୍ତ କବିତା ଆବୃତ୍ତି କଲି :—

"ସରସ୍ତଂ ମୈଥିଲୀହାସଃ କ୍ଷଣସୌମ୍ୟାଂ ନିନାୟ ତାଂ ।
ନିବାତସ୍ତିମିତାଂ ବେଳାଂ ଚନ୍ଦ୍ରୋଦୟ ଇବୋଦଧେଃ ।"

ସେ ଏ ଶ୍ଳୋକ ଶୁଣି କହିଲେ, "ବଡ଼ ସୁନ୍ଦର ଉପମା, କିନ୍ତୁ ତୁମେ କିଅଣ ଏହି ଶ୍ଳୋକରେ କବିଙ୍କର କୌଣସି ତ୍ରୁଟି ଦେଖୁନାହଁ ?" ମୁଁ ଅବାକ୍ ହୋଇ ରହିଁ ରହିଲି । ସେ କହିଲେ, "ତୁମର ଏତେ ପରିମାଣରେ ସ୍ଥୂଳବୁଦ୍ଧି ବୋଲି ମୋହର ଧାରଣା ନ ଥିଲା । ତୁମେ କେବଳ ଅଳଙ୍କାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ରସସଙ୍ଗତ ଆଡ଼କୁ ଏକାବେଳକେ ଅନ୍ଧ ହୋଇଅଛ । ତୁମେ ଦେଖୁନାହଁ, କବି କିପରି ସ୍ଥଳରେ ସୀତାଙ୍କ ମୁଖରେ ହାସ୍ୟ ଦେଇଅଛନ୍ତି । ସୂର୍ପଣଖାର ସେହି ନିର୍ଲଜ୍ଜ ଆଚରଣରେ ସୀତାଙ୍କ ଭଳି ଅପ୍ରାକୃତା ସାଧ୍ୱୀଶୀଳା ନାୟିକା ମୁହଁରେ ହସ ଶୋଭା ପାଇଲାଟିକି ? ଏ ସ୍ଥଳରେ ସେ ସ୍ୱୟଂ ଲଜ୍ଜାରେ ମ୍ରିୟମାଣା ହେବାର କଥା । ମନସ୍ୱିନୀ ସ୍ତ୍ରୀ ଅନ୍ୟ ସ୍ତ୍ରୀର ନିର୍ଲଜ୍ଜ ଆଚରଣ ଦେଖିଲେ ସ୍ୱୟଂ ଲଜ୍ଜିତା ହୋଇଥାଏ, ହସ ତ ଦୂରର କଥା ।"

ତାହାଙ୍କର ଏହି ମନ୍ତବ୍ୟ ଶୁଣି ମୋର ଚୈତନ୍ୟୋଦୟ ହେଲା; ନିଜର ଅର୍ବାଚୀନତା ସ୍ୱୀକାର କଲି ଏବଂ କହିଲି, "କବି ମାଇକେଲ ମଧୁସୂଦନ ଏହି ସ୍ଥଳରେ ଅତି ସାବଧାନ ହୋଇ ଲେଖିଅଛନ୍ତି 'ସରମେ ! ସରମା ସଇ ! ମରି ଲୋ ! ସୁରିଲି ତାର କଥା' ମୋ ଦୃଷ୍ଟି ସେ ଆଡ଼କୁ ଏକାବେଳକେ ଯାଇ ନାହିଁ ।"

ଭୂଦେବ—ଚରିତ୍ରଚିତ୍ରଣ ଏବଂ ଚରିତ୍ରସଙ୍ଗତି ରଚନାର ସର୍ବପ୍ରଧାନ ବିଷୟ । ଦେଖ, କାଳିଦାସଙ୍କ ଭଳି ଜଗତ୍ପୂଜ୍ୟ କବି ମଧ୍ୟ ଏକ ଏକ ସ୍ଥାନରେ ସ୍ଖଳିତପଦ ହୋଇଅଛନ୍ତି; ସାମାନ୍ୟ କବିଙ୍କର ତ କଥା ନାହିଁ । ସେମାନେ ଅଳଙ୍କାରକୁ କବିତାର ପ୍ରଧାନ ଅଙ୍ଗ ମନେକରିଥାଆନ୍ତି, କିନ୍ତୁ କାଳିଦାସଙ୍କ କବିଙ୍କର ଏଭଳି ଭ୍ରମ ଅପରିମାର୍ଜନୀୟ ।

ମୁଁ—ଏ ବିଷୟରେ ଭବଭୂତିଙ୍କର ବୋଧହୁଏ କେବେହେଁ ପଦସ୍ଖଳନ ଘଟି ନାହିଁ ।

ଭୂଦେବ—ଠିକ୍ ! କାଳିଦାସ ଭବଭୂତିଙ୍କ ଅପେକ୍ଷା ଶକ୍ତିଶାଳୀ ଥିଲେ ସନ୍ଦେହ ନାହିଁ, କିନ୍ତୁ ଭବଭୂତି ଅଧିକ ଚିନ୍ତାଶୀଳ ଥିଲେ ଏବଂ ଚରିତ୍ରବିଶ୍ଳେଷଣରେ ତାଙ୍କର ଅଧିକତର ସୂକ୍ଷ୍ମଦର୍ଶିତା ଥିଲା । ତୁମେ କହିଲ ଭଲା, ତୁମ ମତରେ ପୃଥିବୀର କେଉଁ କବି ଚରିତ୍ରଚିତ୍ରଣ ବିଷୟରେ ସର୍ବାପେକ୍ଷା କୃତୀ ?

ମୁଁ—ମୋ ମତରେ ହୋମର୍, ସେକ୍ସପିଅର୍ ଏବଂ ବ୍ୟାସଦେବ ଏ ବିଷୟରେ ସର୍ବାପେକ୍ଷା କୃତୀ ।

ଭୂଦେବ—ବ୍ୟାସଦେବଙ୍କ ନାମ ସର୍ବଶେଷରେ କହିଲ କାହିଁକି ? ଏ ବିଷୟରେ ବ୍ୟାସଦେବଙ୍କ ସହିତ ଆଉ କୌଣସି କବିଙ୍କର ତୁଳନା ହୋଇ ନ ପାରେ । ଅନ୍ୟାନ୍ୟ କବିଙ୍କର ନାୟକ

ନାୟିକା ଚିତ୍ର ମାତ୍ର, ବ୍ୟାସଙ୍କର ନାୟକ ନାୟିକା ପ୍ରତିମୂର୍ତ୍ତି । ବ୍ୟାସଙ୍କ ତଳେ ହୋମର୍ ।”

କଟକର ଅନେକ ଭଦ୍ରବ୍ୟକ୍ତି ଭୂଦେବ ବାବୁଙ୍କର ସମ୍ମାନାର୍ଥ ଗୋଟିଏ ସଭା ଆହ୍ୱାନ କରିଥିଲେ । ଉତ୍କଳୀୟ ଓ ବଙ୍ଗବାସୀ ସମସ୍ତେହିଁ ଏ ଅନୁଷ୍ଠାନରେ ଯୋଗଦାନ କରିଥିଲେ । କଟକରେ ଅନେକ ଉତ୍କଳବାସୀଙ୍କ ସହିତ ତାହାଙ୍କର ଆଳାପ ହୋଇଥିଲା । ବିଶେଷତଃ ସୁପ୍ରଥିତନାମା ୰ ନନ୍ଦକିଶୋର ଦାସ ଏବଂ ମଧୁସୂଦନ ରାଓ ମହାଶୟଙ୍କର ସଦ୍‌ଗୁଣାବଳୀରେ ସେ ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ସମୟ ସମୟରେ ମୋ ନିକଟରେ ସେମାନଙ୍କର ଭୂୟସୀ ପ୍ରଶଂସା କରୁଥିଲେ ।

କଟକରେ ଅବସ୍ଥାନ ସମୟରେ ମୁଁ ତାହାଙ୍କ ଅଭିମତ ଜାଣିବା ସକାଶେ ମୋ ରଚିତ ଖଣ୍ଡିଏ ବଙ୍ଗଳା କାବ୍ୟର ପାଣ୍ଡୁଲେଖ୍ୟ ତାଙ୍କୁ ଦେଇଥିଲି । ସେହି କାବ୍ୟ ମାଇକେଲଙ୍କର ବୀରାଙ୍ଗନା କାବ୍ୟ ଧରଣରେ ଲିଖିତ । ସେଥିରେ ଚାରିଗୋଟି ପୌରାଣିକ ଏବଂ ଗୋଟିଏ କାଳ୍ପନିକ ନାୟିକାଙ୍କ ପତ୍ର ଥିଲା । ସେ ମନୋଯୋଗ ପୂର୍ବକ ସମସ୍ତ ପାଠ କଲେ ଏବଂ ଅନୁକୂଳ ମତ ପ୍ରକାଶ କରି କହିଲେ, “ପୁରାତନ ବିଷୟ ଦେନି ଶକ୍ତିର ଓ ଶ୍ରମର ଅଯଥା ବିନିଯୋଗ କର କାହିଁକି ? ତୁମର ପାଣ୍ଡୁଲେଖ୍ୟ ପାଠ କରି ମୁଁ ପ୍ରୀତ ହୋଇଅଛି, ଏହାକୁ ଏଡୁକେଶନ୍ ଗେଜେଟ୍‌ରେ ଛପାଇ ଦେବି, କିନ୍ତୁ ମୁଁ ଆଶା କରୁଅଛି ତୁମେ ନୂଆ ଗଢ଼ିବାକୁ ଚେଷ୍ଟା କରିବ । ଦେଖ ! ତୁମେ ସୁଭଦ୍ରାର ଚିତ୍ର ଅଙ୍କନ କରିଅଛ, କିନ୍ତୁ ତୁମେ ସହସ୍ର ଚେଷ୍ଟା କଲେହେଁ ବ୍ୟାସଦେବଙ୍କ ସୁଭଦ୍ରାକୁ ଅଧିକତର ସୁନ୍ଦର କରି ପାରିବ ନାହିଁ । ନୂତନ ଗଢ଼ିବାର ଚେଷ୍ଟା କର । ତୁମର ଏହି ପାଞ୍ଚଗୋଟି କବିତା-ମଧ୍ୟରେ ଗୋଟିଏ ନୂଆ ରହିଅଛି ସତ୍ୟ, ମାତ୍ର ତହିଁରେ ଆଦରୀଙ୍କ

ଯେ ରୂପ ଅବତାରଣା ହୋଇଅଛି; ତାହା ଉଚିତ ସୀମା ଅତିକ୍ରମ କରିଅଛି । ଆଦିରସର ଏରୂପ ଅବତାରଣା ନୈତିକ ସ୍ୱାସ୍ଥ୍ୟର ପ୍ରତିକୂଳ, ସୁତରାଂ ପରିହାର୍ଯ୍ୟ । ଓଡ଼ିଶା ଅତି ସୁନ୍ଦର ଦେଶ । ଏ ଦେଶର ମନୋହର ପ୍ରକୃତି କବିତାର ସମ୍ପୂର୍ଣ୍ଣ ଉପଯୋଗୀ । ଓଡ଼ିଶା ବାସ୍ତବିକ କବିତ୍ୱପୂର୍ଣ୍ଣ ଶିଶୁର ଉପଯୁକ୍ତା ଧାତ୍ରୀ (Wet nurse for a poetic child). ଓଡ଼ିଶାର ଯେଉଁଆଡ଼କୁ ଗୃହିଁବ ନୂଆ ଗଢ଼ିବାର ଉପାଦାନ ଯଥେଷ୍ଟ ରହିଅଛି ।" ମୁଁ କହିଲି, "ନୂଆ ଘଟନା କଳ୍ପନାରୁ ଉଦ୍ଭାବନ କରି ଲେଖିବା ମୋ ଭଳି ଲୋକର ସାଧ୍ୟାତୀତ ।"

ଆମ୍ଭେମାନେ କଟକ ପରିତ୍ୟାଗ କରି ବାଲେଶ୍ୱରଅଭିମୁଖରେ ଯାତ୍ରା କଲୁ । ୨୮ କୋଶ ଉତ୍ତରରୁ ଦର୍ପଣ ରାଜ୍ୟର କେତେଗୁଡ଼ିଏ ପର୍ବତ ଦେଖି ଭୂଦେବ ବାବୁ ସେହି ରାଜ୍ୟ ସମ୍ବନ୍ଧରେ ମୋତେ କେତେକ କଥା ପଚାରିଲେ । କିମ୍ବଦନ୍ତୀ ଅଛି ଯେ, ଏହି ରାଜ୍ୟର ରାଜାଙ୍କ ଦର୍ପଣ ସେବା ଥିଲା । ଅର୍ଥାତ୍ ପ୍ରାଚୀନ ଉତ୍କଳୀୟ ଗଙ୍ଗ-ବଂଶୀୟ ସମ୍ରାଟଙ୍କର ବେଶବିନ୍ୟାସ ସମୟରେ ଏ ରାଜା ଦର୍ପଣ ଧାରଣ କରୁଥିଲେ । ଏହି ଅଞ୍ଚଳରେ ଜଗନ୍ନାଥ ସଡ଼କର ପାର୍ଶ୍ୱରେ ପର୍ବତର ପାଦଦେଶସ୍ଥ ଚଟି ନିକଟରେ ଗୋଟିଏ ସୁନ୍ଦର ସରୋବର ଅଛି । ଏହି ସରୋବର ନିକଟରେ ଏକଦା ଜନୈକ ଧନଶାଳୀ ପଶ୍ଚିମା ଯାତ୍ରୀଙ୍କର ଗୋଟିଏ ଶିଶୁ କ୍ରୀଡ଼ା କରୁ କରୁ ହଠାତ୍ ଅଦୃଶ୍ୟ ହୋଇ କେଉଁଆଡ଼େ ଚାଲିଗଲେ, ତାହାର କୌଣସି ସନ୍ଧାନ ମିଳିଲା ନାହିଁ । ଭୂଦେବ ବାବୁଙ୍କୁ ମୁଁ ଏହି ଘଟନା କହିବାରୁ ସେ ସସ୍ମିତମୁଖରେ କହିଲେ, "ମୁଁ ଏ ସମ୍ବନ୍ଧରେ ଆଉ ଗୋଟିଏ ଗଳ୍ପ ଶୁଣିଥିଲି । ଗଳ୍ପଟି ଏହି—

ଉତ୍କଳ ସମ୍ରାଟଙ୍କ ଯୁବରାଜ କଟକରୁ ଥରେ ଏହି ଦର୍ପଣ ରାଜ୍ୟର ଅରଣ୍ୟରେ ମୃଗୟା କରିବାକୁ ଆସିଥିଲେ । ଦର୍ପଣ ରାଜକନ୍ୟା ତାହାଙ୍କୁ ଦେଖି ତାହାଙ୍କ ପ୍ରତି ଆସକ୍ତା ହେଲେ ଏବଂ ତାହାଙ୍କ ପିତା ଯେତେବେଳେ ଯୁବରାଜଙ୍କ ନିକଟକୁ ଦର୍ପଣ ଦେଇ ସେବା ସକାଶେ ଆସିଥିଲେ, ରାଜକନ୍ୟା କୌଶଳରେ ସେହି ଦର୍ପଣ ମଧ୍ୟରେ ନିଜର ପ୍ରତିକୃତି ଏବଂ ଗୋଟିଏ ପ୍ରେମ ପତ୍ରିକା ସନ୍ନିବିଷ୍ଟ କରିଦେଇଥିଲେ । ଯୁବରାଜଙ୍କର ଅସାବଧାନତାରେ ସେହି ପ୍ରତିକୃତି ଦର୍ପଣ ରାଜାଙ୍କ ସମ୍ମୁଖରେ ଦର୍ପଣରୁ ଖସିପଡ଼ିଲା । ଦର୍ପଣରାଜ ନିଜ କନ୍ୟାର ଆଚରଣରେ କ୍ଷୁବ୍ଧ ଏବଂ ଲଜ୍ଜିତ ହେଲେ ଏବଂ ସ୍ୱୀୟ ଭବନକୁ ପ୍ରତ୍ୟାବୃତ୍ତ ହୋଇ କନ୍ୟାକୁ କ୍ରୋଧରେ ତିରସ୍କାର କଲେ । ରାଜକନ୍ୟା ସେହି ଦୁଃଖରେ ଏହି ସରୋବରରେ ଆତ୍ମହତ୍ୟା କରିଥିଲେ । ତୁମେ ସେଦିନ କହୁଥିଲ, ତୁମେମାନେ ନୂଆ ବିଷୟ ପାଅ ନାହିଁ । ଏହି ତ ଗୋଟିଏ ନୂଆଗଳ୍ପ । ଯତ୍ନପୂର୍ବକ ସଜାଇ ଦେଖିଲେ ଏହି ଗଳ୍ପକୁ କାବ୍ୟରେ ପରିଣତ କରିବା ସହଜ ହେବ ।" ସ୍ପଷ୍ଟ ଦେଖିଲ, ମୋହର ପୂର୍ବକଥିତ ବୃତ୍ତାନ୍ତରୁ ଉପାଦାନ ସଂଗ୍ରହ କରି ମୋତେ ଉପଦେଶ ଦେବା ସକାଶେ ମେଧାବୀ ଭୂଦେବ ବାବୁ ଏ ଗଳ୍ପ ରଚନା କରିଥିଲେ ।

ବାଲେଶ୍ୱର ପଥରେ ଦିନେ କଥାପ୍ରସଙ୍ଗରେ ମୁଁ ଅଳ୍ପାହାରିତାର ପ୍ରଶଂସା କଲି । ଭୂଦେବ ବାବୁ କହିଲେ. "ଆତ୍ମବତ୍ ମନ୍ୟତେ ଜଗତ୍", ତୁମେ ନିଜ ଭଳି ସମସ୍ତଙ୍କୁ ମନେ କରୁଅଛ । ବର୍ତ୍ତମାନ ଲୋକେ ଦୁର୍ବଳ ହୋଇ ଯାଉଅଛନ୍ତି, ଜୀର୍ଣ୍ଣଶକ୍ତି ନାହିଁ, ଦୁର୍ଭାଗ୍ୟକ୍ରମେ ସ୍ୱାଧୀନତା ଲୋପ ସହିତ ପ୍ରଚୁର ଆହାର୍ଯ୍ୟ ଲାଭ ଦୁର୍ଘଟ ହୋଇଅଛି । ଅଳ୍ପାହାରିତାକୁ ଲୋକେ ଏଭଳି ପ୍ରତିଷ୍ଠା ଦେଇଥାଆନ୍ତି । ପ୍ରାଚୀନ ଆର୍ଯ୍ୟଋଷିମାନେ ଅଳ୍ପାହାରୀ ନ ଥିଲେ । ସେମାନଙ୍କର ଯେଉଁପରି

ଉପବାସସହିଷ୍ଣୁତା ଥିଲା, ସେହିପରି ଭୋଜନଶକ୍ତି ମଧ୍ୟ ଥିଲା । ଏହା ନ ହେଲେ ସେମାନେ ମହାଭାରତ, ରାମାୟଣ ଭଳି ବିଶାଳ କୀର୍ତ୍ତି ରଖିଯାଇ ନ ଥାନ୍ତେ । ବର୍ତ୍ତମାନ ଆମ୍ଭମାନଙ୍କ ଦେଶରେ ଲୋକେ ଯେପରି ଆହାର କରନ୍ତି, ସେହିପରି ବହି ମଧ୍ୟ ଲେଖନ୍ତି ।”

ବାଲେଶ୍ୱରରେ ସେ ରାଜା ବୈକୁଣ୍ଠନାଥ ଦେବ ବାହାଦୁରଙ୍କ ଅତିଥି ହୋଇଥିଲେ । ରାଜା ବାହାଦୁର ତାହାଙ୍କ ସତ୍କାରରେ ତ୍ରୁଟି କରି ନ ଥିଲେ । ତାହାଙ୍କର ଉଦ୍ୟାନବାଟିକାରେ ଆମ୍ଭେମାନେ ଅବସ୍ଥାନ କରିଥିଲୁଁ । ଦିନେ ମୁଁ ଉଦ୍ୟାନ ମଧ୍ୟସ୍ଥିତ ଗୋଟିଏ ସ୍ଥାନରେ ରାତ୍ରି କାଳରେ ଭୂଦେବ ବାବୁଙ୍କ ଅଦୂରରେ ବସି ନିମଗ୍ନ-ଭାବରେ ତାରାମଣ୍ଡିତ ଆକାଶ ଦେଖୁଥିଲି । ସେ ସେତେବେଳେ କିଛି କହିଲେ ନାହିଁ । କିନ୍ତୁ କିଛିକ୍ଷଣ ଉତ୍ତାରୁ କଥାପ୍ରସଙ୍ଗରେ କହିଲେ, “ଦେଖ ! ତୁମେ ଏତେ ନିମଗ୍ନ ହୋଇ ଆକାଶ ଆଡ଼କୁ ଚାହିଁ ରହିଥିଲ କାହିଁକି ? ସର୍ବଦା ଏପରି କରିବା ଭଲ ନୁହେ । ଏଥିରେ ନିଜର ଅକିଞ୍ଚିତ୍କରତା ନିତାନ୍ତ ପରିସ୍ଫୁଟ ହୋଇଥାଏ, ଅସ୍ତିତ୍ୱ ପ୍ରାୟ ଲୁପ୍ତ ହୋଇଥାଏ; କର୍ମକ୍ଷେତ୍ରରେ ଲୋକେ ଉଦାସୀନ ହୋଇଯାଆନ୍ତି । ଈଶ୍ୱରର ଧ୍ୟାନ ଯୋଗୀ ପକ୍ଷରେ ଶୋଭନୀୟ ।”

ବାଲେଶ୍ୱରରେ ରାଜା ବୈକୁଣ୍ଠନାଥଙ୍କର ପ୍ରକୃତି ବିମୁଖତା ଏବଂ ସତ୍କାର୍ଯ୍ୟରେ ଅଦମ୍ୟ ଉତ୍ସାହ ଦେଖି ସେ ତାଙ୍କୁ ମୁକ୍ତ-କଣ୍ଠରେ ପ୍ରଶଂସା କରିଥିଲେ ।

ବାଲେଶ୍ୱର ପରିତ୍ୟାଗ ପୂର୍ବରୁ ସେ ମୋତେ ଜଏଣ୍ଟ୍ ଇନ୍ସ୍ପେକ୍ଟର୍ ପଦରୁ ଇନ୍ସ୍ପେକ୍ଟର୍ ପଦକୁ ଉନ୍ନୀତ କରି ଓଡ଼ିଶାକୁ ତାହାଙ୍କ ବିଭାଗରୁ ସ୍ୱତନ୍ତ୍ର କରିଦେବା ସକାଶେ ଦୃଢ଼ରୂପେ ଗଭର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରିଥିଲେ । କୌଣସି ଓଡ଼ିଆ ପ୍ରତି

କୌଣସି ବଙ୍ଗାଳୀ ଏତେ ପରିମାଣରେ ଉଦାରତା ଦେଖାଇଅଛନ୍ତି ବୋଲି ମୋହର ସ୍ମରଣ ହେଉ ନାହିଁ ।

ସେଥର ବାଲେଶ୍ୱରରୁ ମୁଁ ତାହାଙ୍କ ନିକଟରୁ ବିଦାୟ ଗ୍ରହଣ କରି କଟକ ଫେରିଲି । ସେ ମେଦିନୀପୁର ମାର୍ଗରେ ହୁଗୁଳୀ ଯାତ୍ରା କଲେ ।

ବର୍ଷାନ୍ତେ ତାହାଙ୍କର ପୁନଶ୍ଚ ଓଡ଼ିଶାକୁ ଶୁଭାଗମନ ହେଲା । ଏଥିରେ ତାହାଙ୍କ ସହିତ ତାହାଙ୍କର କନିଷ୍ଠ ପୁତ୍ର ମୁକୁନ୍ଦ ବାବୁ ଆସିଥିଲେ । ଏଥର ମଧ୍ୟ ସେ ଭୁବନେଶ୍ୱର, ପୁରୀ ପ୍ରଭୃତି ଉତ୍କଳର ପ୍ରଧାନ ସ୍ଥାନସମୂହ ପରିଦର୍ଶନ କରିଥିଲେ । ନୂତନ ସ୍ଥାନ ମଧ୍ୟରେ କୋଣାର୍କ ଓ ଯାଜପୁର ଦେଖିଲେ ।

କୋଣାର୍କ (ଅର୍କକ୍ଷେତ୍ର) ଶ୍ରୀକ୍ଷେତ୍ରର ଐଶାନ୍ୟ କୋଣରେ ୧୧ କ୍ରୋଶ ଦୂରରେ ଅବସ୍ଥିତ । ଏଠାରେ ଦିଗନ୍ତବ୍ୟାପୀ ସୈକତ ପ୍ରାନ୍ତରରେ ପ୍ରାଚୀନ ସୂର୍ଯ୍ୟମନ୍ଦିରର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ବିରାଜିତ । ଅନତିଦୂରରେ ନୀଳାୟମାନ ସନାତନ ଅମ୍ବୁରାଶିର ତରଙ୍ଗିତ କଲ୍ଲୋଳ । ପ୍ରାଚୀନ ମନ୍ଦିର ଭୂମିସାତ୍ ହୋଇ ବାଲୁକାରେ ପ୍ରୋଥିତ ହୋଇଅଛି । ବର୍ତ୍ତମାନ କେବଳ ଭଗ୍ନ ମୁଖଶାଳା ଦିଶେ । ଏହି ମୁଖଶାଳାର କାରୁକାର୍ଯ୍ୟ ଜଗତରେ ଅତୁଳନୀୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭୂଦେବ ବାବୁ ଓ ମୁକୁନ୍ଦ ବାବୁଙ୍କ ସମଭିବ୍ୟାହାରରେ ମୁଁ କୋଣାର୍କ ଦେଖିବାକୁ ଯାଇଥିଲି । ପୁରୀଠାରୁ କୋଣାର୍କର ପଥ ନିରବଚ୍ଛିନ୍ନ ବାଲୁକା ପ୍ରାନ୍ତର । ପୂର୍ବରେ ସମୁଦ୍ର, ପଶ୍ଚିମରେ ସର ନାମକ ଗୋଟିଏ ପ୍ରକାଣ୍ଡ ହ୍ରଦ । ସ୍ଥାନେ ସ୍ଥାନେ ବ୍ୟାଘ୍ର ସଙ୍କୁଳ ନିବିଡ଼ କେତକୀବନ । କେଉଁଠାରେ ଅବା ସାଗର ସମୀରରେ ମର୍ମରପ୍ରମାଣ ତାଳତରୁଷଣ୍ଡ । ଏହି ପ୍ରାନ୍ତରେ ଅସଂଖ୍ୟ ହରିଣ ପଲ ବିଚରଣ କରନ୍ତି । ଆମ୍ଭେମାନେ ରାତ୍ରରେ ପଥ

ଦୁଇ ଅଗତ୍ୟା ଅନାବୃତ ବାଲୁକା ପ୍ରାନ୍ତରରେ ଅବସ୍ଥାନ କଲୁଁ । ସେହି ସ୍ଥଳରେ ମୁଁ ଆମ୍ଭମାନଙ୍କର କୌଣସି ସଙ୍ଗୀ ପଥିକଙ୍କ ଅନ୍ୱେଷଣରେ ଯାଇ ପ୍ରାୟ ବ୍ୟାଘ୍ର ମୁଖରେ ପଡ଼ିଥିଲି । ନକ୍ଷତ୍ର ଦେଖି ଏବଂ ପୂର୍ବଦିଗରେ ସମୁଦ୍ରକଲ୍ଲୋଳ ଶୁଣି ଆମ୍ଭେମାନେ ଦିଗ ନିର୍ଣ୍ଣୟ କରୁଥିଲୁଁ । ପ୍ରତ୍ୟୁଷରୁ ଭୂଦେବ ବାବୁ ଶଯ୍ୟାରୁ ଉଠିବା ମାତ୍ରକେ ସମ୍ମୁଖରେ ଯୋଡ଼ିଏ ବାଘ ଦେଖିଲେ । ସେ ଇତିପୂର୍ବେ ପ୍ରକୃତିର ନିରଙ୍କୁଶ ଅବସ୍ଥାରେ କେବେହେଁ ବ୍ୟାଘ୍ର ଦେଖି ନଥିଲେ; ଏହି-ହେତୁରୁ ଏ ଦୃଶ୍ୟ ତାହାଙ୍କୁ ଅଭିଭୂତ କରି ପକାଇଥିଲା ।

ସୂର୍ଯ୍ୟୋଦୟ ଉତ୍ତାରୁ ଆମ୍ଭେମାନେ କୋଣାର୍କପଥରେ ଅଗ୍ରସର ହେଲୁଁ । ଅଳ୍ପଦୂର ଯିବା ଉତ୍ତାରୁ କୋଣାର୍କର ମୁଖଶାଳା ଦିଶିଲା । ଦୂରରୁ ଏହି ମୁଖଶାଳାର ପ୍ରଥମ ଦୃଷ୍ଟି ନିତାନ୍ତ ନୈରାଶ୍ୟାବହ । ଆମ୍ଭମାନଙ୍କର ମନେ ହେଲା ଯେ, ଆମ୍ଭେମାନେ କାହିଁକି ଏତେ ପରିଶ୍ରମ ସ୍ୱୀକାର କରି ଏହି ଅତିସାମାନ୍ୟ ମନ୍ଦିର ଦେଖିବାକୁ ଆସିଲୁଁ । ଏତେ ପରିଶ୍ରମର କଅଣ ଏହି ପୁରସ୍କାର ? କିନ୍ତୁ ଯେତେ ନିକଟବର୍ତ୍ତୀ ହେଲୁଁ, କ୍ରମଶଃ ପ୍ରୀତି ଓ ବିସ୍ମୟ ପୂର୍ବ ନୈରାଶ୍ୟର ସ୍ଥାନ ଅଧିକାର କଲା । ଆମ୍ଭେମାନେ ମନ୍ଦିରସମ୍ମୁଖରେ ଉପସ୍ଥିତ ହୋଇ ସ୍ତବ୍ଧ ଭାବରେ ଏବଂ ବିସ୍ମୟସ୍ତିମିତ ନେତ୍ରରେ ତାହାର ଗମ୍ଭୀର ମହାନ୍ ମୂର୍ତ୍ତି ଦେଖିବାରେ ଲାଗିଲୁଁ । ବାସ୍ତବିକ୍ ଏ ଦୃଶ୍ୟ ଇଂରେଜ କବି ବାଇରନ୍‌ଙ୍କର "Those days are gone but beauty still is there" ସେଦିନ ସବୁ ଗଲାଣି, ତଥାପି ସୌନ୍ଦର୍ଯ୍ୟ ରହିଅଛି, ଏହି ପଂକ୍ତିର ସମ୍ପୂର୍ଣ୍ଣ ସ୍ମାରକ । ଭୂଦେବ ବାବୁଙ୍କ ଚକ୍ଷୁରେ ଅଶ୍ରୁକଣା ଦିଶିଲା ।

ଜରାଜୀର୍ଣ୍ଣ ମୁଖଶାଳାର ଉପରିଦିଗରେ ବଂଶୀବାଦିନୀ ଗୋଟିଏ ସ୍ତ୍ରୀ ପ୍ରତିମୂର୍ତ୍ତିର ଅଦ୍ଭୁତ ସୌନ୍ଦର୍ଯ୍ୟ ଦେଖି ତାହା ମୁକୁନ୍ଦ ବାବୁଙ୍କ

ଏବଂ ମତେ ଦେଖାଇ ସେ କହିଲେ, "ଏହି ପ୍ରସ୍ତମୂର୍ତ୍ତି ଦେଖିଲେ ଗ୍ରୀକ୍ ସେଫୋର କଥା ମନେ ପଡ଼େ ନାହିଁ କି ?"

ଆମ୍ଭେମାନେ ନିତାନ୍ତ ଶ୍ରାନ୍ତ ହୋଇଥିଲୁଁ । ରୌଦ୍ର ମଧ୍ୟ ପ୍ରଖର ହେଲା । ଦେଉଳର ଅଦୂରବର୍ତ୍ତୀ ଗୋଟିଏ ପ୍ରକାଣ୍ଡ ପ୍ରସ୍ତରରେ ମନ୍ଦିରର ନବଗ୍ରହ ମୂର୍ତ୍ତିଗୁଡ଼ିକ ଦେଖି ଈଶାନ ବଟବୃକ୍ଷ ଛାୟାରେ ଆଶ୍ରୟ ଗ୍ରହଣ କଲୁଁ । ଛାୟାରେ ବସି ମୁଁ ମୁଖଶାଳା ଆଡ଼କୁ ଚାହିଁ ଭୂଦେବ ବାବୁଙ୍କୁ କହିଲି, "ଆପଣ ସେହି ମୃତମୂର୍ତ୍ତି ଦେଖି ଗ୍ରୀକ୍ ସେଫୋର ସ୍ମରଣ କଲେ । କୌଣସି କୌଣସି ପ୍ରତ୍ନତତ୍ତ୍ୱବିଦଙ୍କ ମତରେ ଏହି ମନ୍ଦିରର ଗଠନକାର୍ଯ୍ୟ ଗ୍ରୀକ୍‌ମାନଙ୍କ ଦ୍ୱାରା ସମ୍ପନ୍ନ ହୋଇଥିଲା, ଏହି ମତବାଦ ମଧ୍ୟ ଆପଣ ଦେଖିଥିବେ ।"

ଭୂଦେବ ବାବୁ ସେପରି କଞ୍ଚିତ କ୍ଷୁଣ୍ଣ ହୋଇ କହିଲେ, "ସେରୂପ ମତବାଦ ମୁଁ ଦେଖିଅଛି ସତ୍ୟ, କିନ୍ତୁ ଏହି ମତବାଦ ଉପରେ ମୁଁ ଟିକିଏ ଟୀକା କରିବାକୁ ଇଚ୍ଛୁକ । ଗ୍ରୀକ୍‌ମାନେ ଭାରତକୁ ଆସି ଆମ୍ଭମାନଙ୍କ କୁମାରସମ୍ଭବ କାବ୍ୟ ଲେଖିଦେଇ ଯାଇଅଛନ୍ତି ।"

ଅପରାହ୍ଣରେ ଆମ୍ଭେମାନେ ପୁନଶ୍ଚ ମନ୍ଦିର ଦେଖିବାକୁ ଗଲୁଁ । ମନ୍ଦିର ଦେଖିବା ସମୟରେ ସ୍ଥାନେ ସ୍ଥାନେ ବ୍ୟାଘ୍ରର ପଦଚିହ୍ନ ଦେଖି ଭାବିଲୁଁ, ସମ୍ଭବତଃ ସେହି ଭଗ୍ନାବଶେଷ ମଧ୍ୟରେ ବ୍ୟାଘ୍ର ଆଶ୍ରୟ ନେଇଥିବ । ସ୍ୱସ୍ଥାନକୁ ଫେରିଆସି ଆମ୍ଭେମାନେ ରାତିରେ ନିରାପଦରେ ରହିବା ସକାଶେ ସ୍ଥାନେ ସ୍ଥାନେ ଅଗ୍ନି ଜାଳିଲୁଁ । ପ୍ରଭାତ ହେବା ମାତ୍ରେ ପୁଣି ଯାତ୍ରା କଲୁଁ ତତ୍ପରେ ଆମ୍ଭେମାନେ ପୁରୀରୁ ଫେରି ଯାଜପୁର ଗଲୁଁ ।

ଯାଜପୁରରେ ଅବସ୍ଥାନ ସମୟରେ ଭୂଦେବ ବାବୁ ଆମ୍ଭମାନଙ୍କ ସଙ୍ଗରେ ଦେବୀ ସପ୍ତମାତୃକା, ଶୁଭସ୍ତମ୍ଭ ପ୍ରଭୃତି ଦର୍ଶନ କରିଥିଲେ । ଯାଜପୁରର ସୁବିଖ୍ୟାତ ଶୁଭସ୍ତମ୍ଭର ସୌନ୍ଦର୍ଯ୍ୟ ଦର୍ଶନରେ ସେ ଅତ୍ୟନ୍ତ ମୁଗ୍ଧ ହୋଇଥିଲେ ।

ଓଡ଼ିଶାରେ ଏହି ଭ୍ରମଣ ସମ୍ବନ୍ଧରେ ମୋର ଅଧିକ ବକ୍ତବ୍ୟ ନାହିଁ । ଶାସ୍ତ୍ରଚର୍ଚ୍ଚା ଏବଂ ସାହିତ୍ୟଚର୍ଚ୍ଚା ବ୍ୟତୀତ କୌଣସି ଦିନ ବୃଥା ଯାଉ ନ ଥିଲା । ପ୍ରାୟ ପ୍ରତ୍ୟହ କୌଣସି ପ୍ରକାର କୌତୁକାବହ ପ୍ରସଙ୍ଗ ଉପସ୍ଥିତ ହେଉଥିଲା । ସମସ୍ତ ଘଟନା ଯଥାମତ ଲେଖି ରଖିଲେ ଗୋଟିଏ ସୁବୃହତ୍ ପୁସ୍ତକ ହୋଇଥାଆନ୍ତା ।

ଏକ ବର୍ଷ ଉତ୍ତାରୁ ମୁଁ ହୁଗୁଳୀର ଚୁଁଚୁଡ଼ାରେ ଭୂଦେବ ବାବୁଙ୍କ ଗୃହରେ ଅତିଥି ହୋଇଥିଲି । ପ୍ରାୟ ୨୦।୨୫ ଦିନ ମୁଁ ତାହାଙ୍କ ଘରେ ଅବସ୍ଥାନ କରିଥିଲି । ଏଭଳି ଆତିଥେୟତା ମୁଁ କେଉଁଠାରେ ଦେଖି ନାହିଁ । ତାହାଙ୍କ ଗୃହର ସୁବ୍ୟବସ୍ଥା, ଆଗୃହନିଷ୍ଠା ଗୃହର ପ୍ରତ୍ୟେକ ବ୍ୟକ୍ତିଙ୍କ ସୁଶୀଳତା ଏବଂ ବିନୟ ମଧୁର ବ୍ୟବହାରରେ ମୁଁ ଏକାବେଳକେ ମୁଗ୍ଧ ଓ ଆତ୍ମବିସ୍ମୃତ ହୋଇ ଯାଇଥିଲି । ଅତିଥିର ମନ ବୃତ୍ତି ଏଭଳି ସେବା ଅଳ୍ପ ଗୃହସ୍ଥଙ୍କ ଘରେ ଦୃଷ୍ଟ ହୋଇଥାଏ । ମୁଁ ଭୂଦେବ ବାବୁଙ୍କ ଗୃହ ଭଳି ଗୃହ ଏବଂ ଭୂଦେବ ବାବୁଙ୍କ ଭଳି ଗୃହସ୍ଥ ପ୍ରାୟ କେଉଁଠାରେ ଦେଖି ନାହିଁ । ଭବଭୂତିଙ୍କ "ସୁଚରିତ ଗୁରୁସ୍ତମ୍ଭାଧାର ଗୃହ" ଯେବେ କେଉଁଠାରେ ଥାଏ, ତାହା ଭୂଦେବ ବାବୁଙ୍କ ଗୃହରେ ଦେଖିଥିଲି । ବସ୍ତୁତଃ ପାରିବାରିକ ପ୍ରବନ୍ଧ, ଆଚାର ପ୍ରବନ୍ଧ ଓ ସାମାଜିକ ପ୍ରବନ୍ଧ ପ୍ରଭୃତି ଅମୂଲ୍ୟ ପୁସ୍ତକସମୂହର ସୁବିଜ୍ଞ ଲେଖକଙ୍କ ପକ୍ଷରେ ସ୍ୱଗୃହର ସୁବ୍ୟବସ୍ଥା ସମୀଚୀନ, ଏଥିରେ ସନ୍ଦେହ ନାହିଁ ।

ତାହାଙ୍କ ସହିତ ମୁଁ ପାଟଣା, ବୀରଭୂମ, ଗୟା ପ୍ରଭୃତି ଜିଲ୍ଲାରେ ପରିଭ୍ରମଣ କରିଥିଲି । ଏହି ପରିଭ୍ରମଣ ସମ୍ବନ୍ଧରେ ମୋହର ଅନେକ କଥା ସ୍ମରଣ ଥିଲେହେଁ ବାହୁଲ୍ୟ ଭୟରେ ଲେଖିଲି ନାହିଁ ।

୮-୬-୧୮୯୪ } ଶ୍ରୀ ରାଧାନାଥ ରାୟ । (ରାଧାନାଥ ଜୀବନୀ)

ରାଧାନାଥ ଜଏଣ୍ଟ ଇନ୍‌ସ୍‌ପେକ୍ଟର ହୋଇ ନିଯୁକ୍ତ ହୋଇ କାର୍ଯ୍ୟ କରୁଥିଲା ବେଳେ କେତେଜଣ ଈର୍ଷା ପରବଶ ହୋଇ ଇନ୍‌ସ୍‌ପେକ୍ଟର ଭୂଦେବ ମୁଖର୍ଜୀଙ୍କୁ ଜଣାଇଥିଲେ ଯେ ରାଧାନାଥଙ୍କ ସ୍ୱାସ୍ଥ୍ୟ ଭଲ ନଥିବାରୁ ସେ ମଫସଲରେ ଗସ୍ତ କରି ସ୍କୁଲ ପରିଦର୍ଶନ କାର୍ଯ୍ୟ ସୁରୂରୂପେ ଚଳାଇ ପାରୁ ନାହାନ୍ତି । ଭୂଦେବ ବାବୁ ଏହି କଥାରେ ପ୍ରଥମେ ବିଶ୍ୱାସ କରି ସରକାରଙ୍କୁ ଲେଖିଲେ ଯେ, ରାଧାନାଥ ସ୍ୱାସ୍ଥ୍ୟ ଦୁର୍ବଳଥିବାରୁ ସେ ସ୍କୁଲସବୁ ପରିଦର୍ଶନ କରୁଛନ୍ତି କି ନାହିଁ ତାହା ସେ ସ୍ୱୟଂ ଦେଖି ସନ୍ତୁଷ୍ଟ ହେଲେ ଯାଇ ତାଙ୍କୁ ଦରମା ଦିଆଯିବ । ସରକାର ଭୂଦେବ ବାବୁଙ୍କ ପରାମର୍ଶ ଗ୍ରହଣ କରି ରାଧାନାଥଙ୍କ ଦରମା ବନ୍ଦ କରି ରଖିଲେ । ଭୂଦେବବାବୁ ଓଡ଼ିଶାକୁ ଆସି ରାଧାନାଥବାବୁଙ୍କ କାର୍ଯ୍ୟ ଦେଖି ଅତି ଆନନ୍ଦ ଲାଭ କରିଥିଲେ ଏବଂ ସେ ଭ୍ରମଧାରଣାର ବଶବର୍ତ୍ତୀ ହୋଇ ତାଙ୍କର ବେତନ ବନ୍ଦ ରଖେଇଥିବାରୁ ଦୁଃଖ ପ୍ରକାଶ କରିଥିଲେ । ରାଧାନାଥଙ୍କ ଚରିତ୍ର, କାର୍ଯ୍ୟକଳାପ ଓ ବ୍ୟବହାରରେ ସେ ଏତେ ମୁଗ୍‌ଧ ହୋଇ-ଥିଲେ ଯେ ନିଜର ପତ୍ରିକା "ଏଡ଼ୁକେଶନ ଗେଜେଟ୍‌"ରେ ରାଧାନାଥଙ୍କୁ ଆଶୀର୍ବାଦ କରି ଏକ କବିତା ପ୍ରକାଶ କରିଥିଲେ ।

ରାଧାନାଥ ପ୍ରଥମେ କବିତାରଚନା ଆରମ୍ଭ କରିବା-ବେଳେ ବଙ୍ଗଭାଷାରେ ଲେଖିବା ଶ୍ରେୟ ମନେ କରି କେତୋଟି କବିତା ଲେଖିଥିଲେ । ଏହି କବିତାଗୁଡ଼ିକ ସମ୍ବନ୍ଧରେ ମତାମତ ଜାଣିବାପାଇଁ ରାଧାନାଥ ଭୂଦେବ ମୁଖର୍ଜୀଙ୍କୁ ଦେଖାଇଥିଲେ । ଭୂଦେବ କବିତାଗୁଡ଼ିକ ପଢ଼ି ସନ୍ତୋଷଲାଭ କଲେ ଏବଂ ଉପଦେଶ ଦେଇ କହିଥିଲେ ଯେ, ବଙ୍ଗଭାଷା ଅପେକ୍ଷାକୃତ ଉନ୍ନତ ଓ ମାର୍ଜିତ କିନ୍ତୁ ଓଡ଼ିଆ ଭାଷା ସେ ଅବସ୍ଥାକୁ ଆସିନାହିଁ । ପ୍ରତ୍ୟେକ ଉତ୍କଳବାସୀ ଓଡ଼ିଆଭାଷାର ଉନ୍ନତି ବିଧାନରେ ବ୍ରତୀ ହେବା କର୍ତ୍ତବ୍ୟ । ଭୂଦେବଙ୍କ

ଏହି ଉପଦେଶ ରାଧାନାଥଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ବିଶେଷତଃ ବଙ୍ଗଳା ଭାଷାରେ ଲେଖି ପ୍ରତିଷ୍ଠା ଲାଭ କରିବା ସେତେବେଳେ ସେତେ ସହଜ ନଥିଲା । ଭୂଦେବଙ୍କ ଉପଦେଶକୁ ରାଧାନାଥ କାର୍ଯ୍ୟରେ ପରିଣତ କରିଥିଲେ । ସେ ବଙ୍ଗଳାରେ ଲେଖିବା ଆକାଙ୍‌କ୍ଷା ତ୍ୟାଗ କରି ଓଡ଼ିଆ ଭାଷାରେ ରଚନା କରିବା ଆରମ୍ଭ କଲେ । ରାଧାନାଥଙ୍କ ବଙ୍ଗଳା କବିତା ଗୁଡ଼ିକ ଭୂଦେବ ବାବୁଙ୍କ "ଏଡୁକେଶନ ଗେଜେଟ୍" ପତ୍ରିକାରେ ପ୍ରକାଶିତ ହେଉଥିଲା । ସେ-ଗୁଡ଼ିକୁ ଏକତ୍ର କରି ୧୯୦୨ରେ "ଲେଖାଳୀ ନାମରେ ଏକ ପୁସ୍ତକ ପ୍ରକାଶିତ ହେଲା ।



# ଅଷ୍ଟମ ପରିଚ୍ଛେଦ

## ରାଧାନାଥଙ୍କୁ ମୟୂରଭଞ୍ଜ ଦେବାନ୍ କରିବା ପ୍ରସ୍ତାବ

ରାଧାନାଥ ଜଏଣ୍ଟ ଇନ୍‌ସ୍‌ପେକ୍ଟର୍ ପଦକୁ ଉନ୍ନୀତ ହେବା ପରେ ତାଙ୍କର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ସରକାରୀ ଉଚ୍ଚ ହାକିମ-ମାନଙ୍କର ଉଚ୍ଚଧାରଣା ଜାତ ହୋଇଥିଲା । ଏହାର ପ୍ରଭାବ ଗଡ଼ଜାତମାନଙ୍କରେ ମଧ୍ୟ ପଡ଼ିଥିଲା । ମୟୂରଭଞ୍ଜର ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବଙ୍କର ବାଲେଶ୍ୱରର ଜମିଦାର ରାଜା ଶ୍ୟାମାନନ୍ଦ ଦେଙ୍କ ସହିତ ଘନିଷ୍ଠ ବନ୍ଧୁତା ଥିଲା । ଭଞ୍ଜଦେବ ବାଲେଶ୍ୱରଗଲେ ଦେଙ୍କ ନଅରରେ ଆତିଥ୍ୟ ଗ୍ରହଣ କରୁଥିଲେ । ଦେ ବଂଶ ସହିତ ରାଧାନାଥଙ୍କର ମଧ୍ୟ ଭଲ ଘନିଷ୍ଠତା ଥିଲା ; ଶ୍ୟାମାନନ୍ଦଙ୍କ ପୁତ୍ର ବୈକୁଣ୍ଠନାଥ ତାଙ୍କ ବାଲ୍ୟସଖା । ବାଲେଶ୍ୱରରେ ଭଞ୍ଜଦେବଙ୍କ ସହିତ ରାଧାନାଥଙ୍କର ପୂର୍ବରୁ ପରିଚୟ ଥିଲା । ସ୍କୁଲବିଭାଗର

ଜଏଣ୍ଟ ଇନ୍‌ସପେକ୍ଟର ହେବା ପରେ ସ୍କୁଲ ପରିଦର୍ଶନ କରିବା ପାଇଁ ରାଧାନାଥ ମୟୂରଭଞ୍ଜକୁ ପ୍ରତିବର୍ଷ ଯାଉଥିଲେ ଏବଂ ସେତେବେଳେ ମହାରାଜାଙ୍କର ଅତିଥି ରୂପରେ ଅବସ୍ଥାନ କରୁଥିଲେ । ରାଧାନାଥଙ୍କ ପ୍ରତିଭାର ପ୍ରତ୍ୟକ୍ଷ ପରିଚୟ ପାଇବାର ଅବକାଶ ଭଞ୍ଜଦେବଙ୍କର ଥିଲା ।

୧୮୮୧ ବେଳକୁ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବଙ୍କ ପୁତ୍ର ଶ୍ରୀରାମଚନ୍ଦ୍ର ନାବାଳକ । ତାଙ୍କୁ ଉପଯୁକ୍ତ ଭାବରେ ଶିକ୍ଷିତ କରାଇବା ପାଇଁ ମହାରାଜା ପରିକଳ୍ପନା କରୁଥିଲେ । ରାଧାନାଥଙ୍କ ପରି ଜଣେ ଦେଶପ୍ରେମୀ, ଚରିତ୍ରବାନ୍ ଓ ସୁଦକ୍ଷ କର୍ମଚାରୀଙ୍କୁ ନେଇ ମୟୂରଭଞ୍ଜରେ ରଖିଲେ ରାଜ୍ୟର ସମୂହ ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ରାଜକୁମାରଙ୍କର ଶିକ୍ଷାତତ୍ତ୍ୱାବଧାନ ମଧ୍ୟ ହୋଇ ପାରିବ ବୋଲି ମହାରାଜାଙ୍କର ବିଶ୍ୱାସ ହୋଇଥିଲା । ସେଥିପାଇଁ ସେ ରାଧାନାଥଙ୍କୁ ନିଜ ଷ୍ଟେଟ୍‌ର ଦେବାନପଦରେ ନିଯୁକ୍ତ କରିବାପାଇଁ ମନସ୍ଥ କରି ରାଧାନାଥଙ୍କୁ ତାଙ୍କର ସମ୍ମତି ଲାଭ ପାଇଁ ଜଣାଇଲେ । ରାଜା ଶ୍ୟାମାନନ୍ଦ ଦେ ଏଥିରେ ବିଶେଷ ଉଦ୍‌ଯୋଗୀ ଥିଲେ ।

ସେତେବେଳକୁ ରାଧାନାଥ ଶିକ୍ଷାବିଭାଗରୁ ମାସିକ ଟ ୪୦୦୲ (ଚାରିଶହ) ଦରମା ପାଉଥିଲେ । ମହାରାଜା ତାଙ୍କୁ ମାସିକ ଟ ୭୨୦୲ (ସାତଶହ କୋଡ଼ିଏ ) ବେତନ ଦେବାପାଇଁ ଅଙ୍ଗୀକାର କରି ପ୍ରସ୍ତାବ ଦେଲେ । ରାଧାନାଥଙ୍କୁ ଦେବାନରୂପେ ନେବା ପାଇଁ ମହାରାଜା କାହିଁକି ବ୍ୟଗ୍ର ଥିଲେ ତାହା ତାଙ୍କର ସନ ୧୨୮୯।୧୩ ମାର୍ଗଶୀରରେ ରାଧାନାଥଙ୍କୁ ଲେଖିଥିବା ଚିଠିରୁ ସ୍ପଷ୍ଟ ହେଉଛି—"... ଆପଣ ଖୁବ୍ ବୁଦ୍ଧିବେକ ଏ ଘର ଆପଙ୍କର, ଏଠାରେ ଆପଣ କୌଣସି ବିଷୟରେ ହରକତ ହେବେ ନାହିଁ । ଆପଣ ଅନୁଗ୍ରହପୂର୍ବକ ଏଠାକୁ ବିରାଜମାନ କଲେ ଆମ୍ଭର ଶରୀରରକ୍ଷାର ଏକ

ବିଶେଷ ଉପାୟ ହେଲା ବୋଲି ମନେ କରିବୁଁ । ଆମ୍ଭର ଯେଉଁ ରୋଗ ଅଛି ତା ଆପଣ ବିଶେଷ ଅବଗତ ଅଛନ୍ତି । କାର୍ଯ୍ୟ ଆଦି କଲେ ବିଶେଷ ବୃଦ୍ଧି ହୁଏ ଓ ଶ୍ରୀରାମଚନ୍ଦ୍ରଙ୍କର ରକ୍ଷଣାବେକ୍ଷଣର ଭାର ଅଦ୍ୟାବଧି ଆପଣଙ୍କ ହସ୍ତରେ ସମର୍ପଣ କଲୁଁ । ସେ ଆପଣଙ୍କର କନିଷ୍ଠ ଭ୍ରାତା ; ତାଙ୍କ ରାଜ୍ୟ ଯେରୂପେ ରକ୍ଷାହେବ ତହିଁର ବିହିତ ବ୍ୟବସ୍ଥା ଆପଣ କରିବେ । ଆପଣ ଅବଶ୍ୟ ଅବଶ୍ୟ ଆଗମନ କରିବେ । ଆମ୍ଭର ଯେଉଁ କ୍ଷମତା ତାହା ସମୁଦାୟ ଅର୍ପଣ କଲୁଁ । ଆପଣ ନିଃସନ୍ଦେହରେ ଶୀଘ୍ର ଆସିବେ ।" ଟିକାୟତଙ୍କ ଶିକ୍ଷାର ସୁବିଧା ପାଇଁ ରାଧାନାଥ ମହାରାଜାଙ୍କୁ ବିଭିନ୍ନ ସମୟରେ ପ୍ରସ୍ତାବ ଦେଉଥିଲେ ଏବଂ ମହାରାଜା ତାହା କାର୍ଯ୍ୟରେ ପରିଣତ କରୁଥିଲେ ।

ରାଧାନାଥ ଏ ପ୍ରସ୍ତାବ ସମ୍ପର୍କରେ ତାଙ୍କର ହିତାକାଂକ୍ଷୀ ବନ୍ଧୁମାନଙ୍କ ପରାମର୍ଶ ନେଉଥିଲେ । ଯଦି ସେ ଏହି ପ୍ରସ୍ତାବ ଗ୍ରହଣ କରି ସରକାରୀ କାର୍ଯ୍ୟରୁ ଛୁଟିନେଇ ମୟୂରଭଞ୍ଜ ଦେବାନ ହୁଅନ୍ତି ଏବଂ କିଛି କାଳ ପରେ କୌଣସି କାରଣରୁ ଯଦି ସେଠାରେ ଆଉ ରହିବା ସୁବିଧା ନହୁଏ ତାହାହେଲେ ତାଙ୍କୁ ପୁଣି ସରକାରୀ କାର୍ଯ୍ୟକୁ ଫେରିଆସିବାକୁ ହେବ । ସରକାରୀ କାର୍ଯ୍ୟକୁ ଫେରି ଆସିଲେ ଓଡ଼ିଶାରେ ରହିବାର ନିଶ୍ଚୟତା ମଧ୍ୟ କିଛି ନାହିଁ, ପ୍ରଦେଶର ( ବଙ୍ଗପ୍ରଦେଶ ) ଅନ୍ୟ କୌଣସି ଜିଲ୍ଲାକୁ ମଧ୍ୟ ତାଙ୍କୁ ନେଇ ପାରନ୍ତି । ଏହାଦ୍ୱାରା ତାଙ୍କର ଭଗ୍ନସ୍ୱାସ୍ଥ୍ୟରେ ମଧ୍ୟ ଆହୁରି ଅନିଷ୍ଟ ଘଟିବା ସମ୍ଭାବନା । ପୁଣି ଉନ୍ନତିରେ ମଧ୍ୟ ବ୍ୟାଘାତ ଘଟିବ । ତାଙ୍କର ବେତନବୃଦ୍ଧି ମଧ୍ୟ ସମ୍ଭବ ହେବନାହିଁ । କଟକରେ ସ୍ଥାୟୀ ଭାବରେ ଗୃହବାସରେ ମୁକ୍ତିର ରହି କାର୍ଯ୍ୟ କରିବାର ଯେଉଁ ସୁବିଧା ସେଥିରୁ ସେ ବଞ୍ଚିତ ହେବାର ଆଶଙ୍କା ମଧ୍ୟ ରହିଛି । ଏହା ବ୍ୟତୀତ ଅନ୍ୟ ଏକ କାରଣ ମଧ୍ୟ ଥିଲା ।

"ଗଡ଼ଜାତରେ ବ୍ୟକ୍ତିଗତ ସ୍ୱାର୍ଥ ପ୍ରବଳ, ଅଳ୍ପଧନ ମଧ୍ୟରେ ରାଜପ୍ରସାଦ ଫଳରୁ ଲୋକର ଧନୀ ହେବାର ଯେପରି ସମ୍ଭାବନା, ସେହିପରି ଅଳ୍ପ ଧନ ମଧ୍ୟରେ ରାଜବିରାଗଭାଜନ ହେଲେ ଅନିଷ୍ଟର ମଧ୍ୟ ସମ୍ଭାବନା; ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟରେ ଏ ଉଭୟ ସମ୍ଭାବନା ଅପେକ୍ଷାକୃତ କମ୍; ସୁତରାଂ ସ୍ଥୂଳରୂପେ ଜୀବିକା ନିର୍ବାହ ପକ୍ଷରେ ଆଶଙ୍କା ମଧ୍ୟ କମ୍।" ଏହି କଥାଗୁଡ଼ିକ ଏକ ପତ୍ରରେ ରାଧାନାଥ ମହାରାଜାଙ୍କୁ ଜଣାଇଦେଇ ପ୍ରସ୍ତାବ କଲେ ଯେ ବ୍ୟକ୍ତିଗତ ଭାବ ଉପରେ ନିର୍ଭର କରି ସେ ଉପସ୍ଥିତ କର୍ମ ପରିତ୍ୟାଗ କରିବା ଉଚିତ ନଥିବାରୁ ଭବିଷ୍ୟତ ଆର୍ଥିକ ଦୁର୍ଗତିରୁ ରକ୍ଷା ପାଇବା ପାଇଁ ମାସିକ ଦରମା ଛଡ଼ା ମହାରାଜା ତାଙ୍କୁ ଏକକାଳୀନ କେତେ ହଜାର ଟଙ୍କା ଦେବେ ଏବଂ ବରଖାସ୍ତ କରିବାକୁ ହେଲେ ସରକାରଙ୍କ ବିନା ମଞ୍ଜୁରିରେ ବରଖାସ୍ତ କରିପାରିବେ ନାହିଁ। ଏଥିରେ ସେ ଯଦି ରାଜି ହୁଅନ୍ତି ତାହା ହେଲେ ସେ ମୟୂରଭଞ୍ଜ ଦେବାନ ହେବାପାଇଁ ରାଜି ଅଛନ୍ତି।

କୃଷ୍ଣଚନ୍ଦ୍ର ଭଞ୍ଜଦେବ ପରେ ରାଧାନାଥଙ୍କୁ ମୟୂରଭଞ୍ଜ ଦେବାନ ରୂପେ ନିଯୁକ୍ତ କରିବା ତାଙ୍କର ଇଚ୍ଛା ଥିବାରୁ ତାଙ୍କୁ ଧାର ଦେବା ପାଇଁ ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ସ୍ମିଥ୍‌ଙ୍କ ଜରିଆରେ ସରକାରଙ୍କୁ ଅନୁରୋଧ କଲେ ଏବଂ ପେନସନ୍ ବାବଦରେ ଡିପୋଜିଟ୍ ହେବା ଟଙ୍କାକୁ ମିଶାଇ ମାସିକ ଟ୭୨୦୲ ବେତନ ଦେବା ପ୍ରସ୍ତାବ ଜଣାଇଲେ। କିନ୍ତୁ ରାଧାନାଥ ଏହି ପ୍ରସ୍ତାବ ସମ୍ବନ୍ଧରେ ତାଙ୍କର ମତାମତ ପରେ ଜଣାଇବେ ବୋଲି ମହାରାଜାଙ୍କୁ କହି ଡିରେକ୍ଟର (ଶିକ୍ଷାବିଭାଗ) ମି. କ୍ରଫ୍‌ଟ୍‌ଙ୍କ ପରାମର୍ଶ ଲୋଡ଼ିଲେ। ରାଧାନାଥ କ୍ରଫ୍‌ଟ୍ ସାହେବଙ୍କୁ ପଚାରିଲେ ଯେ ଯଦି ସେ ମୟୂରଭଞ୍ଜ ଯାଆନ୍ତି, ତାହା ହେଲେ ତାଙ୍କର ଶିକ୍ଷା ବିଭାଗରେ ପ୍ରଥମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେବାର

କୌଣସି ସମ୍ଭାବନା ଅଛି କି ନାହିଁ । ହପ୍‌ଟ ସାହେବ ଜଣାଇଲେ ଯେ ରାଧାନାଥ ଦ୍ୱିତୀୟ ଶ୍ରେଣୀରେ ଜଣେ ଅଧସ୍ତନ କର୍ମଚାରୀ ଥିବା ହେତୁ ଉନ୍ନତିର ଆଶୁ ସମ୍ଭାବନା ନାହିଁ । ଏହା ପରେ ରାଧାନାଥ ଆଉ ବେଶୀ ଆଗ୍ରହ ପ୍ରକାଶ କଲେ ନାହିଁ । ମହାରାଜା ମଧ୍ୟ ଏକକାଳୀନ ନଗଦଟଙ୍କା ଦେବା ପ୍ରସ୍ତାବ ଗ୍ରହଣ କରିଥିବା ଭଳି ଜଣାଯାଉନାହିଁ । ଏ ପ୍ରସ୍ତାବ ଏତିକରେ ରହିଲା । କିନ୍ତୁ ମହାରାଜାଙ୍କ ସହିତ ରାଧାନାଥଙ୍କର ବନ୍ଧୁତ୍ୱ ପୂର୍ବପରି ଅକ୍ଷୁଣ୍ଣ ରହିଲା ।

୧୮୮୧ (?) ମହାରାଜା କୃଷ୍ଣଚନ୍ଦ୍ର ୩୨ ବର୍ଷ ବୟସରେ ବସନ୍ତ ରୋଗରେ ସ୍ୱର୍ଗାରୋହଣ କଲେ ।

---

# ନବମ ପରିଚ୍ଛେଦ

## ତୀର୍ଥାଟନ : କବିବର ଉପାଧି ଲାଭ

୧୮୮୩ରେ କଲିକତାରେ ଏକ ବିରାଟ ଆନ୍ତର୍ଜାତିକ ପ୍ରଦର୍ଶନୀ ଅନୁଷ୍ଠିତ ହୋଇଥିଲା । ରାଧାନାଥ ଏହି ପ୍ରଦର୍ଶନୀ ଦେଖିବାପାଇଁ କଲିକତା ଯାଇଥିଲେ । କଟକର ଗୃହବାଲ ବନ୍ଦର ପର୍ଯ୍ୟନ୍ତ ବଳଦଗାଡ଼ି ଓ ପାଲିଙ୍କିରେ ଯାଇ ସେଠାରୁ ଜାହାଜରେ ଯାଇଥିଲେ ।

ପ୍ରଦର୍ଶନୀ ଦେଖିସାରିବା ପରେ ରାଧାନାଥ ଗୟା, କାଶୀ, ପ୍ରୟାଗ, ଅଯୋଧ୍ୟା, ଲକ୍ଷ୍ନଉ, ଆଗ୍ରା, ଦିଲ୍ଲୀ, ମଥୁରା, ବୃନ୍ଦାବନ, ହରଦ୍ୱାର, ଜୟପୁର, ଜବଲପୁର, ଆଜମୀର, ଉଜ୍ଜୟିନୀ, ବୋମ୍ବେଇ ପ୍ରଭୃତି ବହୁ ତୀର୍ଥ ଓ ବଶିଷ୍ଟ ସ୍ଥାନ ଦେଖିବାକୁ ଗଲେ । କାଶୀରେ ସାଧୁ ତୈଲଙ୍ଗ ସ୍ୱାମୀଙ୍କୁ ଦର୍ଶନ କରିଥିଲେ । ଏହି ଭ୍ରମଣରେ ରାଧାନାଥ ପ୍ରାୟ ଛଅମାସ କାଳ କଟାଇଥିଲେ ।

## ହିନ୍ଦୁଧର୍ମପ୍ରୀତି

ବାଲେଶ୍ୱର ଜିଲ୍ଲାର ଜଣେ ମୁକ୍ତିଆର ଓ କଟକର ଜଣେ ମୁକ୍ତିଆର ସେମାନେ ଯୁବାବସ୍ଥାରେ ହିନ୍ଦୁଧର୍ମ ତ୍ୟାଗ କରି ଖ୍ରୀଷ୍ଟିଆନ୍ ଧର୍ମ ଗ୍ରହଣ କରିଥିଲେ । ରାଧାନାଥ ୧୮୮୫ରେ ଏ ଦୁଇଜଣଙ୍କୁ ହିନ୍ଦୁଧର୍ମର ମହତ୍ତ୍ୱ ବୁଝାଇ ପୁଣି ହିନ୍ଦୁଧର୍ମକୁ ଫେରାଇ ଆଣିଥିଲେ ।

## ସର୍ବପ୍ରଥମ ବାମଣ୍ଡା ଯାତ୍ରା

ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ହେବା ପରେ ବାମଣ୍ଡାର ରାଜା ସୁଢ଼ଳ ଦେବ (ସାର୍)ଙ୍କ ସହିତ ତାଙ୍କର ବନ୍ଧୁତ୍ୱ ଘନିଷ୍ଠ ହୋଇଥିଲା । ସେତେବେଳେ ବାମଣ୍ଡା ଷ୍ଟେଟ୍ ମଧ୍ୟପ୍ରଦେଶ ଅଧୀନରେ ଥିଲା । ରାଧାନାଥଙ୍କ ସମ୍ବନ୍ଧରେ ସୁଢ଼ଳଦେବଙ୍କ ଉଚ୍ଚଧାରଣା ଥିଲା । ତାଙ୍କ ଷ୍ଟେଟ୍‌କୁ ଯିବାପାଇଁ ରାଧାନାଥଙ୍କୁ ସେ ବହୁତ ଚିଠି ଦେଇ-ଥିଲେ । ୧୮୮୬ରେ ଦଶ ଦିନଛୁଟି ନେଇ ରାଧାନାଥ ତାଳଚେର ବାଟେ ବାମଣ୍ଡା ଗଲେ । ରାଜା ତାଙ୍କୁ ରାଜୋଚିତ ସମ୍ମାନ ପ୍ରଦର୍ଶନ କରିଥିଲେ । ବାମଣ୍ଡା ରାଜଧାନୀରେ ରାଧାନାଥ ପହଞ୍ଚିବାକ୍ଷଣି ୧୧ଟି ତୋପ ଫୁଟିଥିଲା ଏବଂ ତାଙ୍କୁ ଅଭ୍ୟର୍ଥନା କରିବାପାଇଁ ବହୁଲୋକ ସମବେତ ହୋଇଥିଲେ । ସାଧାରଣତଃ ଉଚ୍ଚରାଜପୁରୁଷଙ୍କ ଆଗମନ ବେଳେ ଏଭଳି ତୋପ ଫୁଟିଥାଏ । କିନ୍ତୁ ରାଧାନାଥ ସେ ସ୍ତରକୁ ରାଜପଦବୀରେ ଉଠିନଥିଲେ ମଧ୍ୟ ରାଧାନାଥଙ୍କ ପ୍ରତି ସୁଢ଼ଳଦେବଙ୍କ ପ୍ରଗାଢ଼ ଶ୍ରଦ୍ଧା ଓ ତାଙ୍କ ଚରିତ୍ର ପ୍ରତି ତାଙ୍କର ଉଚ୍ଚଧାରଣା ଥିଲା, ଏଥିପୋଇଁ ଏଭଳି ସମ୍ମାନ ରାଜୋଚିତ ହୋଇଥିଲା ।

## କବିବର ଉପାଧି

ବାମଣ୍ଡାରେ ଏକ ସପ୍ତାହ କାଳ ରାଧାନାଥ ରାଜ ଅତିଥି ହୋଇ ରହିଥିଲେ । ସେତେବେଳେ ବାମଣ୍ଡା ରାଜଦରବାରରେ ବହୁ ଶିକ୍ଷିତ ବ୍ୟକ୍ତି, କବି, ପଣ୍ଡିତ, କଳାକାର ଥିଲେ । ନିଜେ ରାଜା କବି ଥିବାରୁ ଏବଂ ତାଙ୍କଠାରେ ଗୁଣଗ୍ରାହକତା ପ୍ରଚୁର ପରିମାଣରେ ଥିବାରୁ ସେ ଗୁଣୀର ଗୁଣକୁ ଚିହ୍ନି ପାରୁଥିଲେ । ରାଜସଭାରେ ଓ ଶାସନକ୍ଷେତ୍ରରେ କେତେ ଜଣ ତୋଷାମୋଦୀ ଥାଇ ରାଜଜୀବନକୁ କଳୁଷିତ କରିବାକୁ ଚେଷ୍ଟା କରୁଥିବା ସେ ଅନୁମାନ କରିଥିଲେ । ଏହାଛଡ଼ା କେତେକ ଶିକ୍ଷିତ ପଣ୍ଡିତ ବ୍ୟକ୍ତି ସ୍ୱର ଅର୍ଥ ଲୋଭରେ ନିଜର ବିବେକକୁ ବୁଡ଼ାଇ ଅଯଥା ତୋଷାମୋଦରେ ଜିହ୍ୱା ଓ ଲେଖନୀକୁ ବ୍ୟବହାର କରୁଥିବା ଦେଖି ସେ ମର୍ମାହତ ହୋଇଥିଲେ । ରାଜସଭାରେ ଥିବା ତୋଷାମୋଦୀଙ୍କ ବ୍ୟବହାର ଦେଖି ସେହିଠାରେ ସେହି ସଭାରେ ନିମ୍ନଲିଖିତ ପାଞ୍ଚଟି ପଂକ୍ତି ଲେଖି ସୁଢ଼ଳ ଦେବଙ୍କୁ ଉପହାର ଦେଇଥିଲେ । ରାଜସଭାରେ ରାଧାନାଥଙ୍କୁ ସୁଢ଼ଳ ଦେବ "କବିବର" ଉପାଧି ପ୍ରଦାନ କରିଥିଲେ । ଏହି ପାଞ୍ଚଟି ପଂକ୍ତି କବିତାର ଭାବ ତାଙ୍କୁ ମୁଗ୍ଧ କରିଥିବାରୁ ପ୍ରତ୍ୟେକ ପଂକ୍ତି ସକାଶେ ଏକଶତ ଟଙ୍କା ଏପରି ମୋଟରେ ପାଞ୍ଚଶହ ଟଙ୍କା ତାଙ୍କୁ ପୁରସ୍କାର ଦେଇଥିଲେ ।

ଧିକ ତୋଷାମୋଦ ଧିକଧିକ ତୋର
ଘୃଣିତ ହୀନ ଜୀବନ,
ଧିକ ତୋ ଜୀବିକା ଧିକଧିକ ସେହି
ଜୀବିକା ଜନିତ ଧନ ।୧।

ସତ୍ୟବାଦୀ ହୋଇ    କ୍ଷଣେ ବଞ୍ଚିଥିଲେ
ଯୁଗେ ବଞ୍ଚିଥିବା ପରି,
ତୋଷାମୋଦୀ ହୋଇ    ଅମର ହେଲେହେଁ
ମରିଯିବା ସଙ୍ଗେ ସରି ।୨।

ଲାଗୁଅଛି ସ୍ୱାଦୁ    ଖୋସାମୋଦୀ ବାଣୀ
ସଜ ସରପୂଳି ପରି,
ସାବଧାନ ସେହି    ପୂଳିରେ ହୋଇଛି
କପଟ ଜହର ଭରି ।୩।

କହୁଅଛ ସ୍ତବେ    ତୁମ୍ଭ କାର୍ଯ୍ୟ ଲାଗି
ସମର୍ପି ପାରଇ ପ୍ରାଣ,
ନିଜ କାର୍ଯ୍ୟ ହେତୁ    ସମସ୍ତ ଆସିଲେ
ନାଶି ପାରେ ତୁମ୍ଭ ପ୍ରାଣ ।୪।

ତୁମ୍ଭ ବିପକ୍ଷଙ୍କ    ନିନ୍ଦାକଥା କହି
ମୋଦ ଜନ୍ମାଏ ଯେ ଜନେ
ଜାଣିଥାଅ ସେହି    ନିଷ୍ଠୁରୂପି ସେହି
ନିନ୍ଦୁକ ବୃନ୍ଦରୁ ଜଣେ ।୫।

ରାଧାନାଥଙ୍କ ସହିତ ସୁରୂଜଦେବଙ୍କ ବନ୍ଧୁତା ଘନିଷ୍ଠ ହେବା ପରେ ସୁରୂଜଦେବ "ସମ୍ବଲପୁର ହିତୈଷିଣୀ" ନାମକ ଏକ ସାପ୍ତାହିକ ପତ୍ରିକା ବାମଣ୍ଡାସ୍ଥିତ ତଦୀୟ ଜଗନ୍ନାଥବଲ୍ଲଭ ନାମକ ମୁଦ୍ରାଯନ୍ତ୍ରରୁ ୧୮୮୭ରେ ପ୍ରକାଶ କଲେ । ଏହି ପତ୍ରିକାର ସମ୍ପାଦକ ରୂପେ ନୀଳମଣି ବିଦ୍ୟାରତ୍ନ ନିଯୁକ୍ତ ହୋଇଥିଲେ । ଏହି ପତ୍ରିକାରେ ରାଧାନାଥଙ୍କ ଅନେକଗୁଡ଼ିଏ ଲେଖା ପ୍ରକାଶ ପାଇଥିଲା । ଏହି କାଗଜରେ "ପାର୍ବତୀ" ଓ "ଯଯାତିକେଶରୀ" ପ୍ରଥମେ ଧାରାବାହିକ ପ୍ରକାଶିତ ହୋଇଥିଲା ।

## ଗ୍ରନ୍ଥ ରଚନାରେ ମନୋନିବେଶ

୧୮୮୦ରେ ରାଧାନାଥ ଓ ମଧୁସୂଦନ ରାଓଙ୍କ କେତୋଟି କବିତା ସଂଗ୍ରହ କରି "କବିତାବଳୀ" ନାମରେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ପ୍ରକାଶ କରିଥିଲେ । ଏଥିରେ ଥିବା ବେଣୀ-ସଂହାର, ଶିବାଜୀଙ୍କର ଉତ୍ସାହ ବାକ୍ୟ, ଭାରତେଶ୍ୱରୀ ଭିକ୍ଟୋରିଆ— ଏହି ତିନୋଟି କବିତା ରାଧାନାଥଙ୍କ ରଚନା । ସ୍ତୋତ୍ର, ଆକାଶପ୍ରତି, ଶରତ ପ୍ରଭାତ, ନିର୍ବାସିତର ବିଳାପ, ପବନ, ସୀତାବନବାସ, ଏବଂ ଅଯୋଧ୍ୟା ପ୍ରତ୍ୟାଗମନ—ଏଗୁଡ଼ିକ ମଧୁସୂଦନ ରାଓଙ୍କର ରଚନା । ଏହି କ୍ଷୁଦ୍ର ପୁସ୍ତକଟି ପ୍ରକାଶ ହେବା ପରେ ଓଡ଼ିଆମାନଙ୍କ ଭିତରେ ଖୁବ୍ ଉତ୍ସାହ ଦେଖା ଯାଇଥିଲା ଏବଂ ଅନ୍ୟମାନେ ଯଦି ଏପରି କିଛି କିଛି ରଚନା କରି ପ୍ରକାଶ କରନ୍ତୁ ତାହା ହେଲେ ଏକ ନୂତନ ଶୈଳୀର ପଥ ପ୍ରଶସ୍ତ ହୋଇଯିବ ବୋଲି ଲୋକଙ୍କର ଆଶା ହୋଇଥିଲା ।

୧୮୮୫ରେ ରାଧାନାଥଙ୍କର "କେଦାର ଗୌରୀ" ବାଲେଶ୍ୱରର ବୈକୁଣ୍ଠନାଥ ଦେ ତାଙ୍କ ପ୍ରତିଷ୍ଠିତ "ଦେ ପ୍ରେସ"ରୁ ପ୍ରକାଶ କଲେ; —ଦାମ ଏକପଇସା ରଖାଯାଇଥିଲା । କେଦାର ଗୌରୀରେ ତାଙ୍କର କବିପ୍ରତିଭାର ଆଭାସ ସ୍ପଷ୍ଟରୂପେ ମିଳିଥିଲା ଏବଂ ଭବିଷ୍ୟତରେ ତାଙ୍କଠାରୁ ଆହୁରି ସୁନ୍ଦର ଉଚ୍ଚ କୋଟିର କବିତା ଓ କାବ୍ୟ ସୁଧୀବର୍ଗ ଆଶା କରିଥିଲେ ।

୧୮୮୬ରେ ରାଧାନାଥଙ୍କ "ଚନ୍ଦ୍ରଭାଗା" ଦୁଇ ପଇସା ମୂଲ୍ୟରେ ବାଲେଶ୍ୱର "ଦେ ପ୍ରେସ"ରେ ପ୍ରକାଶିତ ହେଲା । ବୈକୁଣ୍ଠନାଥ ଦେଙ୍କ ଉତ୍ସାହ ଓ ପୃଷ୍ଠପୋଷକତାହିଁ ଏହି ରଚନା ପ୍ରକାଶର ମୂଳ ଉତ୍ସ ।

୧୮୮୭ରେ "ନନ୍ଦକେଶ୍ୱରୀ" କାବ୍ୟଟି କଟକର ଭିକ୍ଟୋରିଆ ପ୍ରେସରୁ ପ୍ରକାଶିତ ହେଲା । ସେହିବର୍ଷ "ଉଷା" ମଧ୍ୟ ରଚିତ ହୋଇଥିଲା ଏବଂ ଏହି ପ୍ରେସରେହିଁ ପ୍ରକାଶିତ ହୋଇଥିଲା । ୧୮୯୧ରେ "ପାର୍ବତୀ" କାବ୍ୟ ପ୍ରକାଶିତ ହୋଇଥିଲା ।

୧୮୯୨ରେ ମୟୂରଭଞ୍ଜରୁ ପ୍ରକାଶ ପାଉଥିବା "ଉତ୍କଳ ପ୍ରଭା" ପତ୍ରିକାରେ ରାଧାନାଥଙ୍କ "ଚିଲିକା" ସର୍ବପ୍ରଥମେ ପ୍ରକାଶିତ ହେଲା । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଏହି ପତ୍ରିକାର ମାଲିକ ଥିଲେ ।

---

# ଦଶମ ପରିଚ୍ଛେଦ

## ସ୍କୁଲ ଇନ୍‌ସପେକ୍ଟର ରାଧାନାଥ

ଓଡ଼ିଶାରେ ଶିକ୍ଷାବ୍ୟବସ୍ଥାର ଦ୍ରୁତଗତିରେ ହେଉଥିବାରୁ ଓଡ଼ିଶା ଉଦ୍ଭଜନ ପାଇଁ ଜଣେ ସ୍ୱତନ୍ତ୍ର ଇନ୍‌ସପେକ୍ଟର ରହିବା ଦରକାର ବୋଲି ଓଡ଼ିଶାରେ ଦାବୀ ହେଲା । ଓଡ଼ିଶାର ହାକିମମାନେ ମଧ୍ୟ ଏହି ଦାବୀକୁ ସମର୍ଥନ କଲେ । ଉତ୍କଳପ୍ରେମୀ ବିଖ୍ୟାତ ବିମ୍‌ସ୍ ସାହେବ ରାଧାନାଥଙ୍କୁ ପୂର୍ବବତ୍ ସ୍ନେହ କରୁଥିଲେ । ତାଙ୍କର ସୁପାରିଶ୍ କ୍ରମେ ବଙ୍ଗ ସରକାର ୧୮୯୨ ଜୁନ୍ ୨୧ ତାରିଖ ଦିନ ଓଡ଼ିଶାପାଇଁ ସ୍କୁଲ ଇନ୍‌ସପେକ୍ଟର ପଦ ସୃଷ୍ଟି କଲେ ଏବଂ ରାଧାନାଥଙ୍କୁ ସେଥିରେ ଅସ୍ଥାୟୀ ଭାବରେ ନିଯୁକ୍ତ କଲେ । ସେହି ବର୍ଷ ଡ଼ିସେମ୍ବର ମାସରେ ରାଧାନାଥ ଏହି ପଦରେ ସ୍ଥାୟୀ ହେଲେ । କଟକରେ ତାଙ୍କର ଅଫିସ ରହିଲା । ସେତେବେଳେ କଟକ ସହରରେ ତାଙ୍କର ନିଜର ଘର ନଥିବାରୁ ସେ ଶେଖବଜାରରେ ଭଡ଼ା ବସାଘରେ ରହୁଥିଲେ । ୧୮୭୭ରୁ ସେ କଟକରେ ଭଡ଼ାଘରେ ରହୁଥିଲେ ।

ଓଡ଼ିଶାରେ ଶିକ୍ଷା ବିଭାଗରେ ଜଏଣ୍ଟ ଇନ୍‌ସପେକ୍ଟର ଥାଇ ରାଧାନାଥ ଯେଉଁ କୃତିତ୍ୱ ଦେଖାଇଥିଲେ ତାର ଫଳ ସ୍ୱରୂପ ସେ ଇନ୍‌ସପେକ୍ଟର ପଦପ୍ରାପ୍ତ ହେଲେ । ଏଥିପାଇଁ ଯେ ସେ ସମ୍ପୂର୍ଣ୍ଣ ଉପଯୁକ୍ତ ଥିଲେ ଏବଂ ତାଙ୍କର ଯୋଗ୍ୟତା ଥିଲା, ଏହା ଅସ୍ୱୀକାର କରି ହେବ ନାହିଁ । ସେ ଯେଉଁ ସମୟରେ ନିଯୁକ୍ତି ପାଇଲେ ସେତେବେଳେ ଶିକ୍ଷାବିଭାଗର ଉପରିସ୍ଥିତ କର୍ମଚାରୀମାନେ ମଧ୍ୟ ତାଙ୍କୁ ଉତ୍ତମରୂପେ ଚିହ୍ନି ନଥିଲେ । ଏହି ନିଯୁକ୍ତି ପରେ ସ୍କୁଲ ଇନ୍‌ସପେକ୍ଟର ଶ୍ରୀ ଭୂଦେବ ମୁଖୋପାଧ୍ୟାୟ ଓଡ଼ିଶା ସ୍କୁଲ ସମୂହ ପରିଦର୍ଶନରେ ଆସିଥିଲେ । ପ୍ରଥମେ ପ୍ରଥମେ ସେ ରାଧାନାଥଙ୍କୁ ମନେ ମନେ କିଞ୍ଚିତ ଅବଜ୍ଞା କରୁଥିଲେ କିନ୍ତୁ କେତେଦିନ ତାଙ୍କ ସାହଚର୍ଯ୍ୟରେ ଆସିବାରୁ ତାଙ୍କର ବ୍ୟକ୍ତିତ୍ୱର ଗୌରବ ହୃଦୟଙ୍ଗମ କଲେ ।

ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ରହି ଓଡ଼ିଶା ଶିକ୍ଷାବିଭାଗର ଯେଉଁ ଉନ୍ନତି କରିଥିଲେ ତାର ଏକ ପ୍ରଶଂସା-ନିବନ୍ଧ ରାଧାନାଥଙ୍କ ଗୁରୁପ୍ରତିମ ଭୂଦେବ ମୁଖାର୍ଜୀଙ୍କ "ଏଡୁକେଶନ ଗେଜେଟ୍"ରେ ବଙ୍ଗ ଭାଷାରେ ପ୍ରକାଶିତ ହୋଇଥିଲା । ଏହି ନିବନ୍ଧର ଅନୁରୂପ ସୁପାରିଶ୍ ହିଁ ହୋଇଥିବା ଅନୁମାନ କରାଯାଏ ।

ନିବନ୍ଧର ନାମ ଥିଲା—"ବାବୁ ରାଧାନାଥ ରାୟ ଓ ଓଡ଼ିଶାର ଶିକ୍ଷା ବିଭାଗ"—ତା ୩୧ ଶେଷ ଶ୍ରାବଣ ୧୨୮୭ ସାଲ । (ଅନୁବାଦ) "ଶୀର୍ଷାଙ୍କିତ ମହାତ୍ମା ଓଡ଼ିଶାର ଶିକ୍ଷା ବିଭାଗର ଉଚ୍ଚତର ଆସନରେ (ଜଏଣ୍ଟ ଇନ୍‌ସ୍ପେକ୍ଟରର ପଦରେ) ଆସିନ ରହି ଦେଶ ଓ ଶିକ୍ଷା ବିଭାଗକୁ ଅତ୍ୟୁଜ୍ଜ୍ୱଳ କରିଛନ୍ତି । ରାଧାନାଥ ବାବୁଙ୍କ ଭଳି ସଦ୍‌ବିଦ୍ୱାନ ଏବଂ ବହୁଦର୍ଶୀବ୍ୟକ୍ତି ଓଡ଼ିଶାରେ ନିତାନ୍ତ ଅଳ୍ପ ଅଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ପୁଣି ସୁଶୀଳତା, ନମ୍ରତା ଓ ଶିଷ୍ଟଭାଷିତା ପ୍ରଭୃତି ସଦ୍‌ଗୁଣାବଳୀର ଆଧାର, ଏକାଧାରରେ ଏତେ ଗୁଣର

ସମାବେଶ ଅଧିକ ଦୃଷ୍ଟ ହୁଏ ନାହିଁ । ତାଙ୍କର ସଦ୍‌ଗୁଣ ଓ ଦକ୍ଷତା ଅନିର୍ବଚନୀୟ । ଯେ ଥରେମାତ୍ର ଆଳାପ କରିଛନ୍ତି, ସେ ଆମ୍ଭର ଏହି ଉକ୍ତିକୁ ସ୍ପଷ୍ଟୋକ୍ତି ବର୍ଜ୍ଜିତ ମନେ କରିବେ ।

"ରାଧାନାଥ ବାବୁ ଅନେକ ଦିନ ଶିକ୍ଷାବିଭାଗରେ ଯୋଗ୍ୟତା ସହିତ କାର୍ଯ୍ୟ ନିର୍ବାହ କରି ଉଚ୍ଚପଦସ୍ଥ ମହୋଦୟମାନଙ୍କର ନିକଟରେ ବିଶେଷ ସୁଖ୍ୟାତି ଲାଭ କରି ନ୍ୟାଯ୍ୟ ପ୍ରାପ୍ୟ ଉଚ୍ଚତର ଆସନ (ଜଏଣ୍ଟ ଇନ୍‌ସ୍ପେକ୍ଟର) ପ୍ରାପ୍ତ ହୋଇଛନ୍ତି । ତାଙ୍କର ଏହି ଉଚ୍ଚପଦରେ ଅଧିଷ୍ଠିତ ହେବା ଅବଧି ଓଡ଼ିଶାର ଶିକ୍ଷା ବିଭାଗର ଯେପରି ସମୋନ୍ନତି ଲକ୍ଷିତ ହେଉଛି, ଏଭଳି କେବେ ହୋଇଥିଲା କି ନାହିଁ, ଏଗାର ବର୍ଷ ଭିତରେ ଆମ୍ଭର ସ୍ମରଣ ହେଉନାହିଁ । ରାଧାନାଥ ବାବୁ କେବଳ ଅଧୀନସ୍ଥ ତତ୍ତ୍ୱାବଧାରକମାନଙ୍କର ରିପୋର୍ଟ ପାଠ କରି କ୍ଷାନ୍ତ ରହନ୍ତି ନାହିଁ । ଅଥବା କଚେରୀ ଗମନ କରି ବିଲ୍ ପାସ୍ ଇତ୍ୟାଦି କାର୍ଯ୍ୟ ନିର୍ବାହ କରିବାକୁ ବସାକୁ ପ୍ରତ୍ୟାଗତ ହୋଇ ଚିନ୍ତାନ୍ତରେ ପ୍ରବୃତ୍ତ ରହୁ ନଥିଲେ । ଏଭଳି ଦିନ ଅଥବା ଏ ଭଳି ସମୟ ନାହିଁ, ଯେଉଁଦିନ ରାଧାନାଥ ଶିକ୍ଷାବିଭାଗର ପ୍ରକୃତ ଉନ୍ନତିର ଉପାୟ ଚିନ୍ତନରେ ପ୍ରବୃତ୍ତ ନ ହୋଇ ସମୟଯାପନ କରିଅଛନ୍ତି । ସେ ଉତ୍କଳ ଭାଷାରେ ଅନେକଗୁଡ଼ିଏ ପୁସ୍ତକ ଲେଖି ଓଡ଼ିଆଭାଷାର ଗତି ବଦଳାଇ ଦେଇଛନ୍ତି । ରାଧାନାଥବାବୁଙ୍କୁ ଓଡ଼ିଶାର "ବିଦ୍ୟାସାଗର" କହିଲେ ଅସଙ୍ଗତ ହେବ ନାହିଁ । ସେ ପୁଣି ଜଣେ ଉତ୍ତମ କବି । ଓଡ଼ିଆ ଓ ବଙ୍ଗଳାରେ କେତେଖଣ୍ଡି କାବ୍ୟ-ଲେଖି ସୁଧାବର୍ଷଣ କରିଛନ୍ତି । ତାଙ୍କର ବଙ୍ଗଳା କବିତା-ଗୁଡ଼ିକୁ ଭୂତପୂର୍ବ "ବଙ୍ଗଦର୍ଶନ" ସମ୍ପାଦକ ବଙ୍କିମବାବୁ ସୁଦ୍ଧା ପ୍ରଶଂସା କରିଛନ୍ତି । ସେ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଜମିଦାର ଓ ଧନୀ, ସମ୍ଭ୍ରାନ୍ତବ୍ୟକ୍ତିମାନଙ୍କୁ ଉତ୍ସାହିତ କରି ପୁରସ୍କାରର ବ୍ୟବସ୍ଥା

କରି ଅଧୀନସ୍ଥ ତାବତ୍ କର୍ମଚାରୀ ଓ ସ୍କୁଲ ବାଳକମାନଙ୍କୁ ଏକ ପ୍ରକାର ଅଭୂତପୂର୍ବ ଉତ୍ସାହରେ ଉତ୍ସାହିତ କରିଅଛନ୍ତି । ତାଙ୍କ ଭଳି ଅଧୀନସ୍ଥ କର୍ମଚାରୀମାନଙ୍କ ପ୍ରତି, ସେମାନଙ୍କର ଉନ୍ନତି ପ୍ରତି ସୁଦୃଷ୍ଟି ରଖି ସଦ୍‌ବ୍ୟବହାର କରିବା ଶିକ୍ଷାବିଭାଗର ଅଳ୍ପଲୋକଙ୍କୁ ହିଁ ଦେଖାଯାଏ । ଏଲ୍.ଏ, ଏଣ୍ଟ୍ରାନ୍ସ ଓ ଛାତ୍ରବୃତ୍ତିରେ ଯେଉଁ ବାଳକ ସର୍ବ ପ୍ରଥମ ହେବ ସେ ଏତେ ଟଙ୍କା ଅଥବା ମୂଲ୍ୟବାନ ପଦାର୍ଥ ପୁରସ୍କାର ପାଇବ ଏବଂ ଶିକ୍ଷକମାନେ ମଧ୍ୟ ଯଥା ବିହିତ ପୁରସ୍କୃତ ହେବେ, ରାଧାନାଥବାବୁ ଗତବର୍ଷଠାରୁ ଏହି ପ୍ରକାର ଉତ୍ସାହ ପ୍ରଥା ପ୍ରବର୍ତ୍ତିତ କରିବାରୁ ଶିକ୍ଷୋନ୍ନତିର ସ୍ରୋତ ପ୍ରବାହିତ ହେଉଅଛି । ତାଙ୍କ ସମୟରେ ଛାତ୍ରବୃତ୍ତି ପରୀକ୍ଷାରେ ୧ମ ଓ ୨ୟ ଶ୍ରେଣୀରେ ଯେତେ ବାଳକ ଉତ୍ତୀର୍ଣ୍ଣ ହୋଇଛନ୍ତି, ଅନ୍ୟକେବେ ସେପରି ହୋଇଅଛି କି ନାହିଁ, ସ୍ମରଣ ହେଉନାହିଁ । ଶିକ୍ଷାବିଭାଗରେ ଅନେକ କର୍ମଚାରୀ ରହିଛନ୍ତି । କିନ୍ତୁ ରାଧାନାଥ ବାବୁଙ୍କ ପରି ପ୍ରଗାଢ଼ ଓ ଆନ୍ତରିକ ଯତ୍ନ କରିବାରେ ଅଳ୍ପଲୋକଙ୍କୁ ହିଁ ଦେଖିବାକୁ ମିଳେ । ମାନ୍ୟତମ ଗୁଣଗ୍ରାହୀ ଭୂଦେବ ବାବୁ ସମ୍ପ୍ରତି ଓଡ଼ିଶାକୁ ଆଗମନ କରି ରାଧାନାଥବାବୁଙ୍କ କାର୍ଯ୍ୟ ଦକ୍ଷତା ଓ ଉପଯୁକ୍ତତାର ବିଷୟ ଉତ୍ତମରୂପେ ହୃଦୟଙ୍ଗମ କରି ଯାଇଅଛନ୍ତି । ସମ୍ପ୍ରତି ବାଲେଶ୍ୱର ଇଂରାଜୀ ସ୍କୁଲର ବାର୍ଷିକ ପାରିତୋଷିକ ବିତରଣ ସମୟରେ ବାଲେଶ୍ୱର ଜଏଣ୍ଟ ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ହ୍ୱଇଟ୍‌ମୋର ସାହେବ ଛାତ୍ରମାନଙ୍କୁ ଉଦ୍ଦେଶ୍ୟକରି କହିଛନ୍ତି—"ଛାତ୍ରମାନେ, ରାଧାନାଥ ବାବୁଙ୍କ ଆଦର୍ଶ କରି ଭବିଷ୍ୟତରେ ଗୋଟିଏ ଗୋଟିଏ ରାଧାନାଥ ହେବାର ଚେଷ୍ଟା କର ।" × ×

ଚନ୍ଦ୍ରମୋହନ ମହାରଣା ଲେଖିଛନ୍ତି—"ରାଧାନାଥଙ୍କ ପ୍ରତି ସେ (ଭୂଦେବ ବାବୁ) ପ୍ରଥମେ ମନେ ମନେ କିଞ୍ଚିତ ଅବଜ୍ଞା ପୋଷଣ

କରୁଥିଲେ । ମାତ୍ର କତିପୟ ଦିବସରେ ମଣିର ମୂଲ୍ୟ ଜାଣିପାରି ସେ ତାଙ୍କ ପ୍ରତି ଅତିଶୟ ଅନୁରାଗବାନ୍ ହେଲେ । ଏହି ଅନୁରାଗ ଚୁମ୍ବକ-ବତ୍ ରାଧାନାଥଙ୍କର ଭକ୍ତି ଆକର୍ଷଣ କଲା । ଏହି ମନୋହର ଅନ୍ୟୋନ୍ୟ ସମ୍ବନ୍ଧ ଚିରସ୍ଥାୟୀ ହେଲା । ଓଡ଼ିଶାର ସାଧାରଣ ଶିକ୍ଷାରେ ସେ ଯେଉଁ ମହତ୍ ପରିବର୍ତ୍ତନ କଲେ, ସେଥିପାଇଁ ତାଙ୍କଠାରେ ଏ ପ୍ରଦେଶ ଚିର ଋଣୀ । × ×” ଉତ୍କଳ ସାହିତ୍ୟ (ଫାଲ୍‌ଗୁନ-ଚୈତ୍ର ୧୩୧୫)—“ପରଲୋକଗତ ରାଧାନାଥ ।”

## ରଚନା ପାଇଁ ପୁରସ୍କାରପ୍ରାପ୍ତି

ମୟୂରଭଞ୍ଜର “ଉତ୍କଳ ପ୍ରଭା” ପତ୍ରିକାରେ ରାଧାନାଥଙ୍କ “ଚିଲିକା” ଓ “ମହାଯାତ୍ରା” ପ୍ରକାଶ ପାଇଥିଲା । ସେତେବେଳେ ମୟୂରଭଞ୍ଜର ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଲେଖକମାନଙ୍କୁ ଉତ୍ସାହିତ କରିବା ନିମନ୍ତେ “ଉତ୍କଳ ପ୍ରଭା”ରେ ପ୍ରକାଶିତ ଉଚ୍ଚ କୋଟିର ଲେଖା ପାଇଁ ପୁରସ୍କାର ଦେବା ଘୋଷଣା କରିଥିଲେ । “ଉତ୍କଳ ପ୍ରଭା”ର ଲେଖକମାନଙ୍କ ଭିତରୁ ଗୋବିନ୍ଦଚନ୍ଦ୍ର ମହାପାତ୍ର, ଶିବନାରାୟଣ ନାୟକ, ଗଣପତି ଦାସ, ଗଙ୍ଗାଧର ମେହେର, ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର ପ୍ରଭୃତି ବିଶିଷ୍ଟ ଲେଖକମାନେ ପୁରସ୍କାର ପାଇଥିଲେ । ରାଧାନାଥଙ୍କୁ ମଧ୍ୟ ଟ ୨୦୦୲ ପୁରସ୍କାର ମିଳିଥିଲା ।

## କଟକରେ ସ୍ୱଗୃହ ନିର୍ମାଣ

କଟକ ସହରଠାରେ ଭଡ଼ାଘରେ ପ୍ରାୟ ପନ୍ଦର ଷୋଳବର୍ଷ ରହି ସାରିବା ପରେ ରାଧାନାଥ ନିଜର ଖଣ୍ଡେ ଘର ତିଆରି କରିବା ଇଚ୍ଛା କରି କାଳୀଗଳିରେ ସ୍ଥାନ ଖଣ୍ଡିଏ କିଣିଲେ । ଯେଉଁ ଗଳିରେ

ବର୍ତ୍ତମାନ ରାଧାନାଥବାବୁଙ୍କ ଘରଟି ଅଛି ତାକୁ ପୂର୍ବେ ମହଲଗଳି କୁହାଯାଉଥିଲା । ଏହି ଭୂମିରେ ପୂର୍ବେ ଟାଉନ୍ ସ୍କୁଲ (ଭଲ୍ଟୋରିଆ ସ୍କୁଲ) ଗୋଟିଏ ପ୍ରକାଣ୍ଡ ଖୁଲଘରେ ବସୁଥିଲା । ଘରପୋଡ଼ିରେ ଏହି ସ୍କୁଲଟି ନଷ୍ଟ ହୋଇଯିବାରୁ ନୂତନ ସ୍ଥାନ (ଖଟବିନ୍ସାହି)କୁ ଉଠିଗଲା । ମଧୁସୂଦନ ରାଓଙ୍କ ଅନୁରୋଧକ୍ରମେ ରାଧାନାଥ ଏହି ଜମିଟି କ୍ରୟ କରି ଘର ତିଆରି କରିଥିଲେ । ୧୮୯୩ରେ ଘର ତିଆରି ସମ୍ପୂର୍ଣ୍ଣ ହେଲା ଏବଂ ରାଧାନାଥ ଏଠାରେ ଆସି ରହିଲେ । ମଧୁସୂଦନ ରାଓ ଏହାଙ୍କ ପଡ଼ୋଶୀ ଥିଲେ ।

## "ଇନ୍ଦ୍ରଧନୁ"– "ବିଜୁଳି" ବିବାଦ

ଖ୍ରୀ ୧୮୯୩ରେ ଓଡ଼ିଆ ସାହିତ୍ୟ ଆକାଶରେ "ଇନ୍ଦ୍ରଧନୁ" ଓ "ବିଜୁଳି" ପ୍ରକାଶ ପାଇ ଯେଉଁ ଚମକ ଦେଖାଇଥିଲେ ତାହା ଓଡ଼ିଶାର ଲୋକେ ଭୁଲିବାର ନୁହେଁ । ଯାହା ନ ହେବାର କଥା ତାହା ହୋଇଥିଲା । ଗୋଟିଏ ସାମାନ୍ୟ ବିଷୟ ନେଇ ଯୁକ୍ତିତର୍କ ଆରମ୍ଭ ହୋଇଯିବାରୁ ସାହିତ୍ୟିକ ଓ ସାହିତ୍ୟପ୍ରେମିଙ୍କ ଭିତରେ ଦୁଇଦଳ ଦେଖାଦେଲେ । ରାଧାନାଥ ଓ ଉପେନ୍ଦ୍ର ଭଞ୍ଜଙ୍କୁ କେନ୍ଦ୍ର କରି ବହୁ ଯୁକ୍ତିତର୍କ ବାକ୍‌ବିତଣ୍ଡା ଓଡ଼ିଶାର ଖବରକାଗଜମାନଙ୍କରେ ପ୍ରକାଶ ପାଇଲା । ଉପେନ୍ଦ୍ର ଭଞ୍ଜଙ୍କଠାରୁ ରାଧାନାଥ ବଡ଼ ବୋଲି ପ୍ରତିପାଦନ କରିବା ପାଇଁ ଦଳେ ସାହିତ୍ୟିକ ବାହାରିଲେ । ଏମାନଙ୍କ ମତକୁ ଅନ୍ୟ ଏକ ଦଳ ବିରୋଧ କଲେ ।

ଏହାର ଆରମ୍ଭ ଏକ ସାମାନ୍ୟ ଘଟଣାରୁ ହୋଇଥିଲା । ୧୮୯୨ରେ ସ୍କୁଲ ଡେପୁଟି ଇନ୍‌ସପେକ୍ଟର ଶ୍ରୀ ପ୍ୟାରୀମୋହନ ସେନ ଗୋଟିଏ ପ୍ରାଇମେରି ସ୍କୁଲରେ ଛାତ୍ରମାନଙ୍କୁ ଉପେନ୍ଦ୍ର ଭଞ୍ଜଙ୍କର କେତେ ଖଣ୍ଡ ବହି ଉପହାର ଦେଇଥିଲେ । ଏହାକୁ ଲକ୍ଷ୍ୟ କରି

କଟକର ରେଭେନ୍‌ସା ବାଳିକା ବିଦ୍ୟାଳୟର ହେଡ୍‌ପଣ୍ଡିତ ଲାଲା ରାମନାରାୟଣ ରାୟ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କ ପୃଷ୍ଠପୋଷକତାରେ ପ୍ରକାଶ ପାଉଥିବା "ଉତ୍କଳପ୍ରଭା" ପତ୍ରିକାରେ ସମାଲୋଚନା କଲେ । ଏହା ସହିତ ଭଞ୍ଜଙ୍କ ସାହିତ୍ୟ ନିକୃଷ୍ଟ ଧରଣର ଥିବାର ମଧ୍ୟ ଯୁକ୍ତି ଦେଖାଇଲେ ।

ଲାଲାଙ୍କ ତୀବ୍ର ଓ ଅଯଥା ସମାଲୋଚନାରେ ମର୍ମାହତ ହୋଇ କଟକର ଗୌରୀଶଙ୍କର ପ୍ରଭୃତି "ଉତ୍କଳଦୀପିକା"ରେ ଏହାର ତୀବ୍ର ପ୍ରତିବାଦ କଲେ । ଏହି ବାଦବିବାଦ ଏତେ ଉତ୍କଟ ଓ ଉଗ୍ର ମୂର୍ତ୍ତି ଧାରଣ କଲା ଯେ, ପ୍ରଭା ଓ ଦୀପିକାକୁ ଛାଡ଼ି କେବଳ ଏଥିପାଇଁ ଦୁଇଟି ସ୍ୱତନ୍ତ୍ର ପତ୍ରିକା ପ୍ରକାଶ ପାଇଲା । ଉପେନ୍ଦ୍ରଙ୍କ ଅପେକ୍ଷା ରାଧାନାଥ ବଡ଼ ବୋଲି ପ୍ରତିପାଦନ କରିବାପାଇଁ ବାମଣ୍ଡାର ରାଜା ସୁଢ଼ଳଦେବଙ୍କ ପୃଷ୍ଠପୋଷକତାରେ "ଇନ୍ଦ୍ରଧନୁ" ପ୍ରକାଶ ପାଇଲା । ଏବଂ "ଉତ୍କଳଦୀପିକା"ର ପୃଷ୍ଠପୋଷକତାରେ କଟକରୁ "ଇନ୍ଦ୍ରଧନୁ" ପ୍ରକାଶ ପାଇ ଉପେନ୍ଦ୍ରଙ୍କ ପରିସମାନ କବି ବର୍ତ୍ତମାନ ସୁଦ୍ଧା ଉତ୍କଳରେ ଜନ୍ମ ହୋଇ ନାହାନ୍ତି ବୋଲି ଯୁକ୍ତିବାଦ ପ୍ରଚାର କଲେ । ଏ ଯୁକ୍ତିତର୍କ ଶେଷକୁ ବ୍ୟକ୍ତିଗତ କୁତ୍ସାରଟନାରେ ପରିଣତ ହେଲା । ଏହି ସମୟରେ ରାଧାନାଥ ବହୁଦିନ ପାଟି ନଫିଟାଇ ତାଙ୍କୁ କେନ୍ଦ୍ର କରି ଯେଉଁ ତୀବ୍ର ବିଷପୂର୍ଣ୍ଣ ବିବାଦ ଦେଶରେ ବ୍ୟାପି ଜାତିର ଜୀବନକୁ କଳୁଷିତ କରୁଥିଲା ତାକୁ ବୃଦ୍ଧି ପାଇବା ପାଇଁ ଅବକାଶ ଦେଉଥିବାରୁ ବହୁ ନିରପେକ୍ଷ ବ୍ୟକ୍ତିଙ୍କ ମନରେ ରାଧାନାଥଙ୍କ ପ୍ରତି ଘୃଣାଭାବ ଜନ୍ମିଥିଲା ଏବଂ ସେ ଭିତରେ ପ୍ରଶଂସା ଲୋଡ଼ୁଥିଲେ ମଧ୍ୟ ବାହାରେ ତାର ବିପରୀତ ଆଚରଣ କରୁଥିଲେ ବୋଲି ସେମାନେ ମତ ବ୍ୟକ୍ତ କରୁଥିଲେ । ଯଦି ସେ ତାଙ୍କୁ କେନ୍ଦ୍ର କରି ଏଭଳି ସମାଲୋଚନା-ଯୁଦ୍ଧ ଚାଲିବା ଉଚିତ ନୁହେଁ ବୋଲି ମୂଳରୁ ସତର୍କ

କରି ଦେଇଥାଆନ୍ତେ ତାହାହେଲେ ଏଭଳି କଳୁଷିତ ବ୍ୟାପାର ଘଟିନଥାଆନ୍ତା । ଅବସ୍ଥା ବେଶି ଦୂର ଅଗ୍ରସର ହୋଇଯିବାରୁ ଏବଂ ଲୋକଙ୍କ ମନୋଭାବ ତିକ୍ତ ହୋଇଉଠିବାରୁ ରାଧାନାଥ ବାଲେଶ୍ୱରର "ନବସମ୍ବାଦ" ପତ୍ରିକାରେ ସେ ଜଣେ ଭଞ୍ଜଙ୍କ ଭକ୍ତ ବୋଲି ପ୍ରକାଶ କଲେ । ଏହା ପରେ ଏ ବିବାଦର ଶେଷ ହୋଇଥିଲା ।

## ବାଲେଶ୍ୱରର ଗୃହ

ବାଲେଶ୍ୱର ସହରରେ ବହୁ ଅର୍ଥ ବ୍ୟୟ କରି ଗୋଟିଏ ବୃହତ୍ ଗୃହ ରାଧାନାଥ ନିର୍ମାଣ କରିଥିଲେ । ସେ ଗୃହଟି ୧୮୯୪ରେ ଅଗ୍ନିଦ୍ୱାରା ଭସ୍ମିଭୂତ ହୋଇଯିବାରୁ ରାଧାନାଥ ଦୁଃଖିତ ହେବା ସଙ୍ଗେ ସଙ୍ଗେ ତାଙ୍କ ଇଚ୍ଛା ବିରୁଦ୍ଧରେ ଏପରି ବିରାଟ ଗୃହ ବାଲେଶ୍ୱରରେ ନିର୍ମାଣ କରିବା ଅନୁଚିତ ବୋଲି ମତବ୍ୟକ୍ତ କରିଥିଲେ । ଅବଶ୍ୟ, ସେ ଏଥିରେ ବିଚଳିତ ହୋଇ ପଡ଼ିନଥିଲେ । ଆର୍ଥିକ କ୍ଷତିକୁ ସେ ଦାର୍ଶନିକସୁଲଭ ରୀତିରେ ଗ୍ରହଣ କରିଥିଲେ । ଗୃହଦାହ ଏକ ପ୍ରତ୍ୟାହ୍ୱିକ ଦୁର୍ଘଟନା ଏବଂ ଅନ୍ୟମାନେ ମଧ୍ୟ ଏପରି ଦୁର୍ଦ୍ଦଶାରେ ପଡ଼ି ଦୁଃଖଭୋଗ କରୁଛନ୍ତି । ସେ ଶଶିଭୂଷଣଙ୍କଠାକୁ ଲେଖିଥିଲେ, "ତୁମେ ଜାଣ, ମୁଁ ମୂଳରୁ ବାଲେଶ୍ୱରରେ ଏତେ ବଡ଼ ଘର ତୋଳିବା ଚିନ୍ତାକୁ ବିରୋଧ କରୁଥିଲି । ମୋର ମନରେ ଏହି ଆଶଙ୍କା ହୋଇଥିଲା ଯେ, ବର୍ତ୍ତମାନ ହେଉ ବା ନିକଟ ଭବିଷ୍ୟତରେ ହେଉ ଏହା ଯୋଗୁ ଆମକୁ ଦୁଃଖ ଭୋଗ କରିବାକୁ ହେବ ଏବଂ ମୁଁ ଯାହା ଭୟ କରିଥିଲି ତାହା ବର୍ତ୍ତମାନ ଘଟିଗଲା ।" ପୁଅ କାଳେ ଏଥିରେ ବିଚଳିତ ହୋଇଯିବେ ଏହି ଉଦ୍ଦେଶ୍ୟରେ ସେ ବୋଧ ଦେଇ ଲେଖିଥିଲେ, "ତୁମ୍ଭେ ଏହି ଦୁଃଖ ସମ୍ବାଦରେ ଏକାବେଳକେ ବିଚଳିତ ହୋଇପଡ଼ ନାହିଁ । ଗୋଟିଏ କ୍ଷୁଦ୍ର କ୍ଷତି ଦ୍ୱାରା ବୃହତ୍ କ୍ଷତିରୁ ରକ୍ଷା ପାଇଲେ ବୋଲି ଭାବି ମନକୁ

ସାନ୍ତ୍ୱନା ଦିଅ ।" (ବାଟଲେଶ୍ବରରୁ ରାଧାନାଥଙ୍କ ଚିଠି । ୨୭।୩।୯୪ ଇଂରେଜୀରୁ ମର୍ମାନୁବାଦ)

## ମହାଯାତ୍ରା

୧୮୯୭ରେ "ମହାଯାତ୍ରା"ର ପ୍ରଥମ ଭାଗ ପ୍ରକାଶିତ ହେଲା । କନକା ରାଜମାତା (ସ୍ୱର୍ଗୀୟ ରାଜେନ୍ଦ୍ରନାରାୟଣ ଭଞ୍ଜଙ୍କ ମାତା)ଙ୍କ ଆର୍ଥିକାନୁକୂଲ୍ୟରେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ଓଡ଼ିଶାର କମିସନର ରମେଶଚନ୍ଦ୍ର ଦତ୍ତ, ସି. ଆଇ. ଇ., ଆଇ. ସି. ଏସ୍‌ଙ୍କ ନାମରେ ଏହା ଉତ୍ସର୍ଗ କରାଯାଇଥିଲା । ଗ୍ରନ୍ଥର ମୁଖବନ୍ଧ ଲେଖି-ଥିଲେ ମଧୁସୂଦନ ରାଓ । ଏହାର ଏକ ତୀବ୍ର ସମାଲୋଚନା "ସମାଲୋଚନା" ନାମରେ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶ ପାଇଥିଲା ।

## ରାୟ ବାହାଦୁର ଉପାଧି ଲାଭ

ମହାରାଣୀ ଭିକ୍ଟୋରିଆଙ୍କ ହୀରକ ଜୁବିଲି ଉପଲକ୍ଷେ ୧୮୯୭ରେ ରାଧାନାଥ "ରାୟ ବାହାଦୁର" ପଦବୀ ସରକାରଙ୍କଠାରୁ ପାଇଥିଲେ । ସେ ସମୟରେ ରାୟ ବାହାଦୁର ପଦବୀ ସରକାରଙ୍କଠାରୁ ମିଳିବା କିଛି କମ୍ କଷ୍ଟକର ବିଷୟ ନଥିଲା । ରାଧାନାଥଙ୍କ ପାଣ୍ଡିତ୍ୟ କ୍ଷେତ୍ରରେ ପ୍ରତିଭା ସହିତ ପୂର୍ବରୁ ଓଡ଼ିଶାରେ ଓ ଓଡ଼ିଶା ବାହାରେ ବଙ୍ଗ ଦେଶରେ ଶିକ୍ଷିତ, ସମ୍ଭ୍ରାନ୍ତ ଓ ରାଜକର୍ମଚାରୀ ଗୋଷ୍ଠୀ ପରିଚିତ ଥିଲେ । ଓଡ଼ିଶାର ଗୋରା କର୍ମଚାରୀମାନେ ମଧ୍ୟ ତାଙ୍କର ସଦଗୁଣା-ବଳୀରେ ମୁଗ୍ଧ ଥିଲେ । ତତ୍କାଳୀନ ଓଡ଼ିଶା ଡିଭିଜନ୍‌ର କମିସନର୍ ସୁସାହିତ୍ୟିକ ରମେଶଚନ୍ଦ୍ର ଦତ୍ତ ରାଧାନାଥଙ୍କୁ ସୁଖ ପାଉଥିଲେ ଏବଂ ଅନ୍ତରଙ୍ଗ ବନ୍ଧୁତୁଲ୍ୟ ବ୍ୟବହାର କରୁଥିଲେ । ହୀରକ ଜୁବିଲିରେ ରାଧାନାଥ ବୟସ ପ୍ରାୟ ୫୦ ବର୍ଷ ବୟସରେ "ରାୟ ବାହାଦୁର" ପଦବୀ ପ୍ରାପ୍ତ ହେବା କିଛି ଅଯଥା କଥା ନୁହେଁ କି ଅପାତ୍ରରେ ଦାନ ନୁହେଁ ।

କିନ୍ତୁ ଏ ଉପାଧିଦ୍ୱାରା ସେ ଗର୍ବ ଅନୁଭବ କରୁନଥିଲେ । ଏହାକୁ ସେ କିପରି ହେୟ ଭାବରେ ଦେଖିଥିଲେ ତାହା ତାଙ୍କର ଏକ ଚିଠିରୁ ଜଣାଯାଏ ।

"ମୋ ଦେହରେ ରାୟ ବାହାଦୁର ସମ୍ମାନ ବୋଜା ହେଲା । ଏ ସମ୍ମାନ ପାଇଁ ପ୍ରାର୍ଥୀ ହେବାର ସ୍ୱପ୍ନ ସୁଦ୍ଧା ମୁଁ କେବେ ଦେଖି ନଥିଲି ଏବଂ ଏ ସମ୍ମାନ ଲାଭ ଦ୍ୱାରା ମୁଁ ଓ କଟକର ସର୍ବସାଧାରଣ ଆଚମ୍ବିତ ହୋଇଅଛୁଁ । ସହସ୍ର ସହସ୍ର ବ୍ୟକ୍ତି ଏଥିପାଇଁ ହାଲିଁପାଇଁ ହେଉଛନ୍ତି; ସେମାନଙ୍କ ପକ୍ଷରେ ଏହା ଆଦରର ବସ୍ତୁ ହୋଇ ଥାଆନ୍ତା । ଏହି ଉପଲକ୍ଷରେ ପ୍ରଚଳିତ ରୀତି ଅନୁସାରେ ମୋ ଉପରେ ନାନାଦିଗରୁ ଆନନ୍ଦପ୍ରକାଶକ ପତ୍ରମାନ ଅଜାଡ଼ି ହୋଇ ପଡ଼ୁଅଛି । ଏ ଫମ୍ପା ଉପାଧି ଭଳି ଏ ପତ୍ରମାନଙ୍କ ମଧ୍ୟରୁ କେତେକ କେବଳ ଫମ୍ପା ଓ ଆନ୍ତରିକତାହୀନ । ତୁମ୍ଭେ ବିଶ୍ୱାସ କରିବ କି, ମୋ ପ୍ରତି ଅନ୍ୟାୟ କୁତ୍ସାମୟ ବ୍ୟକ୍ତିଗତ ଆକ୍ରମଣରେ ପୂର୍ଣ୍ଣ "ସମାଲୋଚନା" ପୁସ୍ତିକାର ପୃଷ୍ଠପୋଷକ ଓ ପ୍ରକାଶକ ବାବୁ × ଦାସ ମହୋଦୟ ମୋ ନିକଟକୁ ଟେଲିଗ୍ରାମ ପଠାଇ ଆନନ୍ଦ ପ୍ରକାଶ କରିଅଛନ୍ତି ? କପଟୀ ଓ ଖଳ ଦୁନିଆର ଏତାଦୃଶ ରୀତି ଅଟେ । ଏ ଅନ୍ତଃସାରଶୂନ୍ୟ ଉପାଧିମାନଙ୍କୁ ମୁଁ କିପରି ମୂଲ୍ୟବାନ୍ ବୋଲି ଭାବେଁ, ତାହା ତୁମ୍ଭଙ୍କୁ ଜଣା । ଆମ ଭଳି ହୀନ ଅବସ୍ଥାପନ୍ନ ବ୍ୟକ୍ତିଙ୍କ ପକ୍ଷରେ ଏହା ଅତ୍ୟଧିକ ବ୍ୟୟସାପେକ୍ଷ । ଏ ସମ୍ମାନକୁ ପ୍ରତ୍ୟାଖ୍ୟାନ କରିବା ପାଇଁ ମୋ ମନ ଭାରି ହାଇଁପାଇଁ ହେଉଛି; କିନ୍ତୁ ସରକାରୀ ଚାକିରିଆ ଥିବାରୁ ମୁଁ ତାହା କରିପାରୁନାହିଁ । କଟକର ଓକିଲମାନଙ୍କ ମଧ୍ୟରେ ଚତୁର-ଶିରୋମଣି ବାବୁ ନରେନ୍ଦ୍ରନାଥ ସରକାର ଏ ଉପଲକ୍ଷରେ ମୋ ସମ୍ବନ୍ଧରେ ଠିକ୍ ଖାପ ଖାଇବା ଭଳି ମତ ପ୍ରକାଶ କରିଛନ୍ତି । "ଏ ଲୋକଟିର ଯାହା ଅଛି,

ତାହା ତ ଏ ଲୁଚାଇବାକୁ ଚାହିଁ । ଏହାଙ୍କ ଉପରେ ପୁଣି ରାୟ ବାହାଦୁର ପଦ ଅଜାଡ଼ି ଦେଲେ କିଆଁ ? (ଇଂରେଜୀର ଅନୁବାଦ ରା.ଜୀ.ପୃ ୨୭୫-୨୭୭। ରାଧାନାଥ ତାଙ୍କ ପୁତ୍ର ଶଶିଭୂଷଣ ମଧୂ)ଙ୍କ ପାଖକୁ ଦେଇଥିବା ଇଂରେଜୀ ଚିଠି")। ଏହି ଚିଠିରେ ଯେଉଁ "ସମାଲୋଚନା" ପୁସ୍ତିକାର ଉଲ୍ଲେଖ ଅଛି ତାହା ରାଧାନାଥଙ୍କ "ମହାଯାତ୍ରା "ପ୍ରକାଶ ପାଇବା ପରେ ଜଣେ କେହି ଦାସ (ଗୋପାଳବଲ୍ଲଭ ଦାସ କି ?) ତୀବ୍ର ସମାଲୋଚନା କରି ଲେଖିଥିଲେ ।

ଏହି ଉପାଧି ପାଇବା ମାତ୍ରେ ବହୁ ସ୍ଥାନରୁ ଅଭିନନ୍ଦନବାର୍ତ୍ତା ଆସି ରାଧାନାଥଙ୍କ ପାଖରେ ପହଞ୍ଚିଥିଲା । ସେଥିଭିତରେ ପୁଣି ତାଙ୍କୁ ଯେ ତୀବ୍ର ସମାଲୋଚନା କରିଥିଲେ ସେ ତାର କରି ଅଭି-ନନ୍ଦନ ଜଣାଇଥିଲେ । ସ୍ୱାର୍ଥରକ୍ଷା ପାଇଁ କେତେଜଣ ଏପରି କରି ଥାଆନ୍ତି, ଏଥିରେ ଆନ୍ତରିକତା ନଥାଏ । ଏହି କଥାକୁ ଲକ୍ଷ୍ୟକରି ରାଧାନାଥ ଉପାଧି ମିଳିବାମାତ୍ରେ ଯେଉଁ ଚିଠି ତାଙ୍କ ପୁତ୍ର ଶଶୀ ବାବୁଙ୍କଠାକୁ ଲେଖିଥିଲେ ସେଥିରେ ଏହା ବ୍ୟକ୍ତ କରିଛନ୍ତି ।

ବାମଣ୍ଡାରେ ଯୁବରାଜ ସଚ୍ଚିଦାନନ୍ଦ ଦେବଙ୍କ ସଭାପତିତ୍ୱରେ ଜୁଲାଇ ଚାରିଖ ୧୮୯୭ରେ ଏକ ସାଧାରଣ ସଭା ହୋଇ ଅଭିନନ୍ଦନ ଜ୍ଞାପନ କରାଯାଇଥିଲା । ଏହି ସଭାରେ ରାଧାନାଥଙ୍କ ଗୁଣାବଳୀ ସମ୍ବନ୍ଧରେ ବିଭିନ୍ନ ବକ୍ତାମାନେ ବ୍ୟକ୍ତ କରିଥିବା ଅଭିମତର ସାରାଂଶ ହେଉଛି :—

"ରାଧାନାଥ ପ୍ରଧାନତଃ ସଂସ୍କୃତ ଶିକ୍ଷାର ଉନ୍ନତିକଳ୍ପେ ଯତ୍ନ କରୁଥିବା ଏବଂ ସଂସ୍କୃତଜ୍ଞମାନଙ୍କୁ ପ୍ରୀତିଚକ୍ଷୁରେ ଦର୍ଶନ କରୁଥିବା ହେତୁ ତାଙ୍କପରି ବ୍ୟକ୍ତିଙ୍କର ରାଜସମ୍ମାନ ଲାଭ ବିଶେଷ ଆନନ୍ଦ-ଜନକ ।"

"ବାବୁ ରାଧାନାଥ ରାୟ ମହୋଦୟ ସ୍ୱୀୟ କବିତାରେ ସଂସ୍କୃତ ସାହିତ୍ୟର ସୁନ୍ଦର ସୁନ୍ଦର ଭାବ ଓ ଭାଷା ସନ୍ନିବେଶିତ କରି ଉତ୍କଳ ସାହିତ୍ୟର ଉନ୍ନତି ଓ ପରିପୁଷ୍ଟି ବିଷୟରେ ବିଶେଷ କାର୍ଯ୍ୟ କରି-ଥିବାରୁ ତାଙ୍କର ରାଜସମ୍ମାନ ଲାଭରେ ଉତ୍କଳବାସୀଙ୍କର ଆନନ୍ଦ ପ୍ରକାଶ କରିବା ଉଚିତ..."

ରାଧାନାଥ ରାୟଙ୍କ ଶିଷ୍ଟାଚାର, ନମ୍ରତା ଏବଂ ପାଣ୍ଡିତ୍ୟର ପ୍ରଶଂସା କରି ଜଣେ ବକ୍ତା କହିଥିଲେ, ଉତ୍କଳ ସାହିତ୍ୟରେ ନବନବ ଭାବ ସନ୍ନିବେଶିତ କରି ଓଡ଼ିଆ ସାହିତ୍ୟର ପରିପୁଷ୍ଟି ସାଧନ କରିଛନ୍ତି। ଏମନ୍ତ କି, ରାଧାନାଥ ଉତ୍କଳର ମାଇକେଲ୍ ମଧୁସୂଦନ ଦତ୍ତ। ସେ ରାଜକୀୟ ଉଚିତର ଉପାଧିଲାଭର ଉପଯୁକ୍ତ ପାତ୍ର ଏବଂ ତାଙ୍କର ବର୍ତ୍ତମାନ ଉପାଧି ଲାଭରେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ଥିବା ବ୍ୟକ୍ତ କରିଥିଲେ।

"କବିବର ଜଣେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତି। ସେ ଜାତିରେ ବଙ୍ଗାଳୀ ହେଲେ ସୁଦ୍ଧା ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେବାରେ ଗୌରବ ବୋଧ କରନ୍ତି, ଓଡ଼ିଆଙ୍କୁ ଓ ଓଡ଼ିଆ ସାହିତ୍ୟକୁ ସ୍ନେହ ଚକ୍ଷୁରେ ଦେଖନ୍ତି। ସେ ସର୍ବଜନସୁପାଠ୍ୟ ସୁଭାବପୂର୍ଣ୍ଣ ସତ୍‌ସାହିତ୍ୟ ପ୍ରକାଶ କରିଥିବା, ତାଙ୍କ ଯତ୍ନରେ ଉତ୍କଳର ପ୍ରାଥମିକ ଶିକ୍ଷାର ବିଶେଷ ଉନ୍ନତି ହୋଇଛି ଏବଂ ସେ ବିବିଧ-ସଦ୍‌ଗୁଣରେ ଭୂଷିତ ହୋଇ ସକଳ ବିଷୟରେ ଆମ୍ଭମାନଙ୍କର ଆଦର୍ଶସ୍ଥାନୀୟ ଥିବାରୁ ସେ ପ୍ରକୃତ ସମ୍ମାନାର୍ହ..." (ସମ୍ବଲପୁର ହିତୈଷିଣୀ ପତ୍ରିକାରେ ତା୭ରିଖ ଜୁଲାଇ ୧୮୯୭ରେ ପ୍ରକାଶିତ ସମ୍ବାଦରୁ)। ରାଧାନାଥଙ୍କଠାକୁ ଏ ସଭାର ବିବରଣୀ ସହ ପତ୍ର ମଧ୍ୟ ଲେଖାଯାଇଥିଲା। ଏହି ଅଭିନନ୍ଦନପତ୍ରର ଉତ୍ତରରେ ରାଧାନାଥ

ସେ ଦିନର ସାଧାରଣ ସଭାର ସଭାପତି ଯୁବରାଜ ସଚ୍ଚିଦାନନ୍ଦ ଦେବଙ୍କଠାରୁ ଖଣ୍ଡିଏ ଚିଠି ଲେଖି କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ନିଜର ସାହିତ୍ୟିକ ଜୀବନ ବିକାଶରେ ବାମଣ୍ଡା ରାଜବଂଶ ବିଶେଷତଃ ମହାରାଜା ସୁଢ଼ଳଦେବଙ୍କ ଉତ୍ସାହ ଓ ପୃଷ୍ଠପୋଷକତାର ସ୍ଥାନ ଯେ ଅତି ଉଚ୍ଚ ତାହା ସ୍ୱୀକାର କରିଥିଲେ । ସେ ଲେଖିଥିଲେ, '...ମାତ୍ର ମୋହଦ୍ୱାରା ଯେବେ ଉତ୍କଳ ସାହିତ୍ୟର କଣ ମାତ୍ର ଉନ୍ନତି ହୋଇଥାଏ, ସେଥିରେ ମୂଳୀଭୂତ କାରଣ ବାମଣ୍ଡା, ଅଥବା ବାମଣ୍ଡାର ପରମ ମାନନୀୟ ଅଧୀଶ୍ୱର ମହାରାଜା ସୁଢ଼ଳ ଦେବ ଅଟନ୍ତି । ଓଡ଼ିଆ ସାହିତ୍ୟ ପ୍ରତି ଆବାଲ୍ୟରୁ ମୋହର ପ୍ରଗାଢ଼ ଅନୁରାଗ ଥିଲା । ଅତି ଅଳ୍ପ ବୟସରୁ ମୁଁ ସେହି ସାହିତ୍ୟର ଅନୁଶୀଳନରେ ବ୍ରତୀ ହୋଇଥିଲି । ୨।୩ ବର୍ଷ ପରେ ନାନାକାରଣରୁ, ବିଶେଷତଃ, ସାହିତ୍ୟିକ ସହାନୁଭୂତିର ଅଭାବ ହେତୁରୁ ଉତ୍କଳ ସାହିତ୍ୟର ଚର୍ଚ୍ଚା ମୁଁ ପ୍ରାୟ ପରିତ୍ୟାଗ କରିଥିଲି ଏବଂ ପ୍ରାୟ ୮।୧୦ ବର୍ଷକାଳ ସେ ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ଥିଲି । ବିଦ୍ୟୋତ୍ସାହିପ୍ରବର ଶ୍ରୀଯୁକ୍ତ ସୁଢ଼ଳ ଦେବଙ୍କ ସହିତ ମୋହର ପୂର୍ବରୁ ପରିଚୟ ହୋଇଥିଲେ ମୋହର ଜୀବନର ଉତ୍କୃଷ୍ଟତମ ଅଂଶ ଏପରି ବନ୍ଧ୍ୟ ହୋଇ ନ ଥାନ୍ତା । ପୂର୍ବୋକ୍ତ ୮।୧୦ ବର୍ଷ ପରେ ମହାରାଜା ସୁଢ଼ଳ ଦେବ ସ୍ୱତଃପ୍ରବୃତ୍ତ ହୋଇ ପତ୍ରଦ୍ୱାରା ମୋତେ ପ୍ରୋତ୍ସାହିତ ଏବଂ ମୋହର ନିର୍ବାଣପ୍ରାୟ ଉତ୍କଳ ସାହିତ୍ୟାନୁରାଗ ସନ୍ଧୁକ୍ଷିତ କରାଇଦେଲେ ଏବଂ ଅଳ୍ପଦିନରେ ଦେବଗଡ଼ ଯିବା ସକାଶେ ମୋତେ ଆମନ୍ତ୍ରଣପତ୍ର ପ୍ରେରଣ କଲେ । ସେହି ଆଦେଶାନୁଯାୟୀ ମୁଁ ଦେବଗଡ଼ରେ ଉପସ୍ଥିତ ହୋଇ ମହାରାଜାଙ୍କ ସାକ୍ଷାତ୍କାର ଲାଭ କଲି ଏବଂ ତଦ୍ଦ୍ୱାରା ମୋହର ସାହିତ୍ୟିକଜୀବନର ଯୁଗାନ୍ତର ପ୍ରବର୍ତ୍ତିତ ହେଲା ।

ଉତ୍କଳର ବହୁ ପତ୍ରପତ୍ରିକାରେ ଏହି ଉପାଧିପ୍ରାପ୍ତିରେ ରାଧାନାଥଙ୍କୁ ଅଭିନନ୍ଦନ ଜଣାଇ ସମ୍ପାଦକୀୟ ଲେଖାବଳୀ ପ୍ରକାଶ ପାଇଥିଲା । "ଉତ୍କଳଦୀପିକା"ରେ ସେପରି ଲେଖା ପ୍ରକାଶ ପାଇ ନଥିବାରୁ "ସମ୍ବଲପୁର ହିତୈଷିଣୀ"ର ଜଣେ ଲେଖକ ଆକ୍ଷେପ କରି ଏକ ଲେଖା ପ୍ରକାଶ କରିଥିଲେ । (ସମ୍ବଲପୁର ହିତୈଷିଣୀ । ତା ୨୮ରିଖ ଜୁଲାଇ ୧୮୯୬ )

## "ରାଧାନାଥ ପୁର" ଶାସନ ପ୍ରତିଷ୍ଠା

ଖ୍ରୀ ୧୮୯୬ ଜାନୁୟାରୀ ତା ୨୮ ରିଖ ଶନିବାର ଦିବା ୪ଟା ବେଳେ ଆଠଗଡ଼ କଟକ ଜିଲ୍ଲା(ଓଡ଼ିଶା ଗଡ଼ଜାତ)ର ରାଜା ରଘୁନାଥଙ୍କ ସ୍ୱର୍ଗବାସ ହେଲା । ତାଙ୍କ ପରେ ତାଙ୍କର ଅନୁଜ ବିଶ୍ୱନାଥ ଦେବ ରାଜା ହେଲେ ।

ବିଶ୍ୱନାଥ ଦେବ ସାମନ୍ତଙ୍କର ପୂର୍ବରୁ ଅଗ୍ରଜ ରାଜା ରଘୁନାଥ ଦେବଙ୍କ ସହିତ ମନୋମାଳିନ୍ୟ ଥିଲା । ସେହି କାରଣରୁ ବିଶ୍ୱନାଥ କଟକରେ ଗୃହଦାରୋଗାରେ ରହୁଥିଲେ । ବିଶ୍ୱନାଥ ଉଚ୍ଚକୋଟୀର ବୈଷ୍ଣବ ଓ ସଂସ୍କୃତପ୍ରେମୀ ଥିଲେ । ସଂସ୍କୃତ ଭାଷାରେ ମଧ୍ୟ ତାଙ୍କର ପାଣ୍ଡିତ୍ୟ ଥିଲା । ରାଧାନାଥଙ୍କ ସହିତ କଟକରେ ବିଶ୍ୱନାଥଙ୍କର ପରିଚୟ ହୋଇଥିଲା । ସାମନ୍ତଙ୍କର ପାଣ୍ଡିତ୍ୟ ଦେଖି ରାଧାନାଥ ମୁଗ୍ଧ ହୋଇଥିଲେ । ପ୍ରତିଦିନ ଅବସର ବେଳେ ସାମନ୍ତଙ୍କ ବସାକୁ ଯାଇ ସାହିତ୍ୟାଲୋଚନା କରୁଥିଲେ ।

ରାଜା ବିଶ୍ୱନାଥ ଓଡ଼ିଶାରେ ଓ ଆଠଗଡ଼ ଅଞ୍ଚଳରେ ବହୁସ୍ଥାନରେ ସୁନ୍ଦର ପୁଷ୍କରିଣୀ ଖୋଳାଇଥିଲେ । କଟକର ଇଞ୍ଜିନିୟରିଙ୍ଗ୍ ସ୍କୁଲ ପ୍ରତିଷ୍ଠା ହେବା ବେଳେ ସେ ପ୍ରଥମେ କିଛି ଅର୍ଥ ଦାନ

କରିଥିଲେ । ବହୁ ସଂସ୍କୃତ କବିତା ସେ ରଚନା କରି ପ୍ରକାଶ କରିଥିଲେ । ସେ ଓଡ଼ିଶାର କେତେକ ବିଶିଷ୍ଟ ସଂସ୍କୃତଜ୍ଞ ପଣ୍ଡିତଙ୍କ ରଚନା ପ୍ରକାଶ କରି ଉତ୍କଳର ସମ୍ମାନ ବହୁତ ବୃଦ୍ଧି କରିଛନ୍ତି ।

ରାଜା ବିଶ୍ୱନାଥ ଦେବବର୍ମା ସ୍ୱ ରାଜଧାନୀ ଆଠଗଡ଼ରେ "ରାଧାନାଥପୁର" ନାମରେ ଗୋଟିଏ ବ୍ରାହ୍ମଣ ଶାସନ ସ୍ଥାପନ କରିଥିଲେ । ସେହି ଶାସନରେ ସଂସ୍କୃତଜ୍ଞ ବ୍ରାହ୍ମଣ ସକୁଟୁମ୍ବ ଦଶଘର ରଖାଇଥିଲେ । ଏହି ବ୍ରାହ୍ମଣମାନଙ୍କ ଭିତରୁ କେତେ ଜଣଙ୍କୁ ରାଧାନାଥ ରାଜାଙ୍କ ଅନୁରୋଧ ଅନୁସାରେ ମନୋନୀତ କରିଥିଲେ ।

"ରାଧାନାଥପୁର" ଶାସନର ନାମରେ ରାଧାନାଥ ରାୟଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟ ବନ୍ଧୁ ବିଶ୍ୱନାଥଙ୍କର ଥିଲା । ଏହା ମଧ୍ୟ ସେ ସ୍ପଷ୍ଟ ଭାବରେ ବ୍ୟକ୍ତ କରିଥିଲେ । ରାଧାନାଥ ଏହି ଶାସନର ନାମଟି ପରିବର୍ତ୍ତନ କରି "ବିଶ୍ୱନାଥପୁର" ରଖିବା ପାଇଁ ରାଜାଙ୍କୁ ପରାମର୍ଶ ଦେଇଥିଲେ । କିନ୍ତୁ ରାଜା ସେଥିରେ ରାଜି ନହୋଇ ସେ କାହିଁକି "ରାଧାନାଥପୁର" ନାମଟି ରଖିଲେ ତା'ର କାରଣ ରାଧାନାଥଙ୍କଠାକୁ ଏକ ପତ୍ର ଲେଖି ଏହିପରି ଜଣାଇଥିଲେ—

୧ । ଆମ୍ଭର ପ୍ରିୟାତ୍ମାପେକ୍ଷା କୋଟି ଗୁଣାଧିକ ପ୍ରିୟତମ ଇଷ୍ଟଦେବ ରାଧାନାଥ ପଦବାଚ୍ୟ—ଶ୍ରୀକୃଷ୍ଣଙ୍କ ନାମାନୁସାରେ ଅଭିହିତ ହେବ ।

୨ । ଅସ୍ମଦପେକ୍ଷା ସହସ୍ରଗୁଣାଧିକ ସୁହୃଦ୍‌ବର ଆପଣଙ୍କ ଯତ୍ନ ଦ୍ୱାରା ସଦ୍‌ବିବେଚିତ ପଣ୍ଡିତମାନଙ୍କର ବାସସ୍ଥାନ ହେବାରୁ ଆପଣଙ୍କ ନାମାନୁଯାୟୀ ଶାସନର ନାମକରଣ ହେବାର ସମ୍ପୂର୍ଣ୍ଣ ଉପଯୁକ୍ତ ହେଲା ।

୩ । ଆମ୍ଭର ପ୍ରିୟପ୍ରାଣାପେକ୍ଷା ଶତଗୁଣାଧିକା ପ୍ରିୟତମା ଧର୍ମପତ୍ନୀଙ୍କ ନାମ "ରାଧାପ୍ରିୟା" ଏବଂ ଅବଶ୍ୟମ୍ଭାବୀ କୃମିବିଟ୍-ଭସ୍ମସଙ୍କତ, ଅତଏବ ଅତି ତୁଚ୍ଛ, ଏହି କଳେବରର ନାମ "ବିଶ୍ୱନାଥ", ଏହି ଦୁଇଶବ୍ଦ ଏକତ୍ର ପଂକ୍ତିକ୍ରମେ ଲେଖି ମଧ୍ୟ ଚତୁରକ୍ଷର ଲୋପ କଲେ ଅବଶିଷ୍ଟ "ରାଧାନାଥ" ହେବ । ତେଣୁ ଶାସନର ଏହି ନାମ ରଖିବାକୁ ମନସ୍ଥ କରିଅଛୁ ।

ଶାସନ ଏହି ନାମରେ ରଞ୍ଜିତ ହେଲେ, ପ୍ରଭୁସମ୍ମିତ, ସୁହୃତ୍ ସମ୍ମିତ ଓ କାନ୍ତାସମ୍ମିତ, ଏହିପରି ସମ୍ମିତତ୍ରୟ ଘଟିଲା କି ନାଁ ? ବିବେଚନା କରିବା ହେବେ । × ×" (ଚିଠି-ତା ୧୯।୯।୯୭ ଆଠଗଡ଼ )

ବର୍ତ୍ତମାନ ସମୟରେ ଶାସନ ସ୍ଥାପନ କ୍ୱଚିତ୍ ଦେଖାଯାଏ । ରାଜା ବିଶ୍ୱନାଥ ଏହି ଶାସନ ସ୍ଥାପନର ପରିକଳ୍ପନା ଏହିପରିଭାବରେ ବ୍ୟକ୍ତ କରିଥିଲେ, "ଅପର ଆମ୍ଭେ ମନଃସ୍ଥ କରିଅଛୁଁ ଯେ, ଏହି "ରାଧାନାଥପୁର" ନାମକ ଗୋଟିଏ ବ୍ରାହ୍ମଣ ଶାସନ ସ୍ଥାପନ କରିବୁଁ । ତହିଁରେ ସଂସ୍କୃତଜ୍ଞ ବ୍ରାହ୍ମଣ ସକୁଟୁମ୍ବ ଦଶଘର ରଖିବୁଁ ଯେ, ପ୍ରତ୍ୟେକଘର ନିମନ୍ତେ ୨୪ଦସ୍ତି ପଦ୍ଧକାରେ ଦଶମାଣ ଲେଖାଏଁ ଜମି ଦାନ କରାଯିବ । ଏପରି ଫସଲ ପ୍ରସୂତୋପଯୋଗୀ ପାଞ୍ଚମାଣ ଲେଖାଏଁ ଜଙ୍ଗଲ ମଧ୍ୟ ଦିଆଯିବ । ···ଆପଣଙ୍କୁ ଅନୁରୋଧ କରୁଅଛୁଁ ଯେ, ଆପଣ ତାହା ଅନୁଗ୍ରହ ପୂରଃସର ଏପରି ମନୋନୀତ କରିବେ ଯେ, ଉକ୍ତ ୮ଜଣ ମଧ୍ୟରୁ ୩ଜଣ ନୈୟାୟିକ, ୩ଜଣ କାବ୍ୟ-ତୀର୍ଥୋପାଧିଧାରୀ ଏବଂ ୨ଜଣ ପୌରାଣିକ ଥିବେ । ଏମାନଙ୍କ ମଧ୍ୟରେ ଯେଉଁମାନେ ଅକିଞ୍ଚନ ଓ ସ୍ୱଳ୍ପ ପରିବାର ବିଶିଷ୍ଟ ସେମାନଙ୍କ ପ୍ରାର୍ଥନା ସର୍ବାଗ୍ରେ ଗ୍ରାହ୍ୟ ଅଟେ ।···"(ରାଧାନାଥଙ୍କଠାକୁ ରାଜା ବିଶ୍ୱନାଥଙ୍କର ୯।୯।୯୭ର ଚିଠି )

## କଦର୍ଯ୍ୟସଂସାରପ୍ରତି ବିରାଗ

ରାଧାନାଥ ୧୮୯୬ ମାର୍ଚ୍ଚ ମାସରେ ଶଶିବାବୁଙ୍କଠାକୁ କଷ୍ଟକରୁ ଯେଉଁ ଚିଠି ଲେଖିଥିଲେ ସେଥିରେ ଏହି କଦର୍ଯ୍ୟ ସଂସାର ପ୍ରତି ତାଙ୍କର ବିରକ୍ତି ଆସିଯାଇଥିବା ବ୍ୟକ୍ତ କରିଥିଲେ । "I am really tired of this nasty world" (୧୦,୩,୯୬ର ଇଂରେଜୀ ଚିଠି) ।

ତାଙ୍କର ସ୍ୱାସ୍ଥ୍ୟ ସେତେବେଳକୁ ଅତ୍ୟନ୍ତ ଖରାପ ହୋଇ-ଯାଇଥିଲା । ଅଫିସ୍‌ର କାର୍ଯ୍ୟ ମଧ୍ୟ ତାଙ୍କୁ ବଳପଡ଼ୁଥିଲା । ତାଙ୍କୁ ଏ ଭଗ୍ନସ୍ୱାସ୍ଥ୍ୟରେ ବହୁ ପରିଶ୍ରମ କରିବାକୁ ପଡ଼ୁଥିବାରୁ ସେ ମୃତ୍ୟୁପରି ଯନ୍ତ୍ରଣା ଭୋଗ କରୁଥିଲେ । ସେଥିପାଇଁ ସେ ଟିକିଏ ବିଶ୍ରାମ ମଧ୍ୟ ଲୋଡ଼ୁଥିଲେ । "I am very much pressed for time. The labour I have to undergo is really killing in the present state of my health. I wish I had a little repose. I am really tired of this nasty world."

କୁଟୁମ୍ବ ଓ ସ୍ୱ ଶରୀରରେ ଭଗ୍ନସ୍ୱାସ୍ଥ୍ୟ ଯୋଗୁଁ ଦୁଃଖଭୋଗ, ଉପକୃତଙ୍କଠାରୁ ଅଯଥା ସମାଲୋଚନା ପ୍ରଭୃତି ତାଙ୍କର ଚିତ୍ତ ଉପରେ ବିଶେଷ ଭାବରେ ପ୍ରଭାବ ବିସ୍ତାର କରିଥିବାରୁ ସେ ଏହିପରି ମନୋଭାବ ପ୍ରକାଶ କରିଥିବା ଅନୁମିତ ହୁଏ ।

## ପାଠ୍ୟପୁସ୍ତକ ରଚନା

୧୮୯୬ ଓ ୧୮୯୮ରେ ରାଧାନାଥ "ବ୍ୟାକରଣ ପ୍ରବେଶ", "ବ୍ୟାକରଣ ପରିଚୟ" ଏବଂ "ପଣକଥା ବୋଧିନୀ" ଲେଖି ପ୍ରକାଶ କରିଥିଲେ ।

## "ମହାଯାତ୍ରା" ସମ୍ବନ୍ଧରେ ଆପତ୍ତି : ରାଧାନାଥଙ୍କ ମାନସିକ ଅଶାନ୍ତି

"ମହାଯାତ୍ରା" ପ୍ରକାଶ ହେବା ପରେ ଓଡ଼ିଶାରେ ଏହାର ବହୁତ ଆଦର ଦେଖାଯାଇଥିଲା । ରାଧାନାଥଙ୍କ ସମ୍ମାନ ମଧ୍ୟ ବୃଦ୍ଧି ପାଇଥିଲା । ଏହି ମହାକାବ୍ୟର ୫ମ ସର୍ଗରେ ଭାରତକୁ ଯବନମାନଙ୍କର ଆକ୍ରମଣ ଓ ଆର୍ଯ୍ୟସଂସ୍କୃତିର ବିଲୋପସାଧନ ସମ୍ପର୍କରେ କବି କେତେକ ପଂକ୍ତି ଲେଖିଥିଲେ । "କବିତାବଳୀ"ରେ "ଶିବାଜୀଙ୍କ ଉତ୍ସାହ ବାକ୍ୟ" କବିତାଟି ପ୍ରକାଶ ପାଇଥିଲା । ଏ ଦୁଇ ଗ୍ରନ୍ଥର ଏ ଦୁଇ ଅଂଶ ଆପତ୍ତିଜନକ ବୋଲି କେହି ଜଣେ ସମାଲୋଚକ ସରକାରଙ୍କୁ ୧୮୯୯ର ମଧ୍ୟଭାଗରେ ଗୁପ୍ତରେ ଜଣାଇଲେ । "ମହାଯାତ୍ରା"ର ଏହି ଅଂଶ ଦ୍ୱାରା ଏବଂ କବିତାବଳୀର କବିତାଟିରେ ଦେଶରେ "ସୁପ୍ରତିଷ୍ଠିତ" ଇଂରେଜ ସରକାରଙ୍କ ବିରୁଦ୍ଧରେ "ଦେଶଦ୍ରୋହ" ଭାବର ବୀଜ ଥିବା ଏହି ଆପତ୍ତିରେ ଜଣାଇଦିଆଯାଇଥିଲା । ସରକାରଙ୍କ ତରଫରୁ ଏହାର ଅନୁସନ୍ଧାନ ହେଲା । ରାଧାନାଥ ଉଚ୍ଚ ସରକାରୀ କର୍ମଚାରୀ ଓ ଉଚ୍ଚ ଉପାଧିଧାରୀ ଥିବାରୁ ଏ ସମ୍ପର୍କରେ ତାଙ୍କୁ କୈଫିୟତ ଦେବାକୁ ମଧ୍ୟ ହୋଇଥିଲା । ଏ ବିଷୟରେ କେତେ ମାସ ଚିଠିପତ୍ର ଚାଲିବା ପରେ ରାଧାନାଥ "ମହାଯାତ୍ରା"ର ଦ୍ୱିତୀୟ ସଂସ୍କରଣ ପ୍ରକାଶ କଲେ ଏବଂ ଏଥିରେ "ଆପତ୍ତିଜନକ ଅଂଶ"ଟି ଆଉ ପ୍ରକାଶ କରି ନଥିଲେ । ସରକାରଙ୍କ ଆଦେଶ ମତେ ସେ ଏହା କରିଥିଲେ । "ଶିବାଜୀଙ୍କ ଉତ୍ସାହ ବାକ୍ୟ" କବିତାଟି ସମ୍ବନ୍ଧରେ ସରକାରୀ ନିର୍ଦ୍ଦେଶ ନଥିଲେ ମଧ୍ୟ ରାଧାନାଥ ଭବିଷ୍ୟତ ବିପଦ ଆଶଙ୍କାରେ ତାକୁ ସ୍ୱଇଚ୍ଛାରେ ଉଠାଇଦେଇ "କବିତାବଳୀ"ର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରିଥିଲେ । ଏହି ଦୁଇଟି କବିତା ଅଂଶରେ

ଯବାନମାନଙ୍କ ଧ୍ୱଂସଲୀଳାରେ ଭାରତଭୂମି କପରି ନଷ୍ଟଭ୍ରଷ୍ଟ ହୋଇ-ଯାଇଥିଲା ଏବଂ ଦେଶରେ, ଦେଶାତ୍ମବୋଧ ଓ ଏକତାବୋଧର ଅଭାବରୁ କପରି ଭାରତ ପରାଧୀନ ହେଲା, ତାହା ମର୍ମସ୍ପର୍ଶୀ ଭାଷାରେ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ "ସ୍ୱଦେଶ" ରକ୍ଷା ନିମନ୍ତେ ପ୍ରାଣବଳି ଦେବାକୁ ଉଦବୋଧନ କରାଯାଇଥିଲା । ସରକାରଙ୍କ ଆଶଙ୍କା ହେଲା, ଦେଶରେ ଏହାଦ୍ୱାରା ସାମ୍ପ୍ରଦାୟିକ ଅଶାନ୍ତି ବୃଦ୍ଧି ପାଇବ ଏବଂ ଲୋକେ ମଧ୍ୟ ଏହି ଉଦ୍‌ବୋଧନ ଯୋଗୁଁ "ବିଦେଶୀ ଯବନ"କୁ "ଇଂରେଜ ସରକାର" ବୋଲି ବୁଝି ଦେଶାତ୍ମବୋଧ ଯୋଗୁଁ ବିଦ୍ରୋହ କରିବେ ।

ସରକାର ଏ ସମ୍ପର୍କରେ ଠିକଏ କୋହଳ ମନୋଭାବ ପ୍ରକାଶ କରିଥିଲା ପରି ମନେହୁଏ । ସେହି ସମୟରେ ଏଭଳି ଉତ୍ତ୍ରାହ ବାକ୍ୟ ଯେ ବିପ୍ଳବ ଯିବା ପକ୍ଷରେ ଯଥେଷ୍ଟ, ଏଥିରେ ସନ୍ଦେହର କିଛି କାରଣ ନାହିଁ । କେବଳ ରାଧାନାଥଙ୍କର ପ୍ରତିଷ୍ଠା ଓ ଉଚ୍ଚପଦାଧିକାରୀମାନଙ୍କ ସହିତ ସଦ୍‌ଭାବ ଏଥିରୁ ତାଙ୍କୁ ରକ୍ଷା କରିଥିଲା ପରି ମନେ ହୁଏ ।

## ଓଡ଼ିଆରେ ଆଉ ନ ଲେଖିବା ପାଇ ସଂକଳ୍ପ "ମହାଯାତ୍ରା"ର ପାଣ୍ଡୁଲିପି ପୋଡ଼ା

"ମହାଯାତ୍ରା" ଓ "କବିତାବଳୀ"ର ଦୁଇଟି ଅଂଶ ସମ୍ବନ୍ଧରେ ରାଧାନାଥଙ୍କଦ୍ୱାରା ବହୁବାର ଉପକୃତ ହୋଇଥିବା ଜଣେ ଅଧସ୍ତନ କର୍ମଚାରୀ କୁଆଡ଼େ ଗୁପ୍ତ ସମାଲୋଚନା ସରକାରଙ୍କଠାକୁ ପଠାଇ-ଥିଲେ । ଏହି ସମ୍ପର୍କରେ ବହୁଥର ସରକାରଙ୍କ ସହିତ ରାଧାନାଥଙ୍କର ଲେଖାଲେଖି ହୋଇଥିବାରୁ ଏଥିରେ ସେ ଅତିମାତ୍ରାରେ ଚକିତ ଓ ବିବ୍ରତ ହୋଇପଡ଼ିଲେ । "ଏହି ସମୟରେ ରାଧାନାଥଙ୍କ ମନର

ଅବସ୍ଥା ଏଭଳି ଭୟାବହ ହୋଇଥିଲା ଯେ, ସେ ଆଉ ଓଡ଼ିଆ ସାହିତ୍ୟରେ କିଛି ଲେଖିବେ ନାହିଁ କିମ୍ବା ସାହିତ୍ୟ ବିଷୟରେ କିଛି ରଚନା କରିବାକୁ କଲମ ପେନ୍‌ସିଲ ଧରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଏହି ହେତୁ ଅତିରିକ୍ତ ମାନସିକ କ୍ଷୋଭରେ ସେ "ମହାଯାତ୍ରା"ର ୮ମ ସର୍ଗଠାରୁ ୧୨ସର୍ଗର ଶେଷ ପର୍ଯ୍ୟନ୍ତ ଲିଖିତ ପାଞ୍ଚୋଟି ସର୍ଗ ଏବଂ ଅବଶିଷ୍ଟ ୧୮ସର୍ଗର ଖସଡ଼ା ପ୍ରଭୃତି ସମସ୍ତ ଶଶିଭୂଷଣଙ୍କ ସମ୍ମୁଖରେ ଅଗ୍ନିରେ ସମର୍ପଣ କଲେ । ଶଶିଭୂଷଣ ତାହାଙ୍କୁ ଏ କାର୍ଯ୍ୟରୁ ଅନେକ ପ୍ରକାରରେ ନିରସ୍ତ ହେବାକୁ ବିବିଧ ଚେଷ୍ଟା କରି ସୁଦ୍ଧା ସଫଳକାମ ହେଲେ ନାହିଁ । ଓଡ଼ିଆ ସାହିତ୍ୟ ରାଜ୍ୟର ଘୋର ଦୁରଦୃଷ୍ଟ କ୍ରମେ "ମହାଯାତ୍ରା"ର ଯେଉଁ ପାଞ୍ଚସର୍ଗ ଅଗ୍ନିରେ ନିକ୍ଷିପ୍ତ ହେଲା, ତାହା ସାହିତ୍ୟରାଜ୍ୟର ଅମୂଲ୍ୟବସ୍ତୁ— ତହିଁରେ ଗୋଟିଏ ସର୍ଗ କେବଳ ନରକର ବର୍ଣ୍ଣନା ଏବଂ ଅପରଟି ସ୍ୱର୍ଗର ବର୍ଣ୍ଣନାରେ ପୂର୍ଣ୍ଣ ଥିଲା । ୩୦ସର୍ଗ ପର୍ଯ୍ୟନ୍ତ ବାକି ୧୮ସର୍ଗର ଖସଡ଼ା ପ୍ରସ୍ତୁତ ହୋଇଥିଲା । ସେଥିରୁ ସମୟ ଓ ସୁବିଧାକ୍ରମେ ରାଧାନାଥ ମହାଯାତ୍ରା ସମ୍ପୂର୍ଣ୍ଣ କରିଦେବାର ପ୍ରୟାସ କରିଥାଆନ୍ତେ, ମାତ୍ର ବିଧାତାର ଇଚ୍ଛାରେ ସେଗୁଡ଼ିକ ଅଗ୍ନିରେ ସମର୍ପିତ ହେଲା । ଶଶିଭୂଷଣ ସେଗୁଡ଼ିକ ଅନ୍ୟତ୍ର ସାଇତି ରଖିବାର ଆୟୋଜନ କରିଥିଲେ; ମାତ୍ର ରାଧାନାଥ ନିଜ ସମ୍ମୁଖରେ ସେଗୁଡ଼ିକ ଅଗ୍ନିରେ ସମର୍ପଣ କରିବାରୁ ଶଶିଭୂଷଣ କିଛି କରି ପାରିଲେ ନାହିଁ । (ରା.ଜୀ. ପୃ ୩୧୨)

ଏହି ଅଂଶତକ ଆତିଶଯ୍ୟଜନକ ବିବେଚିତ ହୋଇଥିବାର ଜଣାଯାଏ । ପ୍ରକୃତରେ ଏହି ଅଂଶତକ ଯେ "ଉତ୍ତେଜନାପୂର୍ଣ୍ଣ" ଏଥିରେ ସନ୍ଦେହ ନାହିଁ ।

# ଶିବାଜୀଙ୍କର ଉତ୍ସାହ ବାକ୍ୟ

ଉଠ ଉଠ ଆହେ ସମଯୋଧଗଣ !
କରେ କରବାଳ ପଶ ସମରେ,
ଦେଖ ଦେଖ ଦୂରେ ଆସୁଛି ଯବନ
ଉଡ଼ୁଛି କେତନ ବାୟୁଭରେ ।୧।
ଆସୁଅଛି ଅଶ୍ୱ, ଆସୁଛି ଦ୍ୱିରଦ
ଆସୁଛନ୍ତି ସେନା ଜିଣିବା ଆଶେ ।
ବାଜେ ରଣଶିଙ୍ଗା, ଶୁଭୁଛି ଶବଦ
ମେଦିନୀ ସ୍ତବଧ ହୋଉଛି ତ୍ରାସେ ।୨।
ବଜା ରଣଶିଙ୍ଗା ଆରେ ଶୃଙ୍ଗଧର,
ଶତ୍ରୁ ଶିଙ୍ଗା ଶୁଣି କେବେ ନୀରବ
ମହାରାଷ୍ଟ୍ର ଶିଙ୍ଗା ? କେବେ ନରୁତ୍ତର
ମହାରାଷ୍ଟ୍ର ଶୁଣି ଶତ୍ରୁ ଗରବ ? ୩ ।
ଏ ଭାରତଭୂମି ଆମ୍ଭର ଜନନୀ
ପୁଣ୍ୟଭୂମି ନାହିଁ ସରି ଏହାର;
ଅମୂଲ୍ୟ ଦୁର୍ଲ୍ଲଭ ରତନର ଖଣି
ସବୁ ଦେଶ ମଧ୍ୟେ ଏ ଦେଶ ସାର ।୪।
ଏ ଦେଶ କୀରତି, ଏ ଦେଶ ଗୌରବ
ଏ ଦେଶ ବିଭବ ଏ ରବିତଳେ
ଆଜ କାହିଁ ନାହିଁ ସମସ୍ତ ନଷ୍ଟ ଭ
ହୋଇଛି ମନୁଷ୍ୟ କରମଫଳେ ।୫।
ଏମାନ ଆମ୍ଭଙ୍କୁ ପ୍ରଭୁ ଦେଇଥିଲେ,
ଦେଇଥିଲେ ବାହୁ ଦେଶରକ୍ଷଣେ,

ଯେ ହିନ୍ଦୁ ହିନ୍ଦୁଏ ଏକତା ଗୁଡ଼ିଲେ
ପ୍ରମାଦ ପାଡ଼ିଲେ ଦୁଷ୍ଟ ଯବନେ ।୭।
ସେହି ହିନ୍ଦୁ ଆର୍ଯ୍ୟ— ଗୌରବ-ତପନ,
ଦାସ୍ୟତମଃସିନ୍ଧୁମାରେ ବୁଡ଼ିଲେ,
ସେହି ହିନ୍ଦୁ ଆର୍ଯ୍ୟେ ଲଭିଲେ ବନ୍ଧନ
ଅନ୍ଧ ହୋଇ ଆର୍ଯ୍ୟଧର୍ମ ହୁଡ଼ିଲେ ।୭।
ଦୁରନ୍ତ ଯବନ ହେଲା ଏକେଶ୍ୱର
କ୍ଷତ୍ରିୟ ପ୍ରଭାବ ହେଲା ଅଳୀକ,
ଆମ୍ଭର ସ୍ୱଦେଶ ନୁହେ ଏ ଆମ୍ଭର
ଧିକ ଧିକ ଆମ୍ଭ ବାହୁକୁ ଧିକ ।୮।
ନାହିଁ ଆମ୍ଭ ଲୋଭ ଅନ୍ୟ ଦେଶ ପରେ
ସ୍ୱଦେଶରେ ସୁଖ ଅଛି ପ୍ରଚୁର
ନିଜ ଘର ସୁଖ ଭୁଞ୍ଜିବାକୁ ଘରେ
ଇଚ୍ଛ ଯେବେ, କର ଯବନ ଦୂର ।୯।
ସମସ୍ତ ଭାରତ କଲା କରଗତ
ଦୁରନ୍ତ ଯବନ ସବୁ ଗ୍ରାସିଲା,
ତେବେହେଁ ଅତୃପ୍ତ ଜନ୍ମ ପରବତ
ଆମ୍ଭର ନେବାକୁ ସେନା ପେଷିଲା ।୧୦।
ବାନ୍ଧ ହେ ସାହସ, ଉଠ ଅସି ଘେନ
କାହାର ସମ୍ବଳ ସେତିକ ବିନା !
ମହାରାଷ୍ଟ୍ର ପାଶେ ଯାବତ ଏ ଦେହ
ତାବତ ଏ ଭୂମି ନୋହେ ଅଧୀନା ।୧୧।
ଶୁଣିଅଛ ଯୋଧେ ! ଦୁର୍ଗାବତୀ କଥା,
ଶୁଣି ତ ଅଛ ତା ଧୀର ସାହସ,

ନାଶ ହୋଇ ଯୁଚି ଦେଲ୍ପି ନିଜ ମଥା,
ଜୀବନ୍ତେ ନ ହୋଇ ଯବନବଶ ।୧୨।
ସହି କି ନୋହିବ ସେହି ଅବମାନ ?
କ୍ଷତ୍ରିୟ ବୋଲିଅ ଅଛ ପ୍ରତ୍ୟକ୍ଷ !
ଦାସତ୍ୱ-ଶୃଙ୍ଖଳ ପିନ୍ଧିବ ଗଳାର
ଶିରେ କି ସହିବ ରିପୁ-ଅଙ୍କୁଶ ?୧୩।
ଶୂରକୁଳେ ଜାତ ଅଛ ତୁମ୍ଭେ ଶୁଦ୍ଧ,
ଶୂରକୁଳବଧୂ ଅରାତି-ବଧ,
ନୋହିଲେ ମରଣ ଅଛଇ ମଧୁର
ବହାଇ ଅରାତି-ଶୋଣିତ-ନଦ ।୧୪।
ସୋମନାଥ ତୀର୍ଥ ଦୁର୍ଦ୍ଦଶା ସୁମର,
କି ନ କଲେ ତହିଁ କ୍ରୂର ଯବନେ !
ହରିଲେ ରତନ କାଞ୍ଚନ ବସ୍ତ୍ରର
ଦେଖି ନଥିଲେ ଯା କେବେ ସ୍ୱପନେ ।୧୫।
ସ୍ତ୍ରୀ ବାଳକ ଦଶା କି ହେବ ସୁମର,
ଶୂର ତୁମ୍ଭେ, ନିଜ ନାଶ ଲାଞ୍ଛନା
କେମନ୍ତେ ସହିବ ? ଏ ଜୀବ ଦେହର
ଥାଉଁ କି ଭୋଗିବ ଏତେ ଯନ୍ତ୍ରଣା ? ।୧୬।
କୋମଳା କାମିନୀ— କୁନ୍ତଳ କରଷି
ନିଜ ଅନ୍ତଃପୁରେ ନେବ ଯବନ,
ଏ ଘୋର ଲାଞ୍ଛନା ଦେଖିବ କି ବସି
ସମଅଶ୍ରୁସିକ୍ତ କରି ନୟନ ?୧୭।
ଅସ୍ୱତର ତେଜ କର ହେ ନିର୍ବାଣ,
ଅରାତିଶୋଣିତେ କର ତିଳକ,

ଅରାତିଭବନ କର ହେ ଶ୍ମଶାନ,
ଅରାତିକୁ ଆଶୁ ପ୍ରେର ନରକ ।୧୮।
ଆସୁଛି ଦୁରନ୍ତ ମହାଦମ୍ଭଭରେ,
ବୀରସିଂହେ, କର ଚୂର୍ଣ୍ଣ ସେ ଦମ୍ଭ,
ରଚ ରଣରଙ୍ଗେ ରଣଭୂମି ପରେ
ଅରାତିମସ୍ତକେ ବିଜୟ-ସ୍ତମ୍ଭ ।୧୯।
ଉଠ ଉଠ ମହା— ରାଷ୍ଟ୍ର ଶୂରକୁଳ,
ଆର୍ଦ୍ର କର ମହୀ ରିପୁରକତେ,
ନନ୍ଦ ମହାବୀର ତ୍ରିଶୂଳ-ତ୍ରିଶୂଳ
କରେ ଯେନ ପିବେ ଆମ୍ଭ ସଙ୍ଗତେ ।୨୦।
ସ୍ମରି ଦେବଦେବ ପଣ ରଣସ୍ଥଳେ
ତ୍ରିଶୂଳର ଛାୟା ଦେଖ ଆକାଶେ,
ଧୂମକେତୁ ପ୍ରାୟେ ଭୟଙ୍କର ଜ୍ୱଳେ
ଧୂମକେତୁ ଏହୁ ରିପୁ ବିନାଶେ ।୨୧।
ଯାବତ ଦେହରେ ବହେ ପ୍ରାଣବାୟୁ
ଶୂରେ ! ନ ବିମୁଖ ହୁଅ ସମରେ,
ମାର ଅବା ମର ଏଥୁଁ ଅନ୍ୟ ଆଉ
ନ ଘଟୁ ଯେମନ୍ତେ ତୁମ୍ଭ ଭାଗ୍ୟରେ ।୨୨।
ଏ ରେବା ତଟିନୀ ଯାବତ ବହିବ,
ଯାବତ ଏ ଗିରି ଟେକିବ ଶିର,
ତୁମ୍ଭ ଶୁକ୍ଳଯଶଃ ତାବତ ରହିବ,
ମରି ଅମରତା ଲଭ ମହୀର ।୨୩।

ରାଧାନାଥଙ୍କ ବିରୋଧରେ କେହି ଜଣେ ବେନାମୀରେ ଗୋଟିଏ ଇଂରେଜୀ ପତ୍ର ସରକାରଙ୍କଠାକୁ ଖ୍ରୀ: ୧୯୦୦ରେ ପଠାଇଥିଲେ ;

ଏହି ପତ୍ରର ବିଷୟ ସମ୍ବନ୍ଧରେ କିଛି ଜଣାଯାଇନଥିଲେ ମଧ୍ଯ ତାଙ୍କ କାର୍ଯ୍ୟର ସମାଲୋଚନା ହୋଇଥିବା ଅନୁମାନ କରାଯାଏ । ବିଶେଷତଃ, 'ମହାଯାତ୍ରା' ଓ ପାଠ୍ୟପୁସ୍ତକ ରଚନା ସମ୍ପର୍କରେ ସମାଲୋଚନା ହୋଇଥିବା ସମ୍ଭବ । ସେ ଯାହା ହେଉ, ସେ ପତ୍ରର ବିଷୟ ନେଇ ସରକାର ଗୋପନ ଅନୁସନ୍ଧାନ କରି ତାଙ୍କୁ ଓଡ଼ିଶାରୁ ବଦଳି କରିବା ସିଦ୍ଧାନ୍ତ ଗ୍ରହଣ କରିଥିବା ଅନୁମିତ ହୁଏ । ଏ ବେନାମୀ ଚିଠି ଯୋଗୁଁ ରାଧାନାଥ ବିବ୍ରତ ହୋଇ ପଡ଼ିଥିବା ଜଣାଯାଏ ।

ନନ୍ଦକିଶୋର ବଳ ସେତେବେଳେ ଶିକ୍ଷାବିଭାଗରେ ଡେପୁଟି ଇନ୍‌ସପେକ୍ଟର ଚାକିରି କରୁଥିଲେ । ବଳ ମହାଶୟ ଏ ବେନାମୀ ପତ୍ରର ଲେଖକ ବୋଲି ରାଧାନାଥଙ୍କ ସନ୍ଦେହ ହେବାରୁ ବଳଙ୍କଠାକୁ ଏ ସମ୍ପର୍କରେ ସତ୍ୟାସତ୍ୟ ଜାଣିବାପାଇଁ ଏକ ପତ୍ର ଲେଖିଥିଲେ । ବଳ ମହାଶୟ ସେହି ପତ୍ର ଲିଖିତ ମନ୍ତବ୍ୟକୁ ସାଧାରଣରେ ପ୍ରକାଶ-କରି ଦେଇଥିଲେ । ରାଧାନାଥ ଏଥିରେ ଅସନ୍ତୁଷ୍ଟ ହୋଇଥିଲେ । ସେ ହୁଗୁଳିରେ ଥିବା ସମୟରେ ନନ୍ଦକିଶୋର ତାଙ୍କଠାକୁ ଏକ ପତ୍ର ଲେଖି ନିଜର ନିର୍ଦ୍ଦୋଷିତା ପ୍ରମାଣ କରିଥିଲେ । କିନ୍ତୁ ଏଥିରେ ରାଧାନାଥଙ୍କ ହୃଦ୍‌ବୋଧ ହୋଇନଥିଲା । ସେ ବଳଙ୍କୁ କ୍ଷମା ଦେଇଥିବା ରାଧାନାଥଙ୍କ ଉତ୍ତରରୁ ଜଣାପଡ଼େ ନାହିଁ । କଟକସହରର ଉଗରପଡ଼ା ଠିକଣାରୁ ୮।୪।୧୯୦୦ରେ ନନ୍ଦକିଶୋର ବଳ ରାଧାନାଥଙ୍କ ହୁଗୁଳି ଠିକଣାରେ ଏହି ପତ୍ରଟି ଦେଇଥିଲେ—

"ଗତ ଦଶ ବାର ଦିନ ହେଲା ଗ୍ରାମରେ ଥିଲି । ଆପଣଙ୍କ ପତ୍ର କଟକରେ ପହଞ୍ଚି ପ୍ରେରିତ ନ ହେବାରୁ ପାଇ ଉତ୍ତର ଦେଇ ପାରିଲି ନାହିଁ । କ୍ଷମା କରିବା ହେବେ । ବେନାମି ଇଂରାଜୀ ପତ୍ରର ଲେଖକ ମୁଁ ନୁହେ କିମ୍ବା ମୁଁ ଲେଖକଙ୍କୁ ଜାଣେନା । ଆପଣଙ୍କ ଅସାଧାରଣ ସୌଜନ୍ୟ, ଗ୍ରାହକତା, ଦୟା ଇତ୍ୟାଦି ଗୁଣରେ ମୁଁ

ଯେପରି ବିସ୍ମିତ ଓ ମୋହିତ ହୋଇଅଛୁ, ତାହା ପରରେ କପରି ପ୍ରକାଶ କରିବ ? ଆପଣଙ୍କ ପତ୍ରଲିଖିତ ମନ୍ତବ୍ୟ ମୁଁ ସାଧାରଣରେ ପ୍ରକାଶ କରିବାରେ ଆପଣ ଯେବେ ବିରକ୍ତ ହୋଇଥାଆନ୍ତି, ତେବେ ତାହାପାଇଁ ମୁଁ ଆପଣଙ୍କ ନିକଟରେ ବିନୀତଭାବରେ କ୍ଷମାପ୍ରାର୍ଥନା କରୁଅଛୁ । ମୁଁ ଆପଣଙ୍କୁ ଜାତୀୟ କବି ଓ ଗୁରୁ ଏବଂ ନିଜକୁ ତଦୀୟ ପାଠକ ଓ ଶିଷ୍ୟ ଭାବରେ ଦେଖେ । ଆପଣଙ୍କର ଓ ମୋହର ଅବସ୍ଥା ମଧ୍ୟରେ ଯେଉଁ ଅଲଙ୍ଘ୍ୟ ବ୍ୟବଧାନ ଅଛି, ତାହା ଅନେକ ସମୟରେ ବିସ୍ମୃତ ହୋଇଯାଏ । ଏଥିପାଇଁ କେତେକ ପରିମାଣରେ ଆପଣ ଦାୟୀ । କାରଣ ଆପଣ ଅତିଶୟ ସାଧୁ ଏବଂ ଆଡ଼ମ୍ବରଶୂନ୍ୟ । ହୃଦୟର ଅକୃତ୍ରିମ ଭକ୍ତି ଓ ପ୍ରେମ ଏବଂ ଅତିରିକ୍ତ ଭୟ ଜଣକର ପ୍ରାପ୍ୟ ନୁହେ, ଭାବି ମୋତେ କ୍ଷମା କରିବା ହେବେ । ମୋର ରଚନାରେ ଅନେକ ଭୁଲ ଥିବ, ଏ ଆଶଙ୍କା ମୋର ଅଛି । ଦୁଃଖର କଥା ଯେ, ମୁଁ ଉପଯୁକ୍ତ ସମୟରେ ଆପଣଙ୍କ ସାହାଯ୍ୟରୁ ବଞ୍ଚିତ ହେଲି । ଆପଣଙ୍କ ସ୍ଥାନାନ୍ତର ଗମନରେ ମୁଁ ଯେ କ୍ଷତିଗ୍ରସ୍ତ ହେଲି ଏବଂ ତାହା ଯେ ବିଶେଷ ପ୍ରକାରେ ମୁଁ ଅନୁଭବ କରୁଅଛି, ଏକଥା ମୁଁ ନିଷ୍କପଟଭାବରେ କହିପାରେ । ଆପଣଙ୍କ ସମୟ ଅତି ବହୁମୂଲ୍ୟ ହେଲେହେଁ ମୁଁ ତାହା କେତେକ ପରିମାଣରେ ଲୁଣ୍ଠନ କରିବାକୁ ଛାଡ଼ି ନଥାନ୍ତି ; କିନ୍ତୁ ଈଶ୍ୱର ତାହା କରାଇଦେଲେ ନାହିଁ । ମୋର ବିଶ୍ୱାସ ଯେ, କବିତା ରଚନା କରିବା ବିଷୟରେ ମୁଁ ଆପଣଙ୍କ ନିକଟରେ କେତେକ ପରିମାଣରେ ଋଣୀ । ମହାଯାତ୍ରା, ପାର୍ବତୀ, ଯଯାତିକେଶରୀ, ନନ୍ଦିକେଶ୍ୱରୀ, ଉଷା, ଚିଲିକା, ଚନ୍ଦ୍ରଭାଗା, କେଦାର-ଗୌରୀ, ତୁଳସୀସ୍ତବକ, କବିତାବଳୀ ପ୍ରଭୃତି ଅମର ସଙ୍ଗୀତାବଳୀର ଗାୟକ ଉତ୍କଳପୃଷ୍ଠରେ ଅବତୀର୍ଣ୍ଣ ହୋଇ କେବେ ଉତ୍କଳୀୟ ଗିରିଶିଖରରେ ଦଣ୍ଡାୟମାନ ହୋଇ, କେବେ ବା ଉତ୍କଳୀୟ

ଚନ୍ଦ୍ରାତପରେ ସମାସୀନ ହୋଇ, କେବେ ଭେରୀ ଓ ତୂର୍ଯ୍ୟଧ୍ୱନି, କେବେ ବା ବୀଣା ଏବଂ ବଂଶୀଧ୍ୱନି କରୁନଥିଲେ ଉତ୍କଳ ସାହିତ୍ୟକ୍ଷେତ୍ରରେ ଏଠାରେ ଗୋଟିଏ "ପଲ୍ଲୀଚିତ୍ର" ସେଠାରେ ଗୋଟିଏ "ନିର୍ଝରିଣୀ" ଯେ ଦେଖାଯାଇଥାଆନ୍ତା, ତାହା କିଏ କହିପାରେ ? ମୋମତରେ ଯେ ବାଗ୍‌ଦେବୀ ପ୍ରସନ୍ନା – ଆପଣଙ୍କ କଥା ତାହାର ଗୋଟିଏ ପ୍ରମାଣ । ମୋ ନିକଟରେ ଏ ବିଶ୍ୱାସ ଦୃଢ଼ୀଭୂତ ହୋଇ ନାହିଁ । ଇତି ।"

**ରାଧାନାଥଙ୍କ ଉତ୍ତର :—(କେତେକାଂଶ)**

× ×"କେବଳ କୃତଜ୍ଞତା ସ୍ୱୀକାର କଲେ ଅତି ଶସ୍ତାରେ ଉଦ୍ଧାର ଦିଆଯାଏ, ଏହା ପୂର୍ବରୁ କଅଣ ଆପଣଙ୍କ ଭାଗ୍ୟରେ ଘଟି-ନାହିଁ ? ଏ ସମ୍ବାଦ ସତ୍ୟ ହେଲେ ଏଥିରେ ଦୁଃଖିତ ହେବାର ଯଥେଷ୍ଟ କାରଣ ଅଛି, ମାତ୍ର ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ ନାହିଁ; କାରଣ ଓଡ଼ିଶା ଇଟାଲି କିମ୍ବା ଜର୍ମାନୀ ନୁହେଁ ।" × ×

ରାଧାନାଥ ଅସନ୍ତୁଷ୍ଟ ନହେଲେ ମଧ୍ୟ ପରର ସମାଲୋଚନାରେ ବେଳେବେଳେ ବିଚଳିତ ହୋଇପଡ଼ୁଥିଲେ । ଏହା ସ୍ୱାଭାବିକ । ସମାଲୋଚକ ପରିଚିତ ବ୍ୟକ୍ତି ହୋଇଥିଲେ, ସମାଲୋଚନାର ଅଯଥା କଠୋରତା ସମ୍ବନ୍ଧରେ ସେ ତାଙ୍କ ଦୃଷ୍ଟି ଆକର୍ଷଣ କରୁଥିଲେ । ରାଧାନାଥ ସରକାରୀ କର୍ମଚାରୀ ଥିବାରୁ ନିଜପ୍ରତି ସମୟୋଚିତ ସରକାରୀ ବିଧିବିଧାନର ଅଯଥା ପ୍ରୟୋଗର ଆଶଙ୍କା କରୁଥିବା ଅନୁମିତ । ଥରେ ଯାଜପୁରର ସୁପରିଚିତ ଶ୍ରୀ ନୀଳମଣି ମିଶ୍ରଙ୍କ ଭ୍ରାତୃଷ୍ପୁତ୍ର ଯୁବକ କାମପାଳ ମିଶ୍ର "ସାହିତ୍ୟ ଓ ସମାଲୋଚନା" ପ୍ରବନ୍ଧରେ କବିବର ରାଧାନାଥ ଓ ତାଙ୍କ ପୁତ୍ର ଶଶିଭୂଷଣ ( ଡାକ ନାମ ମଧୁବାବୁ )ଙ୍କ ସମ୍ବନ୍ଧରେ କିଛି କଟୁ ସମାଲୋଚନା କରିଥିବା ଅନୁମାନ ହୁଏ । ଏହି ବିଷୟ ପ୍ରତି ରାଧାନାଥବାବୁ ନୀଳମଣି ମିଶ୍ରଙ୍କ ଦୃଷ୍ଟି ଆଣିଥିଲେ, ଏବଂ କାମପାଳଙ୍କ ସହିତ ସାକ୍ଷାତରେ ମଧ୍ୟ

ଆଲୋଚନା କରିଥିଲେ । ଯୁବକ କାମପାଳଙ୍କ କାର୍ଯ୍ୟରେ କୁହୁମ୍ଭର ବୟୋଜ୍ୟେଷ୍ଠମାନେ ବିଚଳିତ ହୋଇପଡ଼ିଥିବା ଅନୁମିତ ହୁଏ । କବିବରଙ୍କ ମନରେ ତିକ୍ତଭାବ ନଥିବା ଜାଣିପାରି ମିଶ୍ରେ ଆଶ୍ୱସ୍ତ ହୋଇଥିଲେ, ମିଶ୍ରଙ୍କର ଏକ ଚିଠିରୁ ଏହା ସ୍ପଷ୍ଟ ହେଉଛି । ମିଶ୍ରେ ଯାଜପୁର ସ୍କୁଲର ଶିକ୍ଷକ ଥିଲେ । ଚିଠିଟି ଯାଜପୁରରୁ ୨୦।୮।୯୯ରେ ଲିଖିତ ହୋଇଥିଲା । କାମପାଳ ସେତେବେଳେ ଯୁବକ ଥିଲେ । ପରେ ସେ 'ଅପୂର୍ବ ସ୍ୱପ୍ନ' କାବ୍ୟ 'ସୀତାବିବାହ' ନାଟକ ପ୍ରଭୃତି ଲେଖି ଯଶସ୍ୱୀ ହୋଇଥିଲେ । ଗୋପବନ୍ଧୁ ଦାଶ, ଅଭିରାମ ଭଞ୍ଜ, ନନ୍ଦକିଶୋର ବଳ ଓ କାମପାଳ ପ୍ରାୟ ସମବୟସ୍କ ଥିଲେ ଏବଂ ଏମାନଙ୍କ ଭିତରେ ଘନିଷ୍ଠ ବନ୍ଧୁତ୍ୱ ପ୍ରତିଷ୍ଠିତ ହୋଇଥିଲା । ସମସ୍ତେ ଓଡ଼ିଶାର ସମୃଦ୍ଧ କଲ୍ୟାଣ କାମନା କରୁଥିଲେ ଏବଂ ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ସାର୍ଥକ ଭାବରେ ଲେଖନୀ ଚାଳନା କରୁଥିଲେ ।

''ଆଶ୍ରିତବତ୍ସଳେଷୁ—ବହୁମାନପୁରଃସର ସବିନୟ ନିବେଦନମିଦଂ'

ମହାଭାଗ,

ଗତ କଲ୍ୟ ସ୍କୁଲରେ ଆପଣଙ୍କ ଅନୁଗ୍ରହପତ୍ର ଖଣ୍ଡି ପାଠ କରି ଯେରୂପ ଆନନ୍ଦାନୁଭବ କରିଅଛି, ତାହା ସାମାନ୍ୟ ପତ୍ରଦ୍ୱାରା କପରି ଜଣାଇବ ? ଗୁରୁଦୁଃଖଭାରାକ୍ରାନ୍ତ ହୃଦୟରୁ ଦୁଃଖ ବିଦୂରିତ ହେଲେ ଚିତ୍ତ ଯେପରି ପରମୋଲ୍ଲାସ ଲାଭ କରେ, ତାହା ବଚନରେ କିବା ଲେଖାରେ ବୁଝାଇବା ଅସମ୍ଭବ । କାମପାଳ ଶିକ୍ଷା ଓ ସମାଲୋଚନା ଲେଖି ଆପଣଙ୍କ ମନରେ ବୃଥାରେ ଯେ ବ୍ୟଥା ଦେଇଥିଲା, ତନ୍ନିମିତ୍ତ ମୁଁ ନିରନ୍ତରଶଃ ବ୍ୟଥିତ ହୋଇଥିଲି । ସ୍ୱୀୟ ଉଦାରତା ଗୁଣରେ ଆପଣ ସେ ବିଷୟ ବିସ୍ମୃତ ହୋଇଥିଲେ ସୁଦ୍ଧା ମୋ ହୃଦୟରେ ଏହା ପ୍ରଚ୍ଛନ୍ନ ଶେଲବତ୍ ପ୍ରୋଥିତ ଥିଲା । କୌଣସି ଦୁରଭିସନ୍ଧି ସାଧନାର୍ଥ ବା କୁଶିକ୍ଷା ପ୍ରଣୋଦିତ ହୋଇ ଆପଣଙ୍କ ଉଦ୍ଦେଶ୍ୟରେ

ଉକ୍ତ ପ୍ରବନ୍ଧ ଲେଖି ନାହାଁ ବୋଲି କାମପାଳ ମୋତେ ବାର ବାର ଆଶ୍ୱାସନା ଦେଇଥିଲେ ମଧ୍ୟ ମୋ ମନ ପ୍ରବୋଧ ମାନ ନଥିଲା । ଆଜି ଆପଣଙ୍କ ବାକ୍ୟାମୃତରେ ତପ୍ତ ହୃଦୟ ଶୀତଳ ହେଲା । କୃତଘ୍ନତା ପବାଦରୁ ମୁକ୍ତିଲାଭ କଲି । କାମପାଳର କାର୍ଯ୍ୟକଳାପ ସକାଶେ ମୋର ଦାୟିତ୍ୱ ନ ଥିଲେ ମଧ୍ୟ ଏ ବଂଶର ଶଟସ୍ୱପ-କାଶ୍ୱ ଆପଣଙ୍କର ଜଣେ ଅକାରଣ ଶତ୍ରୁ ବାହାରିବା ଅଳ୍ପ ନନ୍ଦାର ବିଷୟ ନୁହେ । ବାଲ୍ୟାବସ୍ଥାରେ ମୁଁ ଆପଣଙ୍କର କୌଣସି କବିତା ପାଠ କରି ବୁଝାଇଦେଲେ କାମପାଳ ଅତିଶୟ ଆହ୍ଲାଦିତ ହୁଏ ଏବଂ ଆପଣଙ୍କର ଅନନ୍ୟସାଧାରଣ ପ୍ରତିଭାର ଓ ଉପଯୁକ୍ତ ଶବ୍ଦପ୍ରୟୋଗକୁଶଳତାର ଭୂୟସୀ ପ୍ରଶଂସା କରେ । ଆପଣଙ୍କୁ ଓ ଶ୍ରଦ୍ଧେୟ ଶ୍ରୀଯୁକ୍ତ ମଧୁବାବୁ ମହାଶୟଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରେ । ଏରୂପ ବ୍ୟକ୍ତିର ଆପଣଙ୍କ ପ୍ରତି ଅକାରଣ ବୈରାଚରଣ ଅସ୍ୱାଭାବିକ । ତାହାର ଲେଖାରେ ଆପଣଙ୍କ ପ୍ରତି ବା ମଧୁବାବୁଙ୍କ ପ୍ରତି ଯଦି କୌଣସି କଟୂକ୍ତି ରହି ଯାଇଥାଏ, ତାହାହେଲେ ତାହା ତାହାର ଯୌବନସୁଲଭ ଅବିମୃଷ୍ୟକାରିତାର ଫଳ — ବିଦ୍ୱେଷର ବା ଅଭକ୍ତିର ନୁହେ । ଯାହାହେଉ, ଆପଣ ତାହା ସହିତ ସାକ୍ଷାତ୍ କରି ଯେ ପ୍ରୀତି ଲାଭ କରିଅଛନ୍ତି, ଏହା ଆମ୍ଭମାନଙ୍କର ପରମ ସୌଭାଗ୍ୟ । ଅଧୁନାତନ ଉତ୍କଳ ଦ୍ୱିଜକୁଳର ଶୋଚନୀୟ ଅବସ୍ଥା ଆପଣଙ୍କୁ ଅବିଦିତ ନୁହେ । ଉତ୍କଳୀୟ କେତେ ବ୍ରାହ୍ମଣ ପଣ୍ଡିତ ଆପଣଙ୍କଠାରୁ ଯେ କେତେ ପ୍ରକାରରେ ଉପକାର ପ୍ରାପ୍ତ ହୋଇଅଛନ୍ତି, ତାହା କୁହାଯାଇ ନ ପାରେ । ଆପଣ ଯେପରି ଉଦାର ସେହିପରି ଆଶ୍ରିତବତ୍ସଳ । ନ ଜାଣି ଯଦ୍ୟପି କେତେବେଳେ କୌଣସି ଅପରାଧ ହୁଏ କ୍ଷମା କରିବେ । କାମପାଳ ବାଳକ, ସର୍ବତୋଭାବରେ ଆପଣଙ୍କର ଶାସ୍ୟ; ତାହାପ୍ରତି କରୁଣାଦୃଷ୍ଟି ରଖିଥିବେ । ଆଶ୍ରିତ ବ୍ୟକ୍ତିଙ୍କର ଦୋଷ

ମାର୍ଜନୀୟ, କାରଣ ସେମାନେ ଅନନ୍ୟବଲମ୍ବ "ଭୂମୌ ସ୍ଖଳିତପାଦାନାଂ ଭୂମିରେବାବଲମ୍ବନଂ ।" × ×

ରାଧାନାଥ ସ୍ୱଗ୍ରନ୍ଥ ବିକ୍ରୀରୁ ଯେଉଁ ଅର୍ଥ ଲାଭକରୁଥିଲେ ତାହାକୁ ସ୍ୱତନ୍ତ୍ର ପାଣ୍ଠିରେ ଗଚ୍ଛିତ ରଖି ତାହାର ହିସାବ ରଖୁଥିବା ଜଣାଯାଏ । ଶଶିଭୂଷଣ ବାବୁ ଏହି ପାଣ୍ଠି ରକ୍ଷକ ଥିଲେ । "ମନରୁଦ୍ଦିନ" ନାମକ ଜଣେ ବ୍ୟକ୍ତି ରାଧାନାଥଙ୍କୁ ବ୍ୟାକରଣ ରଚନା କରିବା ସମୟରେ ସାହାଯ୍ୟ କରିଥିବାରୁ ତାଙ୍କୁ "ବ୍ୟାକରଣ ପାଣ୍ଠି"ରୁ କୋଡ଼ିଏଟଙ୍କା ଦେବା ନିମନ୍ତେ ସେ ଶଶିଭୂଷଣଙ୍କୁ କହିଥିଲେ । "ମନର୍‌ଉଦ୍ଦୀନର କୋଡ଼ିଏ ବାଳକୃଷ୍ଣ ବାବୁଙ୍କୁ ଦେବ । ବାକି ତାହାର ସୁଧ ସମେତ କେତେ ହେଲା ଅବଗତ ହୋଇ ବ୍ୟାକରଣର ପାଣ୍ଠିରୁ ଟଙ୍କା ଆଦାୟ କରିଦେବ । ମନର୍‌ର ସୁବିଧା ହେଲେ ସେ ଟଙ୍କା ଦେବ । ଆମ୍ଭର ସେଥିରେ ତାଗାଦା କରିବା ଅନୁଚିତ । ବ୍ୟାକରଣ ରଚନା ସମୟରେ ସେ ମୋର ବିସ୍ତର ସାହାଯ୍ୟ କରିଛି ଏହା ସ୍ମରଣ ରଖିବ । × ×" (କଲିକତାରୁ ଶଶିଭୂଷଣଙ୍କଠାକୁ ୭।୧।୧୯୦୦ର ଚିଠି । ବଙ୍ଗଳାରୁ ଅନୁବାଦିତ)

ଓଡ଼ିଶାରୁ ବଦଳି ହେବା ପୂର୍ବରୁ କଟକ ଶିକ୍ଷାବିଭାଗ ଇନ୍‌ସପେକ୍ଟରଙ୍କ ଅଫିସରେ ଥିବା ବିଭିନ୍ନ ଶ୍ରେଣୀର କର୍ମଚାରୀଙ୍କ ସହିତ ରାଧାନାଥଙ୍କର ସଦ୍‌ଭାବ ଥିଲା । ସହକର୍ମୀଙ୍କ ପ୍ରତି ତାଙ୍କର ଆଦର ଓ ଆନ୍ତରିକ ବ୍ୟବହାର ଥିଲା । ଏହି କାରଣରୁ ଅଫିସରେ ଥିବା ଚପରାସିଠାରୁ ହାକିମଙ୍କ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ସମ୍ମାନ କରୁଥିଲେ ; ଏବଂ ସେମାନଙ୍କଠାରୁ କବିବର ସ୍ନେହର ପ୍ରତିଦାନ ପାଉଥିଲେ । ସେ ବଦଳି ହୋଇ ବିଦାୟ ନେବାବେଳେ ସହକର୍ମୀମାନେ ଅଶ୍ରୁପୂର୍ଣ୍ଣ ନୟନରେ ତାଙ୍କୁ ବିଦାୟ ଦେଇଥିଲେ ।

ଆପଦବିପଦରେ ମଧ୍ୟ ସେମାନେ ବହୁ ସାହାଯ୍ୟ କରିଥିବା ରାଧାନାଥ ସ୍ୱୀକାର କରିଛନ୍ତି । ତାଙ୍କର ଚପରାସି ଥିବା ଭଗବାନ ଜେନା ତାଙ୍କ ପ୍ରତି ଅକୃତ୍ରିମ ବ୍ୟବହାର କରୁଥିବାରୁ କବି କୃତଜ୍ଞ ଥିବା ଜଣାଇଛନ୍ତି । "ଅଫିସର ସମସ୍ତଙ୍କୁ ମୋର ସ୍ନେହ ସମ୍ଭାଷଣ ଜଣାଇବ । ସମସ୍ତେ ଆମ୍ଭମାନଙ୍କ ପ୍ରତି ଆସ୍ଥା ଏବଂ ଆମ୍ଭମାନଙ୍କର ବିପଦରେ ସହାନୁଭୂତି ଦେଖାଇଥିଲେ । ସମସ୍ତଙ୍କୁ ମୋର ହୃଦୟରୁ ଧନ୍ୟବାଦ ଜଣାଇବ । ଜେନାକୁ କହିବ, ଯେ ତାର ଋଣ ମୁଁ ଏ ଜୀବନରେ ପରିଶୋଧ କରିପାରିବି ନାହିଁ । ଜେନା ବୈଦ୍ୟମାନ ମୁଖରେ ଆମ୍ଭମାନଙ୍କୁ ବିଦାୟ ଦେଇଛି । ତାକୁ କହିବ ଯେ ମୁଁ ଅଶ୍ରୁ-ଅଭିଷିକ୍ତ ନେତ୍ରରେ ଏହି ପଂକ୍ତିଗୁଡ଼ିକ ଲେଖିଅଛି । × ×" (ଶଶିଭୂଷଣଙ୍କଠାରୁ କଲିକତାରୁ ଚିଠି, ୭।୧।୧୯୦୦, ବଙ୍ଗଳାରୁ ଅନୁବାଦିତ) ।

ରାଧାନାଥ ୧୮୭୨ଠାରୁ ଓଡ଼ିଶା ସ୍କୁଲବିଭାଗର ଜଏଣ୍ଟ ଇନସପେକ୍ଟର ଓ ପରେ ଇନ୍‌ସ୍‌ପେକଟର ରୂପେ ୧୯୦୦ ପର୍ଯ୍ୟନ୍ତ ଦକ୍ଷତା ସହକାରେ କାର୍ଯ୍ୟ କରିଥିଲେ । ଓଡ଼ିଶା ଶିକ୍ଷାବିଭାଗର ସର୍ବୋଚ୍ଚ ରାଜକର୍ମଚାରୀ ରୂପେ ତାଙ୍କର କାର୍ଯ୍ୟ ଅତୀବ ପ୍ରଶଂସନୀୟ ଥିଲା ।

ଇନ୍‌ସପେକ୍‌ଟର ରାଧାନାଥ ବିଦ୍ୟାଳୟ ପରିଦର୍ଶନ ବେଳେ ନିଜକୁ ସେହି କାର୍ଯ୍ୟରେ ପୂର୍ଣ୍ଣଭାବରେ ନିଯୋଜିତ କରୁଥିଲେ । ସେ ଶିକ୍ଷକ ଓ ଛାତ୍ର ଉଭୟ ସମ୍ପ୍ରଦାୟ ମଧ୍ୟରେ ଶୃଙ୍ଖଳା ଓ ସଦ୍‌ବ୍ୟବହାର ଦେଖିଲେ ଖୁସି ହେଉଥିଲେ । ଶିକ୍ଷାଦାନ ପଦ୍ଧତି ଓ ଶିକ୍ଷକଙ୍କ ଶିକ୍ଷାଦାନରେ ଆନ୍ତରିକତା ପ୍ରତି ତାଙ୍କର କଠୋର ଦୃଷ୍ଟି ଥିଲା । ସେ ନିଜ କର୍ତ୍ତବ୍ୟପାଳନରେ ଅବହେଳା କରୁନଥିବାରୁ ଶିକ୍ଷକମାନେ ମଧ୍ୟ ସେଥିରେ ଅନୁପ୍ରାଣିତ ହେଉଥିଲେ । ରାଧାନାଥଙ୍କ ଚରିତ୍ରବଳ,

ଦେଶପ୍ରେମ ଓ ସାହିତ୍ୟିକ-ଗୌରବ ତାଙ୍କପ୍ରତି ସ୍ଥାନୀୟ ଲୋକସମାଜ, ଶିକ୍ଷକସମାଜ ଓ ଛାତ୍ରସମାଜରେ ସମ୍ମାନଜନକ ଭକ୍ତିପୂର୍ଣ୍ଣ ଭୟ ଜାଗ୍ରତ କରୁଥିଲା । "ରାଧାନାଥଙ୍କର ବିଦ୍ୟାଳୟ ସମ୍ବନ୍ଧ ପରିଦର୍ଶନ ପ୍ରତ୍ୟେକ ବିଦ୍ୟାଳୟ ପକ୍ଷରେ ଉତ୍ସବମୟ ଥିଲା । ପ୍ରତ୍ୟେକ ବିଦ୍ୟାଳୟର ଛାତ୍ର ଓ ଶିକ୍ଷକବର୍ଗ ସମସ୍ତେ ହିଁ ପ୍ରଫୁଲ୍ଲ ହେଉଥିଲେ । ଶିକ୍ଷା ବିଭାଗୀୟ ଉଚ୍ଚ କର୍ମଚାରୀଙ୍କ ସଦୟ ଓ ମିଷ୍ଟ ବ୍ୟବହାର ଦେଖି କାହାରି ମନରେ ଭୟ ନଥିଲା; ଅଥଚ ପରିପୂର୍ଣ୍ଣ ସମ୍ମାନ ଓ ଆହ୍ଲାଦ ସମସ୍ତେ ଦେଖାଉଥିଲେ ।" (ରା: ଜୀ' ପୃ ୩୧୩)

ପରିଦର୍ଶନ ରିପୋର୍ଟ ମାନ ଅନୁସାରେ ଓଡ଼ିଆ ଓ ଇଂରାଜୀରେ ଲେଖୁଥିଲେ । ସଂସ୍କୃତ ବିଦ୍ୟାଳୟ ପରିଦର୍ଶନରେ ସଂସ୍କୃତରେ ମନ୍ତବ୍ୟ ଲେଖୁଥିଲେ ।

ସେ ଘନ ଘନ ଭାବରେ ପରିଦର୍ଶନ କରୁଥିଲେ । ଭଲମନ୍ଦ ସବୁ ବିଷୟ ଲିପିବଦ୍ଧ କରି ଉନ୍ନତିର ସୂଚନା ଦେଉଥିବାରୁ ଶିକ୍ଷକମାନେ ଆଗ୍ରହ ସହକାରେ ତାହାକୁ ଗ୍ରହଣ କରୁଥିଲେ ଏବଂ ଏହାଦ୍ୱାରା ଶିକ୍ଷକ ଓ ଶିକ୍ଷାନୁଷ୍ଠାନର ଉନ୍ନତି ହେଉଥିଲା । ଅଙ୍କ, ଭୂଗୋଳ, ଇତିହାସ, ସାହିତ୍ୟ ପ୍ରଭୃତି ବିଷୟ ସେ ନିବିଡ଼ ଭାବରେ ଦେଖୁଥିଲେ ।

ରାଧାନାଥବାବୁ ଓଡ଼ିଶାରୁ ହୁଗୁଳିକୁ ବଦଳି ହୋଇଯିବାରୁ ଓଡ଼ିଶାର ଶିକ୍ଷକସମାଜ ଭିତରେ ଦୁଃଖର ଛାୟା ଖେଳିଯାଇଥିଲା । ତାଙ୍କର ବଦଳି ବନ୍ଦ କରିବାପାଇଁ ଲୋକଙ୍କ ତରଫରୁ ଚେଷ୍ଟା ମଧ୍ୟ ହୋଇଥିଲା । ଓଡ଼ିଶାର ସମ୍ବାଦପତ୍ରମାନେ ମଧ୍ୟ ବଦଳି ରହିତ କରିବାପାଇଁ ଦାବୀ କରିଥିଲେ ।

"ସମ୍ବାଦବାହିକା ୧୯୦୦, ଜାନୁଆରୀ ୧୧ ତାରିଖ"ରେ ଲେଖିଥିଲେ—"× × ତାଙ୍କର ଓଡ଼ିଶାକୁ ଯାବକ ପଦରେ

ଲେଉଟି ଆସିବାର ଆଶା ନାହିଁ । ଦୁଃଖ ଏତିକି, ଓଡ଼ିଶାବିଭାଗରୁ ଚିରବିଦାୟ କାଳରେ ତାଙ୍କର ବନ୍ଧୁବାନ୍ଧବମାନେ ତାଙ୍କୁ ଦେଖି ମନର କପାଟ ଖୋଲି ବିଚ୍ଛେଦ-ବିଷାଦ ଜଣାଇ ନପାରିଲେ × ×"

"ସମ୍ବଲପୁର ହିତୈଷିଣୀ" (୧୩।୧୨।୧୮୯୯) ଲେଖିଥିଲେ, "× × ରାଧାନାଥ ବାବୁଙ୍କର ଓଡ଼ିଶା ତ୍ୟାଗ ଓଡ଼ିଶା ପକ୍ଷରେ ଦୁଃଖଜନକ, ଏଥିରେ ସନ୍ଦେହ ନାହିଁ । ଷଡ଼ଗ୍ରହ ବା ସପ୍ତଗ୍ରହ ସମାଗମରେ ଓଡ଼ିଶାରେ ଆଉ କିଛି କ୍ଷତି ହୋଇଅଛି କି ନା ଜାଣୁ ନାହିଁ, କିନ୍ତୁ ରାଧାନାଥ ବାବୁଙ୍କର ସ୍ଥାନାନ୍ତରଦ୍ୱାରା ଯେଉଁ କ୍ଷତି ହେଲା ତାହା ସାମାନ୍ୟ ନୁହେଁ । ଯାହାହେଉ, ଈଶ୍ୱର ତାଙ୍କୁ ଦୀର୍ଘଜୀବୀ କରନ୍ତୁ, ଏହି କାମନା କରୁଅଛୁଁ ।"

ଘରୋଇ ସୂତ୍ରରୁ ରାଧାନାଥ ଖୋଜଖବର ନେଇ ବୁଝିପାରିଥିଲେ ଯେ ଶିକ୍ଷାବିଭାଗର ଡିରେକ୍ଟର ବର୍ଦ୍ଧମାନ ଭଳି ଏକ ବୃହତ୍ତ ଡ଼ିଭିଜନକୁ ରାଧାନାଥଙ୍କ ଅପେକ୍ଷା କମ୍ ଯୋଗ୍ୟତା ଥିବା ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ କରିବାକୁ ଇଚ୍ଛୁ ନଥିଲେ । ଏହି କାରଣରୁ ଓଡ଼ିଶାକୁ ପୁଣି ବଦଳି ହେବା ସମ୍ଭାବନା ନଥିଲା । ରାଧାନାଥ ଏଥିରେ ଚିନ୍ତିତ ନଥିଲେ, କାରଣ ତାଙ୍କର ଅବସର ନେବା ସମୟ ନିକଟ ହୋଇ ଆସୁଥିଲା । ବର୍ଦ୍ଧମାନ ଡିଭିଜନରେ ରହିଲେ ଚିଫ୍ ସେକ୍ରେଟେରି, ସେକ୍ରେଟେରି ପ୍ରଭୃତି ବଡ଼ ବଡ଼ ରାଜକର୍ମଚାରୀମାନଙ୍କ ସହିତ ପରିଚିତ ହେବା ସୁବିଧା ଥିଲା ଏବଂ ଏ ସୁବିଧାର ସୁଯୋଗ ନେବାକୁ ରାଧାନାଥ ଇଚ୍ଛା କରୁଥିଲେ । ଏହା ଛଡ଼ା, ଦୁଇ ମାସ ପ୍ରିଭିଲେଜ୍ ଲିଭ୍ ପାଇବା ସୁବିଧା ମଧ୍ୟ ଥିଲା । ( ଶଶିବାବୁଙ୍କଠାକୁ ଚନ୍ସୁରାରୁ ତା ୧୩।୭।୧୯୦୨ର ଇଂରେଜୀ ଚିଠି ) ।

---

# ଏକାଦଶ ପରିଚ୍ଛେଦ

## ବର୍ଦ୍ଧମାନ ବିଭାଗକୁ ବଦଳି

"ମହାଯାତ୍ରା" ଓ "କବିତାବଳୀ"ର ଅଂଶବିଶେଷ ପ୍ରତି ଆପତ୍ତି ହେବା ଓ ତାହାର ଶେଷ ନିଷ୍ପତ୍ତି ହେବା ପ୍ରାୟ ଦେଢ଼ ମାସ ପରେ ରାଧାନାଥଙ୍କୁ ବର୍ଦ୍ଧମାନ ବିଭାଗର ଇନ୍‌ସପେକ୍ଟର ରୂପେ ବଦଳି କରାଗଲା । "ମହାଯାତ୍ରା"ର ସମାଲୋଚନାରେ ଯେଉଁ "ରାଜଦ୍ରୋହ" ଅଂଶ ଥିବା ଅଭିଯୋଗ କରାଯାଇଥିଲା ତାହା ଏ ବଦଳିର କାରଣ । ୧୯୦୦ ଜାନୁୟାରୀ ତା ୨ରିଖରେ ସେ ବଦଳି ଆଦେଶ ପାଇଲେ । ରାଧାନାଥ ଶିକ୍ଷାବିଭାଗୀୟ ଗୋଟିଏ ସରକାରୀ ସମ୍ମିଳନୀରେ ଯୋଗ ଦେବାକୁ କଲିକତା ଯାଇଥିଲେ । ତାଙ୍କ ସ୍ତ୍ରୀ ମଧ୍ୟ ସେହିଥର ତାଙ୍କ ସହିତ କଲିକତା ଯାଇଥିଲେ । କଲିକତାରେ ପହଞ୍ଚିବା ପରେ ଏହି ଆଦେଶ ସେ ପାଇଥିଲେ । ସେ ଯେ ବଦଳି ହେବେ ଏହା ତାଙ୍କୁ ପୂର୍ବରୁ ଜଣାଇଦିଆଯାଇଥିଲେ ମଧ୍ୟ ବଦଳି ଏତେଶୀଘ୍ର ହୋଇଯିବ ବୋଲି ସେ ଭାବିନଥିଲେ । ସେ ଏସମ୍ବନ୍ଧରେ ଲେଖିଥିଲେ "ହଠାତ୍ ଏରୂପ ପରିବର୍ତ୍ତନର ଆଦେଶ ଆସିବ ଏହା ମୁଁ ସ୍ୱପ୍ନରେ ଭାବି ନାହିଁ । ତିନି ଜଣଙ୍କ ପ୍ରତି ଏକ ସମୟରେ ଆଦେଶ ପ୍ରେରିତ ହୋଇଅଛି ; ସୁତରାଂ କୌଣସି ଆପତ୍ତି ସଙ୍ଗତ କିମ୍ବା ଶୋଭନୀୟ ହେବନାହିଁ । ×× " (ଶଶିଭୂଷଣଙ୍କଠାକୁ କଲିକତାରୁ ଚିଠି ୭।୧।୧୯୦୦ ।) ତାଙ୍କ ସ୍ଥାନରେ ଓଡ଼ିଶାକୁ ମିଂ ରୁଥର୍ ଇନ୍‌ସପେକ୍ଟର ହୋଇ ଆସିଲେ । ରାଧାନାଥ ହୁଗୁଲିରେ ଅବସ୍ଥାପିତ ହେଲେ ।

ରାଧାନାଥଙ୍କ ଅମଳରେ ଓଡ଼ିଶାରେ (ମୋଗଲବନ୍ଦୀ) ଓ ଗଡ଼ଜାତରେ ୧୩ଟି ଏଣ୍ଟ୍ରାନ୍‌ସ (ହାଇସ୍କୁଲ) ସ୍କୁଲ ସ୍ଥାପିତ ହୋଇଥିଲା । ସେତେବେଳେ ତିନିଜଣ ଡେପୁଟି ଇନ୍‌ସପେକ୍ଟର

ତାଙ୍କୁ ସାହାଯ୍ୟ କରିବାପାଇଁ ଥିଲେ । ରାଧାନାଥ ଜଏଣ୍ଟ ଇନ୍‌ସପେକ୍ଟର ହୋଇ କାର୍ଯ୍ୟ ଆରମ୍ଭ କଲାବେଳକୁ (୧୮୭୭ ବେଳକୁ) ମୋଗଲ-ବନ୍ଦୀ ଓ ଗଡ଼ଜାତ ମିଶି ଓଡ଼ିଶାରେ ପ୍ରାୟ ୪୦ (ଚାଳିଶି) ହଜାର ଛାତ୍ର ପଢ଼ୁଥିଲେ । ୧୯୦୦ବେଳକୁ ଛାତ୍ର ସଂଖ୍ୟା ପ୍ରାୟ ଏକଲକ୍ଷ ୪୦ ହଜାର ହୋଇଥିଲା ।

## ବଙ୍ଗଦେଶରେ ରାଧାନାଥ

ରାଧାନାଥ ବର୍ଦ୍ଧମାନ ସର୍କଲକୁ ବଦଳି ହେବା ପରେ ବଙ୍ଗ ଦେଶର ଏହି ଅଞ୍ଚଳରେ ସେ ଓଡ଼ିଶା ଅପେକ୍ଷା ଟିକିଏ ସୁଖରେ ଥିଲେ ବୋଲି ଅନୁମାନ ହୁଏ । ତାଙ୍କର ଏହି ବଦଳିଦ୍ୱାରା "ଅସୁବିଧା ଅପେକ୍ଷା ସୁବିଧା ବରଂ ଅଧିକ ହୋଇଅଛି" ଏହା ସେ ବ୍ୟକ୍ତ କରିଥିଲେ । ରେଳରାସ୍ତାର ଅଭାବ ଥିବାରୁ ଓଡ଼ିଶାରେ ଗସ୍ତ କରିବା କଷ୍ଟକର ବୋଧ ହେଉଥିଲା । ବର୍ଦ୍ଧମାନ ସର୍କଲରେ ରେଳ-ରାସ୍ତାର ସୁବିଧା ଥିବାରୁ ଗସ୍ତ କରିବାରେ ସେ ଆରାମ ବୋଧ କରୁଥିଲେ । ରେଳ ଯୋଗୁଁ ଏହି ପ୍ରବାସ ତାଙ୍କୁ ପ୍ରବାସ ପରି ବୋଧ ହେଉନଥିଲା । "ଢେଙ୍କାନାଳରୁ କଟକ ଯିବା ଅପେକ୍ଷା ଏଠାରୁ (ହୁଗୁଳିରୁ) କଟକ ଯିବା ସହଜ । ଏଠାରୁ କଟକ ୧୫ ଘଣ୍ଟାର ମାର୍ଗ ମାତ୍ର ।" (ଅନୁଗୁଳଜିଲ୍ଲା ପୋକତୁଙ୍ଗୀର ପ୍ରାଇମେରି ସ୍କୁଲ ଶିକ୍ଷକ ବିଶ୍ୱନାଥ ରଥଙ୍କଠାକୁ ହୁଗୁଳିଠାରୁ ରାଧାନାଥଙ୍କ ୩।୨।୧୯୦୧ର ପତ୍ର ) ।

ତିନଚାରିବର୍ଷ ପୂର୍ବେ ସ୍ୱାସ୍ଥ୍ୟହାନି ଯୋଗୁଁ କାର୍ଯ୍ୟରୁ ଅବସର ନେବେ ବୋଲି ସେ ଭାବିଥିଲେ । ବଙ୍ଗଳାକୁ ବଦଳି ହେବା ପରେ ମଧ୍ୟ ସେହି ସଂକଳ୍ପ ତାଙ୍କର ଥିଲା । "ସ୍ୱାସ୍ଥ୍ୟ ଭଙ୍ଗ ହେତୁ ତାଙ୍କର ଅଧିକ ଦିନ କାର୍ଯ୍ୟ କରିବାର ଇଚ୍ଛା ହେଉନଥିଲା । କିନ୍ତୁ ସଦ୍ କାର୍ଯ୍ୟ

କରିବାକୁ ହୁଏ ତାହାହେଲେ ଏହି ନଗରରେ କାର୍ଯ୍ୟ କରିବା ଅନେକ ସୁବିଧା ଥିବା ସେ ବୋଧ କରୁଥିଲେ । ଗସ୍ତ ସୁବିଧା ଯୋଗୁଁ ସେ ଗସ୍ତରେ ଓଡ଼ିଶାରେ ଯେତେ ସମୟ ଦେଇପାରୁଥିଲେ ତାହା ଅପେକ୍ଷା ବେଶି ଏଠାରେ ଦେଇଥିଲେ । ଓଡ଼ିଶାରେ ଏପରି ପ୍ରାୟ କେବେ ହୋଇନଥିଲା ।" ଏ ଅଞ୍ଚଳରେ ନାନା ପ୍ରକାର ଯାନ ସୁଲଭ ଥିଲା ଏବଂ ଗସ୍ତରେ ବାହାରିଲେ ପୂର୍ବରୁ କୌଣସି ପ୍ରକାର ବନ୍ଦୋବସ୍ତର ଆବଶ୍ୟକତା ନଥିଲା । (ଉପରୋକ୍ତ ଚିଠି)

ପ୍ରବାସରେ ରହି ରାଧାନାଥଙ୍କ ମନରେ ଗୋଟିଏ ଦୁଃଖ ଜାତ ହୋଇଥିବା ଜଣାଯାଏ । ତାଙ୍କର ଧାରଣା ହୋଇଥିଲା ଯେ ଓଡ଼ିଶାରେ ତାଙ୍କର ଅସଂଖ୍ୟ ବନ୍ଧୁ ଥିଲେ ମଧ୍ୟ ବର୍ତ୍ତମାନ ସେମାନେ ତାଙ୍କୁ ପାଶୋରି ଦେଲେଣି । ଓଡ଼ିଶାରୁ ମୁଁ ବହୁଦିନ ଦେଶାନ୍ତରିତ ଏବଂ ଓଡ଼ିଶାରେ ବିସ୍ମୃତ ହୋଇ ସୁଦ୍ଧା ଓଡ଼ିଶାକୁ ଏବଂ ଆପଣମାନଙ୍କୁ ବିସ୍ମୃତ ହୋଇନାହିଁ ।" ରାଧାନାଥଙ୍କର ବନ୍ଧୁମାନଙ୍କ ଭିତରୁ ଅଳ୍ପ ସଂଖ୍ୟକ ତାଙ୍କ ସହିତ ପତ୍ରାଳାପ କରୁଥିବା ଯୋଗୁଁ ତାଙ୍କର ଏହି ଧାରଣା ହୋଇଥିଲା । କିନ୍ତୁ ପ୍ରକୃତରେ ଓଡ଼ିଶାକୁ ସେ ଭୁଲି ନଥିଲେ କି ଓଡ଼ିଶା ତାଙ୍କୁ ଭୁଲି ନଥିଲା । ତାଙ୍କର "ଆତ୍ମକଥା"ରେ ଲିଖିତ ସ୍ଖଳନ ଏହି ଭ୍ରମଧାରଣର ଏକ କାରଣ ହେବା ସମ୍ଭବ ।

## ଲେଖାବଳୀ ଓ କାଳିଦାସ ସୂକ୍ତ୍ୟଃ ରଚନା

ଖ୍ରୀ ୧୯୦୨ରେ ହୁଗୁଳି ଅବସ୍ଥାନ କାଳରେ ରାଧାନାଥଙ୍କର ବଙ୍ଗଭାଷାର କବିତାଗୁଡ଼ିକୁ ଏକତ୍ର କରି ବାମଣ୍ଡାର ବଡ଼କୁମାର ବଳଭଦ୍ରଦେବ ବଙ୍ଗଳାରେ ପ୍ରକାଶ କରିଥିଲେ । ପୁସ୍ତକଟିର କଳେବର କ୍ଷୁଦ୍ର ହେଲେ ମଧ୍ୟ ସାହିତ୍ୟ-ରସରେ ପୂର୍ଣ୍ଣ ଥିଲା ।

ପୁସ୍ତକଟି "ବୀରାଙ୍ଗନା" କାବ୍ୟ (ପ୍ରସିଦ୍ଧ ବଂଗୀୟ କବି ମାଇକେଲ୍ ମଧୁସୂଦନଙ୍କ ଲିଖିତ)ର ଆଦର୍ଶରେ ରଚିତ ହୋଇଥିଲା । ଏଥିରେ ଆଦି ଓ କରୁଣରସପ୍ରଧାନ କେତୋଟି କବିତା ଥିଲା । ଜଣେ ସମାଲୋଚକ ଲେଖିଥିଲେ—"ମାଇକେଲଙ୍କ ଭାବ ଓ ଭାଷା ରାଧାନାଥ ବାବୁ ଯେପରି ଆପଣାର କରିଛନ୍ତି, ଏପରି ଆଉ କେହି କରିପାରିନାହାଁନ୍ତି । ରାଧାନାଥ ବାବୁଙ୍କର ସଂସ୍କୃତରେ ଅସାଧାରଣ ବ୍ୟୁତ୍ପତ୍ତି ଥିବାରୁ ତାଙ୍କର ଭାଷା ବିଶେଷ ରୂପେ ପରିମାର୍ଜିତ ଓ ସୁମଧୁର ହୋଇଥିଲା । ମାଇକେଲ୍‌ଙ୍କ ଦୋଷଗୁଡ଼ିକ ରାଧାନାଥବାବୁ ଅନାୟାସେ ପରିହାର କରି ପାରିଥାଆନ୍ତେ, କିନ୍ତୁ ତାହା କରିନାହାନ୍ତି । ଏକ ସ୍ଥାନରେ ସେ ଲେଖିଛନ୍ତି —

ଆତଙ୍କେ କାଁପିଲ କଭୁ, କଭୁ ପୁଲକିଲ
ହାସ୍ୟ, ଶୁନି ସେ ସଙ୍କଟ ସେହ୍ନି ବିରଚନା,
ସେ କେଶ-ସଂକୀର୍ଣ୍ଣ ମୁକ୍ତି, ଅଦ୍ଭୁତ ଭାରତୀ ।"

'ପୁଲକିଲ', 'ମୁଦେ', 'ହାଣିଲ୍' ପ୍ରଭୃତି ମାର୍ଜନୀୟ; କିନ୍ତୁ "କେଶ-ସଂକୀର୍ଣ୍ଣ ମୁକ୍ତି" (Hair-breadth escape) ଇଂରାଜୀ ଭାବଦୁଷ୍ଟ ଓ ଦୁର୍ବୋଧ୍ୟ—ଏହା ବ୍ୟବହାର ନ କରିଥିଲେ ଆମେ ଖୁସି ହୋଇଥାଆନ୍ତୁ । ଉଲ୍ଲିଖିତ ପରି ଗୋଟିଏ ଦୁଇଟି ଦୋଷଥିଲେ ମଧ୍ୟ କୌଣସି ସ୍ଥାନରେ ତାଙ୍କର ରଚନାର ସୌନ୍ଦର୍ଯ୍ୟ ହାନି ବା ମାଧୁର୍ଯ୍ୟ ନଷ୍ଟ ହୋଇ ନାହିଁ ।" "ରାଧାନାଥ ବାବୁଙ୍କର ଲାବଣ୍ୟମୟୀ କବିତ୍ୱଶକ୍ତି ଏତେ କାଳ କ୍ଷୀଣତୋୟା କଲନାଦିନୀ ସ୍ରୋତସ୍ୱିନୀ ପରି ଗିରିଗୁହା ଓ ପର୍ବତ-କାନ୍ତାରରେ ଲୁକ୍‌କାୟିତ ଥିଲା, ଆଜି ତାହା ବଙ୍ଗଦେଶର ସମତଳ କ୍ଷେତ୍ରରେ ପ୍ରବାହିତ ଦେଖି ଓ ଏଥିରେ ଅବଗାହନ କରି ଆମେ ପୁଲକିତ ଓ ପରିତୃପ୍ତ ହେଉଛୁ ।"

("ମେଦିନୀବାନ୍ଧବ" (ବଙ୍ଗଳାଖବରକାଗଜ) ପତ୍ରିକା ୧୯୦୨ ମାର୍ଚ୍ଚ ୨୪ ତାରିଖରେ ପ୍ରକାଶିତ ମନ୍ତବ୍ୟରୁ ଉଦ୍ଧୃତ । ଅନୁବାଦିତ । )

"ମେଦିନୀବାନ୍ଧବ"ଙ୍କ ମନ୍ତବ୍ୟ ଉପରେ ଶେଷରେ ଉଦ୍ଧାର କରାଯାଇଥିବା ପଂକ୍ତି ପଢ଼ି ଓଡ଼ିଶାର କେତେକ ସାହିତ୍ୟିକ ଟିକିଏ ବିବ୍ରତ ହୋଇପଡ଼ିଥିଲେ । ରାଧାନାଥଙ୍କ ଓଡ଼ିଆ ରଚନା ସମ୍ବନ୍ଧରେ ଏହି ମନ୍ତବ୍ୟ ହୋଇଥିଲା। ତାଙ୍କର କବିତ୍ୱ ଶକ୍ତି ଓଡ଼ିଶା ପରି ଗିରିଗୁହା ଓ ପର୍ବତ କାନ୍ତାରରେ କ୍ଷୀଣତୋୟା କଳନାଦିନୀ ସ୍ରୋତସ୍ୱିନୀ ପରି ରହିଥିଲା ; କିନ୍ତୁ ବଙ୍ଗଦେଶ ପରି ସମତଳ କ୍ଷେତ୍ର ପାଇ ସେ ପ୍ରବାହିତ ହେଲା । ପୁଣି ଏଥିରେ ସମାଲୋଚକ ଆନନ୍ଦରେ ଅବଗାହନ କରି ରାଧାନାଥଙ୍କୁ ପ୍ରଶଂସାପତ୍ର ଦେଲେ — "ମାଇକେଲଙ୍କର ଭାବ ଓ ଭାଷା ରାଧାନାଥ ବାବୁ ଯେପରି ଆପଣାର କରିଛନ୍ତି, ଏହିପରି ଆଉ କେହି ପାରିନାହାନ୍ତି ।" ଓଡ଼ିଆ ସାହିତ୍ୟ ରାଜ୍ୟର "କବିବର" "କବିସମ୍ରାଟ" ବଙ୍ଗଦେଶରେ ମାଇକେଲଙ୍କ ଅନୁକରଣକାରୀ କବି !

ରାଧାନାଥ ଅନେକବର୍ଷ ତଳେ ପ୍ରତିଜ୍ଞା କରିଥିଲେ ଯେ ସେ ଆଉ ଓଡ଼ିଆରେ ଲେଖିବେ ନାହିଁ ଏବଂ ତାର ପ୍ରଥମ ନିଦର୍ଶନ ସ୍ୱରୂପ "ମହାଯାତ୍ରାର" ଶେଷାଂଶର ପାଣ୍ଡୁଲିପିକୁ ପୋଡି ଦେଇଥିଲେ । ବୋଧହୁଏ ସେହି ଭାବ ତାଙ୍କ ମନରୁ ପୋଛି ହୋଇ ନଥିବାରୁ ଏହିପରି ବଙ୍ଗଳା ଓ ସଂସ୍କୃତ ଗ୍ରନ୍ଥ ପ୍ରକାଶ କଲେ ।

"କାଳିଦାସ ହୃଦୟଃ" ଟି ସଂଗ୍ରହ ଗ୍ରନ୍ଥ । ମହାକବି କାଳିଦାସଙ୍କ ରଘୁବଂଶ, କୁମାରସମ୍ଭବ, ମେଘଦୂତ, ଶକୁନ୍ତଳା, ମାଳବିକାଗ୍ନିମିତ୍ର, ବିକ୍ରମୋର୍ବଶୀରୁ କେତେକ ଉକ୍ତି ସଂଗ୍ରହ କରି ଦେବନାଗର ଅକ୍ଷରରେ ମୂଳସୂକ୍ତି, ତା'ପରେ ଇଂରେଜୀ ଅନୁବାଦ, ଇଂରେଜୀ ଭାବାର୍ଥ, ତା'ପରେ ବଙ୍ଗଳା ଅନୁବାଦ ଓ ତାର ଭାବାର୍ଥ ପ୍ରଦତ୍ତ ହୋଇଥିଲା । ଦାମ ଆଠଅଣା । ଓଡ଼ିଶାର କମିସନର ଓ ଗଡ଼ଜାତ

ମାନ୍ଦ୍ରାଜର ସୁପରିନ୍‌ଟେଣ୍ଡେଣ୍ଟ କେ.ଜି. ଗୁପ୍ତଙ୍କ ନାମରେ ଉତ୍ସର୍ଗ ହୋଇଥିଲା । ଶ୍ରୀ ସୁଶୀଳକୁମାର ଚ୍ୟାଟାର୍ଜୀ ଏହାର ପ୍ରକାଶକ ଥିଲେ ।

ରାଧାନାଥ ବର୍ଦ୍ଧମାନ ଡିଭିଜନରେ ରହିବାରୁ ବଙ୍ଗଭାଷାରେ ଏ ଦୁଇଟି କ୍ଷୁଦ୍ର ପୁସ୍ତକ ପ୍ରକାଶ କରିବା ପାଇଁ ମନ କରିଥିବା ସ୍ୱାଭାବିକ ।

## "ମହାଯାତ୍ରା"କୁ ସମ୍ପୂର୍ଣ୍ଣ କରିବା ପାଇଁ ପ୍ରସ୍ତାବ

"ମହାଯାତ୍ରା"ର ପ୍ରଥମ ଭାଗ ଖ୍ରୀ: ୧୮୯୬ରେ କନିକାର ରାଜମାତା ସ୍ୱର୍ଗୀୟା କୃଷ୍ଣପ୍ରିୟା ପାଟମହାଦେବୀଙ୍କ ଦ୍ୱାରା ପ୍ରଥମେ ପ୍ରକାଶିତ ହୋଇଥିଲା । ତାପରେ ୧୮୯୯ରେ ରାଧାନାଥ ନିଜେ ଅବଶିଷ୍ଟ ଅଂଶର ପାଣ୍ଡୁଲିପି ଓ ନୋଟ୍‌ଖାତା ପୋଡ଼ିଦେଲେ । ୧୯୦୬ରେ ରାଧାନାଥଙ୍କ ସବୁ ଲେଖା ଏକତ୍ରିତ ହୋଇ "ରାଧାନାଥ ଗ୍ରନ୍ଥାବଳୀ" ନାମରେ ପ୍ରକାଶିତ ହେଲା । କେହି କେହି ଭାବିଥିଲେ ଯେ ଗ୍ରନ୍ଥାବଳୀ ପ୍ରକାଶ ପାଇବା ପୂର୍ବରୁ "ମହାଯାତ୍ରା"ର ଅବଶିଷ୍ଟ ଅଂଶଗୁଡ଼ିକ ସହିତ ସମ୍ପୂର୍ଣ୍ଣ କାବ୍ୟଟି ଏହି ଗ୍ରନ୍ଥାବଳୀରେ ସ୍ଥାନ ପାଇବ, କିନ୍ତୁ ତାହା ହୋଇନଥିବାରୁ ଏମାନଙ୍କ ମନରେ ଗୋଟିଏ ଦୁଃଖ ରହିଗଲା । "ମହାଯାତ୍ରା"କୁ ସମ୍ପୂର୍ଣ୍ଣ କରିଦେବା ପାଇଁ କେହି କେହି ରାଧାନାଥଙ୍କୁ ଅନୁରୋଧ କରିଥିଲେ ଏବଂ କେହି କେହି ଅନ୍ୟପ୍ରକାର ପ୍ରସ୍ତାବ ମଧ୍ୟ ଦେଇଥିଲେ । ସାଧାରଣତଃ ଲୋକଙ୍କ ମନରେ ଧାରଣା ହୋଇଥିଲା ଯେ ଉଚ୍ଚ ରାଜପଦରେ ଥିବା ଯୋଗୁଁ ଓ କର୍ମକ୍ଷେତ୍ରର ଆୟତନ ଅତି ବିସ୍ତୃତ ଥିବାରୁ ରାଧାନାଥଙ୍କୁ ରାଜକାର୍ଯ୍ୟ ବାହାରେ ଏଥିପ୍ରତି ଦୃଷ୍ଟି ଦେବାକୁ ସମୟ ମିଳୁନଥିଲା । ଓଡ଼ିଆଜାତି ପ୍ରତି ଅଭିମାନ କରି ସେ ପାଣ୍ଡୁଲିପିଟିକୁ କ୍ରୋଧରେ, ପୋଡ଼ି ଦେଇଥିବା କଥା ଅନେକେ ଜାଣି ନଥିଲେ । ସେଥିପାଇଁ

"ମହାଯାତ୍ରା"କୁ ସମ୍ପୂର୍ଣ୍ଣ କରିବା ନିମନ୍ତେ ଯେଉଁସବୁ ପ୍ରସ୍ତାବ ହୋଇ ଥିଲା ତାହାର କିଛି ଫଳ ହେଲା ନାହିଁ । ଓଡ଼ିଆଜାତି ରାଧାନାଥଙ୍କ ପ୍ରତି ଅକୃତଜ୍ଞ ରହିବା ଜଣାପଡ଼ନାହିଁ । ବୃଥାରେ "ରାଧାନାଥ-ଉପେନ୍ଦ୍ର ଆସନ ବିବାଦ" ସମ୍ପର୍କରେ କେତେ ଲୋକ ଏଥିରେ ରାଧାନାଥଙ୍କ ହାତ ଥିବା ସନ୍ଦେହ କରିଥିଲେ ଏବଂ ସମସ୍ତ ସୁବିଧା ପାଇବା କ୍ଷଣି ତାଙ୍କୁ ସମାଲୋଚନା କରୁଥିଲେ, କିନ୍ତୁ ଏହା ବୋଲି ଯେ ରାଧାନାଥଙ୍କ ସମର୍ଥକଗୋଷ୍ଠି ସଙ୍କୀର୍ଣ୍ଣ ଓ ଶକ୍ତିହୀନ ଥିଲା ଏହା କୁହାଯାଇପାରିବ ନାହିଁ । ଦଳେ ଓଡ଼ିଆ ସମର୍ଥକ ହୋଇଲେ ତ ଦଳେ ବିରୋଧରେ ରହିଲେ । ଏଥିରେ ଓଡ଼ିଆଜାତି ପ୍ରତି ଅଭିମାନ କରି "ଆଉ ଓଡ଼ିଆରେ ଲେଖିବି ନାହିଁ" ବୋଲି ପ୍ରତିଜ୍ଞା କରିବାଦ୍ୱାରା ଓଡ଼ିଆ ଜାତିକୁ ଅକୃତଜ୍ଞ ରୂପେ ଚିହ୍ନିତ କରିବା ପାଇଁ ରାଧାନାଥ ଅବସର ଦେଲେ । ପାଣ୍ଡୁଲିପି ରଖିବା କିମ୍ବା ପୋଡ଼ିବା ତାଙ୍କର ନିଜର ବ୍ୟକ୍ତିଗତ ବ୍ୟାପାର । କିନ୍ତୁ ପ୍ରକାଶାନ୍ତରରେ ଦେଖିଲେ ତାହା ଜାତୀୟ ସମ୍ପଦ; ତାକୁ ନଷ୍ଟ କରିଦେବାର ଅଧିକାର ମଧ୍ୟ ରାଧାନାଥଙ୍କ ନଥିଲା ବୋଲି ଯୁକ୍ତି ହୋଇପାରେ । ତାଙ୍କଭଳି ଜଣେ ଧୀର, ସ୍ଥିରବୁଦ୍ଧି ଓ ବିବେକୀ ବୃଦ୍ଧ ପକ୍ଷରେ ଏଭଳି ପ୍ରତିଜ୍ଞା ଓ କାର୍ଯ୍ୟକଳାପ ଅସୁନ୍ଦର ପ୍ରତୀୟମାନ ହେବା ସ୍ୱାଭାବିକ ।

ଝଲିକୋଟରୁ ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କର "ପ୍ରଜାବନ୍ଧୁ" ପତ୍ରିକା ସେତେବେଳେ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା । ନୀଳମଣି ବିଦ୍ୟାରତ୍ନ ବାମଣ୍ଡା-ରାଜାଙ୍କର "ସମ୍ବଲପୁର ହିତୈଷିଣୀ" କାଗଜର ସମ୍ପାଦକଭାରୁ ଅବସର ନେଇ ଝଲିକୋଟ ରାଜାଙ୍କଠାରେ ଚାକିରି କରି ରମ୍ଭାରେ ରହିଲେ । ନୀଳମଣି ରାଧାନାଥଙ୍କର ଜଣେ ଶୁଭାକାଂକ୍ଷୀ ଓ ତାଙ୍କର କାବ୍ୟ କବିତାର ଜଣେ ନିଷ୍ଠାପର ଭକ୍ତ । ତାଙ୍କର "ପ୍ରଜା-ବନ୍ଧୁରେ" ଡିସେମ୍ବର ତା ୧୯ ରିଖ ୧୯୦୨ରେ "ମହାଯାତ୍ରା"

କାବ୍ୟ ସମ୍ପୂର୍ଣ୍ଣ କରିବା ବିଷୟରେ ଏକ ମନ୍ତବ୍ୟ ପ୍ରକାଶ ପାଇଥିଲା ! ସେଥିରେ ଲେଖା ହୋଇଥିଲା—"× × × ରାଧାନାଥବାବୁ ଓଡ଼ିଶାରୁ ଯାଇ ବର୍ଦ୍ଧମାନ ବିଭାଗର ସ୍କୁଲ ଇନ୍‌ସ୍ପେକ୍ଟର କାର୍ଯ୍ୟ କରୁଅଛନ୍ତି । ଓଡ଼ିଶା ଅପେକ୍ଷା ବର୍ଦ୍ଧମାନ ବିଭାଗରେ ବିଦ୍ୟାଳୟ ସଂଖ୍ୟା ବେଶି, ସୁତରାଂ ତାଙ୍କୁ ସର୍ବଦା କାର୍ଯ୍ୟରେ ବିବ୍ରତ ହେବାକୁ ପଡ଼ୁଥିବ । ଏପରି ସ୍ଥଳେ ତାଙ୍କଦ୍ୱାରା "ମହାଯାତ୍ରା"ର ପରବର୍ତ୍ତୀ ଅଂଶମାନ ରଚିତ ହେବାର ଆଶା କରାଯାଇ ନପାରେ ।

"ରାଧାନାଥ ବାବୁ ବୟସରେ ବୃଦ୍ଧ, ତଦୁପରି ନାନାବିଧ ଦୁର୍ଘଟନାରେ କାତର, ଅନ୍ତରର ସନ୍ଦେହପୂର୍ଣ୍ଣ ଭାବରୁ ଅଭାବ ମଧ୍ୟ ଅଳ୍ପ ନୁହେଁ, ସୁତରାଂ ନିଷ୍ଫଳ ସାହିତ୍ୟ ଚର୍ଚ୍ଚା ସକାଶେ ଅଧିକ ଆୟର ପଦ ପରିତ୍ୟାଗ କରିବା ସକାଶେ ତାଙ୍କୁ ପରାମର୍ଶ ଦିଆଯାଇ ନପାରେ । ବର୍ତ୍ତମାନ ପ୍ରଶ୍ନ ଏହି ଯେ 'ମହାଯାତ୍ରା'ର ପରବର୍ତ୍ତୀ ଅଂଶ ଲିଖିତ ହେବାର ଉପାୟ କି ? ଉପାୟ ଅଛି, କବି ରାଧାନାଥ "ମହାଯାତ୍ରା"ରେ ମୟୂରଭଞ୍ଜ ରାଜାଙ୍କୁ ସମ୍ବୋଧନ କରି କହିଅଛନ୍ତି—

"ତୁମ୍ଭର ଆଦେଶେ ବୀର ଏ ମହାଗୀତିକା
ଗାଇବା ଆଶୟେ ଏବେ ଧରିଛି ମୁଁ କରେ ।"

ପୁଣି ବାମଣ୍ଡା ରାଜାଙ୍କୁ ସମ୍ବୋଧନ କରି କହିଅଛନ୍ତି—

"କୁମାର ସହିତେ ଆସି ବାଗ୍‌ଦେବୀ ମଣ୍ଡପେ
କର ଅଧିଷ୍ଠାନ, ଯେବେ ଶୁଣିବ ଏ କଥା ।"

"ମୟୂରଭଞ୍ଜ ରାଜାଙ୍କ ଆଦେଶରେ "ମହାଯାତ୍ରା"ର ଆରମ୍ଭ, ପୁଣି ମୟୂରଭଞ୍ଜରାଜା ଏବଂ ସପୁତ୍ର ବାମଣ୍ଡାରାଜା ଶ୍ରୋତା

ଥାଉଁ ଥାଉଁ "ମହାଯାତ୍ରା" ମହାକାବ୍ୟ ଅସମ୍ପୂର୍ଣ୍ଣାବସ୍ଥାରେ ରହିବା ଉତ୍କଳର ଦୁର୍ଭାଗ୍ୟର ବିଷୟ । ଦୁଇ ରାଜାଯାକ ଧନୀ, ଶିକ୍ଷିତ, ଗୁଣଗ୍ରାହୀ ବୋଲି ସୁପରିଚିତ । ସେମାନଙ୍କ ମଧ୍ୟରୁ ଜଣେ ଅନ୍ତଃତ ଇଚ୍ଛା କଲେ ରାଧାନାଥ ବାବୁଙ୍କୁ ତାଙ୍କର ଅବଶିଷ୍ଟ ଜୀବନକାଳ କେବଳ ସାହିତ୍ୟଚର୍ଚ୍ଚାରେ ନିଯୁକ୍ତ କରି ପାରନ୍ତେ । ଏତଦ୍ଦ୍ୱାରା କିଛି ବ୍ୟୟ ହେବ ସତ୍ୟ, କିନ୍ତୁ ଅମର କୀର୍ତ୍ତିଲାଭ ହେବା ବିଷୟରେ ଅଣୁମାତ୍ର ସନ୍ଦେହ ନାହିଁ । ଯାହା କରିବାର ଅଛି ଶୀଘ୍ର କରିବା ଉଚିତ, ନ ଚେତ୍ ପଛକୁ ପଶ୍ଚାତ୍ତାପ ମାତ୍ର ସାର ହେବ । ଜଣେ ସାହିତ୍ୟ ସେବକ ।"

"ପ୍ରଜାବନ୍ଧୁ"ଙ୍କୁ ରାଧାନାଥ "ମହାଯାତ୍ରା"ର ପାଣ୍ଡୁଲିପି ପୋଡ଼ିଥିବା ଓ ତତ୍‌ସଂକ୍ରାନ୍ତ ବ୍ୟାପାର ଜଣା ନଥିବାରୁ ଏପରି ସୂଚନା ଦେଇଥିବା ସମ୍ଭବ; ଜାଣିଥିଲେ ଏ ବିଷୟର ଅବତାରଣା ମଧ୍ୟ ସେ କରିଥାଆନ୍ତେ ।

ରାଧାନାଥ ୧୯୦୩ ସେପ୍‌ଟେମ୍ବରରେ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ଅବସର ଗ୍ରହଣ କରିବା ପରେ ମଧ୍ୟ ଇଚ୍ଛାଥିଲେ ସେ ଏହି କାର୍ଯ୍ୟକୁ ସଂପୂର୍ଣ୍ଣ କରି ପାରିଥାଆନ୍ତେ । ଅବସର ନେବାକୁ ଆଉ ଅଳ୍ପକାଳ—ମୋଟେ ନଅ ମାସ—ଥିବା ବେଳେ "ଯାହା କରିବାର ଅଛି ଶୀଘ୍ର କରିବା ଉଚିତ, ନହେଲେ ପଛକୁ ପଶ୍ଚାତ୍ତାପ ମାତ୍ର ସାର ହେବ"ର ଆବଶ୍ୟକତା ବେଶି ଅନୁଭୂତ ନହେବା ସ୍ୱାଭାବିକ । ରାଧାନାଥ ବିବେକୀ, ଦେଶସେବା ପରାୟଣ । ତାଙ୍କ ପକ୍ଷେ ମାସିକ ଦରମା ପାଇଁ କାବ୍ୟ କବିତା ଲେଖିବା ପ୍ରସ୍ତାବ ତାଙ୍କୁ ନିଶ୍ଚୟ ଅସ୍ୱସ୍ତିକର ବୋଧ ହୋଇଥିବ । ତାଙ୍କର ଦରମା ମଧ୍ୟ କମ୍ ନଥିଲା ଏବଂ ଅବସର ଗ୍ରହଣ ପରେ ତାଙ୍କର ପେନସନ୍‌ର ପରିମାଣ ମଧ୍ୟ କମ୍ ନଥିଲା । ସେତେବେଳର

ଦେଶର ଆର୍ଥିକ ଅବସ୍ଥା, ଦରଦାମ ପ୍ରଭୃତି ସହିତ ତୁଳନା କଲେ ରାଧାନାଥ ବାବୁ ଯାହା ବେତନ ହିସାବରେ ଅର୍ଜ୍ଜନ କରୁଥିଲେ, ଓଡ଼ିଶାରେ ପଚଶ ପଚିଶ ଲୋକଙ୍କ ଭାଗ୍ୟରେ ଘଟୁଥିଲା କି ନାହିଁ ସନ୍ଦେହ । ବିଶେଷତଃ ତାଙ୍କର ପୁସ୍ତକ ମୁଦ୍ରଣରେ ତାଙ୍କୁ ଓଡ଼ିଶାର ବିଭିନ୍ନ ବଦାନ୍ୟ ରାଜାମହାରାଜାମାନେ ବହୁତ ଆର୍ଥିକ ସାହାଯ୍ୟ କରିଥିଲେ । ଏ କ୍ଷେତ୍ରରେ ତାଙ୍କୁ ଆର୍ଥିକ ଦୁର୍ଗତିରେ ପଡ଼ିବାକୁ ହୋଇ ନଥିଲା । ପୁଣି ରାଧାନାଥ ଟଙ୍କା ମୁହଁକୁ ଚାହିଁ ସାହିତ୍ୟଚର୍ଚ୍ଚା କରିବେ ତାଙ୍କର ଏତେ ରୋଜଗାର ସତ୍ତ୍ୱେ ତାଙ୍କୁ ଅଧିକା ଆର୍ଥିକ ସାହାଯ୍ୟ ଦେଲେ ସେ ନିଶ୍ଚିନ୍ତରେ ଲେଖନୀ ଚାଳନ କରିବେ ବୋଲି କଳ୍ପନା କରିବା ସମୀଚୀନ ବୋଧ ହେଉନାହିଁ । ରାଧାନାଥ "ଆର୍ଥିକ ଦୁର୍ଗତି" ହୋଇଥିବା ଜଣାଇ କାହାର ସାହାଯ୍ୟ ପ୍ରାର୍ଥୀ ହୋଇ ନାହାନ୍ତି କି ଅବସର ଗ୍ରହଣ ପରେ ଅର୍ଜ୍ଜନ ବୃଦ୍ଧି କରିବା ପାଇଁ ଅନ୍ୟ ଚାକିରି କରି ନାହାନ୍ତି ।

"ପ୍ରଜାବନ୍ଧୁ"ଙ୍କ ପ୍ରସ୍ତାବ ସଫଳ ହୋଇପାରି ନାହିଁ । ରାଧାନାଥଙ୍କ ଅଟଳ ପ୍ରତିଜ୍ଞା ହିଁ ଏ କାବ୍ୟକୁ ଅସମ୍ପୂର୍ଣ୍ଣ ରଖିଲା ।

ରାଧାନାଥ (୧୯୦୩ ସେପ୍ଟେମ୍ବର ମାସରେ) ଅବସର ଗ୍ରହଣ କରିବା ପରେ ମଧ୍ୟ "ମହାଯାତ୍ରା" ସମ୍ପୂର୍ଣ୍ଣ କରିବା ପାଇଁ ପୁଣି ଗୋଟିଏ କ୍ଷୁଦ୍ର ଉଦ୍ୟମ ହୋଇଥିଲା । ୧୯୦୩ ଡିସେମ୍ବର ମାସ ତା ୩୦।୩୧ରେ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ହୋଇଥିଲା । ଏହି ସମୟରେ ତା ୨୯ ରିଖ ଦିନ "ଉତ୍କଳ ସାହିତ୍ୟ ସମାଜ"ର ପ୍ରଥମ ଅଧିବେଶନ ରାଧାନାଥଙ୍କ ସଭାପତିତ୍ୱରେ ହୋଇଥିଲା । ଏହିଠାରେ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେବ ରାଧାନାଥଙ୍କୁ ଗୋଟିଏ ସୁବର୍ଣ୍ଣ ଝର କଲମ ଉପହାର

ଦେଇଥିଲେ । ପ୍ରଥମେ ଏହି ଉପହାର ଗ୍ରହଣ କରିବାକୁ ରାଧାନାଥ ଅମଙ୍ଗ ଥିଲେ । କିନ୍ତୁ ମୟୂରଭଞ୍ଜ ମହାରାଜା ଶ୍ରୀଶ୍ରୀ ରାମଚନ୍ଦ୍ର ଭଞ୍ଜଦେବ (ହରିହରଙ୍କ ଶାଳକ)ଙ୍କ ପରାମର୍ଶ ପରେ କବିବର ଶ୍ରୀ ରାମଚନ୍ଦ୍ରଙ୍କ ହାତରୁ ସେ ଫାଉଣ୍ଟେନ ପେନ୍‌ଟିକୁ ଗ୍ରହଣ କରିଥିଲେ । ମହାରାଜଙ୍କ ଉଦ୍ଦେଶ୍ୟ ଥିଲା, ଏହି ସୁବର୍ଣ୍ଣ ଝରଣାକଲମରେ ରାଧାନାଥ "ମହାଯାତ୍ରା"ର ଅବଶିଷ୍ଟ ଅଂଶ ଲେଖି ସମ୍ପୂର୍ଣ୍ଣ କରିବେ । ଏହି ଘଟଣାକୁ ଲକ୍ଷ୍ୟ କରି ପଦ୍ମଚରଣ ନାୟକ ନାମକ ଜଣେ ହିତାକାଂକ୍ଷୀ "ସମ୍ବଲପୁର ହିତୈଷିଣୀ"ରେ ତାଙ୍କର ଏକ କବିତାରେ ଉତ୍ତରରେ ଲେଖିଥିଲେ—

ପୁଣି ଦେବ ସେହିଦିନ ଉତ୍କଳ ସଭାରେ ।
ପରଜାବତ୍ସଳ ରାଜା ସ୍ୱଦେଶହିତୈଷୀ
ଉତ୍କଳର ଯୋଗ୍ୟପୁତ୍ର ଅଷ୍ଟଦୁର୍ଗାଧୀଶ
ଅର୍ପିଲେ ତବ ଶ୍ରୀକରେ ସୁବର୍ଣ୍ଣ ଲେଖନୀ
ଲେଖିବାକୁ, ମହାଯାତ୍ରା ଅସମ୍ପୂର୍ଣ୍ଣ ଯେଣୁ ।
ସତେ କହେ କବିଗୁରୋ ! ଆଶା ଫଳବତୀ
ହେବ, ଏହି ହତଭାଗ୍ୟ ଉତ୍କଳୀୟଙ୍କର ।
ଦେଖିବେ ସମ୍ପୂର୍ଣ୍ଣ କେବେ ସେ ସମ୍ପୂର୍ଣ୍ଣ ଗ୍ରନ୍ଥ
ସମାପ୍ତ ସମାପ୍ତ କବି ସମାପ୍ତ ଭାରତ,
ବିଳମ୍ବରେ କାର୍ଯ୍ୟନଷ୍ଟ ଶାସ୍ତ୍ରରେ କହିତ ।"

(ସମ୍ବଲପୁର ହିତୈଷିଣୀ-ଫେବ୍ରୁଆରୀ ତା ୩ ରିଖ ୧୯୦୪ )

# ଦ୍ୱାଦଶ ପରିଚ୍ଛେଦ

## ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ

୧୯୦୩ ସେପ୍ଟେମ୍ବର ମାସରେ ରାଧାନାଥ ୫୫ ବର୍ଷ ବୟସରେ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ରାଧାନାଥ କଟକରେ ରହିଲେ ।

## ଉତ୍କଳ ସମ୍ମିଳନୀ : ଉତ୍କଳ ସାହିତ୍ୟ ସମାଜର ପ୍ରଥମ ଅଧିବେଶନ

ଅବସର ଗ୍ରହଣ କରି କଟକ ଆସିବା ପରେ ସେ କଟକର ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ଦେଖାସାକ୍ଷାତ୍ କଲେ । ମଧୁସୂଦନ ଦାସ (ମଧୁବାବୁ)ଙ୍କ ସହିତ ମଧ୍ୟ କେତେଥର ଦେଖାସାକ୍ଷାତ୍ ହେଲା । ଡିସେମ୍ବର ମାସରେ କଟକରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ବସିବା ସ୍ଥିର ହୋଇଥିଲା । ଏହି ଅଧିବେଶନରେ ସଭାପତି ହେବା ପାଇଁ ରାଧାନାଥ ବାବୁଙ୍କ ପ୍ରସ୍ତାବ କ୍ରମେ ବାମଣ୍ଡାର ରାଜା ସାର୍ ସୁଢ଼ଳ ଦେବଙ୍କଠାକୁ ଟେଲିଗ୍ରାମ ଗଲା । କିନ୍ତୁ ସେତେବେଳେ ସେ ରୋଗ - ଶଯ୍ୟାରେ ପଡ଼ିଥିଲେ । ତା ୧୯ ରିଖ ନଭେମ୍ବରରେ ତାଙ୍କର ମୃତ୍ୟୁ ହୋଇସିବାରୁ ସମ୍ମିଳନୀର ଉଦ୍‌ଯୋକ୍ତାମାନଙ୍କ ଭିତରେ ଦୁଃଖର ଛାୟା ଖେଳିଗଲା ଓ ଦେଶବାସୀ ଶୋକାକୁଳ ହୋଇପଡ଼ିଲେ । ମଧୁବାବୁ ମୟୂରଭଞ୍ଜ ମହାରାଜା ଶ୍ରୀଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କୁ ସମ୍ମତ କରାଇବାରୁ ସଭାପତି ପଦରେ ତାଙ୍କର ନାମ ଘୋଷଣା କରାଗଲା ।

ଡିସେମ୍ବର ତା ୩୦, ୩୧ରେ ଉତ୍କଳ ସମ୍ମିଳନୀର ଅଧି-ବେଶନ କଟକର ଇନ୍ଦିରା ପଡ଼ିଆରେ ବସିଥିଲା । ସମ୍ମିଳନୀରେ ଅଭୂତପୂର୍ବ ଉତ୍ସାହ ଓ ଉନ୍ମାଦନାରଚରିଙ୍ଗ ଖେଳିଯାଇଥିଲା । ତା ୨୯ ରିଖ ଦିନ ଉତ୍କଳ ସାହିତ୍ୟ ସମାଜର ପ୍ରଥମ ଅଧିବେଶନ କଟକର ବିନୋଦବିହାରୀ ନିକଟସ୍ଥ ଟାଉନ୍ ଭିକ୍ଟୋରିଆ ସ୍କୁଲ ଗୃହରେ ବସିଥିଲା । ରାଧାନାଥବାବୁ ଏଥିରେ ସଭାପତି ହୋଇଥିଲେ । ସେତେବେଳେ ତାଙ୍କର ସ୍ୱାସ୍ଥ୍ୟ ମଧ୍ୟ ସେତେ ଭଲ ନଥିବାରୁ ସ୍ୱର କ୍ଷୀଣ ଶୁଣାଯାଉଥିଲା । ସେଥିପାଇଁ ତାଙ୍କର ସଭାପତି ଅଭିଭାଷଣଟି ପଣ୍ଡିତ ମୃତ୍ୟୁଞ୍ଜୟରଥ ପାଠ କରିଥିଲେ । ସେ ଏହାଠାରେ ଅନ୍ୟାନ୍ୟ ପ୍ରସଙ୍ଗ ଭିତରେ ମୁଖ୍ୟ ଭାବରେ ବ୍ୟକ୍ତ କରିଥିଲେ ଯେ, ଏହି 'ସାହିତ୍ୟ ସମ୍ମିଳନୀ'' ଶେଷ ହେବା କିଛିକ୍ଷଣ ପୂର୍ବରୁ ମୟୂରଭଞ୍ଜ ମହାରାଜା ଖଲିକୋଟ ରାଜାଙ୍କ ତରଫରୁ ସ୍ୱର୍ଣ୍ଣକଲମଟି ଉପହାର ଦେଇଥିଲେ ।

ସୁବର୍ଣ୍ଣ ସ୍ୱର୍ଣ୍ଣକଲମ ଉପହାର ଦେବାପାଇଁ ଖଲିକୋଟ ରାଜା ପୂର୍ବେ ଯେଉଁ ପ୍ରସ୍ତାବ ଦେଇଥିଲେ ତାହା ବିଦ୍ୟାରତ୍ନ ମହାଶୟ ରାଧା-ନାଥ ବାବୁଙ୍କୁ ଶଶିଭୂଷଣ ଜରିଆରେ ଜଣାଇଥିଲେ । ଏହି ପ୍ରସ୍ତାବଟି ଶୁଣିବାମାତ୍ରେ ରାଧାନାଥ ବିଦ୍ୟାରତ୍ନଙ୍କୁ ଏକ ଚିଠି ଲେଖି ତାଙ୍କର ଏଥିରେ ଅସମ୍ମତି ଥିବା କଥା ଜଣାଇ ଦେଇଥିଲେ । ରାଧାନାଥ ଲେଖିଥିଲେ, "ଶଶୀଠାରୁ ଶୁଣିଲି ଯେ, ଆପଣମାନେ ଗୋଟିଏ ପ୍ରକାଶ୍ୟ ସଭା କରି ସେହି ସଭାରେ ମୋତେ ସମ୍ମାନ ପ୍ରଦର୍ଶନ କରିବାକୁ ସଂକଳ୍ପ କରିଅଛନ୍ତି । ଆହୁରି ମଧ୍ୟ ଶୁଣିଲି ଯେ, ସେହି ଉପଲକ୍ଷରେ କୌଣସି ଧନିକ ଗୋଟିଏ ସୁବର୍ଣ୍ଣ ଲେଖନୀ ଉପହାର ଦେବେ । ଏ ସମ୍ବାଦ ଯେବେ ଅମୂଳକ ହୋଇଥାଏ, ତାହାହେଲେ ମୋହର କିଛି ବକ୍ତବ୍ୟ ନାହିଁ, ମାତ୍ର ଯେବେ ସମୂଳକ ହୋଇଥାଏ,

ମୋହର ଦୃଢ଼ ଅନୁରୋଧ, ଏ ଉଦ୍ୟମର ସୂତ୍ରପାତ ପୂର୍ବରୁ ମୋହ ସହିତ ଏ ବିଷୟରେ ପରାମର୍ଶ କରି ମୋହର ମତ ବୁଝି ଅଗ୍ରସର ହେବେ । ଧନିକଙ୍କର ଗୋତଗତ ମୁଁ ଉତ୍ତମରୂପେ ଅବଗତ । ଏପରି ସଂକଳ୍ପ ଯେବେ ତାହାଙ୍କ ମନରେ ସ୍ଥାନ ପାଇଥାଏ, ତାହା ସ୍ୱତଃଉଦ୍ଭୂତ ନୁହେଁ, ଆରୋପିତ ମାତ୍ର, ସୁତରାଂ କୃତ୍ରିମ ବୋଲି-ବାର ବାହୁଲ୍ୟ ମୁଁ ଏପରି କୃତ୍ରିମ ସମ୍ମାନର ପ୍ରୟାସୀ ନୁହେଁ ।

"ଗୋଟିଏ ସୁବର୍ଣ୍ଣ ଲେଖନୀର ମୂଲ୍ୟ ଅଧିକ ନୁହେଁ, ଟ୧୫।୩୦୯ଙ୍କା ମାତ୍ର । ମୁଁ ମଧ୍ୟ ଇଚ୍ଛା କଲେ ସେପରି ଉପହାର ଦେଇପାରେ । ମୁଁ ଶୁଣିଅଛି, ଧନିକ ଲକ୍ଷ ଲକ୍ଷ ଟଙ୍କା ସ୍ୱଦେଶୀୟ ସେବାରେ ବ୍ୟୟ କରିଛନ୍ତି, ବର୍ତ୍ତମାନ ମଧ୍ୟ କରୁଛନ୍ତି । ମୁଁ ମଧ୍ୟ ଏହା ଶୁଣିଛି ଯେ ଏହି ହେତୁରୁ ସେ ଋଣ ଭାରାକ୍ରାନ୍ତ ହୋଇଅଛନ୍ତି । ସେ ଯେଉଁ ବ୍ରତଧାରଣ କରିଅଛନ୍ତି, ସେହି ବ୍ରତ ଉଦ୍‌ଯାପନ କରନ୍ତୁ, ଏଭଳି ଶୂନ୍ୟଗର୍ଭ ବିଷୟରେ ତାହାଙ୍କୁ ପ୍ରବର୍ତ୍ତିତ କରିବା ଅନୁଚିତ ।

"ଅଳ୍ପ ଟଙ୍କାରେ ଲୋକଚକ୍ଷୁରେ ଗୋଟିଏ ଚମକ ଲଗାଇବାର ଏବଂ ଶସ୍ତାରେ ନାମ କିଣିବାର ଯେବେ ତାହାଙ୍କର ଅଭିପ୍ରାୟ ଥାଏ, ତେବେ ଅପର କୌଣସି ବ୍ୟକ୍ତିଙ୍କୁ ସେପରି ସମ୍ମାନ ପ୍ରଦର୍ଶନ କରନ୍ତୁ । ମୁଁ ମଧ୍ୟ ସେପରି ସଭାରେ ଯୋଗଦେବାକୁ ପ୍ରସ୍ତୁତ ଅଛି । ମାତ୍ର ନିଜ ସମ୍ବନ୍ଧରେ ଏପରି ବିଷୟରେ ମୁଁ ସମ୍ମତି ଦେବାକୁ ପ୍ରସ୍ତୁତ ନୁହେଁ । ତାହାଙ୍କର ଯେବେ ମୋହ ପ୍ରତି ଶ୍ରଦ୍ଧାଥାଏ, ଅବସରମତେ ମୁଁ ଗଲେ, ସେ ମୋତେ ପ୍ରାକୃତିକ ଦୃଶ୍ୟ ଦର୍ଶନର ସୁବିଧା କରିଦେଲେ ମୁଁ ଆପଣାକୁ ଯଥେଷ୍ଟ ସମ୍ମାନିତ ଏବଂ ଉପକୃତ ମଣିବି । ଏହାର ଅଧିକ କହିବା ଅନାବଶ୍ୟକ ।"

ରାଧାନାଥ ବାବୁ ସ୍ୱ ଅସମ୍ମତି ଜଣାଇବାପାଇଁ ଏକାଧିକ ବିଷୟର ଅବତାରଣା କରି, ମନେ ହେଉଛି, ସହଜ ବିଷୟଟିକୁ ଜଟିଳ କରି ଦେଇଛନ୍ତି । ଖଲିକୋଟ ରାଜା ହରିହର ମର୍ଦ୍ଦରାଜଙ୍କ ଗୌରବ କିଛି କମ୍ ନଥିଲା । ଉତ୍କଳରେ ଜମିଦାରମାନଙ୍କ ମଧ୍ୟରେ ସେ ଜଣେ ଶ୍ରେଷ୍ଠ ଦେଶସେବୀ ଥିଲେ । ତାଙ୍କଠାରୁ ଉପହାରଟି ଗ୍ରହଣ କରିବା କିଛି ଅଗୌରବର କଥା ହୋଇ ନଥାଆନ୍ତା । ଶେଷରେ ସେହି ମର୍ଦ୍ଦରାଜଙ୍କ ପ୍ରଦତ୍ତ ଉପହାରଟି ମୟୂରଭଞ୍ଜ ରାଜାଙ୍କ ଜରିଆରେ ରାଧାନାଥ ଗ୍ରହଣ କରିଥିଲେ । "ଶସ୍ତ୍ର" ଓ "ଚମକ" ଜଡ଼ିତ ଥିବା ବିଷୟରେ ନିଜର ଆଗ୍ରହ ନଥିଲେ ମଧ୍ୟ ପରକୁ ଦେଲେ ତତ୍‌ସମ୍ପର୍କୀୟ "ଶୂନ୍ୟଗର୍ଭ" ସମ୍ବର୍ଦ୍ଧନା ସଭାରେ ରାଧାନାଥ ଯୋଗଦେବାକୁ ଆପତ୍ତି ନଥିବା ପ୍ରକାଶ କରି ତାଙ୍କ ସରିସମାନ କଥା କହିନାହାନ୍ତି ବୋଲି ମନେହୁଏ; ଏବଂ ମୟୂରଭଞ୍ଜ ମହାରାଜାଙ୍କ ହାତରୁ ତାହା ଅନ୍ୟ ଏକ ସଭା ଶେଷରେ ଗ୍ରହଣ କରିବା ମଧ୍ୟ ଖାପଛଡ଼ା ବ୍ୟବହାର ପରି ହେଲା ।

## ପ୍ରଥମ ଉତ୍କଳ ସମ୍ମିଳନୀରେ ରାଧାନାଥ

କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ରାଧାନାଥ ଯୋଗ ଦେଇଥିଲେ । ତାଙ୍କ ରଚିତ ଅନେକଗୁଡ଼ିଏ ଦେଶାତ୍ମବୋଧକ ପଦ ବଡ଼ ବଡ଼ ଅକ୍ଷରରେ ଲେଖାହୋଇ ସଭାମଣ୍ଡପର ଚାରିଆଡ଼େ ମରାଯାଇଥିଲା । ସଂସ୍କୃତରେ "ଭାରତ ଗୀତିକା" ସର୍ବପ୍ରଥମେ ଏହି ସମ୍ମିଳନୀ ଉଦ୍ଦେଶ୍ୟରେ ରାଧାନାଥ ରଚନା କରିଥିଲେ ଏବଂ ତାହା ସେହି ଅଧିବେଶନର ସର୍ବପ୍ରଥମେ ବୋଲା ହୋଇଥିଲା । ତାହା ଉତ୍କଳର ଜାତୀୟ ଗୀତିକା ରୂପେ ବିବେଚିତ ହୋଇଥିବାରୁ ସେହି ଗୀତିକାଟି ବୋଲାହେଲା ବେଳେ

ସଭାସ୍ଥ ସମସ୍ତେ ଦଣ୍ଡାୟମାନ ହୋଇ ରହୁଥିଲେ । ବର୍ତ୍ତମାନ ସୁଦ୍ଧା ଏହି ରୀତି ପ୍ରଚଳିତ ହୋଇଆସୁଅଛି ।

ରାଧାନାଥ ଏହି ସମ୍ମିଳନୀର ସଭାପତି ନିର୍ବାଚନ ଓ ବିଷୟ ନିର୍ବାଚନରେ ମଧ୍ୟ ଅଂଶ ଗ୍ରହଣ କରିଥିଲେ । ସମ୍ମିଳନୀରେ ଓଡ଼ିଆ ଭାଷାର ଏବଂ ସାହିତ୍ୟର ଉନ୍ନତି ସାଧନାର୍ଥ ଉତ୍କଳ ସାହିତ୍ୟସମାଜ ସହିତ ସହଯୋଗ କରି ସମ୍ମିଳନୀ ତରଫରୁ କାର୍ଯ୍ୟ କରିବା ଉଦ୍ଦେଶ୍ୟରେ ଏକ କମିଟି ଗଠିତ ହୋଇଥିଲା । ସେହି ନିର୍ଦ୍ଧାରଣଟି ରାଧାନାଥ ଆଗତ କରିଥିଲେ ଏବଂ ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା । ପ୍ରସ୍ତାବଟି ଏହି –

"ଓଡ଼ିଆ ଭାଷାର ଏବଂ ସାହିତ୍ୟର ଉନ୍ନତି ସାଧନାର୍ଥ ସମ୍ମିଳିତ ଓ ସୁଶୃଙ୍ଖଳିତ ଚେଷ୍ଟାର ଆବଶ୍ୟକତା ଏହି ସମ୍ମିଳନୀ ଉପଲବ୍ଧି କରୁଅଛନ୍ତି । ସେହି ଉଦ୍ଦେଶ୍ୟ ସାଧନାର୍ଥ ନିମ୍ନଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗୋଟିଏ ସ୍ଥାୟୀ ସମିତି ଗଠିତ ହେଉ । ଉକ୍ତ ସ୍ଥାୟୀ ସମିତି କଟକର ଉତ୍କଳ ସାହିତ୍ୟ ସମାଜ ସଙ୍ଗେ ଯୁକ୍ତ ହୋଇ ଉଦ୍ଦେଶ୍ୟ ସାଧନ ନିମନ୍ତେ ବିହିତ ଉପାୟର ବିଧାନ କରନ୍ତୁ । ଉତ୍କଳ ଭାଷାର ଇତିହାସ ସଙ୍କଳନ ଓ ପ୍ରାଚୀନ ଉତ୍କଳୀୟର ଗ୍ରନ୍ଥ ସଂଗ୍ରହ ଏବଂ ପ୍ରକାଶ କରିବା ନିମନ୍ତେ ସମ୍ମିଳନୀ ପକ୍ଷରୁ ଉତ୍କଳ ସାହିତ୍ୟ ସମାଜକୁ ସାହାଯ୍ୟ ଦିଆଯିବାର ନିର୍ଦ୍ଧାରଣ ହେଉ ।

"ବ୍ୟକ୍ତିଙ୍କର ନାମ—

ମହାରାଜ ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ ମୟୂରଭଞ୍ଜ, ରାଜା କିଶୋରଚନ୍ଦ୍ର ଶ୍ରୀହରିଚନ୍ଦନ-ତାଳଚେର, ରାଜା ବୈକୁଣ୍ଠନାଥ ଦେ ବାହାଦୁର-ବାଲେଶ୍ୱର, ମଧୁସୂଦନ ରାଓ, ଫକୀରମୋହନ ସେନାପତି, ବାବୁ ରାମଶଙ୍କର ରାୟ, ବାବୁ ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ, ଗୋପାଳବଲ୍ଲଭ ଦାସ, ଦାମୋଦର ପଟ୍ଟନାୟକ, ବାବୁ

ବ୍ରଜସୁନ୍ଦରଦାସ, ରାମଚନ୍ଦ୍ର ମିଶ୍ର, ନୀଳମଣିଚନ୍ଦ୍ର ଦେ, ଗୋପାଳଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ, ଅଭିରାମ ଭଞ୍ଜ।"

ଏହି ପ୍ରସ୍ତାବ ଆଗତକରି ରାଧାନାଥ କହିଥିଲେ, "× × ଜାତୀୟ ଜୀବନରେ ସାହିତ୍ୟର ମୂଲ୍ୟ କେତେ ଉଚ୍ଚ, ତାହା ଆପଣ-ମାନେ ସୁବିଦିତ ଅଛନ୍ତି। କଳ୍ପନାରେ ଭାରତକୁ ମହାଭାରତରୁ ବାହାର କରି ନିଅନ୍ତୁ, ଭାରତ କେମନ୍ତେ ବିକଳାଙ୍ଗ ହୋଇଯିବ। ଉପେନ୍ଦ୍ର ଭଞ୍ଜ ଆମ୍ଭମାନଙ୍କ ଭଳି ଜଣେ ସାମାନ୍ୟ ମନୁଷ୍ୟ ଥିଲେ; ମାତ୍ର କଳ୍ପନାରେ ଉତ୍କଳରୁ ତାହାଙ୍କୁ ବାହାର କରି ଦିଅନ୍ତୁ, ଉତ୍କଳ କେମନ୍ତ ବିକଳାଙ୍ଗ ହୋଇଯିବ। × ×"

ରାଧାନାଥଙ୍କ ସ୍ୱାସ୍ଥ୍ୟ ଭଲ ନ ଥିବାରୁ ସେ ବେଶୀ ସମୟ ଠିଆ ହୋଇ କହିପାରୁ ନଥିଲେ କି ଉଚ୍ଚ ସ୍ୱରରେ କଥାବାର୍ତ୍ତା କରିପାରୁ-ନଥିଲେ। ଶ୍ୱାସରୋଗ ତାଙ୍କୁ ସବୁବେଳେ ଦୁର୍ବଳ କରି ରଖିଥିଲା। ଦୀର୍ଘ ସମୟ ବକ୍ତୃତା ଦେବା ପକ୍ଷରେ ଏହା ଆଦୌ ଅନୁକୂଳ ନୁହେଁ। କିନ୍ତୁ ସେ ଯେତେବେଳେ ଯାହା କହୁଥିଲେ ସେତେବେଳେ ଅଳ୍ପରେ ସାରକଥା ବ୍ୟକ୍ତ କରୁଥିଲେ। ଶ୍ୱାସରୋଗ ତାଙ୍କୁ ସାରା ଜୀବନ ଧାଁଧପଡ଼ କାର୍ଯ୍ୟରେ ବ୍ୟାଘାତ ଦେଇଥିଲା ଏବଂ ତାଙ୍କୁ ଏକପ୍ରକାର ଲାଜକୁଳିଆ ମଧ୍ୟ କରି ଦେଇଥିଲା। ଆଗଭର ହୋଇ ଧାଁଦଉଡ଼ କରି କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ସବୁ ବିଷୟରେ ପଦେ ଅଧେ କହିବା ପ୍ରକୃତି ତାଙ୍କର ନଥିଲା। ପୁଣି ନିଜର ଭଗ୍ନସ୍ୱାସ୍ଥ୍ୟ ଓ ସାଂସାରିକ ଜଞ୍ଜାଳଜନିତ ଚିନ୍ତା ତାଙ୍କୁ ଜନଗହଳିରୁ ଦୂରରେ ରଖିଥିଲା। ତାଙ୍କଠାରେ ଆଡ଼ମ୍ବରଲିପ୍ସାର ଅଭାବ ମଧ୍ୟ ଏହାର ଅନ୍ୟ ଏକ କାରଣ।

ଉତ୍କଳ ସାହିତ୍ୟ ସମାଜର ପ୍ରଥମ ବୈଠକରେ ପ୍ରସ୍ତାବ ସମ୍ପର୍କରେ ତାଙ୍କର ବକ୍ତବ୍ୟ ପଠିତ ହୋଇଥିଲା। ସେ କହିଥିଲେ—

"ଜାତିକୁ ଉନ୍ନତ କରିବାକୁ ହେଲେ ଉନ୍ନତ ଜାତୀୟ ସାହିତ୍ୟ ନିତାନ୍ତ ପ୍ରୟୋଜନୀୟ । ନବ୍ୟ ଶିକ୍ଷିତମାନଙ୍କ ମଧ୍ୟରେ ସମସ୍ତ ସମୟରେ ଏପରି ମତବାଦ ମଧ୍ୟ ଶୁଣାଯାଏ ଯେ, ସାହିତ୍ୟ ଚର୍ଚ୍ଚା କିମ୍ବା ସାହିତ୍ୟୋନ୍ନତିର ଚେଷ୍ଟାର ଆବଶ୍ୟକତା ନାହିଁ, ବିଜ୍ଞାନ ଆମ୍ଭମାନଙ୍କର ଏକମାତ୍ର ଶିକ୍ଷା ଏବଂ ଆଲୋଚନାର ବିଷୟ ହେବା ଉଚିତ । ମୁଁ ଯଦିଓ ଜୀବନରେ ବିଜ୍ଞାନଚର୍ଚ୍ଚାର ସୁବିଧା ପାଇ ନାହିଁ, ସେଥିର ଫଳୋପଯୋଗିତା ମୁଁ ଅବଶ୍ୟ ଉପଲବ୍ଧି କରିବାକୁ ସମର୍ଥ । ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ପ୍ରତୀଚ୍ୟବିଜ୍ଞାନ ବିଶେଷତଃ ପ୍ରତୀଚ୍ୟ; ଜଡ଼ବିଜ୍ଞାନର ଶିକ୍ଷା ଭାରତବର୍ଷୀୟ ଲୋକଙ୍କ ପକ୍ଷରେ କେବଳ ଯେ ବାଞ୍ଛନୀୟ ତାହା ନୁହେଁ, ପ୍ରତ୍ୟୁତ ଆନ୍ତର୍ଜାତିକ ଜୀବନ ସଂଗ୍ରାମରେ ଆତ୍ମରକ୍ଷା ନିମନ୍ତେ ପରିହାର୍ଯ୍ୟରୂପେ ପ୍ରୟୋଜନୀୟ । ମାତ୍ର ବିଜ୍ଞାନର ଦୋହାଇ ଦେଇ ମୁଁ ସାହିତ୍ୟକୁ ଏକାବେଳକେ ଅଧଃକୃତ କରିବାକୁ ପ୍ରସ୍ତୁତ ନୁହେଁ । ଏକଦେଶଦର୍ଶୀ ହୋଇ ଯେଉଁମାନେ ସାହିତ୍ୟକୁ ଏହିପରି ଅଧଃକୃତ କରନ୍ତି, ସାହିତ୍ୟର ମୂଳ କେଉଁଠାରେ ତାହା ସେମାନେ ସମ୍ପୂର୍ଣ୍ଣରୂପେ ବିସ୍ମୃତ ହୋଇଥାଆନ୍ତି । ମନୁଷ୍ୟ କେବଳ ମସ୍ତିଷ୍କବାନ ନୁହେଁ, ମନୁଷ୍ୟର ଆତ୍ମା ଏବଂ ହୃଦୟ ମଧ୍ୟ ଅଛି । ସେହି ଆତ୍ମା ଏବଂ ହୃଦୟକୁ ସାହିତ୍ୟର ମୂଳସ୍ୱରୂପ ନିର୍ଦ୍ଦେଶ କରାଯାଇପାରେ । ସେହି ଆତ୍ମା ଏବଂ ହୃଦୟର ଅସ୍ତିତ୍ୱ ଲୋପ ନ ହେବା ପର୍ଯ୍ୟନ୍ତ ସାହିତ୍ୟର ଲୋପ ଅସମ୍ଭବ । ମସ୍ତିଷ୍କର କର୍ଷଣ ଏବଂ ଆତ୍ମା ଓ ହୃଦୟର କର୍ଷଣ ଏ ଉଭୟର ସମବାୟ ପୂର୍ଣ୍ଣ ମନୁଷ୍ୟତା ଲାଭ ନିମନ୍ତେ ପ୍ରତ୍ୟେକ ମନୁଷ୍ୟପକ୍ଷରେ ପ୍ରୟୋଜନୀୟ, ସୂକ୍ଷ୍ମଦର୍ଶୀ ବ୍ୟକ୍ତି ମାତ୍ରେ ଏହା ସ୍ୱୀକାର କରିବେ ।

"ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଅବସ୍ଥାରେ ତାହାକୁ କୌଣସି ଇଉରୋପୀୟ ସାହିତ୍ୟ କିମ୍ବା ଆମ୍ଭମାନଙ୍କର ପ୍ରାଚୀନ ସଂସ୍କୃତ

ସାହିତ୍ୟ, ସହିତ ତୁଳନା କରିବାର ବାତୁଳତା ମାତ୍ର । ତେବେ ଭାରତବର୍ଷର ଭିନ୍ନ ଭିନ୍ନ ପ୍ରଦେଶର ସାହିତ୍ୟ ସହିତ ଉତ୍କଳୀୟ ସାହିତ୍ୟର ତୁଳନା କଥଞ୍ଚିତ୍ ପରିମାଣରେ ସମ୍ଭବପର । ଏ ତୁଳନା ମଧ୍ୟ ଉତ୍କଳ ସାହିତ୍ୟର ଅନୁକୂଳ ନୁହେଁ । ବିଶେଷତଃ ଆଧୁନିକ ଉତ୍କଳ ସାହିତ୍ୟ ଆଧୁନିକ ବଙ୍ଗୀୟ କିମ୍ବା ହିନ୍ଦି ସାହିତ୍ୟର ନାନା ବିଷୟରେ ବହୁପଶ୍ଚାଦ୍‌ବର୍ତ୍ତୀ, ଏହା ନିର୍ବିବାଦରେ ବୋଲ୍ଲାଯାଇପାରେ । ବଙ୍ଗୀୟ ସାହିତ୍ୟର ତ କଥା ନାହିଁ, ହିନ୍ଦି ସାହିତ୍ୟ ମଧ୍ୟ ଯେପରି କ୍ଷିପ୍ରଗତିରେ ଅଗ୍ରସର ହେଉଛି, ତାହାର ତୁଳନାରେ ଓଡ଼ିଆ ସାହିତ୍ୟକୁ ଜଡ଼ବତ୍ ସ୍ଥାଣୁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ୍ଭମାନଙ୍କର ସାହିତ୍ୟାନୁରାଗର ଅଭାବ ଏହାର ଏକମାତ୍ର କାରଣ ଅଟେ । ଓଡ଼ିଆ ସାହିତ୍ୟର ଉନ୍ନତି ସକାଶ ଆପାତତଃ ଆମ୍ଭମାନଙ୍କର ଯାହା କର୍ତ୍ତବ୍ୟ, ଏଥି ସମ୍ବନ୍ଧରେ ସ୍ଥୂଳରେ ବର୍ତ୍ତମାନ ମୁଁ ଦୁଇ ଚାରି କଥା କହିବାକୁ ଇଚ୍ଛା କରେ । ନିମ୍ନଲିଖିତ ଚାରିଗୋଟି ଉପାୟ ଆମ୍ଭମାନଙ୍କର ଅବଲମ୍ବନୀୟ :—

୧ । ସାଧାରଣ ଓଡ଼ିଆ ପୁସ୍ତକାଳୟ ସ୍ଥାପନ ଏବଂ ପ୍ରାଚୀନ ପାଣ୍ଡୁଲେଖ ସଂଗ୍ରହ ।

୨ । ନବ ଲେଖକମାନଙ୍କର ଉତ୍ସାହ ସକାଶ ଗୋଟିଏ ପାଣ୍ଠି ସଂସ୍ଥାପନ ।

୩ । ଉତ୍କଳ ଭାଷାର ଇତିହାସ ପ୍ରଣୟନ ।

୪ । ପ୍ରାଚୀନ ଉତ୍କଳ ସାହିତ୍ୟର ଆଲୋଚନା ।

ଏହି ଚାରିଗୋଟି ଉପାୟ ମଧ୍ୟରେ ପ୍ରଥମ ଏବଂ ଦ୍ୱିତୀୟ ଉପାୟ ସମଧିକ ଅର୍ଥସାପେକ୍ଷ; ସୁତରାଂ କୌଣସି ରାଜା କିମ୍ବା ଭୂସ୍ୱାମୀଙ୍କ ବ୍ୟତୀତ ଅନ୍ୟ ଲୋକଦ୍ୱାରା ଏହା ଅନୁଷ୍ଠିତ ହୋଇପାରିବ,

ଏହା ମୋହର ସମ୍ପୂର୍ଣ୍ଣ ବୋଧ ହେଉନାହିଁ । ଆଜକାଲି ରାଜା ଏବଂ ଭୂସ୍ୱାମୀଙ୍କ ମଧ୍ୟରେ କଦାଚିତ୍ କାହାର ସାହିତ୍ୟାନୁରାଗର ଯେପରି ଅଙ୍କୁରୋଦ୍‌ଗମ ଲକ୍ଷିତ ହେଉଅଛି, ସେଥିରୁ ଏପରି ଆଶା ହୁଏ ଯେ, ଆମ୍ଭମାନଙ୍କ ଜୀବଦ୍ଦଶାରେ ନ ହେଉ, ସୁଦୂର ଭବିଷ୍ୟତରେ ଏହା କେବେ ହେଲେ କାର୍ଯ୍ୟରେ ପରିଣତ ହେବାର ସମ୍ଭାବନା ହେବ ।

ପ୍ରାଚୀନ ଉତ୍କଳ ସାହିତ୍ୟର ଇତିହାସ ପ୍ରଣୟନ ମଧ୍ୟ ସହଜସାଧ୍ୟ ବ୍ୟାପାର ନୁହେଁ । ବଙ୍ଗୀୟ ସାହିତ୍ୟ ଇତିହାସ ପ୍ରଣେତା ଶ୍ରୀ ଦିନେଶଚନ୍ଦ୍ର ସେନଙ୍କ ସୁପ୍ରସିଦ୍ଧ ଗ୍ରନ୍ଥ ତାହାଙ୍କର ଜୀବନବ୍ୟାପୀ ପରିଶ୍ରମର ଫଳ । ଏ ପ୍ରଦେଶରେ ସେପରି ଅଧ୍ୟବସାୟର ନିତାନ୍ତ ଅଭାବ, ଯାହା ମଧ୍ୟ ଅଛି, ତାହାକୁ ଉତ୍ସାହ ଦେବାର ଲୋକ ନାହିଁ । ବଙ୍ଗୀୟ ରାଜା ଏବଂ ଭୂସ୍ୱାମୀମାନେ ସ୍ୱଦେଶୀୟ ସାହିତ୍ୟୋନ୍ନତି ସାଧନ ବିଷୟରେ ଆସ୍ଥାହୀନ ହୋଇ ସୁଦ୍ଧା ଯାହା କରିଅଛନ୍ତି, ଓଡ଼ିଶାରେ ସେଥିର ଶତାଂଶ ଆଶା କରାଯାଇ ନ ପାରେ । ଓଡ଼ିଶାରେ ଅନ୍ୟାନ୍ୟ ବ୍ୟକ୍ତିଙ୍କ ମଧ୍ୟରେ ସୁପଣ୍ଡିତ ଶ୍ରୀଯୁକ୍ତ ବାବୁ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ. ମହାଶୟ ଏ ବିଷୟରେ ପ୍ରଶଂସନୀୟ ଅଧ୍ୟବସାୟ ପ୍ରଦର୍ଶନ କରି ଆମ୍ଭମାନଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । ମାତ୍ର ଏପରି ଦୁର୍ବହ ଭାର ତାହାଙ୍କ ଉପରେ ଅଥବା ଅପର କୌଣସି ଯୋଗ୍ୟ ବ୍ୟକ୍ତିଙ୍କ ଉପରେ ନ୍ୟସ୍ତ କରି କେବଳ ଧନ୍ୟବାଦ ଦେଇ ନିଶ୍ଚିନ୍ତ ରହିଲେ ଚଳିବ ନାହିଁ । ଖାଲି କଥାରେ ଚୁଡ଼ା ତିନ୍ତିବ ନାହିଁ । ଏପରି ବିଷୟରେ କଥା ଅପେକ୍ଷା ଅଧିକତର ସାରବାନ୍ ଉତ୍ସାହର ନିତାନ୍ତ ଲୋଡ଼ା । ସାଧାରଣଙ୍କର ଉଚିତ ଯେ, ସମବେତ ହୋଇ ତାହାଙ୍କୁ ଅଥବା ଅପର କୌଣସି ଯୋଗ୍ୟ ଲେଖକଙ୍କୁ ଏପରି

ମହୋପକାରୀ ବିଷୟରେ ପର୍ଯ୍ୟାପ୍ତ ଅର୍ଥ ସାହାଯ୍ୟ କରିବେ । ଯେଉଁ ବ୍ୟକ୍ତି ଏହି ମହାବ୍ରତଧାରୀ ହେବେ, ତାହାଙ୍କ କେତେ ପୁସ୍ତକ ସଂଗ୍ରହ କେତେ ଅଧ୍ୟୟନ, କେତେ ଗବେଷଣା, କେତେ ଚିନ୍ତା, କେତେ ପରିଶ୍ରମ କରିବାକୁ ହେବ, ତାହା ଆପଣମାନଙ୍କ ପରି କ୍ଷୀତସାତ- ବ୍ୟକ୍ତିମାନଙ୍କୁ କହିବାର ବାହୁଲ୍ୟ । କେହି ଅବା କହିବେ ଯେ, ଏପରି ବିଷୟରେ ବ୍ୟକ୍ତିବିଶେଷଙ୍କୁ କାହିଁକି ସାହାଯ୍ୟ ଦିଆଯିବ ? ପ୍ରୟୋଜନ ଆୟୋଜନର (Demand and Supply) ନିୟମଦ୍ୱାରା ଏହା ମଧ୍ୟ ନିୟମିତ ହେବାର ଉଚିତ । ଯେ ପୁସ୍ତକ ସଙ୍କଳନ କରିବେ, ପୁସ୍ତକର କାଟତି ଦ୍ୱାରା ସେ ପୁରସ୍କୃତ ହେବେ । ପୁସ୍ତକର ଯେବେ ସାଧାରଣରେ କାଟତି ନ ହେଲା ଏପରି ପୁସ୍ତକ ଲେଖିବାର ଆବଶ୍ୟକତା କଅଣ ? ଇଉରୋପୀୟ ଆମଦାନୀ ଅର୍ଥନୀତିର ସୂତ୍ରଗୁଡ଼ିକ ଆମ୍ଭେମାନେ ସମସ୍ତ ସମୟରେ ଶୁଆପରି ଏହି ରୀତିରେ ଆବୃତ୍ତି କରିଥାଉଁ; ମାତ୍ର ପ୍ରକୃତ ପକ୍ଷରେ ଏଭଳି ଉକ୍ତି ଅର୍ଥନୀତିଜ୍ଞତାର ପରିଚ୍ଛାୟକ ନୁହେ; ବରଂ ଏହା ଆମ୍ଭମାନଙ୍କର ଅଜ୍ଞତା, ହୃଦୟହୀନତା ଏବଂ ବିଦ୍ଧମ୍ମନ୍ଯତାର ପରିଚାୟକ । ଯେଉଁ ଇଉରୋପରୁ ଏହି ସୂତ୍ରଗୁଡ଼ିକର ଆମଦାନୀ ହୋଇଅଛି, ସେହି ଇଉରୋପ ପ୍ରୟୋଜନ ଏବଂ ଆୟୋଜନ ସମ୍ବନ୍ଧୀୟ ନିୟମର ଦୋହାଇ ଦେଇ ଜାତୀୟ ସାହିତ୍ୟୋନ୍ନତି ସାଧନ ବିଷୟରେ ଔଦାସୀନ୍ୟ ଅବଲମ୍ବନ କରି ନାହିଁ । ସେପରି ହୋଇଥିଲେ ଜର୍ମାନ ଏବଂ ଇଟାଲୀୟ ସାହିତ୍ୟ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ପୃଥିବୀର ଗଣନୀୟ ସାହିତ୍ୟ ବୋଲି ପରିଗଣିତ ହୋଇ ନ ଥାନ୍ତା ।

ପ୍ରାଚୀନ ଉତ୍କଳ ସାହିତ୍ୟ ଯେଉଁ ପରିମାଣରେ ଆମ୍ଭମାନଙ୍କର ଆଲୋଚନା କରିବାର ଉଚିତ, ଆମ୍ଭେମାନେ ତାହାର ଶତାଂଶ

କରି ନାହୁଁ । ଅନ୍ତତଃ ଏ ବିଷୟରେ ମୁଁ ମୋହର ନିଜର ଦୃଷ୍ଟି ଉତ୍ତମରୂପେ ଉପଲବ୍ଧି କରିଅଛି । ଏ ପ୍ରଦେଶରେ ବଙ୍ଗୀୟ ସାହିତ୍ୟର ପ୍ରଚୁର ହୋଇ ପ୍ରଭୂତ ଶ୍ରେୟଃ ସହିତ ପ୍ରଭୂତ ଅନିଷ୍ଟ ମଧ୍ୟ ସାଧିତ ହୋଇଅଛି । ଅନିଷ୍ଟ ସକାଶ ବଙ୍ଗୀୟ ସାହିତ୍ୟ ଦାୟୀ ନୁହେଁ, ଆମ୍ଭେମାନେ ଦାୟୀ । ଭାରତବର୍ଷୀୟ ପ୍ରାଦେଶିକ ସାହିତ୍ୟର ଆଲୋଚନା ଆମ୍ଭମାନଙ୍କ ପକ୍ଷରେ ସୁଫଳୋପଧାୟକ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ, ମାତ୍ର ଆମ୍ଭମାନଙ୍କର ଅବକାଶର ଅଧିକାଂଶ ସମୟ ଉତ୍କଳ ସାହିତ୍ୟ ଆଲୋଚନାରେ ବ୍ୟୟିତ ହେବାର ଉଚିତ । 'ବଙ୍ଗ ସାହିତ୍ୟ ଚର୍ଚ୍ଚାଦ୍ୱାରା ଆମ୍ଭମାନଙ୍କ ଜ୍ଞାନର ପ୍ରସାର ହୋଇଅଛି । ସତ୍ୟ, ମାତ୍ର ମୌଳିକତା ବହୁପରିମାଣରେ ନଷ୍ଟ ହୋଇଅଛି । ଆଧୁନିକ ଉତ୍କଳ-ସାହିତ୍ୟରେ ବଙ୍ଗୀୟ ସାହିତ୍ୟର କେବଳ ଭାବ ନୁହେଁ, ଭାଷା ମଧ୍ୟ ଅଯଥା ପରିମାଣରେ ପ୍ରବେଶ କରି ସେଥିରେ ବ୍ୟକ୍ତିଗତ ଭାବ କ୍ରମଶଃ ସ୍ଥାନରୁ ସ୍ଥାନାନ୍ତର କରି ପକାଉଅଛି ।" × ×

ସମ୍ମିଳନୀମଣ୍ଡପର ସଭାମଧ୍ୟରେ ରାଧାନାଥଙ୍କର ସମ୍ମିଳନୀ ସକାଶ ନବ ରଚିତ ନିମ୍ନ ପଦ୍ୟଗୁଡ଼ିକ ସୁବୃହତ୍ ଅକ୍ଷରରେ ଲିଖିତ ହୋଇ ସ୍ଥାନେ ସ୍ଥାନେ ଝୁଲାଇ ଦିଆଯାଇଥିଲା ।

(୧) ଦିଅ ହେ ସବେ ଉତ୍କଳ !
ଦେଶ ହିତରେ ଆତ୍ମବଳ ।

(୨) ଅସାଧ୍ୟ ମଣେ ଯା ଅଳସ,
କର୍ମବୀର ତା କରେ ବଶ ।
ଅଳସ ଯା ଅସାଧ୍ୟ ମଣେ,
କର୍ମବୀର ତା ସାଧେ କ୍ଷଣେ ।

(୩) ଦେଶର ଲୋକ ହେ କଲ୍ୟାଣ,
ତୃଣ ମଣିଣ ନିଜ ପ୍ରାଣ ।
ଆପଣା ହିତ ଦେଶହିତେ
ଲୋଡ଼ ସରବେ ଏକଚିତ୍ତେ ।
ଉତ୍କଳହିତେ ନିଜ ହିତ
ଲୋଡ଼ ହୋଇଣ ଏକଚିତ୍ତ ।

(୪) ଉଦ୍‌ଯୋଗୀ ବାଧା ଭ୍ରୂକୁଟିକି
ନ ଗଣି ମିଛି ଆଣେ ଝିକି ।
ସାହସେ ଯେହୁ ବାନ୍ଧେ ବକ୍ଷ,
କାର୍ଯ୍ୟକ୍ଷେତ୍ରରେ ସେ ଦକ୍ଷ ।

(୫) ଜୟ ଜୟ ମା ମାତୃଧରା,
ସର୍ବ ସୁଖଦା ଦୁଃଖହରା ।

(୬) ସଭିଙ୍କ ମନ ଏକ ହେଲେ,
ଅସାଧ ସାଧ ହୁଏ ହେଲେ ।

## ଗଞ୍ଜାମ ଭ୍ରମଣ

ଉତ୍କଳ ସମ୍ମିଳନୀର କଟକ ଅଧିବେଶନ (୧୯୦୩) ବେଳେ ରାଧାନାଥଙ୍କୁ ଖଲିକୋଟର ରାଜା ହରିହର ମର୍ଦ୍ଦରାଜ ଯେଉଁ ସୁବର୍ଣ୍ଣ ଝରକଲମଟି "ମହାଯାତ୍ରା" ସମ୍ପୂର୍ଣ୍ଣ କରିବାରେ ବ୍ୟବହାର ହେବାପାଇଁ ଦେଇଥିଲେ, ତାହା ପୂର୍ବରୁ ନୀଳମଣି ବିଦ୍ୟାରତ୍ନ ଏହି ପ୍ରସଙ୍ଗ ଉତ୍ଥାପନ କରିଥିଲେ । ଖଲିକୋଟ ରାଜାଙ୍କ ଅଧୀନରେ ତାଙ୍କ ପ୍ରେସରେ ରମ୍ଭାଠାରେ ଅବସ୍ଥାନ କରୁଥିବା ସମୟରେ ବିଦ୍ୟାରତ୍ନ ରାଧାନାଥଙ୍କୁ ଏହା ଜଣାଇ ଏକ ଚିଠି ଦେଇଥିଲେ ।

ପ୍ରଥମେ ରାଧାନାଥ ଏଥିରେ ସମ୍ମତ ହେଉନଥିଲେ ଏବଂ ଏହି ଉପହାର ପରିବର୍ତ୍ତେ ଯଦି ତାଙ୍କୁ ଚିଲିକା ଦେଖାଇବା ବ୍ୟବସ୍ଥା କରାଯାଆନ୍ତା ତାହାହେଲେ ସେ ଏହାକୁ ମୂଲ୍ୟବାନ୍ ବୋଲି ଭାବନ୍ତେ, ଏହି ମର୍ମରେ ଜଣାଇଥିଲେ । ପୁଣି ରାଜା ହରିହର "ବିଦେଶୀ"ମାନଙ୍କର କୁଚକ୍ରାନ୍ତରେ ପଡ଼ି ବହୁ ଅର୍ଥର ଅପବ୍ୟୟ କରି ଅକାରଣେ ଋଣଗ୍ରସ୍ତ ହୋଇପଡ଼ିଥିବାରୁ ତାଙ୍କଠାରୁ ଏହି ଉପହାର ନେବା ବାଞ୍ଛନୀୟ ନୁହେଁ, ଏହା ମଧ୍ୟ ସେ ବ୍ୟକ୍ତ କରିଥିଲେ । କିନ୍ତୁ ପରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ସେହି କଲମଟି ନିଜେ ରାଧାନାଥଙ୍କୁ ଖଲିକୋଟ ରାଜାଙ୍କ ତରଫରୁ ଦେବାରୁ ତାହା ଗ୍ରହଣ କରିଥିଲେ । ଏଥିରେ ରାଧାନାଥ ନିଜ ବିବେଚନାର ମାନଦଣ୍ଡ ଠିକ୍ ରଖିନଥିଲେ ବୋଲି କହିବା ସ୍ୱାଭାବିକ । ହରିହର ମର୍ଦ୍ଦରାଜଙ୍କ କଲମ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ହାତରୁ ନେବାରେ କପଟ ବା "ମାନ୍ତି"ର ଖିଲାପ ହେଉ ନାହିଁ ତାହା ଭାବ ହୁଏ ନାହିଁ । ତେବେ ବିଷୟଟି ଏତେ ସ୍ପଷ୍ଟ ଯେ ଏହାକୁ ବେଶି ଗୁରୁତ୍ୱ ଦେବା ଠିକ୍ ହେବ ନାହିଁ । ରାଜା ହରିହରଙ୍କର ସ୍ୱଦେଶପ୍ରୀତି ଓ ସ୍ୱଦେଶର ପୂଜ୍ୟବ୍ୟକ୍ତିଙ୍କର ପୂଜାପାଇଁ ପ୍ରାଣର ଆବେଗର ପ୍ରାଚୁର୍ଯ୍ୟହିଁ ଏହି ଉପହାର ଦେବାନେବା ସମ୍ପର୍କୀୟ କାର୍ଯ୍ୟସତ ଚିହ୍ନାଇ ଦେଉଛି । ହରିହର ମର୍ଦ୍ଦରାଜଙ୍କର ସମ୍ମାନ ଏଥିରେ କ୍ଷୁଣ୍ଣ ହୋଇନାହିଁ; ବରଂ ଏଥିରେ ରାଧାନାଥଙ୍କର ବିବେଚନା ବୁଦ୍ଧି ଟିକିଏ ସ୍ଥିର ରହି ନପାରିଥିବାହିଁ ଅନୁମାନ କରିବା ସ୍ୱାଭାବିକ ।

ପୂର୍ବରୁ ରାଧାନାଥ ଚିଲିକା ଦେଖିବାପାଇଁ ଯେଉଁ ସୂଚନା ବିଦ୍ୟାରତ୍ନଙ୍କୁ ଦେଇଥିଲେ ତାହା କାର୍ଯ୍ୟରେ ପରିଣତ ହେଲା । ଖଲିକୋଟ ରାଜାଙ୍କର ଅତିଥି ହୋଇ ରାଧାନାଥ ଚିଲିକା ଭ୍ରମଣରେ ଖ୍ରୀ ୧୯୦୪ରେ ଯାଇଥିଲେ । ରମ୍ଭାରେ କିଛି ସମୟ ଅବସ୍ଥାନ କରି

ଚିଲିକାର ଦୃଶ୍ୟ ରାଧାନାଥ ଦେଖି ପରମ ଆନନ୍ଦ ଲାଭ କରିଥିଲେ । ବରକୁଦା ଦ୍ୱୀପକୁ ଯାଇ ସେଠାରୁ ଚିଲିକାର ବିଭିନ୍ନ ମନୋହର ଦୃଶ୍ୟ ଦେଖି ସେ ମୁଗ୍ଧ ହୋଇଯାଇଥିଲେ । ଏହି ଭ୍ରମଣ ଫଳରେ ରାଧାନାଥ ତାଙ୍କର "ଚିଲିକା" କାବ୍ୟଟି ଲେଖିଥିଲେ ।

ରାଧାନାଥଙ୍କର ମହେନ୍ଦ୍ରଗିରି ଦର୍ଶନ କରିବା ଅଭିଳାଷ ଥିଲା । ମଞ୍ଜୁଷାର ରାଜା ବାସୁଦେବ ରାଜମଣିଦେବ ରାଧାନାଥଙ୍କୁ ନିମନ୍ତ୍ରଣ କରିଥିଲେ । ମଞ୍ଜୁଷାରେ ରାଧାନାଥ ପହଞ୍ଚି ସେଠାରେ ୧୨ (ବାର) ଦିନ ଅବସ୍ଥାନ କରିଥିଲେ । କିନ୍ତୁ ଏହି ଦୀର୍ଘ ଅବସ୍ଥାନ ସମୟ ଭିତରେ ମହେନ୍ଦ୍ର ଶିଖରକୁ ଯାଇ ତାର ଶୋଭା ନିରୀକ୍ଷଣ କରିବା ପାଇଁ ରାଧାନାଥ ସୁବିଧା ପାଇଲେ ନାହିଁ । ସେତେବେଳେ ମହେନ୍ଦ୍ରଗିରିକୁ ଯିବାକୁ ହେଲେ ମଞ୍ଜୁଷାଠାରୁ ଯିବାହିଁ ସୁବିଧା ଥିଲା । ମଞ୍ଜୁଷାଗଡ଼ଠାରୁ ପ୍ରାୟ ପାଞ୍ଚଛଅ କୋଶ ଭିତରେ ସମତଳ ଓ ନିବିଡ଼ ବନଭୂମି ଭିତରେ ଯିବାକୁ ହେଉଥିଲା । ମହେନ୍ଦ୍ର ପର୍ବତର ଜଙ୍ଗଲ ମହାବଳ ବ୍ୟାଘ୍ରମାନଙ୍କର ଲୀଳାସ୍ଥଳୀ ବୋଲି ପ୍ରବାଦ ଥିଲା । ବର୍ତ୍ତମାନ ସୁଦ୍ଧା ଏହା ରହିଛି । ଦୋଳି (ଡୋଲି)ରେ ନଗଲେ ବୃଦ୍ଧଲୋକ ସାଧାରଣରେ ସେଠାକୁ ଯିବା ସମ୍ଭବ ନଥିଲା । ବିଶେଷତଃ ରାଧାନାଥଙ୍କ ଭଳି ଯକ୍ଷ୍ମା ରୋଗୀଙ୍କ ପକ୍ଷରେ ପର୍ବତାରୋହଣ କରିବା ଅସମ୍ଭବ ଥିଲା । ଏହିସବୁ କାରଣରୁ ରାଜାଙ୍କ ତରଫରୁ ବ୍ୟବସ୍ଥା ନହେଲେ ସାଧାରଣତଃ ମହେନ୍ଦ୍ରଗିରି ଦର୍ଶନ ସୁବିଧା ହେଉ ନଥିଲା । ଏହି ବ୍ୟବସ୍ଥା ଅଭାବରୁ ରାଧାନାଥ ମହେନ୍ଦ୍ରଗିରି ଆରୋହଣ କରି ପାରି ନଥିଲେ । ସେ ଦୂରରୁ ( ଗଡ଼ଠାରୁ ) ତାର ଅପରୂପ ଶୋଭା ସଂଦର୍ଶନ କରି ଯତ୍‌କିଞ୍ଚିତ ଆନନ୍ଦ ଅନୁଭବ କରିଥିଲେ । ଏହି ବ୍ୟବସ୍ଥା-ଅଭାବର କାରଣ ସମ୍ପର୍କରେ ଏକ କାହାଣୀ ଶୁଣାଯାଏ । "ମଞ୍ଜୁଷାର ତତ୍‌କାଳୀନ ଦେବାନ ଜଣେ

ତେଲିଙ୍ଗୀୟ ଥିଲେ । ତାହାଙ୍କୁ କିଏ କହିଦେଲା, ରାଧାନାଥ ବାବୁ ଏଠାରେ ଦେୱାନ ହେବାକୁ ଆସିଅଛନ୍ତି । ଏହି ସମ୍ପୂର୍ଣ୍ଣ ଅଳୀକ କଥାରେ ଆସ୍ଥା ସ୍ଥାପନ କରି ରାଧାନାଥଙ୍କର ମହେନ୍ଦ୍ର ଆରୋହଣର ବ୍ୟବସ୍ଥା କରିବାକୁ ଦେୱାନ ମହାଶୟ ଉଦାସୀନ ରହିଲେ ।"
(ରା.ଙ୍କ—ପୃ-୪୨)

ରାଧାନାଥ ମଞ୍ଜୁଷାଗଡ଼ରୁ କଟକ ଫେରି ଆସିଲେ । ସେଥିପାଇଁ ସେ "ମହେନ୍ଦ୍ରଗିରି" ପଦରେ ଲେଖିଛନ୍ତି—

କଳ୍ପନା ଯୋଗାଇ ଦେଲାରୁ ବାହନ
ସେ ବାହନେ କଲି ଗିରି ଆରୋହଣ ।

## କଲିକତା ଯାତ୍ରା : ଗ୍ରାମାଞ୍ଚଳ ପ୍ରାଥମିକ ବିଦ୍ୟାଳୟ କମିଟି

ବଙ୍ଗ ସରକାର ଗ୍ରାମାଞ୍ଚଳ ବିଦ୍ୟାଳୟ ସ୍ଥାପନ ସମ୍ବନ୍ଧରେ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିବାପାଇଁ ଏ ଗୋଟିଏ କମିଟି ନିଯୁକ୍ତ କରିଥିଲେ । ମୁଖ୍ୟ ଭାବରେ ପାଠ୍ୟକ୍ରମ ନିର୍ଦ୍ଦେଶ କରିବାହିଁ କମିଟିର କାର୍ଯ୍ୟଥିଲା । ୧୯୦୫ ଜୁନ୍ ମାସର ତା୧୭ରିଖରେ କଲିକତାରେ ଏହି କମିଟିର ଏକ ବୈଠକ ବସିଥିଲା । ସେଥିରେ ଯୋଗଦେବା ପାଇଁ ରାଧାନାଥ କଲିକତା ଯାଇ ଡବଲ୍ୟୁ. ମେଜର ଏଣ୍ଡ କୋ: ( W. Major & Co )ଙ୍କ ନିତଳ ପ୍ରାସାଦରେ ଅବସ୍ଥାନ କରିଥିଲେ । ଏହି କମିଟି ବୈଠକରେ ଏ ପେଡ଼୍‌ଲର, ସାର୍ ଗୁରୁଦାସ ବାନାର୍ଜୀ, କେ. ଜି. ଗୁପ୍ତ, କାର୍‌ଲାଇଲ୍, କାରନ୍ ଡ଼ଫ୍, ଏ ଚୌଧୁରୀ, ମାଣ୍ଡାକସ, ରେଭରେଣ୍ଡ ଡ଼ାନ. ସ୍କ୍ରସ୍‌ବ୍ରୁଡ଼, ରାଧାନାଥ ରାୟ ବାହାଦୁର, ମୌଲବୀ ସଏଦ୍ ନବାବ୍ ଅଲି ଚୌଧୁରୀ ଉପସ୍ଥିତ ଥିଲେ । କଣ୍ଡର ଗାର୍‌ଟେନ୍ ପ୍ରଣାଳୀରେ ଶିଶୁଶ୍ରେଣୀ, ଦ୍ୱିତୀୟ ଶ୍ରେଣୀ ଓ ତୃତୀୟ ଶ୍ରେଣୀର ପାଠ୍ୟକ୍ରମ ସ୍ଥିର ହୋଇଥିଲା ।

---

# ତ୍ରୟୋଦଶ ପରିଚ୍ଛେଦ

## ଶୋଚନୀୟ ମାନସିକ ଦୁଶ୍ଚିନ୍ତା

ଖ୍ରୀ ୧୯୦୫ର ଶେଷ ଆଡ଼କୁ ରାଧାନାଥଙ୍କ ମାନସିକ ଅବସ୍ଥା ଅତି ଖରାପ ଦିଗରେ ଗତି କରିଥିଲା । ମନ ଭିତରେ ଏକପ୍ରକାର ଅନୁତାପ ତାଙ୍କୁ ବ୍ୟସ୍ତ କରୁଥିଲା । ସେ ବାହ୍ୟକୁ ଧୀରସ୍ଥିର ଦେଖା ଯାଉଥିଲେ ମଧ୍ୟ ଭିତରେ ଘୋର ମାନସିକ ଅଶାନ୍ତି ଭୋଗ କରୁଥିଲେ । ଏହିସମୟରେ ସେ ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ କାଠଯୋଡ଼ି ନଦୀକୂଳ, କାଠଯୋଡ଼ି ପଠା, ସତୀଚଉରା ଶ୍ମଶାନ ପ୍ରଭୃତି ଅଞ୍ଚଳରେ ବୁଲିବାକୁ ଯାଉଥିଲେ । ଖରାଦିନେ ନଈବାଲି ତାତି ଯାଉଥିବାରୁ ନଈ ଆରପଟରୁ କଟକ ସହର ଭିତରକୁ ଆସୁଥିବା ଶତଶତ ବାଟୋଇ ଓ ବ୍ୟବସାୟୀଙ୍କ କଷ୍ଟ ଦେଖିବାର ନୁହେଁ । ପେଟପାଟଣା ତ ବଡ଼ । ଲୋକେ ବାଧ୍ୟ ହୋଇ ବାଲି ତାତିଥିବା ବେଳେ ମଧ୍ୟ ଯିବାଆସିବା କରୁଥିଲେ । ରାଧାନାଥ ଏମାନଂକ ସୁବିଧା ନିମନ୍ତେ ଥରେ ବୁଢାବୁଢ଼ୀ, ଓ ଦୁଃଖୀଗରିବଙ୍କୁ ଶହେ ଯୋଡ଼ା ଗୁଆପଟ ଓ ଅଖା ସିଲେଇ ଯୋତା ଦେଇଥିଲେ । ଏହି ଶୋଚନୀୟ ମାନସିକ ଅବସ୍ଥା ଦେଖା ଦେବାରୁ ତାଙ୍କ ପୁଅ ଶଶିଭୂଷଣ ସବୁବେଳେ ତାଙ୍କ ପାଖରେ ରହୁଥିଲେ ।

ରାଧାନାଥଙ୍କ ଆତ୍ମଗ୍ଳାନି ଉପସ୍ଥିତ ହୋଇଥିଲା । ବଡ଼ଲୋକଙ୍କର ମନରେ ବେଗ ପ୍ରବେଶ କଲେ ସହଜେ ଶାନ୍ତି ହୁଏ ନାହିଁ । ବିଶେଷତଃ ଆତ୍ମଗ୍ଳାନି ଓ ଅନୁତାପ ପ୍ରବେଶ ହେଲେ ଯନ୍ତ୍ରଣା ବିଶେଷ ଭାବରେ ବୃଦ୍ଧି ପାଏ । ରାଧାନାଥଙ୍କ ଅବସ୍ଥା ତାହାହିଁ ହୋଇଥିଲା । ସେ ରାତି ଦିବସ ଅବିରତ ମାନସିକ ଦୁଶ୍ଚିନ୍ତାରେ କାଳ କଟାଉଥିଲେ ।

ତାଙ୍କର ମନର ଗତିକୁ ଟିକିଏ ଅନ୍ୟ ଦିଗକୁ ଫେରାଇ ଆଣି ମନର ବୋଝକୁ ହାଲୁକା କରିଦେବା ପାଇଁ ଶଶିଭୂଷଣଙ୍କ ବ୍ୟବସ୍ଥା ଅନୁସାରେ ପ୍ରତିଦିନ ସନ୍ଧ୍ୟାବେଳେ ସିତାର ଶିକ୍ଷା ହେଉଥିଲା । ଯୋଗେନ୍ଦ୍ରନାଥ ପ୍ରଧାନ ମାସିକ ଟ ୧୨୯ ବେତନରେ ପ୍ରତ୍ୟହ ସନ୍ଧ୍ୟାରେ ସିତାର ଶିଖାଉଥିଲେ । ବିଶେଷତଃ, ସିତାର ସାହାଯ୍ୟରେ ପ୍ରାର୍ଥନା ଶ୍ଳୋକଗୁଡ଼ିଏ ନିଜେ ରାଧାନାଥ ଆବୃତ୍ତି କରୁଥିଲେ । ପ୍ରତିଦିନ ଦୁଇଘଣ୍ଟା ସଂସ୍କୃତ ଶିକ୍ଷା ଦେବାପାଇଁ ବିଶ୍ୱନାଥ ଶାସ୍ତ୍ରୀ ନାମରେ ଜଣେ ପଣ୍ଡିତ ମାସିକ ଟ ୧୫ (ପନ୍ଦର) ବେତନରେ ନିଯୁକ୍ତ ହୋଇଥିଲେ । ସିତାର ଶିକ୍ଷା ଓ ସଂସ୍କୃତ ସାହିତ୍ୟ ଚର୍ଚ୍ଚାରେ କିଛି ସମୟ କଟିଯାଉଥିଲା ଏବଂ ଏହା ଦ୍ୱାରା ତାଙ୍କର ମାନସିକ କ୍ଳେଶର ସମୟର ପରିମାଣ ମଧ୍ୟ ହ୍ରାସ ପାଉଥିଲା ।

## "ଆତ୍ମ କଥା"

ଏହି ଦାରୁଣ ମାନସିକ ଅଶାନ୍ତିର କାରଣ ହେଉଛି, ତାଙ୍କର ବିଶୃଙ୍ଖଳ ଅବସ୍ଥାନ ସମୟରେ (ଅବସର ନେବା ପୂର୍ବରୁ) ତାଙ୍କର ଅକସ୍ମାତ୍ ଚରିତ୍ରସ୍ଖଳନ ହୋଇଥିଲା । ତାଙ୍କୁ ୩୫ ବର୍ଷ ବୟସ ହୋଇଥିବା ବେଳେ ଏହି ଘଟଣା ଘଟିଥିଲା । ୧୯୦୭ ଜୁଲାଇ ପର୍ଯ୍ୟନ୍ତ

ଏହି ଅକସ୍ମାତ୍ ଚରିତ୍ରସ୍ଖଳନ ତାଙ୍କ ହୃଦୟରେ ଘୋର ଆଘାତ ଦେଇଥିଲା । ଆତ୍ମଗ୍ଳାନି ବହ୍ନିରୂପ ଧାରଣ କରି ପ୍ରତି ମୁହୂର୍ତ୍ତରେ ତାଙ୍କୁ ପୋଡ଼ିଜାଳି ଦେଉଥିଲା । ଏହି ଦୋଷ ଅମାର୍ଜ୍ଜନୀୟ ବୋଲି ସେ ଭାବୁଥିଲେ ଏବଂ ଏହି କାରଣରୁ ତାଙ୍କର ମନସ୍ତାପ ଅତି ମାତ୍ରାରେ ବୃଦ୍ଧି ପାଇଥିଲା । ସାଢ଼େ ଚାରିବର୍ଷ ଘୋଡ଼ାଇ ରଖିଲା ପରେ ଏହାର ପ୍ରାୟଶ୍ଚିତ୍ତ ସ୍ୱରୂପ ସର୍ବସାଧାରଣରେ ଏହାର ପ୍ରକାଶ କରିବା ଉଚିତ ବୋଲି ରାଧାନାଥ ସ୍ଥିର କଲେ । "ଆତ୍ମକଥା" ନାମରେ ଖଣ୍ଡିଏ ପୁସ୍ତିକା ପ୍ରକାଶ କରି ସେ ତାଙ୍କର ଘନିଷ୍ଠ ବନ୍ଧୁମାନଙ୍କଠାକୁ ପଠାଇଲେ ଏବଂ ସରକାରଙ୍କୁ ଜଣାଇଲେ । ୧୯୦୫ ଜୁଲାଇ ମାସରେ ଏହି ପୁସ୍ତିକଟି ପ୍ରକାଶିତ ହୋଇଥିଲା । ହୁଗୁଳି ଅବସ୍ଥାନ ସମୟରେ ଜଣେ ବିଦୁଷୀ ମହିଳାଙ୍କ ସହିତ ସେ ପ୍ରେମ ସୂତ୍ରରେ ଆବଦ୍ଧ ହୋଇ ନିଜର ଚରିତ୍ରସ୍ଖଳନ କରିଥିଲେ । ପରସ୍ତ୍ରୀହରଣ ପାପର କୁପ୍ରଭାବ ଶତମୁଖହୋଇ କିପରି ତାଙ୍କୁ ଗ୍ରାସ କରୁଥିଲା ତାହା ଏହି "ଆତ୍ମକଥା"ରେ ବଡ଼ କରୁଣ-ଭାବରେ ବ୍ୟକ୍ତ ହୋଇଥିଲା ।

ଏଥିରେ ନିଜର ମାନସିକ ଅବସ୍ଥାର ବର୍ଣ୍ଣନା କରି ରାଧାନାଥ ଲେଖିଥିଲେ, "ପ୍ରାୟ ଚାରିବର୍ଷ ହେବାକୁ ଚାଲିଲା ; ମୋହର ଏପରି ମାନସିକ ଏବଂ ତନ୍ନିବନ୍ଧନ ଶାରୀରିକ ଯନ୍ତ୍ରଣା ହୋଇଅଛି ଯେ ପ୍ରତ୍ୟହ ଆତ୍ମହତ୍ୟା କରିବାକୁ ପ୍ରବୃତ୍ତି ହୁଏ । ଅତି ତୀବ୍ର ସ୍ମୃତି-ଶୂଳ ସହିତ ଦାରୁଣ ବାୟୁଶୂଳ ରୋଗରେ ପରିଣତ ହୋଇଅଛି । ଯନ୍ତ୍ରଣାବଶତଃ ଅଧିକାଂଶ ସମୟ ମୁଁ ଶଯ୍ୟାରେ ପଡ଼ି ରହୁଥାଏ । ପାପର ଗୋଟିଏ ନାମ ଘାତକ, ଯେଣୁ ମୋହୋ ଦୃଷ୍ଟାନ୍ତରେ କେବଳ ମନରେ ନୁହେଁ, ଶରୀରରେ ସୁଦ୍ଧା ଅନର୍ଥ ହୋଇଅଛି ।"

ଏହି ଆତ୍ମନିବେଦନଟି ସେ ଈଶ୍ୱରଙ୍କ ଆଦେଶରୁ ପ୍ରକାଶ କରୁଥିବା ବ୍ୟକ୍ତ କରିଥିଲେ । "ମୁଁ ମୋହର ପାପ ସାଧାରଣରେ ପ୍ରକାଶ କଲି ବୋଲି ଲୋକେ ମୋତେ ପାଗଳ ବୋଲି ସମ୍ବୋଧନ କରିବେ । ମାତ୍ର ମୁଁ ମୋହର ହୃଦୟର ଅନ୍ତଃସ୍ଥଳରୁ ଜାଣିଅଛି- ଈଶ୍ୱରଙ୍କ ଆଦେଶରୁ ମୁଁ ଏ ବିଷୟରେ ପାଗଳ ହୋଇଅଛି । ଏଥିରେ ମୋହର କୌଣସି ଗୃହ୍ୟ ନାହିଁ । ସଂସାରରେ ଅନେକ ଘଟନା ଏଭଳି ଘଟୁଅଛି । ଏହା ଜାଣି ସୁଦ୍ଧା ମୋହର ଆତ୍ମସମ୍ବରଣର ଲେଶମାତ୍ର କ୍ଷମତା ନାହିଁ ।"

ଈଶ୍ୱରଙ୍କ ଆଦେଶରୁ ହେଉ ବା ଅନ୍ତରର ନିବିଷ୍ଟ ଚିନ୍ତାର ଫଳସ୍ୱରୂପ ହେଉ ତାଙ୍କର ଏ ଆତ୍ମନିବେଦନ କିୟତ୍ ପରିମାଣରେ ତାଙ୍କର ବ୍ୟଥିତ ପ୍ରାଣରେ ଶାନ୍ତିବାରି ସେଚନ କରିପାରିଥିଲା । ଏହି ପାପସ୍ୱୀକାରଦ୍ୱାରା ରାଧାନାଥଙ୍କ ସାହିତ୍ୟ ମର୍ଯ୍ୟାଦାରେ କିମ୍ବା ତାଙ୍କ କୃତିମାନଙ୍କର ଗୌରବରେ କୌଣସି ପ୍ରକାର ଆଞ୍ଚ ଆସିନାହିଁ ।

## ପୁନର୍ବାର ଗଡ଼ଜାତ ଭ୍ରମଣ ( ୧୯୦୮ )

ରାଧାନାଥ ୧୮୮୭ରେ ପ୍ରଥମ ଥର ଗଡ଼ଜାତ ଭ୍ରମଣରେ ଯାଇ ଢେଙ୍କାନାଳ, ତାଳଚେର, ପାଲ୍‌ଲହଡ଼ା, ବାମଣ୍ଡା, କେଉଁଝର ପ୍ରଭୃତି ଗଡ଼ଜାତ ଭ୍ରମଣ କରିଥିଲେ । ସେତେବେଳେ ସେ ଗଭର୍ଣ୍ଣମେଣ୍ଟଙ୍କ ଶିକ୍ଷା ବିଭାଗର ଜଣେ ଉଚ୍ଚ କର୍ମଚାରୀ ରୂପେ ବିଭିନ୍ନ ଗଡ଼ଜାତରେ ଥିବା ଶିକ୍ଷାନୁଷ୍ଠାନଗୁଡ଼ିକ ପରିଦର୍ଶନ କରିବା ପାଇଁ ଯାଇଥିଲେ । ତାଙ୍କର ସାହିତ୍ୟିକ ପ୍ରତିଭା ସେତେବେଳକୁ ପୂର୍ଣ୍ଣ ବିକଶିତ ହୋଇନଥିଲେ ମଧ୍ୟ ଜଣେ ଉଚ୍ଚକୋଟୀର କବିର ଶକ୍ତି

ତାଙ୍କଠାରେ ଥିଲା ଏହା ଦେଶବାସୀ ଜାଣିଥିଲେ । ପୁଣି, ଓଡ଼ିଶାରେ ଭାଷା, ସାହିତ୍ୟ, ଶିକ୍ଷାର ସମ୍ୟକ୍ ଉନ୍ନତି ନିମନ୍ତେ ଯେଉଁ କେତେଜଣ ଅକୃତ୍ରିମ ସମାଜସେବୀ ବ୍ରତୀ ହୋଇଥିଲେ, ସେମାନଙ୍କ ଭିତରେ ସେ ଜଣେ ଅଗ୍ରଣୀ ଥିଲେ, ଏହା କାହାରିକୁ ଅବିଦିତ ନଥିଲା । କ୍ଷମତାରେ ଥାଇ ମଧ୍ୟ ସେ ସମାଜସେବାର ପୂର୍ଣ୍ଣଗୌରବ ଲାଭ କରିଥିଲେ । ସେ ସମୟରେ ତାଙ୍କର ଯେଉଁ ସମ୍ମାନ ଥିଲା ତାହା ତାଙ୍କର ଭ୍ରମଣରେ ବହୁ ସାହାଯ୍ୟ କରିଛି ।

୧୯୦୮ରେ ସେ ପୁଣି ଗଡ଼ଜାତର କେତେକ ରାଜ୍ୟକୁ ଯାଇଥିଲେ । ସେତେବେଳକୁ ସେ 'ରାଜକାର୍ଯ୍ୟରୁ ଅବସର ଗ୍ରହଣ କରିସାରିଥିଲେ ; ତାଙ୍କର ପ୍ରତିଭାର ପୂର୍ଣ୍ଣବିକାଶ ହୋଇସାରିଥିଲା ଏବଂ ଓଡ଼ିଶାରେ ସମାଜ ଓ ସାହିତ୍ୟ କ୍ଷେତ୍ରରେ ତାଙ୍କର ସ୍ଥାନ ସର୍ବୋଚ୍ଚଶ୍ରେଣୀରେ ଦୃଢ଼ ହୋଇସାରିଥିଲା । ଲୋକେ ତାଙ୍କୁ ସମ୍ମାନ କରିବାଦ୍ୱାରା ନିଜେ ସମ୍ମାନିତ ହେଉଥିଲେ । ସରକାରୀ କର୍ମଚାରୀମାନେ ପଦାଧିକାର ବଳରେ ଯେଉଁ ଉଚିତ ସୁବିଧା ଭୋଗ କରୁଥିଲେ ସେଥିରୁ ସେ ବଞ୍ଚିତ ହୋଇଥିଲେ ମଧ୍ୟ ତାଙ୍କ ପ୍ରତି ଲୋକଙ୍କ ସ୍ନେହ ଓ ସମ୍ମାନ ତାଙ୍କୁ ବେଶି ସୁବିଧା ଦାନକରୁଥିଲା । ସେ ବର୍ତ୍ତମାନ ମୁକ୍ତ ବ୍ୟକ୍ତି ହିସାବରେ ଭ୍ରମଣର ପୂର୍ଣ୍ଣଆନନ୍ଦ ଉପଭୋଗ କରିଥିଲେ, ସମୟ ଓ ଶରୀରର କଟକଣା ତାଙ୍କୁ ବାଧା ଦେଇ ପାରିନଥିଲା ।

୧୯୦୮ ବେଳକୁ ଓଡ଼ିଶା ଗଡ଼ଜାତମାନଙ୍କର ସାଧାରଣ ଅବସ୍ଥାରେ ବହୁତ ଉନ୍ନତି ସାଧିତ ହୋଇସାରିଥିଲା । ଗଡ଼ଜାତ କ୍ରମେ କ୍ରମେ ଉନ୍ନତିପଥର ଯାତ୍ରୀ ହୋଇଥିଲା । ଶିକ୍ଷାନୁଷ୍ଠାନ, ପଥ, ଯାନବାହନର ବହୁ ଉନ୍ନତି ହୋଇସାରିଥିଲା । ପୂର୍ବେ ଗଡ଼ଜାତ

ଭ୍ରମଣକାଳକୁ ଯେଉଁସବୁ ଅସୁବିଧା ଭୋଗ କରିବାକୁ ପଡ଼ୁଥିଲା ତାହା କେତେକାଂଶରେ ଲାଘବ ହୋଇଯାଇଥିଲା ।

ରାଧାନାଥଙ୍କ ପ୍ରଥମ ଗଡ଼ଜାତ ଭ୍ରମଣ ବେଳର ଅବସ୍ଥା ସନ୍ତୋଷଜନକ ନଥିଲା ।

ସେତେବେଳେ ଓଡ଼ିଶାର ଗଡ଼ଜାତମାନଙ୍କର ଅବସ୍ଥା ସମ୍ପୂର୍ଣ୍ଣ-ଭାବରେ ସେତେ ଉନ୍ନତ ନଥିଲା । ଦୁଇ ତିନୋଟି ରାଜ୍ୟରେ ଶାସନର ଅବସ୍ଥା ସନ୍ତୋଷଜନକ ଥିଲେ ମଧ୍ୟ ଜନସାଧାରଣଙ୍କ ସ୍ୱାଧୀନତା ପ୍ରାପ୍ତ ନଥିଲା କହିଲେ ଚଳେ । ତେବେ, କେତେଜଣ ଆଲୋକପ୍ରାପ୍ତ ନବ୍ୟ ଶିକ୍ଷିତ ରାଜା ନୂତନ ନୂତନ ଭାବର ପ୍ରସାର ଦିଗରେ ଚେଷ୍ଟା କରୁଥିଲେ । ଓଡ଼ିଆଜାତିର ହୃତଗୌରବ ଫେରାଇ ଆଣି ମୃତପ୍ରାୟ ଜାତିର ପିଣ୍ଡରେ ପ୍ରାଣର ସଞ୍ଚାର କରିବାପାଇଁ ସବୁ ଗଡ଼ଜାତର ରାଜାମାନେ ସ୍ୱଶକ୍ତି ଅନୁସାରେ ମୋଗଲବନ୍ଦୀର ଲୋକମାନଙ୍କ ସହିତ ପୂର୍ଣ୍ଣଭାବରେ ସହଯୋଗ କରୁଥିଲେ । ରାଜନୈତିକ କାରଣରୁ କେତେକ ପ୍ରତିବନ୍ଧକ ବିଦ୍ୟମାନ ଥିଲେ ମଧ୍ୟ ସରକାରଙ୍କ ଦୃଷ୍ଟିରେ ନପଡ଼ି ମଧ୍ୟ କେତେକ କାର୍ଯ୍ୟ ଜାତିର ହିତଦୃଷ୍ଟିରୁ କରୁଥିଲେ । ସାମାଜିକ, ସାହିତ୍ୟିକ, ଆର୍ଥିକକ୍ଷେତ୍ରରେ ଜାତିର ଉନ୍ନତି ପାଇଁ ସମସ୍ତେ ଆଗ୍ରହୀ ଥିଲେ । କିନ୍ତୁ, ରାଜନୈତିକ କାରଣରୁ ମୋଗଲବନ୍ଦୀ ଓ ଗଡ଼ଜାତ ଭିତରେ ଭାବ ଆଦାନପ୍ରଦାନ, ଗତାଗତ ପ୍ରଭୃତି ବିଷୟରେ କେତେକ ବିଧିନିଷେଧ ପାଳନ କରିବା ନିମନ୍ତେ ସରକାର ଗଡ଼ଜାତର ରାଜାମାନଙ୍କୁ ନିର୍ଦ୍ଦେଶ ଦେଉଥିବାରୁ ରାଜାମାନେ ଅବାଧରେ ଉଲ୍ଲେଖଯୋଗ୍ୟ କୌଣସି ବିଷୟରେ ଅଗ୍ରଣୀ ହେବାକୁ ପୂର୍ଣ୍ଣସୁଯୋଗ ପାଉନଥିଲେ ।

କ ଗଡ଼ଜାତ, କ ମୋଗଲବନ୍ଦୀ, କୌଣସିଠାରେ ଭଲ ରାସ୍ତା ନଥିଲା । ଏହି କାରଣରୁ ଏକସ୍ଥାନରୁ ଅନ୍ୟସ୍ଥାନକୁ ଯିବା ପାଇଁ ବହୁ ଅସୁବିଧା ଭୋଗ କରିବାକୁ ହେଉଥିଲା । ଲୋକେ ଯାତାୟାତ-ପରିଶ୍ରମ ଭୟରେ ଦୂର ଅଞ୍ଚଳକୁ ଯିବା ପାଇଁ ଆଦୌ ଇଚ୍ଛା ପ୍ରକାଶ କରୁନଥିଲେ । ବାଧ୍ୟବାଧକତାରେ ଅନ୍ୟତ୍ର ଯିବାକୁ ହେଲେ ଗନ୍ତବ୍ୟ ସ୍ଥାନ ଓ ପଥର ବିପଦ ଅନୁସାରେ ସାଙ୍ଗରେ ଲୋକଙ୍କୁ ନେଇ-ଯିବାକୁ ପଡ଼ୁଥିଲା । ବଣଜଙ୍ଗଲ ରାସ୍ତାରେ ସବୁବେଳେ ବିପଦ ଥିବାରୁ ବଳଦଗାଡ଼ି, ସବାରି ବା ହାତୀରେ ଯିବାବେଳେ ମଧ୍ୟ ବହୁଲୋକ ଏକତ୍ର ହୋଇ ଯାଉଥିଲେ । ମୋଗଲବନ୍ଦୀର ଅବସ୍ଥା ଅପେକ୍ଷା ଗଡ଼ଜାତର ଅବସ୍ଥା ଅତି ଶୋଚନୀୟ । ସରକାରୀ ହାକିମ-ମାନଙ୍କୁ ବାଧ୍ୟ ହୋଇ ଗଡ଼ଜାତକୁ ଯିବାକୁ ପଡ଼ୁଥିଲା । ଗଡ଼ଜାତର ରାଜାଙ୍କ ଇଚ୍ଛାନୁସାରେ ହାକିମଙ୍କ ଚର୍ଚ୍ଚାର ଆଡ଼ମ୍ବର ନିର୍ଭର କରୁଥିଲା । ରାଧାନାଥ ଓଡ଼ିଶାରେ ସ୍ୱ ଲୋକହିତକର କାର୍ଯ୍ୟ ଓ ଦକ୍ଷତା ଯୋଗୁଁ ସୁପରିଚିତ ଥିଲେ । ତାଙ୍କର ସାହିତ୍ୟସ୍ପୃହା ଓ ଶିକ୍ଷାପ୍ରୀତି ଉତ୍ସାହୀରାଜାମାନଙ୍କ ଶ୍ରଦ୍ଧା ଅର୍ଜ୍ଜନ କରିବାରେ ବହୁତ ସାହାଯ୍ୟ କରିଥିଲା ।

ସରକାରୀ କାର୍ଯ୍ୟରେ ରାଧାନାଥଙ୍କୁ ଗଡ଼ଜାତ ଭ୍ରମଣ କରିବାକୁ ପଡ଼ୁଥିବାରୁ ସେ ସ୍ୱ ଦୁର୍ବଳ ସ୍ୱାସ୍ଥ୍ୟ ଦୃଷ୍ଟିରେ ଯାତାୟାତର ଆୟୋଜନର ନିର୍ଣ୍ଣୟ କରୁଥିଲେ । ସେ ଗଡ଼ଜାତରେ ସର୍ବତ୍ର ଆଦର ଲାଭ କରୁଥିଲେ ।

ରାଧାନାଥ ୧୮୮୭ରେ ପ୍ରଥମଥର ଗଡ଼ଜାତ ଯାଇଥିଲେ । ପୁଣି ଏହାର ପ୍ରାୟ ତିରିଶିବର୍ଷ ପରେ ପୁନର୍ବାର ଗଡ଼ଜାତର କେତେକ ରାଜ୍ୟ ଭ୍ରମଣ କରିଥିଲେ । ପ୍ରଥମଥର ଭ୍ରମଣ ସମୟର ଅବସ୍ଥା ଦ୍ୱିତୀୟଥର ଭ୍ରମଣ ବେଳକୁ ବହୁତ ଉନ୍ନତ ହୋଇଥିଲା ।

ସେତେବେଳର କେତେକ ଗଡ଼ଜାତର ଅବସ୍ଥା ସମ୍ବନ୍ଧରେ କିଛି ତଥ୍ୟ ରାଧାନାଥଙ୍କ ପ୍ରଥମ ଗଡ଼ଜାତ ଭ୍ରମଣର କାହାଣୀରୁ ମିଳେ । 'ଭ୍ରମଣକାରୀର ପତ୍ର''ରେ ଏହା ଖ୍ରୀ: ୧୮୮୭ର 'ନବସମ୍ବାଦ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେଥିରୁ କିୟଦଂଶ ଉଦ୍ଧୃତ ହେଲା ।

"ଆମ୍ଭେମାନେ ଆଠଗଡ଼, ଢେଙ୍କାନାଳ ଏବଂ ତାଳଚେର ମାର୍ଗରେ ବାମଣ୍ଡା ପ୍ରବେଶ କଲୁ ।"

ଆଠଗଡ଼—"ପ୍ରାଚୀନ କାଳରେ ଗଡ଼ଜାତ ଯେପରି ଥିଲା, ଆଠଗଡ଼ ସେଥିରୁ ସମଧିକ ଉନ୍ନତ ବୋଧ ହେଲା ନାହିଁ । ବରଂ ମୋଗଲବନ୍ଦୀର ସଭ୍ୟତାପ୍ରଦେଶରେ ଅଧଃପତିତ ପ୍ରାୟ ବୋଧ ହେଲା ।"

ଢେଙ୍କାନାଳ—"ଢେଙ୍କାନାଳ ସମ୍ପ୍ରତି ଗଭର୍ଣ୍ଣମେଣ୍ଟଙ୍କ ଶାସନାଧୀନ ।"

ତାଳଚେର—"ତାଳଚେରରେ କେତେକ ନୂତନ କଥା ଦେଖିଲି । ତାଳଚେର ଗଡ଼ କ୍ଷୁଦ୍ରସ୍ଥାନ ହେଲେହେଁ ଏହାର ଅବସ୍ଥିତି ଅତି ସୁନ୍ଦର । ×× ମ୍ୟୁନିସିପାଲ କଟକ ଅପେକ୍ଷା ଆରଣ୍ୟ ତାଳଚେର ଶତଗୁଣରେ ପରିଷ୍କୃତ । ରାଜଦାଣ୍ଡମାନ ସର୍ବଦା ସୁସଂସ୍କୃତ ଅବସ୍ଥାରେ ପରିରକ୍ଷିତ ହେଉଥିବା ବୋଧ ହେଲା । ମାତ୍ର ଅନ୍ୟାନ୍ୟ ଗଡ଼ଜାତ ଅପେକ୍ଷା ତାଳଚେରରେ ଗୋଟିଏ ବିଷୟରେ ଅସାଧାରଣତା ଦେଖିଲି । ଅନ୍ୟାନ୍ୟ ଗଡ଼ଜାତରେ ପ୍ରକାଶ୍ୟ, ସାଧାରଣ ବିଚରଣଯୋଗ୍ୟ ସ୍ଥାନମାନଙ୍କରେ ତୁମ୍ଭେ ବିନା ଆପତ୍ତିରେ ଭ୍ରମଣ କରିପାର । ତାଳଚେରରେ ଏ ବିଧି ନାହିଁ । ତାଳଚେର ଗଡ଼ରେ ପ୍ରବେଶ କରିବା ପୂର୍ବରୁ ତୁମ୍ଭର ଅନୁମତି ନେବାର ଆବଶ୍ୟକ । ସମ୍ଭବତଃ ଏହି ଅନୁମତି ଆଣିବାକୁ ତୁମ୍ଭର ଯେତେ ସମୟ ଯିବ, ସହର ଦେଖିବାର ସେଥିରୁ ଅଳ୍ପ ସମୟ ଲାଗିବ ।

ତାଳଚେରରେ ଅନେକ ଗ୍ରାମ ଯେପରି ପରିଷ୍କୃତ ଦେଖିଲି ଏପରି ପରିଷ୍କୃତ ସ୍ଥାନ ଓଡ଼ିଶା ଗଡ଼ଜାତରେ ବିରଳ । ରାଜ୍ୟ ମଧ୍ୟରେ ଗୋଟିଏ ପ୍ରଧାନ ରାଜବର୍ତ୍ମ ପ୍ରସ୍ତୁତ ହେବାର ଆରମ୍ଭ ହୋଇଅଛି । ରାଜ୍ୟର ଅନର୍ଜନକ୍ଷମ ଅନ୍ଧ, କୁବ୍‌ଜ, ପଙ୍ଗୁ ଲୋକଙ୍କୁ ରାଜସରକାର ଗ୍ରାସାଚ୍ଛାଦନ ଦେବାର ସୁବ୍ୟବସ୍ଥା ହୋଇଅଛି । ବର୍ତ୍ତମାନ ମହାରାଜାଙ୍କ ଏ ସୁବ୍ୟବସ୍ଥା ଯେ ଅତି ପ୍ରଶଂସନୀୟ ଏବଂ ଅନ୍ୟାନ୍ୟ ରାଜାମାନଙ୍କର ଅନୁକରଣୀୟ, ଏହା ବୋଲିବା ବାହୁଲ୍ୟ । X X"

ତାଳଚେରର ବ୍ରାହ୍ମଣୀତୀରବର୍ତ୍ତୀ ଖଜୁରିଆ ଗ୍ରାମ । ତିକ୍ଷ୍ଣୀନଦୀ ପାର ହୋଇ ବ୍ରାହ୍ମଣୀ ତଟସ୍ଥ ବଜ୍ରକୂଟ (ବଜ୍ରକୋଠ)-ରେଙ୍ଗାଳି-ରେହ୍ମଲ । ରେହ୍ମଲରୁ ଦୁଇମାଇଲ ପରେ ବାମଣ୍ଡା ରାଜ୍ୟ ।

ବାମଣ୍ଡା—ରେଙ୍ଗାଳିଠାରୁ ରାଜ୍ୟସୀମା ପର୍ଯ୍ୟନ୍ତ ସଡ଼କ ଥିଲା । ଅରଣ୍ୟ ପଥ ମଧ୍ୟରେ ଜୁଆଳିବନ୍ଧା ଗ୍ରାମ । "ଏ ଗ୍ରାମଟି ଅତି କ୍ଷୁଦ୍ର, ମାତ୍ର ଅତି ପରିଷ୍କୃତ, ଗ୍ରାମରେ ପ୍ରତ୍ୟେକ ଦାଣ୍ଡ ଏବଂ ଗଳିମାନଙ୍କରେ ସଡ଼କ ଦେଖି ଆମ୍ଭେମାନେ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ ।" ରେଙ୍ଗାଳିରୁ ଜୁଆଳିବନ୍ଧା-ନକ୍ଷିକୂଳ-ଗୋଗୁଆ-ଗାଙ୍ଗନଳ । ଗାଙ୍ଗନଳ — "ଗୋଗୁଆରୁ ଗାଙ୍ଗନଳ ପ୍ରାୟ ଓଳିକର ବାଟ । ସମ୍ବଲପୁରରୁ ମେଦନୀପୁର ପର୍ଯ୍ୟନ୍ତ ବିସ୍ତୃତ ପ୍ରାଚୀନ ସାମରିକ ସଡ଼କପାର୍ଶ୍ୱରେ ଗାଙ୍ଗନଳ ଅବସ୍ଥିତ । ପଥିକମାନଙ୍କର ରହିବା ସକାଶେ ଏଠାରେ ପଟାର ମଞ୍ଚ ଏବଂ ଅନ୍ୟାନ୍ୟ ଗୃହାଦି ଅଛି । X X ବାମଣ୍ଡାର ଅନ୍ୟାନ୍ୟ ଗ୍ରାମ ପରି ଏଠାରେ ମଧ୍ୟ ସଡ଼କର ଅଭାବ ନାହିଁ ଏବଂ ଲୋକମାନେ ଅତ୍ୟାଗ୍ରହର ବ୍ୟକ୍ତିତ ମ୍ୟୁନିସିପାଲିଟିର ସମସ୍ତ ସୁବିଧା ଉପଭୋଗ କରୁଥିବା ବୋଧହେଲା ।" ଗାଙ୍ଗନଳ-ସୁଗୁଡ଼ା-ଦେବଗଡ଼ (ବାମଣ୍ଡା ରାଜଧାନୀ) । "ଦେବଗଡ଼ ଅତି ସୁନ୍ଦର,

ପରିଷ୍କୃତ, କ୍ଷୁଦ୍ର ନଗର, ଉତ୍ତରରୁ ଦକ୍ଷିଣକୁ ପ୍ରସାରିତ । ସଡ଼କମାନ ସୁପରିଷ୍କୃତ ଅବସ୍ଥାରେ ପରିରକ୍ଷିତ ଏବଂ ସମାନ୍ତରାଳ ପୟଃ-ପ୍ରଣାଳୀଦ୍ୱାରା ପରିଶୋଭିତ । × ×” “ରାଜଦ୍ୱାର ଅବାରିତ, ମହାରାଜା ଆଡ଼ମ୍ବରୀ ଉପାଧିଜଡ଼ିତ ନୁହନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ ।” (ରାଜାଙ୍କର) “ଭଦ୍ରତା ଦେଖି ଆମ୍ଭେମାନେ ମୋହିତ ହେଲୁଁ ।” “ବାମଣ୍ଡାଶାସନ ଏକ ଉନ୍ନତ ରାଜ୍ୟଶାସନ ରୂପେ ବିବେଚିତ ହେଉଥିଲା ।

**ଲହଡ଼ା**—ଲହଡ଼ାର ରାଜଧାନୀ—“ସ୍ଥାନଟି ଅପରିଷ୍କୃତ ନୁହେଁ, ମାତ୍ର ରାଜପଥର ବିଶେଷ ଅଭାବ ଲକ୍ଷିତ ହେଲା । ଶିକ୍ଷା ବିଷୟରେ ମହାରାଜାଙ୍କର ଆସ୍ଥା ଥିବାର ବୋଧ ହେଲା । ମାତ୍ର ସେହି ଆସ୍ଥା ଶୃଙ୍ଖଳିତ କାର୍ଯ୍ୟରେ ପରିଣତ ହୋଇଥିବାର ପରିଚୟ ମିଳିଲା ନାହିଁ । ସଂସ୍କୃତ ଶିକ୍ଷା ବିଷୟରେ ମହାରାଜାଙ୍କର ତ୍ରୁଟି ନାହିଁ ଏବଂ ସେହି ଅନୁଷ୍ଠାନ କିୟତ୍‌ପରିମାଣରେ ଫଳପ୍ରଦ ହୋଇଅଛି । ସଂସ୍କୃତଜ୍ଞ ପଣ୍ଡିତମାନେ ମଧ୍ୟ ମହାରାଜାଙ୍କଠାରୁ ଯଥେଷ୍ଟ ଉତ୍ସାହପ୍ରାପ୍ତ ହୁଅନ୍ତି । ପଥିକମାନଙ୍କ ପ୍ରତି ମହାରାଜାଙ୍କର ଭଦ୍ରତା ଓ ସୌଜନ୍ୟର ପ୍ରତିଷ୍ଠା ପୂର୍ବରୁ ଶୁଣିଥିଲୁ । ଯାହା ଦେଖିଲୁଁ, ତାହା ସେ ପ୍ରତିଷ୍ଠାର ସମ୍ପୂର୍ଣ୍ଣ ପୋଷକ ଅଟେ । × ×”

ଗଡ଼ଜାତ ଭ୍ରମଣରେ ସୁବିଧା ଅପେକ୍ଷା ଅସୁବିଧାହିଁ ବେଶି ଥିଲା । ଅରଣ୍ୟ ପଥରେ ଯିବାର ଯାବତୀୟ କଷ୍ଟ ବହୁ ସ୍ଥାନରେ ଭୋଗ କରିବାକୁ ହେଉଥିଲା । ଦୁର୍ଗମ ପଥରେ କିପରି ଅଳ୍ପ ପଥ ଅତିକ୍ରମ କରିବାକୁ ବହୁ ସମୟ ଓ ଶକ୍ତି ବ୍ୟୟ କରିବାକୁ ହେଉଥିଲା ତାହା ଗୋଟିଏ ଘଟଣାରୁ ସ୍ପଷ୍ଟ ହେବ ।

ପାଲଲହଡ଼ାର ଗୋବିନ୍ଦପୁରଠାରୁ କେନ୍ଦୁଝର ରାସ୍ତାରେ ପଥିକର କିପରି କଷ୍ଟ ହୁଏ ତାହା ଏପରିଭାବରେ ବର୍ଣ୍ଣିତ ହୋଇଛି । "ଆମ୍ଭେମାନେ ପୂର୍ବାହ୍ଣ ୯ଘଣ୍ଟା ସମୟରେ ଗୋବିନ୍ଦପୁର ତ୍ୟାଗକଲୁଁ । ପୂର୍ବୋକ୍ତ ପୁରାତନ ସାମରିକ ସଡ଼କରେ ପ୍ରାୟ ଦେଢ଼ କୋଶ ଗଲା ଉତ୍ତାରୁ ଗୋଟିଏ ବୃହତ୍ ଘାଟି ପଡ଼ିଲା । ଏହି ଘାଟି ଉତ୍ତୀର୍ଣ୍ଣ ହେବାକୁ ୨।୮ ଘଣ୍ଟା ଲାଗିଲା । ଉପର୍ଯ୍ୟୁପରି ସାତଟି ପର୍ବତ ଆରୋହଣ କରିବାର ସହଜ କଥା ନୁହେଁ । ଆମ୍ଭେମାନେ ପ୍ରତ୍ୟେକ ପର୍ବତର ଶିଖର ଦେଶରେ କିଞ୍ଚିତ୍‌କ୍ଷଣ ବିଶ୍ରାମ କରି ଏବଂ ଚତୁର୍ଦ୍ଦିଗରେ ପରିବର୍ତ୍ତ ଦୃଶ୍ୟ ଦେଖି ପୁଣି ଅଗ୍ରସର ହେଉଥିଲୁଁ । × ×"

ପାଲ୍‌ଲହଡ଼ାଠାରୁ କେନ୍ଦୁଝର ଯିବା ସଡ଼କ ଅତି ଦୁର୍ଗମ । ଏ ବାଟର ଭୀଷଣ ଦୃଶ୍ୟ ପଥିକକୁ ଭୟଭୀତ କରାଇଦେଉଥିଲା । ସର୍ବଦା ହିଂସ୍ରଜନ୍ତୁଙ୍କ ଆକ୍ରମଣର ଭୟ ମଧ୍ୟ ରହୁଥିଲା । ବାଟରେ ଆଶ୍ରୟ ନେବା ଭଳି ଅତି ଅଳ୍ପ ସ୍ଥାନ ଥିଲା । "ଲହଡ଼ାରେ ଗୃହୀତନ ଅବସ୍ଥାନାନ୍ତର ଆମ୍ଭେମାନେ କେନ୍ଦୁଝର ଯାତ୍ରା କଲୁଁ । ଖଣ୍ଡାଧାର ବାଟେ ଯିବାର ପୂର୍ବରୁ ସଙ୍କଳ୍ପ ଥିଲା । ମାତ୍ର କେତେକ ଅସୁବିଧା ଘଟିବାରୁ ଅଗତ୍ୟା ସେହି ସଙ୍କଳ୍ପ ପରିତ୍ୟାଗ କଲୁଁ । ପ୍ରଥମ ଦିନ ପୂର୍ବାହ୍ଣ ୧୧ଟା ବେଳେ ବାହାରି ସାଢ଼େ ଏକପ୍ରହର ସମୟରେ ଗୋବିନ୍ଦପୁର ନାମକ ଆରଣ୍ୟକପଲ୍ଲୀରେ ଉପସ୍ଥିତ ହେଲୁଁ । ଏହି ମାର୍ଗ ଅତି ଉଚ୍ଚବାଚ ଏବଂ ନିବିଡ଼ ଅରଣ୍ୟାକୀର୍ଣ୍ଣମୟ । ବନଦେବତାର ପ୍ରାସାଦରୂପୀ ବିଶାଳ ବନସ୍ପତିମାନଙ୍କ ଛାୟାରେ ଚତୁର୍ଦ୍ଦିଗ ଅନ୍ଧକାରିତ ଏବଂ ଝିଲ୍ଲୀରବରେ ବନଭୂମୀ ସର୍ବଦା ଝଙ୍କାରିତ । ଆମ୍ଭେମାନେ ଏ ଯାତ୍ରାରେ ଏପରି ଘୋର ଅରଣ୍ୟ ଏହି ପ୍ରଥମ ଦେଖିଲୁ । ଉଚ୍ଚ ଭୂମିରେ ସଞ୍ଚରଣ ବେଳେ ମାଳ୍ୟଗିରିର ଭୀଷଣ ମୂର୍ତ୍ତି ଏବଂ ତାହାର ବକ୍ଷସ୍ଥିତ ଗୋଟିଏ ସ୍ଫଟିକବତ୍ ଶୁଭ୍ର ଜଳାସ୍ତରଣ ଆମ୍ଭମାନଙ୍କ

ନେତ୍ର ଗୋଚର ହେଉଥିଲା । ଏହି ଜଳାସ୍ତରଣ ସମ୍ଭବତଃ ଗୋଟିଏ ପ୍ରପାତ ହୋଇଥିବାରୁ ଆମ୍ଭେମାନେ ମାର୍ଗରେ ଯାଉଁ ଯାଉଁ ସନ୍ଧ୍ୟା ସମୟରେ ଏକ ସ୍ଥାନରେ ସଦ୍ୟଃ ଗୋଟିଏ ବୃହତ୍ ବ୍ୟାଘ୍ର ଗୃହ ଯାଇଥିବାର ସ୍ପଷ୍ଟ ଚିହ୍ନମାନ ଦେଖି ଶଙ୍କିତ ହେଲୁ ଏବଂ ସମସ୍ତେ ଦଳବାନ୍ଧି ଅଗ୍ରସର ହେବାକୁ ଲାଗିଲୁ । × ×”

ଗୋବିନ୍ଦପୁରଠାରୁ କୁଆଁର (ଭୂୟାଁପୀଡ଼ ଅନ୍ତର୍ଗତ, କେଉଁଝର), —ଗୋନାସିକା—କେଉଁଝର ଗଡ଼ । ବସନ୍ତପୁର, ପୁରୁମଣ୍ଡା, ଚାରି, ବାଲିଯୋଡ଼ି, କାନ୍ଥୋ, ଆନନ୍ଦପୁର ।

ଏହି ପଥରେ ସଡ଼କର ବେଶି ଅଭାବ ଅନୁଭୂତ ହେଉଥିଲା । ବନ୍ୟଜନ୍ତୁଙ୍କ ଭୟ ମଧ୍ୟ ସର୍ବତ୍ର ଥିଲା । “ବାଲିଯୋଡ଼ି ନାମକ ସ୍ଥାନରେ ଆମ୍ଭେମାନେ ଗୋଟିଏ ଚୋଟାରେ ପର୍ଣ୍ଣଶାଳା ପ୍ରସ୍ତୁତ କରାଇ ଅବସ୍ଥାନ କଲୁଁ । ଏଠାରେ ସମସ୍ତ ସମୟରେ ବନ୍ୟ ହସ୍ତୀର ଭୟ ହୁଏ । ସ୍ଥାନଟି ପ୍ରଶସ୍ତ, ମାତ୍ର ଚତୁଃପାର୍ଶ୍ୱରେ ଘୋର ବନ । ମୟୂରରବରେ ଏହି ବନ ଅନୁକ୍ଷଣ ଶବ୍ଦାୟମାନ । ରାତ୍ରରେ ବ୍ୟାଘ୍ର ଗର୍ଜନ ଶୁଣି ଆମ୍ଭମାନଙ୍କର ଶଙ୍କା ଜାତ ହେବାରୁ ଅଧିକ ପରିମାଣରେ ଅଗ୍ନି ପ୍ରଜ୍ୱଳିତ କରି କଷ୍ଟମସ୍ଟରେ ରାତ୍ରି ଅତିବାହିତ କଲୁଁ । × × × କେଉଁଝର ଗଡ଼ଠାରୁ ଆନନ୍ଦପୁର ପର୍ଯ୍ୟନ୍ତ ସଡ଼କ ନଥିଲା । “ଏ ମାର୍ଗରେ ଗମନାଗମନ ସମୟରେ ଲୋକେ କିପରି କଷ୍ଟରେ ପଡ଼ନ୍ତି, ଆମ୍ଭେମାନେ ତାହା ଅନୁଭବରୁ ଜାଣିଅଛୁ । ସମଗ୍ର ଗଡ଼ଜାତ ଭ୍ରମଣର କଷ୍ଟ ଏହି ଅଞ୍ଚଳରେ କେନ୍ଦ୍ରୀଭୂତ ପ୍ରାୟ ମନେହେଲା ।”

ଏହିପରି କଷ୍ଟ ଓ ଅସୁବିଧା ଭୋଗକରି ସେହି ସମୟରେ ଗଡ଼ଜାତ ଭ୍ରମଣ କରିବାକୁ ହେଉଥିଲା । ଏହି କାରଣରୁ ନିତାନ୍ତ ବାଧ୍ୟ ନ ହେଲେ, କିମ୍ବା ସରକାରୀ କାର୍ଯ୍ୟ ନ ପଡ଼ିଲେ କେହି ଗଡ଼ଜାତ ଭ୍ରମଣରେ ଯିବାପାଇଁ ମନ ବଳାଉନଥିଲେ ।

ଗଡ଼ଜାତର ପ୍ରତ୍ୟେକ ରାଜ୍ୟର ରାଜଧାନୀ ଶିକ୍ଷା ଓ ସଂସ୍କୃତିର ଏକ ଏକ କେନ୍ଦ୍ର ଥିଲା, କହିଲେ ଚଳେ । ମୋଗଲବନ୍ଦୀର ବହୁ ଖ୍ୟାତନାମା ପଣ୍ଡିତ ସେଠାକୁ ଯାଉଥିଲେ ଏବଂ ରାଜାମାନଙ୍କଦ୍ୱାରା ସମ୍ମାନିତ ହେଉଥିଲେ ।

## ପୁନର୍ବାର ଗଡ଼ଜାତ ଭ୍ରମଣ

୧୯୦୮ରେ ପୁନର୍ବାର ରାଧାନାଥ ତାଳଚେର, ପାଲଲହଡ଼ା, ବାମଣ୍ଡା ଭ୍ରମଣରେ ଯାଇଥିଲେ । ଏହି ସ୍ଥାନମାନଙ୍କରେ ସର୍ବପ୍ରକାର ସୁବିଧା ହୋଇଥିଲେ ମଧ୍ୟ ଏବଂ ଯଥୋଚିତ ଆତିଥ୍ୟର ସେ ଅଧିକାରୀ ହୋଇଥିଲେ ମଧ୍ୟ ତାଙ୍କର ଭଗ୍ନସ୍ୱାସ୍ଥ୍ୟ ଓ ବାର୍ଦ୍ଧକ୍ୟ ତାଙ୍କର ସହାୟକ ହୋଇନଥିଲା ।

ଏହି ଗଡ଼ଜାତ ଭ୍ରମଣହିଁ ତାଙ୍କର ଅକାଳ ମୃତ୍ୟୁର କାରଣ ହେଲା ।

**ତାଳଚେର** :—ତାଳଚେର ରାଜାଙ୍କ ଆମନ୍ତ୍ରଣକ୍ରମେ ରାଧାନାଥ ୧୯୦୮ରେ ତାଳଚେର ଯାଇ ରାଜାଙ୍କ ଅତିଥି ହୋଇ-ଥିଲେ । ସେଠାରେ ସେ ଦେଢ଼ମାସ ଅବସ୍ଥାନ କରିଥିଲେ ଏବଂ ପ୍ରତିଦିନ ହସ୍ତିପୃଷ୍ଠରେ ଆରୋହଣ କରି ନିକଟସ୍ଥ ବହୁ ପ୍ରାକୃତିକ ଦୃଶ୍ୟ ଦେଖିବାକୁ ଯାଉଥିଲେ । ଅବସର ବିନୋଦନ ନିମନ୍ତେ ଧର୍ମ ଓ ସାହିତ୍ୟ ଆଲୋଚନା ପ୍ରତିଦିନ ହେଉଥିଲା । ପ୍ରତିଦିନ ବ୍ରାହ୍ମଣୀ ନଦୀରେ ସ୍ନାନ କରି ରାଧାନାଥ ବହୁତ ଆରାମ ପାଉଥିଲେ । ଏହି ଅବସ୍ଥାନ ତାଙ୍କ ମନ ଓ ଶରୀରରେ ପ୍ରଫୁଲ୍ଲତା ଆଣିଦେଇଥିଲା ।

ତାଳଚେରରେ ରାଧାନାଥ ଗୈରିକ ବସନ ପରିଧାନ କରିବା ଆରମ୍ଭ କଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଅଭ୍ୟାସ ବଶତଃରେ ଗୈରିକ ବସ୍ତ୍ର ବ୍ୟବହାର କରୁଥିଲେ । ତାଙ୍କର ଗୈରିକବସ୍ତ୍ର ପ୍ରତି ଆଗ୍ରହ ଦେଖି ତାଳଚେର ରାଜା ତାଙ୍କ ଯୁବରାଜଙ୍କ ସ୍ୱନକ୍ଷତ୍ର ଉତ୍ସବ ଉପଲକ୍ଷରେ ତାଙ୍କୁ ଗୈରିକବସ୍ତ୍ର ଉପହାର ଦେଇଥିଲେ ।

ତାଳଚେରଠାରୁ ପାଲଲହଡ଼ା ରାଜାଙ୍କ ଅନୁରୋଧକ୍ରମେ ରାଧାନାଥ ପାଲଲହଡ଼ା ଯାଇ ସେଠାରେ କିଛି ସମୟ ଅବସ୍ଥାନ କରିଥିଲେ । ପାଲଲହଡ଼ାର ଉଚ୍ଚତମ ଗିରିଶୃଙ୍ଗ "ମାଳ୍ୟଗିରି" ଉପରେ ନବନିର୍ମିତ ଏକ ପର୍ଣ୍ଣକୁଟୀରରେ ରାଧାନାଥ ଓ ତାଙ୍କ ପୁତ୍ର ଶଶିଭୂଷଣ ୧୨ (ବାର) ଦିନକାଳ ଅବସ୍ଥାନ କରିଥିଲେ । ରାଜା ଏହାର ସର୍ବପ୍ରକାର ବ୍ୟବସ୍ଥା କରି ଦେଇଥିଲେ । ଏହି ଅବସ୍ଥାନଟି ତାଙ୍କର ବଡ଼ ଆନନ୍ଦଦାୟକ ହୋଇଥିଲା । ଏହିଠାରେ "Will Power" ଏବଂ "Ideal suggestions through Mental Photography" ନାମକ ଦୁଇଟି ଇଂରାଜୀ ପୁସ୍ତକ ପାଠକରି ସେ ଆନନ୍ଦ ପାଇଥିଲେ । ଏହି ପୁସ୍ତକପାଠ ଫଳରେ "ମନରବଳ" ପରୀକ୍ଷା କରିବାପାଇଁ ସେ ବାଲ୍ୟକାଳରୁ ଅଭ୍ୟାସ କରିଥିବା ନସ୍ୟଗ୍ରହଣ ଛାଡ଼ି ଦେଇଥିଲେ ; ଏଥିରେ ସେ କୃତକାର୍ଯ୍ୟ ହୋଇଥିଲେ ।

ତା ୨୪ ରିଖ ମାର୍ଚ୍ଚ ୧୯୦୮ରେ ରାଧାନାଥଙ୍କୁ ସମ୍ବର୍ଦ୍ଧନା କରିବାପାଇଁ ରାଜସଭାର ଏକ ଅଧିବେଶନ ହୋଇଥିଲା, ରାଜା ଗଙ୍ଗେଶ୍ୱର ପାଳ ରାଧାନାଥଙ୍କୁ ସୁନା ଗିଲିଟିର କାଳିଦାନ୍ତି ଏବଂ କଲମଟିଏ ଉପହାର ଦେଇଥିଲେ ।

## ବାମଣ୍ଡା ଭ୍ରମଣ

**ବାମଣ୍ଡା**—ପାଲଲହଡ଼ାରୁ ବାମଣ୍ଡାରାଜାଙ୍କ ଆମନ୍ତ୍ରଣ ରକ୍ଷା କରି ରାଧାନାଥ ବାମଣ୍ଡା ଯାଇଥିଲେ । ସେଠାରେ ରାଜାଙ୍କ କୃଷିକ୍ଷେତ୍ର ପୂରକୁଣ୍ଡାଠାରେ ଡାକବଙ୍ଗଳାରେ ତିନି ଦିନ ରହିଥିଲେ । ସେଠାରୁ ବାମଣ୍ଡା ରାଜଧାନୀ ଦେବଗଡ଼କୁ ଆସି ସେଠାରେ ଛଅଦିନ ରହିଥିଲେ ।

ଦେବଗଡ଼ ଅବସ୍ଥାନ ସମୟରେ ରାଧାନାଥ ପ୍ରତିଦିନ ପଣ୍ଡିତ ଓ ସାହିତ୍ୟିକମାନଙ୍କ ସହିତ ଆଳାପ ଆଲୋଚନା କରୁଥିଲେ । ଦେବଗଡ଼ ନିକଟସ୍ଥ ବନ୍ୟ ପ୍ରାକୃତିକ ଦୃଶ୍ୟ ଦେଖିବାକୁ ସେ

ପ୍ରତିଦିନ ଯାଉଥିଲେ । ବିଶେଷତଃ "ପ୍ରଧାନପାଟ" ଜଳପ୍ରପାତ (ଦେବଗଡ଼ ସହରର ଉପକଣ୍ଠରେ ଅବସ୍ଥିତ) ଦେଖିବାକୁ ସେ ଦୈନିକ ଏକାଧିକବାର ଯାଉଥିଲେ ଏବଂ ଏହି ଦୃଶ୍ୟ ଉପଭୋଗ କରି ପରମ ଆନନ୍ଦ ଲାଭ କରୁଥିଲେ । ରାଜା ସଚ୍ଚିଦାନନ୍ଦ ଦେବ ତାଙ୍କୁ ସୁଖରେ ରଖିବାପାଇଁ ସୁବ୍ୟବସ୍ଥା କରିଥିଲେ ।

ଦେବଗଡ଼ରୁ ଫେରିବା ପାଇଁ ରେଲରାସ୍ତାରେ ଯିବା ଠିକ୍ କରି ରାଧାନାଥ ଓ ତାଙ୍କ ପୁତ୍ର ଶଶିଭୂଷଣ ରାଜାଙ୍କ ଟ୍ରାଭେଲିଙ୍ଗ କୋଚ୍ ଗାଡ଼ିରେ ଗୋବିନ୍ଦପୁର ପର୍ଯ୍ୟନ୍ତ ଆସିଲେ । ଦେବଗଡ଼ଠାରୁ ଗୋବିନ୍ଦପୁର ୬୦ (ଷାଠିଏ) ମାଇଲ । ଏହି ୬୦ ମାଇଲ ମଧ୍ୟରେ ପ୍ରଥମ ଦିନ ଶିରିଡ଼, ଦ୍ୱିତୀୟ ଦିନ କୋଚିଣ୍ଡା, ତୃତୀୟ ଦିନ କେଶେଇବାହାଲ ଓ ଚତୁର୍ଥ ଦିନ ଗୋବିନ୍ଦପୁରଠାରେ ରାଧାନାଥଙ୍କର ଅବସ୍ଥାନର ବ୍ୟବସ୍ଥା ହୋଇଥିଲା । ଟ୍ରାଭେଲିଙ୍ଗକୋଚ୍ ଯାନକୁ ଯୋଡ଼ିଏ ବଡ଼ବଳଦ ଟାଣି ନଅନ୍ତି ଏବଂ ପ୍ରତି ଆଠ ମାଇଲରେ ବଳଦ ପରିବର୍ତ୍ତିତ ହୁଅନ୍ତି । ଦେବଗଡ଼ରୁ ପ୍ରଥମଦିନ ବାହାରିବା ସମୟରେ ଟିକିଏ ବିଳମ୍ବ ହେବାରୁ ଭୁଡ଼ଖୋଲ ଘାଟିଠାରେ ଗୋଟିଏ ବଳଦର ଗୋଡ଼ରେ ଆଘାତ ଲାଗିବାରୁ ରାଧାନାଥ ଓ ଶଶିଭୂଷଣ ଉଭୟ ଗାଡ଼ିରୁ ଅବତରଣ କରି ଗୋଟିଏ ଆମ୍ରବୃକ୍ଷ ମୂଳରେ କ୍ଳାନ୍ତି ଅପନୋଦନ କଲେ ଏବଂ ସେଠାରୁ ପ୍ରଚଣ୍ଡ ରୌଦ୍ରରେ ଦୁଇମାଇଲ ବାଟ ଉଭୟେ ଚାଲି ଚାଲି ଶିରିଡ଼ରେ ଉପସ୍ଥିତ ହେଲେ । ଏହି ସମୟରୁ ରାଧାନାଥ ଆମାଶୟରେ ଆକ୍ରାନ୍ତ ହେଲେ ଏବଂ ପରବର୍ତ୍ତୀ ଅବସ୍ଥାନ ସ୍ଥାନ କୋଚିଣ୍ଡା ଓ କେଶେଇବାହାଲରେ ଏହି ଆମାଶୟ ରୋଗ ପ୍ରବଳ ହେଲା ; ମାତ୍ର ଗୋବିନ୍ଦପୁରରେ ପହଞ୍ଚିବା ସମୟରେ ଏହି ଆମାଶୟ ରୋଗର ଉପଶମ ହୋଇ ସୁଦ୍ଧା ଦୁର୍ବଳତା ରହିଲା । ଏହି ହେତୁରୁ ଆଉ ଗୋଟିଏ ଦିନ ତାହାଙ୍କୁ ଗୋବିନ୍ଦପୁରରେ

ରହିବାକୁ ହୋଇଥିଲା । ସେଠାରୁ ରେଳମାର୍ଗରେ ଦୁଇଦିନ ମଧ୍ୟରେ କଟକ ପ୍ରତ୍ୟାଗମନ କଲେ ।” (ଗ୍ରା.ଜ୍ଞା. ପୃ ୫୦୭) ।

ଏପ୍ରେଲ ତା୨୭ରିଖ (୧୯୦୮ରେ) ସେ କଟକ ଫେରିଲେ ।

ଦେବଗଡ଼ଠାରୁ ବାହୁଡ଼ିବା ବାଟରେ ଯେଉଁ ରୋଗ ଆରମ୍ଭ ହେଲା ତାହା ତାଙ୍କୁ ବଡ଼ ଦୁର୍ବଳ କରିଦେଲା । କଟକ ଫେରିବାର ଦୁଇ ତିନି ଦିନ ପରେ ତାଙ୍କୁ ଜ୍ୱର ହେଲା ।

---

# ଚତୁର୍ଦ୍ଦଶ ପରିଚ୍ଛେଦ

## ମହାପ୍ରୟାଣ

ଖ୍ରୀ ୧୯୦୮ ଏପ୍ରେଲ ତା ୭ ରିଖରେ ସେ ଗଡ଼ଜାତ ଭ୍ରମଣରୁ ଫେରିବା ପରେ କଟକରେ ତାଙ୍କର ଜ୍ୱର ବୃଦ୍ଧି ପାଇଲା । ଏହା ସାଙ୍ଗକୁ ଦୁର୍ବଳତା ମଧ୍ୟ ତାଙ୍କୁ ଆକ୍ରମଣ କଲା । ଏହାସତ୍ତ୍ୱେ ସେ ପୁସ୍ତକପାଠରେ ବହୁ ସମୟ କଟାଉଥିଲେ । ମାଲ୍ୟଗିରି ଶୃଙ୍ଗରେ ଅବସ୍ଥାନ କରୁଥିବା ବେଳେ ଯେଉଁ ଦୁଇଟି ଇଂରାଜୀ ବହି ପଢ଼ିଥିଲେ ସେଥିରେ ତାଙ୍କର ବେଶୀ ମନ ଲାଗିଥିଲା । ସହରର ବିଶିଷ୍ଟ ଡାକ୍ତର ମାନେ ତାଙ୍କର ଚିକିତ୍ସା କରୁଥିଲେ । ୧୯୦୮ ଅପ୍ରେଲ ମାସ ତା ୧୬ ରିଖ ଚୈତ୍ର ପୂର୍ଣ୍ଣିମା ଗୁରୁବାର ଦିନ ଉପରବେଳା ରାଧାନାଥଙ୍କ ଅନୁରୋଧରେ ତାଙ୍କୁ ଶଶିଭୂଷଣଙ୍କ ଗମ୍ଭିଲାକୁ ନିଆଗଲା । ସେଠାରେ ମଧ୍ୟ ବହି ପଢ଼ା ବନ୍ଦ ନଥିଲା । ସେଦିନ "ରାତ୍ର ୮ଟା ( ଆଠଟା ) ଉତ୍ତାରୁ ରାଧାନାଥଙ୍କର ଦୁର୍ବଳତା ବୃଦ୍ଧି ହେଲା ଏବଂ ସେତେବେଳେ ଦେଖାଗଲା ଯେ "Ideal suggestions through Mental Photography" ପୁସ୍ତକର ଯେଉଁ ପୃଷ୍ଠାରେ "I look upward" ବୋଲି ବଡ଼ ବଡ଼ ଅକ୍ଷରରେ ମୁଦ୍ରିତ ରହିଅଛି, ସେହି ଅକ୍ଷର କେତୋଟି ଉପରେ ତାହାଙ୍କର ଦୃଷ୍ଟି ନିବଦ୍ଧ । ତହୁଁ ଜଣେ ଚିକିତ୍ସକ ଗୋଟିଏ ବଳକାରକ ଔଷଧର ବ୍ୟବସ୍ଥା କଲେ, ମାତ୍ର କଟକର ସବୁ ଡାକ୍ତର ଦୋକାନମାନଙ୍କରେ ତାହା ଖୋଜି ମିଳିଲାନାହିଁ ।

ଶରୀରରୁ ଅଜସ୍ର ସ୍ୱେଦ ନିର୍ଗତ ହେଉଥିବାରୁ ଅନ୍ୟାନ୍ୟ ଉପସର୍ଗ- ମାନ ହେଲା । ମାତ୍ର ରାତି ଦ୍ୱିପ୍ରହର ସମୟରେ ତାହାଙ୍କର ପବିତ୍ର ଆତ୍ମା ସମସ୍ତଙ୍କ ଅଲକ୍ଷିତରେ ଅମର ଧାମକୁ ମହାପ୍ରସ୍ଥାନ କଲା । —(ରା.ଜୀ. ପୃ ୫୦୮) । ରାତି ସାଢ଼େ ଦୁଇଟା ସମୟରେ ତାଙ୍କର ମହାପ୍ରୟାଣ ହୋଇଥିଲା । ୟୁରୋପୀୟ ପାଞ୍ଜି ଅନୁସାରେ ରାତି ୧୨ଟା ପରେ ପରଦିବସ ଆରମ୍ଭ ହେବାରୁ ତା୧୭ ରିଖ Good Friday ରାତି ଦୁଇଟା ବୋଲି ଗଣ୍ୟ ହୋଇଛି ।

ତାଙ୍କର ଶବକୁ କଟକର କାଠଯୋଡ଼ି କୂଳରେ ସତୀଚଉରା ଶ୍ମଶାନଭୂମିରେ ସତ୍କାର କରାଯାଇଥିଲା । ଏହି ସ୍ଥଳରେ ବର୍ତ୍ତମାନ ଗୋଟିଏ ଶ୍ରେଷ୍ଠ ସ୍ମୃତିମନ୍ଦିର ନିର୍ମିତ ହୋଇ ରାଧାନାଥଙ୍କ ସ୍ମୃତି- ରକ୍ଷା କରୁଛି ।

ରାଧାନାଥଙ୍କ ମୃତ୍ୟୁ ସମ୍ବାଦ ଉତ୍କଳରେ ଓ ବାହାରେ ପହଞ୍ଚିବା କ୍ଷଣି ବହୁ ବିଶିଷ୍ଟ ବ୍ୟକ୍ତି ଶୋକାକୁଳ ହୋଇପଡ଼ିଥିଲେ ।

ତା ୧୭ ରିଖ ଦିନ ପୁରୀରେ ଉତ୍କଳସମ୍ମିଳନୀର ଏକ ଅଧି- ବେଶନ ହେବାର ଥିଲା । ଏହି ଅଧିବେଶନରେ କବିବରଙ୍କର "ଭାରତ ଗୀତିକା" କବିତାଟିରେ ଅଧିକା ଛଅ ପଦ ଯୋଡିବା ପାଇଁ କବି ଆଗରୁ ରଚନା କରି ମଧୁସୂଦନ ରାଓଙ୍କ ହାତରେ ପଠାଇ ଦେଇଥିଲେ । ମଧୁସୂଦନ ଦାସ ରାଧାନାଥଙ୍କ ମୃତ୍ୟୁଖବର ପୁରୀରେ ପାଇଲେ । ଉତ୍କଳସମ୍ମିଳନୀରେ ଏ ଦୁଃଖସମ୍ବାଦ ଏକ ଶୋକଚ୍ଛାୟା ବିସ୍ତାର କରି ଦେଇଥିଲା । ସମ୍ମିଳନୀର ପ୍ରକାଶ୍ୟ ଅଧିବେଶନରେ ଏକ ଶୋକ ପ୍ରସ୍ତାବ ଗୃହୀତ ହୋଇଥିଲା । କବି ଯେଉଁ ନୂଆ ଛଅ ପଦ ଲେଖି ପଠାଇଥିଲେ ତାହା ମଧ୍ୟ ମୂଳ ଗୀତିକା ସଙ୍ଗେ ସମ୍ମିଳନୀରେ **ବୋଲା** ଯାଇଥିଲା ।

## ଶୋକାଭିଭୂତ ଉତ୍କଳ

କବିବରଙ୍କ ମୃତ୍ୟୁରେ ସମଗ୍ର ଉତ୍କଳ ବ୍ୟଥିତ ହୋଇପଡ଼ିଲା । ଦେଶର ସବୁଶ୍ରେଣୀର ଲୋକେ ତାଙ୍କୁ ଉତ୍କଳର ଜଣେ ବରପୁତ୍ର ରୂପେ ଆଦର ଓ ସମ୍ମାନ କରୁଥିଲେ । ବିଭିନ୍ନ ଅନୁଷ୍ଠାନ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କଠାରୁ ବହୁ ଶୋକବାର୍ତ୍ତା କବିବରଙ୍କ ପୁତ୍ର ଶ୍ରୀ ଶଶିଭୂଷଣ ରାୟଙ୍କଠାରେ ପହଞ୍ଚିଥିଲା । ବଙ୍ଗରୁ ବହୁ ବିଶିଷ୍ଟ ବ୍ୟକ୍ତିଙ୍କଠାରୁ ମଧ୍ୟ ବାର୍ତ୍ତାମାନ ଆସିଥିଲା । ସେଥିରେ କବିଙ୍କ ଦେଶସେବା, ସାହିତ୍ୟସେବା, ସମାଜସେବା ପ୍ରଭୃତିର ଉଲ୍ଲେଖ ଥିଲା । ତାଙ୍କର ମୃତ୍ୟୁରେ ଓଡ଼ିଶାରେ ଏ ଯୁଗରେ ଏକ ଅପୂରଣୀୟ କ୍ଷତି ଘଟିଲା—ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ ଏବଂ ଅକୃତ୍ରିମ ଶୋକ ପ୍ରକାଶ କରିଥିଲେ ।

ଏହି ବାର୍ତ୍ତାଗୁଡ଼ିକର ଉତ୍ତରରେ ଶ୍ରୀ ଶଶିଭୂଷଣ ରାୟ "ଗଡ଼ଜାତବାସିନୀ" ପତ୍ରିକାରେ ୧୯୦୮ ଜୁନ୍ ୬ ତାରିଖ ଶନିବାର ଦିନ ଏହି "ନିବେଦନ"ଟି ପ୍ରକାଶ କରିଥିଲେ ।

### ନିବେଦନ

"ବଜ୍ର ହୁରୁ କାଳ ବଡ଼ ଅବିଶ୍ୱାସୀ
ହାବୋଡ଼ି ଯିବଟି ଆଚମ୍ବିତେ ଆସି ।"

"କବିବରଂକର ଏହି ପଙ୍‌କ୍ତିଦ୍ୱୟ ତାହାଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ଫଳିଗଲା । ୧୬ ତାରିଖ ଅପ୍ରେଲ ଅପରାହ୍ଣ ପର୍ଯ୍ୟନ୍ତ ସେ କଥାବାର୍ତ୍ତା କରି ପାରୁଥିଲେ ଏବଂ ଉଚ୍ଚାଙ୍ଗ ଧର୍ମ-ପୁସ୍ତକପାଠରେ ନିଯୁକ୍ତ ଥିଲେ । ତତ୍ପରେ ବାକ୍‌ଶକ୍ତି ରୁଦ୍ଧ ହେଲା । ତଥାପି ମୃତ୍ୟୁର ପୂର୍ବକ୍ଷଣ ପର୍ଯ୍ୟନ୍ତ ହରିନାମକୁ ତାହାଙ୍କ

ପାରବିକ ଜୀବନର ସଙ୍ଗୀ କରିଥିଲେ । ବୃଦ୍ଧ 'ଗୃହୁଁ ଗବି ସାର୍ଦ୍ଧ ଦୁଇଘଣ୍ଟିକା ସମୟରେ ତାଙ୍କ ଆତ୍ମା ନଶ୍ୱର ଦେହ ପରିତ୍ୟାଗ କରି ଦିବ୍ୟଧାମକୁ ଚାଲିଗଲା । ଅବିଶ୍ୱାସୀ କାଳ ଆଚମ୍ବିତେ ଆସି ହାବୋଡ଼ି ଯିବ ବୋଲି କାହାର ବିଶ୍ୱାସ ନଥିଲା । ସେ ସର୍ବଦା କୋଳା-ହଳଦ୍ୱେଷୀ ଥିଲେ । ଏହି ହେତୁରୁ ବିଧାତା-ଇଚ୍ଛାବଶେ ଏପରି ଯୋଗ ଘଟିଲା ଯେ, ପ୍ରକୃତିଙ୍କ ମଧୁମୟ ଉଷା ସମୟରେ ତାହାଙ୍କ ଶରୀର ନୀରବରେ ଶ୍ମଶାନସ୍ଥଳୀକୁ ନୀତ ହେଲା । ଇଂରେଜ କବିଙ୍କ "But we steadfastly gazed on the face that was dead, and we bitterly thought of the' morrow ! "But we left him alone with his glory." ଏହି ତିନପଙ୍କ୍ତି ସ୍ମରଣ କରୁଁ କରୁଁ ଆମ୍ଭେମାନେ ଫେରିଲୁଁ । ସଂସାରରେ ଏଭଳି ପିତା କେତେ ଜଣଙ୍କ ଭାଗ୍ୟରେ ଘଟେ ? ମୋ ବିବେଚନାରେ ଘଟି ନାହିଁ, ଘଟିବା ମଧ୍ୟ ଅସମ୍ଭବ । ସେହି ଉଚ୍ଚତମ ଧର୍ମପରାୟଣତା, ସ୍ୱଦୋଷଦର୍ଶିତା, ନିରହଙ୍କାରିତା, ଅମାୟିକତା, ସତ୍ୟପ୍ରିୟତା, ସରଳତା ଏବଂ ସ୍ନେହଶୀଳତା ଆଉ କାହାଠାରୁ ପାଇବି ଓ ଶିଖିବି ? ଏହି ଗୁଣସମୂହର ଏକମାତ୍ର ଆଦର୍ଶ ସେହି ସ୍ୱୟଂ; ତୁଳନା ଦେବାକୁ ମଧ୍ୟ ସେହି ନିଜେ । ତାଙ୍କରି ଭାଷାରେ "ଜଗତେ ତୁଳନା ସେହି ତାର ସିନା ।" ବିଶେଷତଃ ତାଙ୍କର ଅମୂଲ୍ୟ ଉପଦେଶ ଯାହା ଘନ ଘନ ଉଚ୍ଚାରଣ କରୁଥିଲେ ଏବଂ ନିଜର ଅମୂଲ୍ୟ ଜୀବନରେ ଯାହାର ଅପୂର୍ବ ଉଦାହରଣ ଦେଖାଇଥିଲେ, ସେହି ଗୋଟିଏ ବାକ୍ୟ "Truth at any cost and at any sacrifice" (ଯେତେ ବ୍ୟୟ ଏବଂ ତ୍ୟାଗ ସ୍ୱୀକାର ହେଉ, ସତ୍ୟ କହିବା) ସ୍ମୃତିର ଚିରସମ୍ପତ୍ତି ହୋଇ ରହିବ ।

ସମ୍ମାନାସ୍ପଦ ମହୋଦୟଗଣ ,

କବିଙ୍କର ମହାପ୍ରସ୍ଥାଣ ଅବଧି ପଶ୍ଚିମ ଓ ପୂର୍ବବଙ୍ଗ, ଉତ୍ତର ପଶ୍ଚିମ ପ୍ରଦେଶ, ପ୍ରାକୃତିକ ଓ ରାଜନୈତିକ ଉତ୍କଳ ଏବଂ ଦାକ୍ଷିଣାତ୍ୟର ନାନା ସ୍ଥାନରୁ ଆପଣମାନେ ମୋହ ନିକଟକୁ ସହାନୁଭୂତିବ୍ୟଞ୍ଜକ ଅନେକଗୁଡ଼ିଏ ଟେଲିଗ୍ରାମ, ରାଶି ରାଶି ପତ୍ର ପ୍ରେରଣ କରିଅଛନ୍ତି । ଅଧିକାଂଶ ପତ୍ରରେ ଉକ୍ତ ହୋଇଅଛି "କବିବର ରକ୍ତ, ମାଂସ ଓ ଆୟୁ କ୍ଷୟ କରି ଉତ୍କଳ ଜନନୀଙ୍କ ପରିଚର୍ଯ୍ୟାରେ ଆବହମାନକାଳ କଟାଇଥିଲେ । ତାହାଙ୍କ ଗ୍ରନ୍ଥାବଳୀ ଭିନ୍ନ ଉତ୍କଳକୁ ରକ୍ଷା କରିବାର ପୁସ୍ତକ ଦିଶୁଥିବା ନାହିଁ ।" କାରୁଣ୍ୟୋ-ଦ୍ଦୀପକ ଏହିସବୁ ପଙ୍‌କ୍ତିମାନ ସ୍ମରଣ କରି ଆମ୍ଭମାନଙ୍କର ଶୋକହୁତାଶନ ଦ୍ୱିଗୁଣିତ ଭାବରେ ପ୍ରଜ୍ୱଳିତ ହେଉଅଛି । ଏଣୁକରି ପ୍ରତ୍ୟେକ ପତ୍ର ଓ ଟେଲିଗ୍ରାମର ଉତ୍ତର ଦେବା ମାଦୃଶ ବ୍ୟଥିତ ପରିବାର ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ, ଅଥଚ ବହୁସମୟସାପେକ୍ଷ । ଏହି ହେତୁରୁ ଏହି ପତ୍ରିକାଦ୍ୱାରା ଆଜ ସହୃଦୟ ମହାତ୍ମାମାନଙ୍କ ନିକଟରେ ଭକ୍ତି ଓ କୃତଜ୍ଞତା ଜଣାଇ କ୍ଷମାଭିକ୍ଷା କଲି । ପୂର୍ବେ ଯେପରି ପ୍ରୀତିପୂର୍ଣ୍ଣ ଏବଂ ସସ୍ନେହ ନେତ୍ରରେ ଆମ୍ଭମାନଙ୍କ ପ୍ରତି ଅଟଳ ସୌହାର୍ଦ୍ଦ୍ୟ ଦେଖାଇ ଆସୁଥିଲେ, ପିତୃହୀନ ହେଲି ବୋଲି ସେହି ସ୍ନେହ ଓ କରୁଣାରୁ ଯେପରି ବଞ୍ଚିତ ନ ହୁଏ । ପରିଶେଷରେ ଆପଣମାନଙ୍କ ନିକଟରେ ମୋହର ଐକାନ୍ତିକ ମିନତି ।"

| | |
|---|---|
| କାଳୀଗଳି<br>କଟକ<br>ତା ୩୦।୫।୦୮ | ହତଭାଗ୍ୟ ଓ କୃପାପ୍ରାର୍ଥୀ<br>ଶ୍ରୀ ଶଶିଭୂଷଣ ରାୟ |

ପୁରୀଜଗନ୍ନାଥ ମନ୍ଦିରର "ମୁକ୍ତିମଣ୍ଡପ ପଣ୍ଡିତ ସଭା"ର ପ୍ରସ୍ତାବଟି ସମ୍ପାଦକ ପଣ୍ଡିତ ସଦାଶିବ ମିଶ୍ର ଶ୍ରୀ ଶଶିଭୂଷଣ ରାୟଙ୍କ ପାଖକୁ ପଠାଇ ଦେଇଥିଲେ ।

ଶ୍ରୀ ଶଶିଭୂଷଣ ରାୟ ମହାଶୟ, ସମୀପେଷୁ

ସାଶୀର୍ବାଦ ଦୁଃଖାବେଦନମିଦଂ

ମହାଶୟ,

"ଶ୍ରୀ ମୁକ୍ତିମଣ୍ଡପ ପଣ୍ଡିତସଭା"ର ୧୦୮ ଅଧିବେଶନର ଚତୁର୍ଥ ନିର୍ଦ୍ଧାରଣ ଅନୁସାରେ ଲେଖାଯାଉଅଛି ଯେ, ଉତ୍କଳ ଗୌରବ ଆପଣଙ୍କ ପିତୃଦେବ କବିବର ୰ରାୟ ରାଧାନାଥ ରାୟ ବାହାଦୁର ମହୋଦୟଙ୍କର ·ସ୍ୱର୍ଗାରୋହଣ ସମ୍ବାଦ ଶ୍ରବଣ କରି ଏହି "ଶ୍ରୀ ମୁକ୍ତିମଣ୍ଡପ ପଣ୍ଡିତସଭା" ଗଭୀର ଦୁଃଖ ପ୍ରକାଶ କରୁଅଛନ୍ତି । ସେ ମହୋଦୟଙ୍କଦ୍ୱାରା ସମଗ୍ର ଉତ୍କଳର ଯେପରି ମହୋପକାର ସାଧିତ ହୋଇଥିଲି, ତାହା ଅଳ୍ପ କଥାରେ କୁହାଯାଇ ନ ପାରେ, ବିଶେଷତଃ ପୁରୀର ବ୍ରାହ୍ମଣ ସନ୍ତାନମାନେ ଯାହା ·କିଛି ଉଚ୍ଚ ଶିକ୍ଷା ବା ଉନ୍ନତିଲାଭ କରିଅଛନ୍ତି, ତାହାର ମୂଳରେ ସେ ମହୋଦୟଙ୍କର କୃତିତ୍ୱ କେବଳ ନିହିତ ଅଛି । ଆମ୍ଭେମାନେ ଶ୍ରୀ ଜଗତ୍‌ପିତା ଜଗଦୀଶଙ୍କ ନିକଟରେ ପ୍ରାର୍ଥନାପୂର୍ବକ ସର୍ବାନ୍ତଃକରଣରେ କାମନା କରୁଅଛୁଁ ଯେ,ସେ ମହୋଦୟଙ୍କର ପାରଲୌକିକ ସଦ୍‌ଗତିର ସହିତ ଶୋକସନ୍ତପ୍ତ ସମସ୍ତ ପରିଜନ ଆପଣମାନଙ୍କ ମନରେ ଅଚିରେ ଶାନ୍ତି ବିରାଜମାନ କରୁ । ଇତି ।

ଶ୍ରୀ ମୁକ୍ତିମଣ୍ଡପ ପଣ୍ଡିତସଭା କାର୍ଯ୍ୟାଳୟ } ଶ୍ରୀ ସଦାଶିବ ମିଶ୍ର
ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ । } ସମ୍ପାଦକ

ଶ୍ରୀ ମୁକ୍ତିମଣ୍ଡପ ପଣ୍ଡିତ ସଭା ।

ଉତ୍କଳ ସମ୍ମିଳନୀରେ ପୁରୀ ଅଧିବେଶନବେଳେ ତା୧୯୮ଦ୍ଧିଖ ଦିନ ସଭାପତି ସୁରଙ୍ଗୀ-ଅଧୀଶ୍ବର ରାଜା ଶ୍ରୀ ଚନ୍ଦ୍ରଚୂଡ଼ାମଣି ଦେବ ସ୍ବ ଅଭିଭାଷଣରେ ଏହି ଦାରୁଣ ଶୋକ ସମ୍ବାଦକୁ ଏପରି ଦୁଃଖପୂର୍ଣ୍ଣ ଭାଷାରେ ପ୍ରକାଶ କରିଥିଲେ ।

"ଉତ୍କଳର ସୁଯୋଗ୍ୟ ବ୍ୟକ୍ତିମାନଙ୍କର ସଂଖ୍ୟା ଅତ୍ୟଳ୍ପ, ଏମନ୍ତ କି ଗଣନାରେ ଅଙ୍ଗୁଳିରେଖାକୁ ଟପିଣ୍ଠ । କି ଦୁଃଖର କଥା, ସେମାନଙ୍କ ମଧ୍ୟରୁ ଗୋଟିଏ ଗୋଟିଏ ଅକାଳରେ କାଳର ଉଦରସ୍ଥ ହେଉଅଛନ୍ତି । ରାଜକବି ଓ ସୁଶାସକ ଖଡ଼ିଆଳର ସ୍ବର୍ଗୀୟ ନରପତି ବ୍ରଜରାଜ ସିଂହ ଏବଂ ଉଚ୍ଚ ଶିକ୍ଷିତ, ସୁବକ୍ତା, ଦେଶଭକ୍ତ ଅଭିରାମ ଭଞ୍ଜଙ୍କର ଅକାଳମୃତ୍ୟୁ ସମଗ୍ର ଉତ୍କଳକୁ ଶୋକାଭିଭୂତ କରି ପକାଇଅଛି । ହାୟ ! ଉତ୍କଳ-ଜନନି ! ତୋର ଅଦୃଷ୍ଟ କେଡ଼େ ମନ୍ଦ, ତୁ କେଡ଼େ ହତଭାଗିନୀ, ଦୁଇଗୋଟି ସନ୍ତାନଙ୍କର ବିୟୋଗବେଦନା ବିସ୍ମୃତ ନ ହେଉଣୁ ବିଧାତା ତୋହର କୋମଳ ହୃଦୟରେ ବଜ୍ରକଠୋର ଆଉ ଗୋଟିଏ ଶୋକଶେଲ ବିଦ୍ଧ କରି ଦେଇଅଛି । ବର୍ତ୍ତମାନ ଉତ୍କଳ ସାହିତ୍ୟର ଆଦିଗୁରୁ ଓ ପ୍ରବର୍ତ୍ତକ ଉତ୍କଳ ସାହିତ୍ୟ ଭଣ୍ଡାରର ଶ୍ରୀବୃଦ୍ଧିସାଧନକର୍ତ୍ତା କବିବର ରାୟ ରାଧାନାଥ ରାୟ ବାହାଦୁର ଆମ୍ଭମାନଙ୍କୁ ପରିତ୍ୟାଗ କରି ଗତ କଲି ସ୍ବର୍ଗଯାତ୍ରା କରିଅଛନ୍ତି । ଯାହାଙ୍କର ସୁଧାନିସ୍ୟନ୍ଦିନୀ ଲେଖନୀ ଉତ୍କଳରେ କବିତାମୟ ଅମୃତସ୍ରୋତ ପ୍ରବାହିତ କରିଥିଲେ, ଯାହାଙ୍କର ଅସାଧାରଣ ପ୍ରତିଭା ଉତ୍କଳ ଓ ବଙ୍ଗବାସୀଙ୍କୁ ବିସ୍ମିତ କରୁଥିଲା, ଉତ୍କଳର ଯୋଗଜନ୍ମା ଓ ସାହିତ୍ୟକାନନର ଏକମାତ୍ର ସେହି କଳକଣ୍ଠର ମଧୁ କାକଳୀ ଚିରଦିନ ନିମନ୍ତେ ପୃଥିବୀରୁ ଅନ୍ତର୍ହିତ ହୋଇଅଛି । ଚିରଦୁଃଖିନୀ ଉତ୍କଳମାତା ଦୁଃଖରେ ମିୟମାଣା ହୋଇଅଛନ୍ତି । ଉତ୍କଳଚନ୍ଦ୍ରିମା ଉତ୍କଳକୁ ଅନ୍ଧାର କରି ଖସି ଯାଇଅଛନ୍ତି । ଭାଇମାନେ, ଯେ ଦାରୁଣ ପ୍ରସଙ୍ଗ ଆଲୋଚନା

କଲେ ହୃଦୟ ବିଦୀର୍ଣ୍ଣ ହୋଇଯାଉଅଛି । ମୁଁ ଆଉ କିଛି କହି ପାରୁନାହିଁ । ବିଡ଼ମ୍ବିନୀ ଉତ୍କଳର ଲଲାଟରେ ଯାହା ଲେଖା ହୋଇଅଛି । ମଙ୍ଗଳମୟ ବିଧାତାଙ୍କର ସେହି ଅଖଣ୍ଡନୀୟ ଲିପି କିଏ ଅନ୍ୟଥା କରି ପାରିବ ?"

ଶୋକ ପ୍ରସ୍ତାବ ଆଗତ କରି ଶ୍ରୀଯୁକ୍ତ ଯୋଗେନ୍ଦ୍ର ମିଶ୍ର କାବ୍ୟ-ବିଶାରଦ କହିଲେ—"ସଭାପତି ମହୋଦୟ ଓ ଉପସ୍ଥିତ ସଭ୍ୟବୃନ୍ଦ ! ରାଧାନାଥ ଉତ୍କଳର ଚନ୍ଦ୍ରମାସ୍ୱରୂପ ଥିଲେ । ସେ ମହାତ୍ମାଙ୍କର ବିୟୋଗ ଉତ୍କଳର ଅଭାଗ୍ୟର ବିଷୟ । ଶତବର୍ଷାଧିକ ପୁଅକୁ ମାତା ଚିରଜୀବୀ ହୋଇଥାଅ ବୋଲି ଆଶୀର୍ବାଦ କରିଥାଏ । ରାଧାନାଥଙ୍କ ପରି ମେଧାବୀ କବି, ବିଦ୍ୱାନ୍ ଲୋକ ଉତ୍କଳରେ ବିରଳ । ରାଧାନାଥଙ୍କ ଗୁଣଗ୍ରାମ ମାଦୃଶ ବ୍ୟକ୍ତିଦ୍ୱାରା କିଅଣ ପ୍ରକାଶିତ ହୋଇ ପାରେ ? "ଗୁଣୀ ଗୁଣଂ ବେତ୍ତି ନ ବେତ୍ତି ନିର୍ଗୁଣଃ ।" ସେହିପରି ମୁଁ ସାମାନ୍ୟ ଜୀବ । ମୁଁ ରାଧାନାଥଙ୍କ ଗୁଣ ପ୍ରକାଶ କରିବା ହାସ୍ୟାସ୍ପଦ ବିଷୟ ।

"ରାଧାନାଥ ଭାରତରେ ବିଖ୍ୟାତ । ମୋ ପରି କ୍ଷୁଦ୍ର ଜୀବପ୍ରତି ତାଙ୍କର ଯେପରି ଅନୁଗ୍ରହ, ସେଥିରୁ ଆପଣମାନେ ତାଙ୍କର ମହାନୁଭବତା ବୁଝିପାରିବେ । ସେ ଥରେ ବୀରନରସିଂହପୁରରେ ଉପସ୍ଥିତ ହୋଇ ବ୍ରାହ୍ମଣଙ୍କ ଉନ୍ନତି ନିମନ୍ତେ ବିଶେଷ ଚେଷ୍ଟା କରିଥିଲେ । ଶାସନର ବ୍ରାହ୍ମଣମାନଙ୍କର ଶିକ୍ଷାପ୍ରତି ତାଙ୍କର ବିଶେଷ ମନୋଯୋଗ ଥିଲା । ଓଡ଼ିଶା ତାଙ୍କୁ ହରାଇ ଆଜି ଗରିବ ହୋଇଅଛି । ତାଙ୍କ ବିୟୋଗରେ ଆମ୍ଭେମାନେ ସମସ୍ତେ ଦୁଃଖିତ ଥିବାରୁ ମୁଁ ପ୍ରସ୍ତାବଟି ଆପଣମାନଙ୍କ ସମକ୍ଷରେ ଆଗତ କରୁଅଛି ।"

ଅନୁମୋଦକ ଶ୍ରୀଯୁକ୍ତ ରାମକୃଷ୍ଣ ମିଶ୍ର କହିଲେ—"ମାନନୀୟ ସଭାପତି ମହୋଦୟ ଏବଂ ଭାଇମାନେ ! ଆଜି କି କୁକ୍ଷଣରେ ରଜନୀ

ଅଜ୍ଞାତ ହୋଇଥିଲା ! ଆଜି କି ହୃଦୟବିଦାରକ ନିଦାରୁଣ ସମ୍ବାଦ ଶ୍ରୁତିଗୋଚର ହେଲା ! ଆଜି ଉତ୍କଳ ସାହିତ୍ୟାକାଶର ଉଜ୍ଜ୍ୱଳତମ ନକ୍ଷତ୍ର ଖସିପଡ଼ିଅଛି । ଭାବିବା କଲେ ହୃଦୟ ବିଦୀର୍ଣ୍ଣ ହେଉଅଛି । ଉତ୍କଳ ଭାଷାର ପ୍ରିୟନନ୍ଦନ, ଉତ୍କଳ ନିସର୍ଗ ବେଦିକାର ପଟ୍ଟ-ପୁରୋହିତ, ଆଧୁନିକ ଉତ୍କଳ ସାହିତ୍ୟର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ୍ ଓଡ଼ିଶାର ଗୌରବକେତନ ରାୟ ରାଧାନାଥ ରାୟ ବାହାଦୂର ଇହ ଜଗତରେ ଆଉ ନାହାନ୍ତି । ତାହାଙ୍କର "ମାଟିର ଶରୀର ମାଟିରେ ମିଶିଯାଇଅଛି ।" ବିଶାଳ ଉତ୍କଳଭୂମିକୁ ଅପାର ଶୋକ-ସାଗରରେ ଭସାଇ ମହାକାବ୍ୟ 'ମହାଯାତ୍ରା' ଅସମ୍ପୂର୍ଣ୍ଣ ରଖି ତାହାଙ୍କର ଅମରାତ୍ମା ଅମରଧାମକୁ ଚାଲିଯାଇଅଛି । ଏହା ଚିରଅଭିଶପ୍ତ ଉତ୍କଳଜନନୀଙ୍କର ଦୁରଦୃଷ୍ଟର ଅନ୍ୟତମ ପରିଚାୟକ । ଆଜି କୋଟିସଂଖ୍ୟକ ଉତ୍କଳୀୟ-ହୃଦୟର ଗଭୀରତମ ପ୍ରଦେଶରୁ ଯେଉଁ ଆର୍ତ୍ତନାଦ ଉତ୍ଥିତ ହେଉଅଛି, ତାହା ଅନିର୍ବଚନୀୟ । କବିବର ରାଧାନାଥଙ୍କ ସ୍ୱର୍ଗାରୋହଣରେ ଉତ୍କଳର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସର୍ବତ୍ର ନଗରେ ନଗରେ, ଗ୍ରାମେ ଗ୍ରାମେ, ଗୃହେ ଗୃହେ, ପ୍ରାଣେ ପ୍ରାଣେ ହାହାକାର ଧ୍ୱନି ଉତ୍ଥିତ ହେଉଅଛି । ଆଜି କବିବରଙ୍କ ବିୟୋଗରେ କୋଟିସଂଖ୍ୟକ ହୃଦୟ ବ୍ୟାକୁଳ ଏବଂ ଦୁଇ କୋଟି ନେତ୍ର ଅଶ୍ରୁ-ପ୍ଲାବିତ ! ଆଜି ନାନା ଭାଷା, ନାନା ଶାସ୍ତ୍ର ସୁପଣ୍ଡିତ କବିବର ରାଧାନାଥଙ୍କ ବିୟୋଗରେ ଉତ୍କଳର ନଦ ନଦୀ, ହ୍ରଦ, ସାଗର, ଗିରି, କାନନ, ବୃକ୍ଷପତ୍ର ସୁଦ୍ଧା ନୀରବ ଭାଷାରେ କ୍ରନ୍ଦନ କରୁଅଛନ୍ତି । ଆଜି ଉତ୍କଳ ପ୍ରକୃତି ଦେବୀଙ୍କର ବିଷାଦ ବର୍ଣ୍ଣନା କରିବାର ଶକ୍ତି କାହାର ଅଛି ? ଆଜି ଉତ୍କଳାକାଶ ବିଷାଦକୁହେଳିକା-ଜାଲରେ ସମାଚ୍ଛନ୍ନ । ଆଜି ଉତ୍କଳ ଭାଷା ଗୋଟିଏ ଉଜ୍ଜ୍ୱଳତମ ରତ୍ନ ହରାଇଛି ।

ଆଜି ଉତ୍କଳର ଭାଷା ଯେଉଁ ଗମ୍ଭୀର ବିଷାଦ ଅନୁଭବ କରୁଅଛି, ତାହା ଅକଥନୀୟ । ଉତ୍କଳର ଭାଷା-କ୍ଷେତ୍ରରେ ରାଧାନାଥଙ୍କ ସ୍ଥାନ ଖାଲି ରହିଲା । ସହଜରେ ପୂରଣ ହେବା କଥା ନୁହେ ।

"ହା ଓଡ଼ିଶାର ଗୌରବକେତନ ରାଧାନାଥ ! ସତେ କି ତୁମ୍ଭର ପ୍ରିୟ ଉତ୍କଳ ଭାଷାକୁ ଚିର ବିଷାଦରେ ଜଡ଼ିତ କରି ଚାଲି ଯାଇଅଛ ? ସତେ କି ତୁମ୍ଭର ଉଦାର ଗମ୍ଭୀର ମୂର୍ତ୍ତି, ହାସ୍ୟଯୁକ୍ତ ବଦନମଣ୍ଡଳ ଚିରକାଳ ସକାଶେ ଦୃଷ୍ଟିଗୋଚର ହେବନାହିଁ ? ଆଉ କି ତୁମ୍ଭର ସରଳତାପରିପୂରିତ ବଚନାବଳୀ ଶ୍ରୁତିପଥର ପଥିକ ହେବ ନାହିଁ ? ହା କ୍ରୂର ବିଧାତା ! ନିରୀହ ଉତ୍କଳ ତୁମ୍ଭଠାରେ କି ଅପରାଧ କରିଅଛି !! କି ଦୋଷ ଦେଖି ପତିତ, ଲାଞ୍ଛିତ, ପରପଦଦଳିତ ଉତ୍କଳ ଉପରେ ବାରମ୍ବାର ଏ ଅକାଳ ବଜ୍ର ପକାଉଅଛ !!! ରୂପାଭିରାମ, ଗୁଣାଭିରାମ, ଉତ୍କଳର ନୟନାଭିରାମ ଅଭିରାମଙ୍କ ଅକାଳବିପ୍ରୟୋଗଜନିତ ଶୋକାନଳ ନିର୍ବାପିତ ନ ହେଉଣୁ ଆଜି ପୁତ୍ରଗତପ୍ରାଣା ଉତ୍କଳଜନନୀର କୋଡ଼ରୁ ମାତୃଭୂମି, ମାତୃଭାଷାର ପ୍ରିୟ ନନ୍ଦନ ରାଧାନାଥଙ୍କୁ କେଉଁଆଡ଼େ ନେଇଗଲ ? ହା ଚିରଅଭାଗିନୀ ଉତ୍କଳ ଜନନୀ ! 'ଅନ୍ଧକଷ୍ଟରେ ଗୋଇଠା ମାଡ଼' ଆଉ କେତେ ସହି ରହିବୁ ? ମଧୁ ଉଡ଼ଳଦେବ, ପଦ୍ମନାଭ, ଚନ୍ଦ୍ରଶେଖର, ରାମଚନ୍ଦ୍ର, ଅଭିରାମ ତୋତେ ଛାଡ଼ି ଚାଲି ଯାଇଥିଲେ । ଆଜି ତୋର ବରପୁତ୍ର ରାଧାନାଥ ସେମାନଙ୍କର ପଥ ଅନୁସରଣ କରି ତୋ ବକ୍ଷରେ ଦିବସକୁ ଅନ୍ଧାରରେ ପରିଣତ କରି ଦେଇଅଛନ୍ତି । ଆଜିଠାରୁ ତୋର ଭବିଷ୍ୟତ ଅନ୍ଧକାରମୟ । ରାଧାନାଥ ଉତ୍କଳ-ବକ୍ଷରେ ଯେଉଁ ବିଷାଦକାଳିମା ଲେପନ କରି ଚାଲିଗଲେ, ତାହା ସହଜରେ ଲିଭିବ ନାହିଁ । ଉତ୍କଳ ଭାଷା ରାଧାନାଥଙ୍କୁ ପାଇ ଉପେନ୍ଦ୍ର ଭଞ୍ଜଙ୍କୁ ଭୁଲି ଯାଇଥିଲା । ବର୍ତ୍ତମାନ ସେପରି କିଏ ଅଛି, ମାତୃଭାଷା ଯାହାଙ୍କୁ ଦେଖି ରାଧାନାଥଙ୍କୁ

ଭୁଲିଯିବ ? ରାଧାନାଥ ଚାଲିଯିବା ସଙ୍ଗେ ସଙ୍ଗେ ଉତ୍କଳ ଭାଷାର ସମସ୍ତ ଆଶା ଭରସା ଶୂନ୍ୟ ହୋଇଅଛି । ରାଧାନାଥ ଚାଲିଗଲେ, ଆଉ ମହାକାବ୍ୟ 'ମହାଯାତ୍ରା' କିଏ ପୂର୍ଣ୍ଣ କରିବ ? ନିର୍ଜ୍ଜନ ଶ୍ମଶାନ-ବକ୍ଷରେ ଦଣ୍ଡାୟମାନ ହୋଇ କିଏ ସଂସାରର ନଶ୍ୱର ଛବି ଅଙ୍କନ କରିବ ? 'ସଲିଳମାଳିନୀ ମାନାମ୍ବୁ ଚିଲିକା'ର ପ୍ରାକୃତିକ ଦୃଶ୍ୟରେ ବିମୋହିତ ହୋଇ ପ୍ରକୃତିର ମଧୁମୟୂ ଚିତ୍ର ଉତ୍କଳସାହିତ୍ୟସେବକ-ମାନଙ୍କୁ କିଏ ଅର୍ପଣ କରିବ ? 'ଛବିଳ ଉତ୍କଳ'ର ପ୍ରତି ଗ୍ରାମ, ନଗର, ନଦୀ, ପର୍ବତ, ହ୍ରଦ, ସମୁଦ୍ର, କାନ୍ତାର ପ୍ରଭୃତିର 'ଅତୁଳ ଛବି' କିଏ ଚିତ୍ରିବ ? ସଂସ୍କୃତସାହିତ୍ୟୋଦ୍ୟାନରୁ ପ୍ରସ୍ଫୁଟିତ ସୌରଭମୟ ପୁଷ୍ପ ଆହରଣ କରି ଉତ୍କଳ ପାଠକ-ମଧୁପମାନଙ୍କୁ ତାହାର ସ୍ୱାଦ କିଏ ଚଖାଇବ ? 'ଦରବାର' ଲେଖି 'ସତ୍ୟେ ନାସ୍ତି ଭୟଂ କ୍ୱଚିତ୍' ମହାମନ୍ତ୍ର କିଏ ସାଧାରଣରେ ପ୍ରଚାର କରିବ ? ଆତ୍ମକୃତ ପାପରେ ଜର୍ଜରିଭୂତ ହୋଇ 'ଆତ୍ମଚରିତ' ପ୍ରକାଶ କରି, ଦେବୋପମ ନିଷ୍କଳଙ୍କ ହୃଦୟବିଶିଷ୍ଟ ଆଉ ବିଶୁଦ୍ଧ ଜ୍ଞାନାଲୋକିତ ମାତୃମଣ୍ଡଳର ପରିଚୟ କିଏ ଦେବ ? ବିଦ୍ୟା, ବିନୟ, ଦୟା, ସରଳତା, ଈଶ୍ୱରଭକ୍ତି ଇତ୍ୟାଦି ସକଳ ସଦ୍‌ଗୁଣର ନିକେତନ ରାଧାନାଥଙ୍କ ବିୟୋଗରେ ଏପରି ଆଶା ପୋଷଣ କରିବା ବିଡ଼ମ୍ବନା ମାତ୍ର । ହାୟ କବିବର ! ଥରେ ଦିବ୍ୟଲୋକରୁ ଦିବ୍ୟନେତ୍ରରେ ଅବଲୋକନ କର; ଆଜି ତୁମ୍ଭଙ୍କୁ କାଳର କରାଳ କବଳରେ ଦେଇ ମାତୃଭୂମି ଏବଂ ମାତୃଭାଷାର କି ଘୋର ଦୁର୍ଦ୍ଦଶା ହୋଇଅଛି ! କାଳ ତୁମ୍ଭଙ୍କୁ ନେଇଅଛି, କିନ୍ତୁ ଉତ୍କଳସାହିତ୍ୟ-ଭଣ୍ଡାରର ଉଜ୍ଜ୍ୱଳତମ ରତ୍ନ ମହାଯାତ୍ରା, ଯଯାତିକେଶରୀ, ଉଷା, ପାର୍ବତୀ, ନନ୍ଦିକେଶ୍ୱରୀ, ଉର୍ବଶୀ ପ୍ରଭୃତିଙ୍କୁ ନେଇ ପାରିବ ନାହିଁ । ସାହିତ୍ୟକ୍ଷେତ୍ରରେ ତୁମ୍ଭେ ଅଜର, ଅମର । ଉତ୍କଳ ସାହିତ୍ୟର ଇତିହାସରେ ତୁମ୍ଭର ନାମ ଅକ୍ଷୟ ଅକ୍ଷରରେ ଲିପିବଦ୍ଧ ହୋଇଅଛି । ତୁମ୍ଭଙ୍କୁ ଅମରଧାମକୁ

ଯେଉଁଠିବା ଶକ୍ତି କାଳର ଅଛି, କିନ୍ତୁ ସେହି ଅକ୍ଷୟ ଅକ୍ଷର ପୋଛିବାର ଶକ୍ତି କାଳର ନାହିଁ ।

"ଯାଅ କବିବର ! ଦିବ୍ୟଲୋକରେ ତୁମ୍ଭର ନିଷ୍କଳଙ୍କ ଆତ୍ମା ନିର୍ମଳ ସୁଖଶାନ୍ତି ସଢ଼ୋମ୍ଭାଗ କରୁ ଏବଂ ପରମପିତା ତୁମ୍ଭର ପରିବାର ଏବଂ କୋଟିସଂଖ୍ୟକ ଓଡ଼ିଆ ଭାଇଙ୍କ ତାପିତାନ୍ତଃକରଣରେ ଶାନ୍ତିବାରି ସେଚନ କରନ୍ତୁ । ସେହି ମଙ୍ଗଳମୟଙ୍କ ଶୁଭାଶୀର୍ବାଦରେ ଶତ ଶତ ରାଧାନାଥ ଉତ୍କଳରେ ଅବତୀର୍ଣ୍ଣ ହୋଇ ମାତୃଭାଷାର ମୁଖ ଉଜ୍ଜ୍ୱଳ କରନ୍ତୁ ।

ମା ଜନନୀ ଜନ୍ମଭୂମି !

"ଶୋକ ପରିହର ବୁଝ ମା ଉତ୍କଳ,
ଶମଶାନ ସିନା ସାଧନାର ସ୍ଥଳ ।"

କବିଙ୍କ ବାଣୀ ମିଥ୍ୟା ନୁହେ, ଆଶ୍ୱସ୍ତ ହୁଅ । ମୁଁ ଏତିକି କହି ଏହି ଶୋକମୟ ପ୍ରସ୍ତାବର ଅନୁମୋଦନ କରୁଅଛି । ଶାନ୍ତିଃ ! ଶାନ୍ତିଃ !! ଶାନ୍ତିଃ !!!"

ସମର୍ଥକ ଶ୍ରୀଯୁକ୍ତ ବିଶ୍ୱନାଥ କର କହିଲେ – ସଭାପତି ମହୋଦୟ ଓ ଭାଇମାନେ ! ରାଧାନାଥଙ୍କ ନାମ ଓଡ଼ିଆଭାଷୀ ଅଞ୍ଚଳରେ ସବୁଠାରେ ପ୍ରବେଶ କରିଅଛି । ଏତେ ଶୀଘ୍ର ଆମ୍ଭମାନଙ୍କୁ ଛାଡ଼ି ସେ ଚାଲିଯିବେ, ଆମ୍ଭେମାନେ ଏହା ସ୍ୱପ୍ନରେ ଭାବି ନଥିଲୁଁ । ରାଧାନାଥଙ୍କ ବିୟୋଗରେ ଯେଉଁ କ୍ଷତି ହୋଇଅଛି, ତାହା ଏ ସଭା ବକ୍ତୃତାଦ୍ୱାରା ପୂରଣ କରି ପାରିବ ନାହିଁ ଏବଂ କରିବା ଅସମ୍ଭବ । ରାଧାନାଥଙ୍କୁ ଓଜନ କରିବାର ଗୁଣଗ୍ରାହିତା ଆମ୍ଭମାନଙ୍କ ଭିତରେ କାହାରିଠାରେ ଅଛି କି ନା, ଏ କଥାରେ ମୋର ଭାରି ସନ୍ଦେହ । ରାଧାନାଥ ବାବୁ ଉତ୍କଳର ଧୂଳିକଣାକୁ ସ୍ୱର୍ଗର ଧୂଳିକଣା ବୋଲି ମନେ କରିଥିଲେ । ତାଙ୍କ ଗ୍ରନ୍ଥାବଳୀ ପଢ଼ିଲେ ଏ କଥା ସ୍ପଷ୍ଟ ଜଣାଯିବ । ଚିଲିକାରେ ଲେଖାଅଛି :—

ଦେବୀ ବୀଣାପାଣି କେଉଁ ପାପଫଳେ
କରୁଣା ତୋହର ଊଣା ଏ ଉତ୍କଳେ ?
ସ୍ତୁରିବେ ଉତ୍କଳ ଶୋଭାର ନିଧାନ,
ମାତ୍ର ଏ ଂଶୋଭାରେ ତୋର ଅଧିଷ୍ଠାନ
ବିନୁ, ସିନା ମାତା ହୋଇଛୁ ବିବଶା,
ଭଜିଛୁ ଅରଣ୍ୟପ୍ରସୂନର ଦଶା,
ଯଥା—
କ୍ଷୁଦ୍ର ସିପ୍ରାସ୍ରୋତ ବିଖ୍ୟାତ ଜଗତେ;
ମହାନଦୀ ନାମ ରହିଲା ଗୁପତେ ।

ଇତ୍ୟାଦି – ଇତ୍ୟାଦି ।

"ମୁଁ ତାଙ୍କ ସଙ୍ଗେ କୋଡ଼ିଏ ବର୍ଷ କାଳ ଚଳିଛି । ମୁଁ ଦେଖିଛି, ତାଙ୍କର ପ୍ରାଣର ନିଭୃତ ଦେଶରେ ଉତ୍କଳ ପାଇଁ ସ୍ପନ୍ଦନଧ୍ୱନି ଉଠୁଥିଲା । ସାହିତ୍ୟର ଉନ୍ମାଦକତା ସେ ପୋଷଣ କରିଥିଲେ । ସାହିତ୍ୟାନୁଶୀଳନର ନିଦର୍ଶନ ତାଙ୍କଠାରେ ଥିଲା । କବି ଜଣେ ଉଚ୍ଚ ଶ୍ରେଣୀର ପଣ୍ଡିତ, ସୁଦକ୍ଷ କର୍ମଗୃହୀ, ଉପାଧିଧାରୀ ଥିଲେ । ତାଙ୍କର ସତ୍ୟନିଷ୍ଠା, ଜ୍ଞାନପିପାସା ଓ ଶୋଭାନୁଭବକତାଦ୍ୱାରା ସେ ଉତ୍କଳକୁ ଉଠାଇ ଦେଇଅଛନ୍ତି । ତାଙ୍କୁ ଆଜି ଆମ୍ଭେମାନେ ହରାଇଅଛୁଁ । ଗୁଣଗ୍ରାହକତା ଏବଂ ସାମାନ୍ୟ ଲେଖକଙ୍କ ପ୍ରତି ସ୍ନେହ ତାଙ୍କର ଯଥେଷ୍ଟ ଥିଲା । ସେ ଅନେକ ଦୀନ ଦୁଃଖୀଙ୍କୁ ସାହାଯ୍ୟ ଦେଉଥିଲେ । ରାଧାନାଥଙ୍କୁ ହରାଇବା ଉତ୍କଳର ଦୁର୍ଭାଗ୍ୟ । ଆସ ଭାଇମାନେ, ସାହିତ୍ୟରସରେ ଉନ୍ମତ୍ତ ହୋଇ ସେହି ଅମର-କବିଙ୍କ ପ୍ରଦର୍ଶିତ ପନ୍ଥା ଅନୁସରଣ କରିବା । ପ୍ରତି ହୃଦୟରେ ସାହିତ୍ୟ ଆଲୋଚନାର ନିଶା ଜାଗ୍ରତ ହେଲେ ତାଙ୍କର ପ୍ରକୃତ ସ୍ମୃତିଚିହ୍ନ ରହିବ ! ଅତଏବ ମୁଁ ଅନ୍ତରର ସହିତ ଏ ପ୍ରସ୍ତାବକୁ ସମର୍ଥନ କରୁଅଛି ।"

# ପଞ୍ଚଦଶ ପରିଚ୍ଛେଦ

## ରାଧାନାଥଙ୍କ ମାନବିକତା

୧ (କ)—ଥରେ ରାଧାନାଥ ଷ୍ଟିମରରେ ବସି ବାଲେଶ୍ୱର ଯାଉଥିଲେ । ମଝିରେ ନଈରେ ଜଣେ ଲୋକ ଷ୍ଟିମର ଉପରୁ ଖସି ପଡ଼ିଲା । ପାଣିରେ ପଡ଼ି ଲୋକଟି ଚିତ୍କାର କଲା । ସେତେବେଳେ ରାଧାନାଥ ଷ୍ଟିମର ଭିତରେ କେବିନ୍‌ରେ ଥାଆନ୍ତି । ଲୋକଟି ପାଣିରେ ପଡ଼ିଯିବାରୁ ଅନ୍ୟାନ୍ୟ ଯାତ୍ରୀମାନେ ପାଟିତୁଣ୍ଡ କଲେ, କିନ୍ତୁ କେହି ପାଣିକୁ ଡେଇଁ ସେହି ଲୋକଟିକୁ ଉଦ୍ଧାର କରିବାକୁ ଚେଷ୍ଟା କରୁନଥାନ୍ତି, କେବଳ 'ବୁଡ଼ିଗଲା' 'ବୁଡ଼ିଗଲା' ବୋଲି ପାଟି କରୁଥାନ୍ତି । ରାଧାନାଥ କେବିନ୍‌ରୁ ବାହାରି ଆସି ଦେଖିଲେ ଯେ ଲୋକଟି ବୁଡ଼ିଯିବା ଉପରେ । ସେ ତତ୍‌କ୍ଷଣାତ୍ ପାଟି କରି କହିଲେ, "ଯେ ଏ ଲୋକଟିକୁ ଉଦ୍ଧାର କରିବ ତାକୁ ଦଶଟଙ୍କା ପୁରସ୍କାର ଦେବି ।" ଦଶଟଙ୍କା ପୁରସ୍କାରର ଘୋଷଣା ଶୁଣିବା ମାତ୍ରେ ଦୁଇଜଣ ଖଲାସି ନଈ ଭିତରକୁ ଡେଇଁ ପଡ଼ି ଲୋକଟିକୁ ଧରି ପାଣିରୁ ବାହାର କରି ଆଣିଲେ । ଲୋକଟି ବଞ୍ଚିଗଲା । ରାଧାନାଥବାବୁ ଖଲାସି ଦୁଇଜଣଙ୍କୁ ପ୍ରତ୍ୟେକଙ୍କୁ ଖଣ୍ଡେ ଲୁଗା ଓ ପାଞ୍ଚଟଙ୍କା କରି ପୁରସ୍କାର ଦେଲେ ।

(ଖ) ଥରେ ରାଧାନାଥବାବୁ ସକାଳବେଳେ ବୁଲି ଯାଉଯାଉ ଦେଖିଲେ ଯେ ଗୋଟିଏ ପିଲା ଗାଧୋଇବା ପୋଖରୀରେ ପହଁରୁ ପହଁରୁ ବୁଡ଼ିଯାଉଛି । କୂଳରେ କେତେ ଲୋକ ଥିଲେ ଏବଂ କେତେଲୋକ ଗାଧୋଉଥିଲେ ମଧ୍ୟ । କିନ୍ତୁ କେହି ଭରସା କରି ପାଣିରେ ପଶି ପିଲାଟିକୁ ଧରିବାକୁ ସାହସ କଲେନାହିଁ । ସାଧାରଣତଃ ବୁଡ଼ିଗଲା ଲୋକ ପାଖକୁ ଯିବାକୁ ବେଶି ଲୋକ ସାହସ କରନ୍ତି ନାହିଁ । ବୁଡ଼ି ଯାଉଥିବା ଲୋକ ପ୍ରାଣବିକଳରେ ଯାହା ପାଇଲା ତାକୁ ଟାଣି କରି ଧରେ ; ଉଦ୍ଧାର କରିବାକୁ ଯାଉଥିବା ଲୋକକୁ ମଧ୍ୟ ତାକୁ ଜୋରକରି ଧରିନିଏ । ଫଳରେ ଦୁହେଁ ଛନ୍ଦାଛନ୍ଦି ହୋଇ ବୁଡ଼ିଯାଆନ୍ତି । କିନ୍ତୁ ଟିକିଏ ବୁଦ୍ଧି ଖେଳେଇ ବୁଡ଼ିଯିବା ଲୋକକୁ ଧରି ଆଣିବା ସହଜ । ଆଗରୁ ପିନ୍ଧାଲୁଗାଟିକୁ କେହି କେହି ବୁଡ଼ିଯାଉଥିବା ଲୋକ ଆଡ଼କୁ ଫୋପାଡ଼ି ଦିଅନ୍ତି । ସେ ଲୋକ ଏହାକୁ ଧରି ପାରିଲେ ତାକୁ ଟାଣି ଆଣନ୍ତି । ବୁଡ଼ିଯାଉଥିବା ଲୋକ ଅଚେତ ହୋଇଯାଇଥିଲେ ମଧ୍ୟ ପହଁରି ଜାଣିଥିବା ଲୋକ ତାକୁ ପାଣିରୁ ଉଠାଇ ଆଣି ପହଁରି ଘେନି ଆସନ୍ତି । ରାଧାନାଥ ଏ ଘଟଣା ଦେଖିବା ମାତ୍ରେ ପାଟିକରି କହିଲେ, "ଯେ ଏ ପିଲାଟିକୁ ଉଦ୍ଧାର କରିବ ତାକୁ ପୁରସ୍କାର ଦିଆଯିବ ।" ସଙ୍ଗେ ସଙ୍ଗେ ଜଣେ ମୁସଲମାନ ଯୁବକ ପାଣିକି ଡେଇଁପଡ଼ି ପହଁରିଯାଇ କୌଶଳକ୍ରମେ ପିଲାଟିକୁ ଉଦ୍ଧାର କରି ଆଣିଲା । ରାଧାନାଥ ପିଲାଟିକୁ ନେଇ ତାଙ୍କ ବାପ ମା'ଙ୍କ ପାଖରେ ଛାଡ଼ି ଦେଇ ଆସିଲେ ଏବଂ ମୁସଲମାନ ଯୁବକଟିକୁ ଖୁବ୍ ପ୍ରଶଂସା କରି ପାଞ୍ଚଟି ଟଙ୍କା ଓ ସେରେ ମିଠେଇ ପୁରସ୍କାର ଦେଇଥିଲେ । ପ୍ରାଣରକ୍ଷାଠାରୁ ବଳି ଧର୍ମ ଆଉ ନାହିଁ ।

ରାଧାନାଥଙ୍କର ଜୀବଜନ୍ତୁ ପ୍ରତି ଦୟା ଥିଲା । ସେ ନୈତିକ-ଭାବରେ ନିରାମିଷ ଆହାରର ପ୍ରଚାରକ ନ ହେଲେ ମଧ୍ୟ ସେ

ଅକାରଣ ଜୀବହତ୍ୟାକୁ ଘୃଣା କରୁଥିଲେ । ଅଧିକନ୍ତୁ ପଶୁପକ୍ଷୀମାନଙ୍କୁ ବାନ୍ଧି ପିଞ୍ଜରାରେ ବନ୍ଦ କରି ରଖିବା ତାଙ୍କୁ ସୁଖ ଲାଗୁନଥିଲା ।

(କ) ଥରେ ରାଧାନାଥ ବାଟରେ ଯାଉଁ ଯାଉଁ ଜଣେ ବାଣୁଆଁକୁ ଦେଖିଲେ । ସେ କେତେଗୁଡ଼ାଏ ଛୋଟ ଛୋଟ ପକ୍ଷୀଙ୍କୁ ଖାଳେଇ ଭିତରେ ରଖି ଘର କରି କାନ୍ଧରେ ଧରିଥିଲା । ରାଧାନାଥଙ୍କୁ ଦେଖି ବାଣୁଆ କହିଲା, "ବାବୁ ଚଢ଼େଇ କିଣିବେ ?" ବାବୁଙ୍କ ମନରେ ଚଢ଼େଇଗୁଡ଼ିକ ପ୍ରତି ଦୟା ହେଲା । ସେ ବାଣୁଆକୁ ପଚାରିଲେ, "ଦାମ କେତେ ?" ବାଣୁଆ କହିଲା, "ଗୋଟିକୁ ଅଣାଏ ।" ବାବୁ କହିଲେ, 'ଦେଖିବା, ଆଣିଲ" ବାଣୁଆଁ ଖାଳେଇ ଭିତରୁ ଗୋଟିଏ ପକ୍ଷୀ ବାହାର କରି ରାଧାନାଥଙ୍କ ହାତରେ ବଢ଼େଇ ଦେଲା । ରାଧାନାଥ ପକ୍ଷୀଟିକୁ ହାତରୁ ଖସି ନଗଲାଭଳି ଧରନ୍ତେ କଣ, ଜାଣିଶୁଣି ହାତମୁଠା ଖୋଲି ଦେଲେ । ପକ୍ଷୀଟି ଉଡ଼ିଗଲା । ବାଣୁଆଁ ବାପୁଡ଼ା କଣ କରିବ ? ବଡ଼ ଗ୍ରାହକ ପାଇଛୁ ମନେ କରି ଆଉ ଗୋଟିଏ ପକ୍ଷୀ ଆଣି ବାବୁଙ୍କ ହାତରେ ଦେଲା । ବାବୁ ସେଇଟିକୁ ମଧ୍ୟ ଉଡ଼ାଇ ଦେଲେ । ଦୁଇଟା ପକ୍ଷୀ ଉଡ଼ିଯିବାରୁ ବାଣୁଆଁ ଆଉ ସେପରି ନକରି ଖାଳେଇ ମୁହଁ ଖୋଲି ଚଢ଼େଇ ଦେଖାଇବାରେ ଲାଗିଲା । ଏହି ସମୟରେ ବାଣୁଆଁକୁ ଟିକିଏ ଅନ୍ୟ-ମନସ୍କ କରାଇବା ପାଇଁ ବାବୁ ଏଣୁତେଣୁ କେତେ ହସରସ କଥା କହିବସିଲେ । ଏଥିରେ ବାଣୁଆ ମଜ୍ଜିଯିବାରୁ ଖାଳେଇ ଆଡ଼େ ତାର ମନେ ରହିଲା ନାହିଁ । ସବୁ ଚଢ଼େଇ ଉଡ଼ିଗଲେ । ଏହା ଦେଖି ବାଣୁଆଁ ମୁଣ୍ଡରେ ହାତ ଦେଇ ବସିଲା । ରାଧାନାଥ ବୁଝେଇ ସୁଝେଇ କହି ପୋଛି ତାର ମନକୁ ଶାନ୍ତ କଲେ । ପରେ ତା ହାତରେ ଟଙ୍କାଟେ ଗୁଞ୍ଜିଦେବାରୁ ବାଣୁଆ ମହାଆନନ୍ଦରେ ଚାଲିଗଲା । ସେ ଏତେ ଆଶା କରିନଥିଲା ।

(ଖ) ଥରେ କଂସେଇମାନେ ଗୋଟିଏ ହଡ଼ା ଗୋରୁକୁ କାଟି ମାଂସ ବିକ୍ରୀ କରିବା ପାଇଁ କଂସେଇଖାନାକୁ ନେଇ ଯାଉଥିଲେ । ରାଧାନାଥ ଜଣେ କଂସେଇକୁ ଡାକି କହିଲେ, "ହଡ଼ା ମାଂସ କେତେ ଟଙ୍କାରେ ତୁମେ ବିକ୍ରୀ କରିବ ?" କଂସେଇ କହିଲା, "ତିନେଗୁରିଟଙ୍କା ହେବ ।" ରାଧାନାଥବାବୁ ସେହିକ୍ଷଣି ଛଅଟଙ୍କା ଦେଇ ଗୋରୁଟିକୁ ତାଠାରୁ କିଣି ନେଇ ଗୋଶାଳାକୁ ପଠାଇଦେଲେ ।

୩ । ଦୁଃଖୀ ଗରିବଙ୍କୁ ସାହାଯ୍ୟ କରିବାରେ ସେ କେବେ ପଶ୍ଚାତ୍‌ପଦ ହେଉନଥିଲେ । ଅବଶ୍ୟ ଏହି ଦିଗରେ ବହୁ ଅର୍ଥ ବ୍ୟୟ କରି ନଥିଲେ ମଧ୍ୟ ତାଙ୍କର ପ୍ରତ୍ୟେକ ସାହାଯ୍ୟରେ ପ୍ରାଣ ମିଶିଥିଲା । ପ୍ରତିଦିନ ବୁଲି ଗଲାବେଳେ ସେ ହାତରେ କିଛି ପଇସା ନେଇ ଯାଉଥିଲେ । ବାଟରେ ଦୁଃଖିରଙ୍କିଙ୍କୁ ଦେଖିଲେ ସେମାନଙ୍କୁ କିଛି କିଛି ଅର୍ଥ ସାହାଯ୍ୟ ଦେଉଥିଲେ ।

(କ) ଥରେ କଟକ ଅବସ୍ଥାନ ସମୟରେ କେତେଜଣ ଭିଖାରି ତାଙ୍କୁ ଭେଟି କିଛି ଖାଇବାକୁ ମାଗିଲେ । ରାଧାନାଥ ବାବୁ ସେମାନଙ୍କୁ ନିଜ ଘରକୁ ଡାକି ଆଣି ନାନା ପ୍ରକାର ମିଷ୍ଟାନ୍ନର ଭୋଜନ ଦେଇ ଆପ୍ୟାୟିତ କଲେ ।

(ଖ) କଟକ ସହରର ରାଉସାପାଟଣା ଅଞ୍ଚଳର ଜଣେ ଅସହାୟ ବୃଦ୍ଧା ବିଧବାର ଘରଟି ପୋଡ଼ିଗଲା । କେହି ଦୁର୍ବୃତ୍ତ ନିଆଁ ଲଗେଇ ଦେଇଥିବାର ସନ୍ଦେହ କରାଯାଇଥିଲା । ବୃଦ୍ଧାଟି ଗ୍ରେଟ ଜୁଆଟିଏ ଧରି ରାଧାନାଥଙ୍କ ଘରକୁ ଆସି ତାହାର ଦୁଃଖ କାହାଣୀ ବର୍ଣ୍ଣନା କଲା । ବୃଦ୍ଧାର ନୂତନ ଗୃହ ନିର୍ମାଣ ପାଇଁ ରାଧାନାଥ ଟ ୨୫୯ (ପଚିଶ ଟଙ୍କା) ସାହାଯ୍ୟ ଦେଲେ । ଏ କଳ୍ପନାତୀତ ଦାନ ବୃଦ୍ଧାକୁ ଅଭିଭୂତ କରିଦେଇଥିଲା ।

୪ । ରାଧାନାଥ ଥରେ ତାଙ୍କ ଶ୍ୱଶୁରଙ୍କ ଗ୍ରାମକୁ ଯାଇଥିଲେ । ସେହି ଗ୍ରାମରେ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ଘରଟି ଜୀର୍ଣ୍ଣ ହୋଇଥିଲା । ସେହି ଘର ପ୍ରତି ଦୃଷ୍ଟି ପଡ଼ିବାରୁ ରାଧାନାଥ ପଣ୍ଡିତଙ୍କ ସମ୍ବନ୍ଧରେ ତାଙ୍କର ଆତ୍ମୀୟ ବନ୍ଧୁମାନଙ୍କୁ ପ୍ରଶ୍ନ କଲେ । ବ୍ରାହ୍ମଣ ପ୍ରାଚୀନ ଧରଣର ଶିକ୍ଷାରେ ଉତ୍ତମ ରୂପେ ପଢାପଢ଼ି କରଥିଲେ ଏବଂ ଅତି ଗରିବ ଥିବାରୁ ଜୀବିକା ନିର୍ବାହ ସ୍ୱଚ୍ଛନ୍ଦରେ ହେଉନଥିଲା । ସେହି କାରଣରୁ ଗୃହ ଖଣ୍ଡିକ ମଧ୍ୟ ବାସୋପଯୋଗୀ କରିପାରୁ ନଥିଲେ । ରାଧାନାଥ ବ୍ରାହ୍ମଣଙ୍କ ଦୁରବସ୍ଥାରେ ଦୁଃଖିତ ହୋଇ ତାଙ୍କୁ ଡାକି ଆଣି ଏକ ପାଠଶାଳାରେ ଶିକ୍ଷକ ରୂପେ ନିଯୁକ୍ତ କରିଦେଲେ, ଏବଂ ତାଙ୍କ ପୁଅକୁ ଆଧୁନିକ ସ୍କୁଲରେ ପଢ଼ାଇବା ପାଇଁ ପରାମର୍ଶ ଦେଲେ । ନିଜେ ପିଲାଟିର ପଢ଼ା ବହି କିଣି ଦେବା ବ୍ୟବସ୍ଥା ମଧ୍ୟ ସେ କରି-ଦେଲେ । ଏହି ବାଳକଟି ରାଧାନାଥ ବାବୁଙ୍କ ଦ୍ୱାରା ଉତ୍ସାହିତ ହୋଇ ଉଚ୍ଚଶିକ୍ଷାଲାଭ କଲେ । ଯୋଗ୍ୟତା ଦେଖି ତାଙ୍କୁ ରାଧାନାଥ ରେମୁଣାର ଭର୍ଣ୍ଣାକୁଲାର୍ ସ୍କୁଲର ଦ୍ୱିତୀୟ ଶିକ୍ଷକ ରୂପେ ନିଯୁକ୍ତ କରିଦେଲେ । ପରେ ସେହି ସ୍କୁଲର ହେଡ୍ ପଣ୍ଡିତ ରୂପରେ ମଧ୍ୟ ସେ ନିଯୁକ୍ତ ହୋଇଥିଲେ ।

ସ୍ୱର୍ଗତ ଚନ୍ଦ୍ରମୋହନ ମହାରଣ ମଧ୍ୟ ପ୍ରାୟ ୫ ବର୍ଷ କାଳ ରାଧାନାଥଙ୍କଠାରୁ ଆର୍ଥିକ ସାହାଯ୍ୟ ନେଇ ପଢ଼ିବା ଜଣାଯାଏ ।

ରାଧାନାଥ ବହୁ ଗରିବ ଛାତ୍ରଙ୍କୁ ନିଜ ବ୍ୟୟରେ ବହି, ଦରମା ପ୍ରଭୃତି ଦେଇ ସାହାଯ୍ୟ କରୁଥିଲେ । ଯୋଗ୍ୟତା ହାସଲ କରିସାରିବା ପରେ ଛାତ୍ରମାନଙ୍କୁ ଉପଯୁକ୍ତ କାର୍ଯ୍ୟରେ ନିଯୁକ୍ତି ପାଇବାରେ ସାହାଯ୍ୟ କରୁଥିଲେ ।

୫ । ରାଧାନାଥ ତାଙ୍କର ବାଲ୍ୟବନ୍ଧୁମାନଙ୍କ ଭିତରୁ ଯେଉଁମାନେ ଅତି ଗରିବ ସେମାନଙ୍କୁ ସାମୟିକ ଆର୍ଥିକ ସାହାଯ୍ୟ ଦେଉଥିଲେ ;

କେତେ ଜଣଙ୍କୁ ମାସିକ ସାହାଯ୍ୟ ନିୟମିତଭାବରେ ଦେଉଥିଲେ । ସ୍ୱଗ୍ରାମର ଜଣେ ବାଲ୍ୟବନ୍ଧୁଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବା ଜାଣିପାରି ତାଙ୍କୁ ମାସିକ ଦୁଇଟଙ୍କା କରି ସାହାଯ୍ୟ ଦେଉଥିଲେ ।

ମଫସଲ ଗସ୍ତରେ ସେ କୌଣସି ଗ୍ରାମରେ ପହଞ୍ଚିଲେ ସେଠାର ବୃଦ୍ଧମାନଙ୍କ ବୟସ ବୁଝୁଥିଲେ । ଅତିବୃଦ୍ଧମାନଙ୍କ ଘରକୁ ଯାଇ ନିଜେ କୁଶଳସମାଚାର ବୁଝୁଥିଲେ । ଆର୍ଥିକ ଅନାଟନରେ ପଡ଼ି କଷ୍ଟ ପାଉଥିବା ବୃଦ୍ଧମାନଙ୍କୁ କିଛି କିଛି ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ ।

ବହୁ କବି ଓ ଲେଖକ ନିଜର କୃତି ପ୍ରକାଶ କରିବାରେ ରାଧାନାଥଙ୍କଦ୍ୱାରା ଉତ୍ସାହିତ ହୋଇଥିଲେ । ଓଡ଼ିଶାର ବହୁ ରାଜା-ମହାରାଜା ରାଧାନାଥଙ୍କର ବନ୍ଧୁ ଥିବାରୁ ସେମାନଙ୍କଠାରୁ ମଧ୍ୟ ସାହାଯ୍ୟ କରାଇ ଦେଉଥିଲେ ।

କନ୍ୟାଦାୟଗ୍ରସ୍ତ କେତେଜଣ ଭଦ୍ରବ୍ୟକ୍ତି ରାଧାନାଥଙ୍କଠାରୁ ଆଶାତୀତ ଭାବରେ ଆର୍ଥିକ ସାହାଯ୍ୟ ପ୍ରାପ୍ତ ହୋଇଥିଲେ । ଏହି ସାହାଯ୍ୟର ପରିମାଣ ବିବାହକାର୍ଯ୍ୟ ନିର୍ବାହ କରିବାରେ କନ୍ୟା-ପିତାଙ୍କୁ ଚିନ୍ତାମୁକ୍ତ କରୁଥିଲା ।

୭ । ରାଧାନାଥ ବାବୁଙ୍କର ପରିଷ୍କାର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଥିଲା । ସେ ପରିଷ୍କାର ପରିଚ୍ଛନ୍ନ ବସ୍ତ୍ର ବ୍ୟବହାର କରୁଥିଲେ ଏବଂ ଘରଦ୍ୱାର ମଧ୍ୟ ସଫାସୁତୁରା ରଖୁଥିଲେ । ଅଧସ୍ତନ କର୍ମଚାରୀମାନଙ୍କ ଭିତରୁ ଯଦି କେହି ଅପରିଷ୍କୃତ ଲୁଗା ପିନ୍ଧି ଅଫିସକୁ କିମ୍ବା ତାଙ୍କ-ଠାକୁ ଆସୁଥିଲେ, ତାଙ୍କୁ ସେ ସଫା ଲୁଗା ପିନ୍ଧି ଆସିବାପାଇଁ ନିର୍ଦ୍ଦେଶ ଦେଉଥିଲେ ।

୭ । ରାଧାନାଥଙ୍କ 'କବିତାବଳୀ' (ବଙ୍ଗଳା) ପ୍ରକାଶିତ ହେବା ପରେ ବଙ୍ଗର ବିଖ୍ୟାତ ଉପନ୍ୟାସ ଲେଖକ ବଙ୍କିମଚନ୍ଦ୍ର

ପ୍ରତିଷ୍ଠା, ବହୁ ପ୍ରଶଂସା କରି ଖଣ୍ଡିଏ ପତ୍ର ବାଲେଶ୍ୱରର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଜଗଦୀଶଚନ୍ଦ୍ର ରାୟଙ୍କଠାକୁ ଲେଖିଥିଲେ । ଜଗଦୀଶ ବାବୁଙ୍କ ପୁତ୍ର ରାଧାନାଥ ରାୟ ଏମ୍.ଏ. ପାସ୍ କରି ବାଲେଶ୍ୱରରେ ଥିଲେ । ରାଧାନାଥବାବୁ ମଧ୍ୟ ବାଲେଶ୍ୱରରେ ଥିଲେ । ଜଗଦୀଶ ବାବୁଙ୍କ ପୁତ୍ର ରାଧାନାଥ କବିତାବଳୀର ଲେଖକ ବୋଲି ଭାବି ଚିଠିଟି ଜଗଦୀଶ ବାବୁଙ୍କ ଠାକୁ ବଙ୍କିମ ବାବୁ ପଠାଇଥିଲେ । ଜଗଦୀଶବାବୁ ପତ୍ରଟି ପାଇ ରାଧାନାଥ ରାୟଙ୍କ ବସାକୁ ଆସି ତାଙ୍କୁ ବହୁତ ଆଶୀର୍ବାଦ କରିଥିଲେ ।

୮ । ରାଧାନାଥ ନିଜର ଚାକରମାନଙ୍କ ପ୍ରତି ବଡ଼ ଦୟାଳୁ ଥିଲେ । ସେମାନଙ୍କ କର୍ତ୍ତବ୍ୟାବସ୍ଥା ପ୍ରତି ତାଙ୍କର ଯେତେ ଧ୍ୟାନ ଥିଲା, ସେମାନଙ୍କର ସୁଖ ଦୁଃଖରେ ସେ ସେତେ ଭାଗୀ ହେଉଥିଲେ । ଚାକରମାନଙ୍କ ପ୍ରତି ସେ ଅସମ୍ମାନଜନକ ବ୍ୟବହାର କରୁ ନଥିଲେ, ସାଧାରଣ ସହକର୍ମୀଙ୍କ ପ୍ରତି ଯେପରି ବ୍ୟବହାର ହେବା କଥା ସେପରି ସେ କରୁଥିଲେ । ସେ ଯାହା ଖାଇବେ ଚାକରମାନଙ୍କୁ ତାହା ଦିଆଯାଉଥିଲା । ଘରେ ଚାକରମାନେ ଆଗେ ଖାଇ ସାରିବା ପରେ ସେ ଖାଉଥିଲେ । ସେଥିଯୋଗୁଁ ତାଙ୍କ ପାଖରେ ବହୁବର୍ଷ ଚାକିରି କରି ମଧ୍ୟ କେହି ଅସନ୍ତୁଷ୍ଟ ହେଉ ନଥିଲେ । ମଫସଲ ଗସ୍ତରେ ଯିବାବେଳେ ଚାକର ଓ ଚପରାଶୀମାନଙ୍କ ପାଇଁ ବରାବର ବଳଦ-ଗାଡ଼ିର ବ୍ୟବସ୍ଥା କରୁଥିଲେ—ସେମାନଙ୍କୁ କେବେ ଚଲାଇ ନେଉନଥିଲେ । ଥରେ ଜଣେ ଚାକର ବାଟରେ ବେମାର ପଡ଼ିଗଲା । ବାବୁ ପାଲିଂକରେ ଯାଉଥିଲେ । ଚାକରକୁ ପାଲିଂକରେ ବସାଇ ବାବୁ ଚାଲିଲେ । ଏଥିରେ ରାଧାନାଥଙ୍କ ମନରେ ଟିକିଏ ହେଲେ କଷ୍ଟ ନଥାଏ । ଖାଇବା, ପିନ୍ଧିବା ଓ ଅନ୍ୟାନ୍ୟ ବ୍ୟବହାରରେ ଏକ କୁଟୁମ୍ବର ଲୋକପରି ଚାକରମାନେ ତାଙ୍କ ସଙ୍ଗରେ ଚଳୁଥିଲେ ।

୯ । ରାଧାନାଥ ସରକାରୀକାର୍ଯ୍ୟରେ ମଫସଲକୁ ଗଲେ ସେଠାରେ କୌଣସି ବ୍ୟକ୍ତିଙ୍କଠାରୁ ସିଧାସଞ୍ଜା ଗ୍ରହଣ କରୁନଥିଲେ । ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଜନ୍ମସ୍ଥାନ କଟକ ଜିଲ୍ଲା ସିଦ୍ଧେଶ୍ୱରପୁର । ସେଠାରେ ଏକ ମାଇନର ସ୍କୁଲ ଥିଲା । ରାଧାନାଥ ବାବୁ ଜଏଣ୍ଟଇନ୍‌ସ୍‌ପେକ୍ଟର ଥିଲାବେଳେ ଗ୍ରାମର ସ୍କୁଲ ପରିଦର୍ଶନ କରିବାପାଇଁ ଯାଉଥିଲେ । ପ୍ରହରାଜଙ୍କ ପିତୃଦେବଙ୍କ ସହିତ ରାଧାନାଥଙ୍କ ସୌହାର୍ଦ୍ଦ୍ୟ ଥିଲେ ମଧ୍ୟ ତାଙ୍କର ଆତିଥ୍ୟ ଗ୍ରହଣ କରୁନଥିଲେ । "ଥରେ ଦୁଇଥର ରାଧାନାଥ ଆମ ଗ୍ରାମରେ ରାତିଯାପନ କରିଥିଲେ । ସେ ମଫସଲରେ କୌଣସି ବ୍ୟକ୍ତିଠାରୁ ସିଧାସଞ୍ଜା ଗ୍ରହଣ କରୁନଥିଲେ ଓ ତାଙ୍କ ନିଜର ଯାନ ବ୍ୟବହୃତ ବଳଦ-ଗାଡ଼ି ଛଡ଼ା ଅନ୍ୟ ଗୋଟିଏ ଗାଡ଼ିରେ ମଫସଲ ଗସ୍ତ ଦିବସମାନଙ୍କ ଉପଯୋଗୀ ଡାଲି, ଚୁଡ଼ା ଆଦି ସଙ୍ଗେ ସଙ୍ଗେ ବୁହାହୋଇ ଯାଉଥିଲା । ମୋ ପିତୃଦେବଙ୍କ ପକ୍ଷରେ ରାଧାନାଥଙ୍କର ସିଧାସମଗ୍ରୀ ଗ୍ରହଣ କରିବାର ନିୟମ ଏତିକ ବ୍ୟତିକ୍ରମ ହେଉଥିଲା ଯେ, ତାଙ୍କର ଓଳିଏ ଖାଇବା କାମ ଚଳିବା ଉପଯୋଗୀ ଗୁଡ଼ିଏ କଖାରୁ ବଡ଼ି, କେରିଏ ଶାଗ ମାତ୍ର ତାଙ୍କ ପାଇଁ ଆମ ଘରୁ ଯାଉଥିଲା । ଥରେ ଆମ ତହସିଲଦାର ପାଏ ଘିଅ ପଠାଇ ଦେଇଥିଲେ, କିନ୍ତୁ ରାଧାନାଥ ସ୍ୱୟଂ ଆମ ଘରକୁ ଆସି ପିତୃଦେବଙ୍କଠାରେ ଘୃତଦ୍ରବ୍ୟାର୍ପଣଜନିତ ଦୋଷ ମାର୍ଜନା ମାଗି ସେତିକ ତହସିଲଦାରଙ୍କୁ ଫେରାଇ ଦେଇ-ଗଲେ ।" ("ରା.ବା. ରାଧାନାଥଙ୍କ ସ୍ମୃତି")

୧୦ । ସ୍ୱର୍ଗୀୟ ଗୋପାଳଚନ୍ଦ୍ର ପ୍ରହରାଜ ଆଉ ଗୋଟିଏ କୌତୁକ ଘଟଣା ଲେଖିଛନ୍ତି । ସେ ୧୮୮୭ରେ କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଞ୍ଚମ ଶ୍ରେଣୀରେ ପଢ଼ୁଥିଲେ ।

ସେତେବେଳେ ରାଧାନାଥ ବାବୁଙ୍କ ଜ୍ୟେଷ୍ଠପୁତ୍ର ଶଶିଭୂଷଣ, ଶ୍ରୀକୃଷ୍ଣ ମହାପାତ୍ର (ପରେ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ, ଦେବାନ ବାହାଦୂର), ସ୍ୱର୍ଗୀୟ କୃଷ୍ଣଚନ୍ଦ୍ର ପାଳିତ ଓକିଲ, ବାଲୁବଜାର, କଟକ ସହରର ସ୍ୱର୍ଗୀୟ ଗୋପାଳଚନ୍ଦ୍ର ରାୟ (ଓକିଲ ସାହେବଜାଦା ବଜାର, କଟକ ସହର) ତାଙ୍କର ସହାଧ୍ୟାୟୀ ଥିଲେ । ଶଶିବାବୁ ସେତେବେଳେ ଏକ ରଚନା ପ୍ରତିଯୋଗିତା ପ୍ରତିଷ୍ଠା କରିଥିଲେ । ଉକ୍ତ ଅନୁଷ୍ଠାନର ନାମ ହଇଥିଲା Bohn's Library (ବନଙ୍କ ପୁସ୍ତକାଗାର) । ସେତେବେଳେ ଏ ସମସ୍ତେ ପିଲା । ରଚନା ପ୍ରତିଯୋଗିତାରେ ଗୋପାଳଚନ୍ଦ୍ର ବେଶି ପୁରସ୍କାର ପାଉଥିଲେ । ପୁରସ୍କାର ପାଇଁ ବହି ଦେଉଥିଲେ ଶଶିଭୂଷଣ । ରାଧାନାଥ ବାବୁ ଯେଉଁସବୁ ବହି ଉପହାର ପାଉଥିଲେ ସେଗୁଡ଼ିକ ସଜେଇ ଟେବୁଲ ଉପରେ ରଖୁଥିଲେ । ତାଙ୍କ ଅଜାଣନ୍ତରେ ଶଶିଭୂଷଣ ଏଥିରୁ ଖଣ୍ଡିଏ ଲେଖାଏ ଚୋରି କରି ଆଣି ପୁରସ୍କାର ଦେଉଥିଲେ । ଗୋପାଳବାବୁ ବେଶି ପୁରସ୍କାର ପାଇବାରୁ କେହି ଜଣେ ଈର୍ଷାରେ ସ୍କୁଲର ହେଡ଼ମାଷ୍ଟ୍ର (ରାମଦାସ ଚକ୍ରବର୍ତ୍ତୀ)ଙ୍କୁ ଏହି ବହି ଚୋରି କଥା କହିଦେଲା । ହେଡ଼ମାଷ୍ଟ୍ର ରାଧାନାଥ ବାବୁଙ୍କୁ ଏହା ଜଣାଇଲେ । ହେଡ଼ମାଷ୍ଟ୍ର ମଧ୍ୟ ସବୁ ବହି ଫେରାଇ ଦେବାପାଇଁ ପିଲାଙ୍କୁ କହିଲେ । ଏସବୁ ବହି (ପ୍ରାୟ ୧୮ ଖଣ୍ଡ) ପିଲାଏ ଫେରାଇ ଦେଲେ । ଦେଖାଗଲା ଯେ ପୁରସ୍କୃତ ରଚନାକାରମାନେ ଏଥିରେ ଜଳଛବି ମଡ଼େଇ ନଷ୍ଟ କରି ଦେଇଛନ୍ତି । ରାଧାନାଥ ସ୍କୁଲକୁ ଆସିଲେ ଏବଂ ତାଙ୍କ ସମ୍ମୁଖରେ ଏହି ପୁରସ୍କୃତ ବ୍ୟକ୍ତିମାନଙ୍କୁ ଠିଆ କରାଗଲା ଏବଂ ପୁସ୍ତକଗୁଡ଼ିକ ଟେବୁଲ ଉପରେ ରଖାଗଲା । ରାଧାନାଥ ରାଗିବେ କଣ, ପିଲାମାନଙ୍କର ରଚନା ଲେଖିବାପାଇଁ ସ୍ପୃହା ଦେଖି ପରମ ପ୍ରୀତି ଲାଭ କଲେ । "× ତାଙ୍କ ପୁତ୍ରଙ୍କର ବଦାନ୍ୟତାମୂଳକ ପୁରସ୍କାର

ଦାନରୂପ ଅଙ୍କୁରକୁ ଉତ୍ପାଟନ ନକରି ସେ ପୁସ୍ତକମାନ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ଫେରାଇ ଦେଲେ ଓ ଶଶୀ ଭାଇଙ୍କୁ କହିଲେ ଯେ, ଏଣିକ ତାଙ୍କୁ ଜଣାଇଲେ ସେ ପ୍ରତିଯୋଗୀମାନଙ୍କ ପାଇଁ ପୁରସ୍କାର ପୁସ୍ତକ ତାଙ୍କୁ ଦେବେ । ଏଥିରେ ଆମ୍ଭେମାନେ ପ୍ରୋତ୍ସାହିତ ହୋଇ "Bohn's Library" ର ସାପ୍ତାହିକ ରଚନା ପ୍ରତିଯୋଗିତାରେ ଦୃଢ଼ ସହକାରେ ଲାଗି ଗଲୁଁ ।" ("ରା. ବା. ରାଧାନାଥ ରାୟଙ୍କ ସ୍ମୃତି"), ।

୧୨ । ପୁରୀରେ ବ୍ରାହ୍ମଣଶାସନମାନଙ୍କରେ ଆଧୁନିକ ଶିକ୍ଷା ପ୍ରବର୍ତ୍ତନ କରିବା ସେସମୟରେ କିଛି ସହଜ ବ୍ୟାପାର ନଥିଲା । ରାଧାନାଥବାବୁ ଶାସନମାନଙ୍କରେ ଏହି ଶିକ୍ଷା ପ୍ରବର୍ତ୍ତନ କରିବାପାଇଁ ବହୁ ଚେଷ୍ଟା କରିଥିଲେ ଏବଂ ତାଙ୍କ ଉତ୍ସାହବାକ୍ୟରେ ବହୁସ୍କୁଲ ସ୍ଥାପିତ ହୋଇ-ଥିଲା । "ପୁରୀର ରାହାଙ୍ଗ ଶାସନର ବ୍ରାହ୍ମଣସମାଜ ଓ ବିଶେଷତଃ ସାମନ୍ତ ବ୍ରାହ୍ମଣସମାଜର ଯୁବକମାନେ କପରି ଆଧୁନିକ ଶିକ୍ଷାଲାଭ କରିବେ, ସେଥିପାଇଁ ସେ ବ୍ୟକ୍ତିଗତଭାବରେ ଉକ୍ତ ସମାଜ-ମାନଙ୍କରେ ତତ୍ପର କରୁଥିଲେ । ପୁରୀଜିଲ୍ଲା ରାହାଙ୍ଗ ପ୍ରଗଣାର ବୀରନରସିଂହପୁର ଶାସନର ସ୍ୱର୍ଗୀୟ ସାମନ୍ତ ବାଇକୋଳୀ ସାମନ୍ତ-ରାୟଙ୍କ ସଙ୍ଗେ ମୋ ପିତୃଦେବଙ୍କର ଖୁବ୍ ସୌହାର୍ଦ୍ଦ ଥିଲା ଓ ସାମନ୍ତ ମହାଶୟ ଥରେ ଆମ କଟକ ବସାକୁ ଆସିଥିଲେ । ରାଧାନାଥ ତାଙ୍କୁ ପ୍ରବର୍ତ୍ତାଇବା ଫଳରେ ସେ ତାଙ୍କ ଜ୍ୟେଷ୍ଠପୁତ୍ର ସ୍ୱର୍ଗୀୟ ମାଳକଣ୍ଠ ସଦସ୍ୟଙ୍କୁ ନର୍ମାଲ୍ ସ୍କୁଲରେ ପଣ୍ଡିତ ବିଭାଗରେ ପଢ଼ିବାକୁ ପଠାଇ ଥିବାର ସାମନ୍ତ ମୋତେ କହିଥିଲେ । ସାମନ୍ତ ଓ ମୁଁ ସାଙ୍ଗ ହୋଇ ଥରେ ରାଧାନାଥଙ୍କ ବସାକୁ ଗଲୁଁ । ରାଧାନାଥ ତାଙ୍କୁ ଦେଖି ନତ-ଶିରସ୍କ ହୋଇ ନମସ୍କାର କଲେ । ସାଆନ୍ତ ତାଙ୍କୁ ପଚାରିଲେ, ମୋ ପୁଅ ପାଶ୍ କଲେ ତାକୁ ସରକାରଙ୍କଠାରୁ ଯେଉଁ ସନନ୍ଦ ମିଳିବ,

ସେ ସନନ୍ଦର ମର୍ମ ବା ମୂଲ୍ୟ କଅଣ ? ଏଥିର ଉତ୍ତରରେ ରାଧାନାଥ ସହାସ୍ୟବଦନରେ ତାଙ୍କୁ ଏହି ସରସ ଉତ୍ତର ଦେଲେ—"ଆପଣଙ୍କ ପୁଅ ପରୀକ୍ଷାରେ ପାଶ୍ କଲେ ତାଙ୍କୁ ସରକାରଙ୍କ ପ୍ରତିନିଧି ଖଣ୍ଡିଏ ସନନ୍ଦ ଦେବେ । ସେ ସାନନ୍ଦରେ ଲେଖିଦେବେ, 'ଅମୁକେଇ ଦେଶରେ ଘର, ଅମୁକେଇଙ୍କ ପୁଅ, ଅମୁକେଇ ଖୁବ୍ ଭଲ ପିଲା ।' ଏ ସନନ୍ଦଟି ଆପଣଙ୍କ ପୁଅ ଇସ୍କୁଲ ଇଲାକାରେ ଯେଉଁ ହାକିମଙ୍କୁ ଦେଖାଇବେ, ସେ ତାଙ୍କୁ ଆଉ କଣ୍ଟା ନପଗ୍ଭର ସ୍କୁଲରେ ପଣ୍ଡିତେଇ କର୍ମରେ ମୁକରର କରିବେ ଓ ଆପଣଙ୍କ ପୁଅ ମାସକୁ ପନ୍ଦର କୋଡ଼ିଏ ଟଙ୍କା ଦରମା ପାଇବେ । "ପଣ୍ଡିତ ବିଭାଗ" ପାଶ୍ କଲେ ମାସକୁ ପନ୍ଦର କୋଡ଼ିଏ ଟଙ୍କା ତାଙ୍କ ପୁଅ ପାଇବ, ଏହା ଶୁଣି ସାଆନ୍ତ ବିସ୍ମୟ ବିସ୍ଫାରିତ ଲୋଚନରେ ରାଧାନାଥଙ୍କ ଆଡ଼କୁ ଦଣ୍ଡେ ଖଣ୍ଡେ ଗ୍ଭହିଁ ରହିଲେ । ସାଆନ୍ତଙ୍କଠାରୁ ମୁଁ ଶୁଣିଛି ଯେ, ରାଧାନାଥ ତାଙ୍କ ଗ୍ରାମ ସ୍କୁଲ ପରିଦର୍ଶନ କରିବାକୁ ଯିବା ଉପଲକ୍ଷ୍ୟରେ ତାଙ୍କ ଶାସନ ଦାଣ୍ଡରେ ଗଲାବେଳେ ପାନାଚ୍ଛାଦନ ପାଦୁକା ପରିଧାନ ଓ ଛତ୍ର ଧାରଣ କରୁନଥିଲେ, ପିନ୍ଧାଲୁଗାର ଫେର ତଳକୁ ଲମ୍ବାଉ ନଥିଲେ । ଏ ଆଜକୁ ୪୦ (ଗ୍ଭଳିଶି) ବର୍ଷ ତଳର କଥା । ସେ ସମୟରେ ସବାଙ୍ଗ ବ୍ରାହ୍ମଣଶାସନରେ ରକ୍ଷଣଶୀଳତା ଖୁବ୍ ପ୍ରବଳ ଥିଲା ଓ କେହି ଆଗନ୍ତୁକ ଗ୍ରାମଦାଣ୍ଡରେ ଉପର୍ଯ୍ୟୁକ୍ତ ଭାବରେ ଗମନାଗମନ କରିବା ଅମର୍ଯ୍ୟାଦାସୂଚକ ବୋଲି ବିବେଚିତ ହେଉଥିଲା ।" ("ରା. ବା. ରାଧାନାଥ ରାୟଙ୍କ ସ୍ମୃତି") ।

ଏହି ସମ୍ପର୍କରେ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଥିବା ସ୍ୱର୍ଗୀୟ ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଣ୍ଠ (ପୁରୀ, ଶାସନ ଦାମୋଦରପୁର) ଲେଖିଛନ୍ତି, "ଓଡ଼ିଶାରେ ଏ ମହାତ୍ମାଙ୍କର ଶିକ୍ଷା-ବିଭାଗୀୟ ଉଚ୍ଚତମ ପଦଲାଭ କରିବା ସମୟରୁ ଉତ୍କଳରେ ନୂତନ

ଶିକ୍ଷାର ସୃଷ୍ଟି ହୋଇଅଛି । ପଲ୍ଲୀଗ୍ରାମରେ ସୁଦ୍ଧା ଶିକ୍ଷାର ପ୍ରଚାର ହୋଇଅଛି, ପୂର୍ବେ ଜିଲ୍ଲାର ବ୍ରାହ୍ମଣ ସମ୍ପ୍ରଦାୟ ଇଂରେଜ ରାଜତ୍ୱର ଆରମ୍ଭ ସମୟରୁ ବିଦେଶୀୟ ବିଦ୍ୟାଧ୍ୟୟନ ପ୍ରତି ଘୃଣା ପ୍ରକାଶ କରି ଓଡ଼ିଶାବାସୀ ଅନ୍ୟ ସମସ୍ତ ଜାତି ଅପେକ୍ଷା ପ୍ରାୟ ନିମ୍ନତର ସୋପାନରେ ଅବସ୍ଥାନ କରୁଥିଲେ । ଶିକ୍ଷା ଅଭାବରୁ ଏମାନେ ଅତ୍ୟନ୍ତ ଦୁରବସ୍ଥା ଥିବା ଦେଖି ଏ ମହାତ୍ମା ପ୍ରତ୍ୟେକ ଶାସନରେ ଉପସ୍ଥିତ ହୋଇ ସଦୁପଦେଶ ପ୍ରଦାନ ପୂର୍ବକ ବ୍ରାହ୍ମଣ ବାଳକ-ମାନଙ୍କୁ ବିଦେଶୀୟ ଶିକ୍ଷା ପ୍ରତି ଉନ୍ମୁଖ କରାଇଥିଲେ ଏବଂ ଶାସନରେ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ସେଥିଯୋଗୁଁ ଆଜ ବ୍ରାହ୍ମଣ-ତନୟମାନେ ବିଶ୍ୱ ବିଦ୍ୟାଳୟର ଉଚ୍ଚ ଉପାଧି ଧାରଣ କରିଅଛନ୍ତି । ଏହା କି କମ୍ ଉଦାରତା ଏବଂ ସମଦର୍ଶିତାର କାର୍ଯ୍ୟ ?" ("ସ୍ୱର୍ଗୀୟ କବିବର ରାଧାନାଥ । ଉତ୍କଳ ସାହିତ୍ୟ ୧୨ଶ ଭାଗ ୪ର୍ଥ ସଂଖ୍ୟା" )

୧୩ । ପରଦୁଃଖକାତର ରାଧାନାଥ ବହୁ ବନ୍ଧୁଙ୍କ ଦୁଃଖ-ମୋଚନ କରିଅଛନ୍ତି । (ସ୍ୱର୍ଗୀୟ) ନୀଳମଣି ବିଦ୍ୟାରତ୍ନଙ୍କୁ ତାଙ୍କର ସମୟୋଚିତ ସାହାଯ୍ୟ ତାଙ୍କୁ କାରାଗାର ନିକଟରୁ ଛଡ଼ାଇ ଆଣି-ଥିଲା । ଏହି ଘଟଣାଟି ସ୍ୱର୍ଗୀୟ ଚିନ୍ତାମଣି ମହାନ୍ତି ଏପରି ବର୍ଣ୍ଣନା କରିଛନ୍ତି—"ନୀଳମଣି ନାନାଭାବରେ ଯଥେଷ୍ଟ ଆୟ କରୁଥିଲେ ହେଁ ଅମିତବ୍ୟୟିତା ହେତୁରୁ ସେ ବେଳେ ବେଳେ ବହୁ କଷ୍ଟ ଭୋଗ କରୁ-ଥିଲେ । ଅମିତବ୍ୟୟିତାର କାରଣ ମୁଡ଼ଳ ଦେବଙ୍କର କର୍ଣ୍ଣଗୋଚର ହେଲା । ସେ ତାଙ୍କୁ ମିତବ୍ୟୟୀ ହେବାକୁ ଉପଦେଶ ଦେଲେ ; ମାତ୍ର ସେ ସମସ୍ତ ବ୍ୟର୍ଥ ହେଲା । ସେ ମହାରାଜାଙ୍କ ଅଜ୍ଞାତରେ "ସମ୍ବଲପୁର ହିତୈଷିଣୀ" ଆୟରୁ ତିନିଶତ ଟଙ୍କା ଖରଚ କରି ପକାଇଥିଲେ । ମହାରାଜ ଏହି କଥା ଶ୍ରବଣ କରି ତାଙ୍କୁ ସତ୍ପଥରେ ପରିଚାଳିତ କରିବାପାଇଁ ଅନତିବିଳମ୍ବରେ ଏକ ସପ୍ତାହ ମଧ୍ୟରେ

ଟଙ୍କା ରାଜକୋଷରେ ଜମାଦେବା ନିମିତ୍ତ ଆଦେଶ ଦେଲେ ଏବଂ ତାହା ନକଲେ ନିୟମାନୁସାରେ ରାଜଦଣ୍ଡ ଭୋଗ କରିବାକୁ ହେବ ବୋଲି ଭୀତି ପ୍ରଦର୍ଶନ କଲେ । ଏଥିରେ ନୀଳମଣି କିଂକର୍ତ୍ତବ୍ୟବିମୂଢ଼ ହୋଇ ସ୍ୱର୍ଗତ କବିବର ରାଧାନାଥଙ୍କୁ ଏହି ସମ୍ବାଦ ପ୍ରଦାନ କଲେ ଏବଂ ଲେଖିଲେ ଯେ, "ଏକ ସପ୍ତାହ ମଧ୍ୟରେ ତିନିଶତ ଟଙ୍କା ପ୍ରଦାନ କରି ନପାରିଲେ ମୁଁ କାରାଦଣ୍ଡ ଭୋଗକରିବି ।" ପର-ଦୁଃଖକାତର ରାଧାନାଥ ପତ୍ରପ୍ରାପ୍ତି ମାତ୍ରକେ ମନିଅର୍ଡ଼ର ଦ୍ୱାରା ତିନି ଶତଟଙ୍କା ପ୍ରେରଣ କରି ତାଙ୍କୁ ଏହି ବିପଦରୁ ରକ୍ଷା କରି ଥିଲେ ।" ( ଚିନ୍ତାମଣି ଗ୍ରନ୍ଥାବଳୀ, ପୃ ୪୯୮ ) ନୀଳମଣି ବିଦ୍ୟାରତ୍ନ ସେତେବେଳେ ବାମଣ୍ଡା ରାଜା ବାସୁଦେବ ସୁଢ଼ଳଦେବଙ୍କ ଅଧୀନରେ ରହି ତାଙ୍କର ପତ୍ରିକା "ସମ୍ବଲପୁର ହିତୈଷିଣୀ" ସମ୍ପାଦନା କରୁଥିଲେ ।

ପଣ୍ଡିତ ନୀଳମଣି ମିଶ୍ର ବିଦ୍ୟାରତ୍ନ କଟକ ଜିଲ୍ଲାର ବାଙ୍କିରେ ଜନ୍ମଗ୍ରହଣ କରିଥିଲେ । ବିଦ୍ୟାଶିକ୍ଷା କରିବାପାଇଁ କଟକକୁ ୧୮୮୩ ଆସି କେତେ ସମୟ କଟାଇଥିଲେ । ସେତେବେଳକୁ ତାଙ୍କର ବୟସ ୧୭ । ସେହି ବର୍ଷ ରାଧାନାଥଙ୍କ ସହିତ ତାଙ୍କର ପ୍ରଥମ ପରିଚୟ ହେଲା । ନୀଳମଣି ଘରେ କାହାକୁ କିଛି ନକହି ମାଆଙ୍କଠାରୁ ଆଠଅଣା ପଇସା ଆଣି କଟକ ବାହାରି ଆସିଲେ । କଟକରେ ବିଖ୍ୟାତ ଗୋବିନ୍ଦ ରଥଙ୍କ ବସାରେ ତାଙ୍କ ପାଖରେ ରହିଲେ । ରଥେ ମିଶ୍ରଙ୍କର ବାପମା'ଙ୍କୁ ଏ ଖବର ଜଣାଇ ଦେବାରୁ ସେମାନେ ଆଶ୍ୱସ୍ତ ହେଲେ । କଟକରେ ସ୍ୱବ୍ୟୟରେ ଟ୍ରେନିଂ ସ୍କୁଲରେ ପଢ଼ିବା ପାଇଁ ତାଙ୍କର ଇଚ୍ଛା ଥିଲା, କିନ୍ତୁ ଅର୍ଥାଭାବରୁ ସେ କିଛି କରିନ ପାରି କିଛି ଦିନ ବସି ରହିବାରୁ ଗ୍ରାମକୁ ଫେରିଯିବା ସ୍ଥିରକଲେ । ସେ ଗ୍ରାମକୁ ଯିବା ପୂର୍ବରୁ ବୃକଗଣ ଅନ୍ୱେଷଣରେ ଦିନେ କବିବର

ରାଧାନାଥ ରାୟବାହାଦୁରଙ୍କୁ ସେ ଅଫିସକୁ ଯିବା ବାଟରେ ଦେଖା-କଲେ । ରାଧାନାଥ ତାଙ୍କର ପରିଚୟ ଜିଜ୍ଞାସା କଲେ । "ନୀଳମଣି ଯାବତୀୟ ବୃତ୍ତାନ୍ତ ବର୍ଣ୍ଣନା କରୁ କରୁ ଅଫିସରେ ଉପସ୍ଥିତ ହେଲେ । କବିବର ସମସ୍ତ ଶ୍ରବଣ ପରେ ଖଣ୍ଡିଏ କାଗଜ ଦେଇ ତାଙ୍କର ଲିପି ଦେଖିବା ଅଭିପ୍ରାୟରେ କେତେକ କଥା ଲେଖାଇଲେ । ତାଙ୍କର ଘନ ବିରଳ ବିଶୁଦ୍ଧ ରମଣୀୟ ଲିପି ଦର୍ଶନ କରି ପ୍ରସନ୍ନ ହୃଦୟରେ ତାଙ୍କ ଖାଦ୍ୟପାନ ନିମନ୍ତେ ତତ୍‌କ୍ଷଣାତ୍ ୧୦ (ଦଶ) ଟଙ୍କା ପ୍ରଦାନ କରି କହିଲେ—"ତୁମ୍ଭେ କଟକରେ କିଛିଦିନ ରହି ପ୍ରତିଦିନ ମୋ ନିକଟକୁ ଆସୁଥାଅ. ମୋର ଖଣ୍ଡେ ପୁସ୍ତକ ପେନ୍‌ସିଲ୍‌ରେ ଲେଖା ହୋଇଅଛି, ତାହା କାଳିରେ ଲେଖି ମୋହର ଟିକିଏ ଉପକାର କର । ମୁଁ କେଉଁଠାରେ କାର୍ଯ୍ୟ ଖାଲି ଅଛି ଅନୁସନ୍ଧାନ କରି ତୁମ୍ଭ ସମ୍ବନ୍ଧେ ଚେଷ୍ଟା କରିବି ।" (ଶାଃଗ୍ରଃ ପୃ, ୪୯୨) । ପରେ ବଡ଼ମ୍ବାରେ ଗୋପୀନାଥପୁର ସ୍କୁଲରେ ଶିକ୍ଷକ ପଦ ଖାଲି ହେବାରୁ ରାଧାନାଥଙ୍କ ସୁପାରିସ କ୍ରମେ ନୀଳମଣି ସେଠାରେ ନିଯୁକ୍ତି ପାଇଲେ ।

୧୪ । ରାଧାନାଥ ବାବୁ ଅତି ସରଳ ଭାବରେ ବସନ ପରିଧାନ କରି ସାଧାରଣ ସରଳ ଜୀବନଯାପନ କରୁଥିବାରୁ ତାଙ୍କୁ ନୂତନ ଲୋକ ଦେଖିଲେ ସହଜରେ ସେ ଏତେ ବଡ଼ ଲୋକ ବୋଲି ଜାଣିପାରୁ ନଥିଲେ । ବାହ୍ୟାଡ଼ମ୍ବର ଓ ବସନ ପରିଧାନରେ ଆଡ଼ମ୍ବର ତାଙ୍କର ନ ଥିବାରୁ ସେ କେତେକ ସମୟରେ ଅସୁବିଧା ମଧ୍ୟ ଭୋଗ କରିଛନ୍ତି, କିନ୍ତୁ ତାହାସତ୍ତ୍ୱେ ବୃଥା ଆଡ଼ମ୍ବର ସପକ୍ଷରେ କେବେ ଜୀବନର ଗତିକୁ ପରିବର୍ତ୍ତନ କରି ନାହାନ୍ତି ।

ଥରେ ସେ କଟକ ସହରର ବୃନ୍ଦାବନଚୌକ ରାସ୍ତାରେ ସନ୍ଧ୍ୟାବେଳେ ବୁଲି ଯାଉଥିଲେ । ରାସ୍ତା କଡ଼େ କଡ଼େ ଚାଲିବା ତାଙ୍କର ଅଭ୍ୟାସ । ସେହି ସମୟରେ ଶିଶିର ପଡ଼ୁଥିଲା ; ଏହି

ଶିଶିର ଯେପରି ମୁଣ୍ଡରେ ନପଡ଼ିବ ସେଥିପାଇଁ ସେ ଛତାଟିଏ ଖୋଲି ମୁଣ୍ଡକୁ ରକ୍ଷା କରି ଚାଲୁଥିଲେ । ପଛରୁ ଜଣେ କନଷ୍ଟବଲ୍ ଆସୁଥିଲେ । ସନ୍ଧ୍ୟାବେଳେ, ବୃଷ୍ଟିବର୍ଷା ନଥିବା ସମୟରେ ଛତା ଖୋଲି ଚାଲିଥିବା ଲୋକକୁ ଦେଖି ତାଙ୍କର କୌତୁହଳ ଜନ୍ମିଲା ଏବଂ ଭାବିଲେ ସେ ନିଶ୍ଚୟ ଜଣେ ବୋକା ହୋଇଥିବ । ସେପଛରୁ ଆସି ରାଧାନାଥଙ୍କ ଛତା ଉପରେ ତା ହାତରେ ଥିବା ପୁଲିସ୍ ବାଡ଼ିରେ ପାହାରେ ପକେଇଲେ । ରାଧାନାଥ ବାବୁ ପଛକୁ ଚାହିଁବାରୁ କନଷ୍ଟବଲ୍ ତାଙ୍କୁ ଚିହ୍ନି ପାରି କ୍ଷମା ମାଗିଲେ । ରାଧାନାଥ କନଷ୍ଟବଲଙ୍କୁ ଆଶ୍ୱାସନା ଦେଇ କହିଲେ, "ତୁମର ଏଥିରେ କି ଦୋଷ ? ଏ ଦୋଷ ତୁମ୍ଭର ଡିପାର୍ଟମେଣ୍ଟର ।"

କଟକର ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ଯାନଝିଅଙ୍କ ବିବାହ ଉପଲକ୍ଷେ ତାଙ୍କ ଘରେ ଭୋଜିକୁ ରାଧାନାଥ ବାବୁ ଓ ତାଙ୍କ ପୁଅ ଶଶିଭୂଷଣଙ୍କୁ ନିମନ୍ତ୍ରଣ ହୋଇଥିଲା । ଦୁହେଁ କିଛି ଯାନବାହନରେ ନଯାଇ ଚାଲି ଚାଲି ବନ୍ଧୁଙ୍କ ଦ୍ୱାରେ ପହଞ୍ଚିଲେ । ବନ୍ଧୁଙ୍କ ଦ୍ୱାର ପାଖରେ ଜଣେ ବନ୍ଧୁକଧାରୀ ପୁଲିସ୍ ପହରା ଦେଉଥିଲେ । ଏ ଦୁହିଁଙ୍କ ସାଧାସିଧା ପୋଷାକ ଓ ଯାନ ନଥିବା ଦେଖି ପୁଲିସ୍ ରାଧାନାଥ ବାବୁଙ୍କୁ କହିଲେ, "କାର୍ଡ଼ ଲାଏହ ?" ରାଧାନାଥ ଏକଥା ପୁଣି ବଡ଼ ବିବ୍ରତ ହୋଇ ପଡ଼ିଲେ । କ'ଣ ବା କହିବେ ? ଯେଉଁମାନେ ଗାଡ଼ିରେ ଆସିଥିଲେ, ସେମାନଙ୍କୁ ପ୍ରହରୀ କିଛି ନପଚାରି ଭିତରକୁ ଛାଡ଼ିଦେଉଥିଲେ । ସେ ପୁଲିସ୍‌ଙ୍କୁ ଟିକିଏ କଡ଼ା କରି ଶୁଣେଇଲେ, "କାର୍ଡ଼ ଲାନେକା ବାସ୍ତେ କାର୍ଡ଼ମେ କୁଛ ଲିଖା ନହିଁଥା ।" (କାର୍ଡ଼ ଆଣିବା ପାଇଁ କାର୍ଡରେ କିଛି ଲେଖା ନଥିଲା ।) ପୁଲିସ ବା ଏତେ ଉଚ୍ଚ ସ୍ତରର ଜବାବ କଣ ବୁଝିବେ ? ଆଉ କାଳବିଳମ୍ବ ନକରି ରାଧାନାଥ ବାବୁ ଓ ଶଶିବାବୁ ଘରକୁ ଫେରି ଆସିବା ପାଇଁ ବାହାରିଲେ ।

ଏତିକିବେଳେ ଘର ଭିତରେ ଥିବା ଜଣେ ସରକାରୀ କର୍ମଚାରୀଙ୍କର ଦୃଷ୍ଟି ରାଧାନାଥ ବାବୁଙ୍କ ଉପରେ ପଡ଼ିଲା । ସେ ଦୌଡ଼ି ଆସି ପହରିବାଲାଙ୍କୁ ପେଲିଦେଇ ବାପପୁଅଙ୍କୁ ଭିତରକୁ ନିମନ୍ତ୍ରଣ କଲେ । କିନ୍ତୁ ଏ ଦୁହେଁ ରାଜି ନହୋଇ ଘରକୁ ଫେରି ଆସିଲେ । ଏ ଖବର ପାଇବା ମାତ୍ରେ ସମ୍ଭ୍ରାନ୍ତ ବ୍ୟକ୍ତି ସ୍ୱୟଂ ତାଙ୍କ ଘରକୁ ଆସି କ୍ଷମା ମାଗିଲେ ଏବଂ ପୁନର୍ବାର ଯିବାପାଇଁ ବହୁ ଅନୁରୋଧ କଲେ । କିନ୍ତୁ ରାଧାନାଥ ଏଥିରେ ରାଜି ନହୋଇ କହିଲେ, "ଆଉଦିନେ ଯିବି । ଆଜି ନୁହେଁ । ସାମାଜିକ ନିମନ୍ତ୍ରଣରେ ଦ୍ୱାରଠାରେ ସଶସ୍ତ୍ର ପହରି ସହିତ ନିମନ୍ତ୍ରିତ ଲୋକଙ୍କୁ ଅପମାନ ଦେବା ଠିକ୍ ନୁହେଁ ।"

୧୫ । ରାଧାନାଥ ନିଜେ ଗୁଣୀ ଥିଲେ । ନିଜେ ବିଦ୍ୱାନ ଥିବାରୁ ଗଭୀର ପାଣ୍ଡିତ୍ୟଜନିତ ବିନୟ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ଥିଲା । ବିଦ୍ୟା, ସଦ୍‌ଗୁଣ, ବିନୟ ଏସବୁ ଏକତ୍ର ଥିବାରୁ ଗୁଣଗ୍ରାହକତା ସେଠାରେ ଦେଖାଯିବା ସ୍ୱାଭାବିକ । କୌଣସି ଲୋକର ଗୁଣ ଦେଖିଲେ ପଦ ବିଚାର ନକରି ରାଧାନାଥ ଗୁଣୀକୁ ଆଦର କରୁଥିଲେ । ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ବହୁ ଗୁଣୀ ଶିକ୍ଷକ ଓ ଅବଧାନଙ୍କୁ ସେ ଅତି ଆଦର କରି ଉପଯୁକ୍ତ ସମ୍ମାନ ଓ ଉତ୍ସାହ ପ୍ରଦାନ କରୁଥିଲେ । ନିର୍ଧନ ଲେଖକ ତାଙ୍କ ପାଖରେ ପହଞ୍ଚିଲେ ତାଙ୍କୁ ସବୁପ୍ରକାର ଉତ୍ସାହ ଦେଉଥିଲେ, କାବ୍ୟ-କବିତାଦି ସଂଶୋଧନ କରିଦେବାଠାରୁ ଆରମ୍ଭ କରି ପ୍ରକାଶ କରିବା ପର୍ଯ୍ୟନ୍ତ ସାହାଯ୍ୟ କରୁଥିଲେ । ଓଡ଼ିଶାର ବହୁ ରାଜା-ମହାରାଜା ଓ ଧନାଢ୍ୟ ବ୍ୟକ୍ତିଙ୍କ ସହିତ ତାଙ୍କର ସୌହାର୍ଦ୍ଦ୍ୟ ଥିବାରୁ ପୃଷ୍ଠପୋଷକ ସଂଗ୍ରହ କରିବାରେ ତାଙ୍କୁ ବେଶି କଷ୍ଟ ହେଉନଥିଲା ।

---

# ଷୋଡଶ ପରିଚ୍ଛେଦ

## ରାଧାନାଥଙ୍କ ମାନବିକତା

**ନବଯୁଗ ପ୍ରବର୍ତ୍ତକ କବି** :—ରାଧାନାଥ ଓଡ଼ିଶାର ନବଯୁଗ ପ୍ରବର୍ତ୍ତକ କବି । ଉତ୍କଳୀୟମାନଙ୍କୁ ସବୁ କ୍ଷେତ୍ରରେ ଅଗ୍ରସର ହେବା ପାଇଁ ସେ ତାଙ୍କ କୃତିମାନଙ୍କରେ ଉଦ୍‌ବୋଧନ ଦେଇଛନ୍ତି । ସେ ହୃତଗୌରବ ମୃତପ୍ରାୟ ଜାତିକୁ ପ୍ରାଚୀନଗୌରବ କାହାଣୀ ସ୍ମରଣ କରାଇ ଦେଇ ତାର ପିଣ୍ଡରେ ନୂତନ ଜୀବନ ସଞ୍ଚାର କରିଛନ୍ତି ଏବଂ ନବତେଜରେ ଉନ୍ନତି ପଥର ପଥିକ ହେବା ପାଇଁ ପ୍ରେରଣା ଦେଇଛନ୍ତି ।

**ଜାତୀୟ ଜୀବନର ବିକାଶ ସଙ୍କଳ୍ପ ନୈରାଶ୍ୟ** :—କାଳର କୁଟିଳଗତି ତାଙ୍କ ଅଦମ୍ୟ ଉତ୍ସାହ ଓ ଉଜ୍ଜ୍ୱଳକୀର୍ତ୍ତିରାଜିନିର୍ମାଣ ପଥରେ ବ୍ୟାଘାତ ଘଟାଉଥିବାରୁ ସେ ଦୁଃଖରେ ଜର୍ଜରିତ ହୋଇ-ଯାଉଥିଲେ । ଜାତୀୟ ଜୀବନର ବିକାଶ କଳ୍ପେ ସେ ଜୀବନ ଉତ୍ସର୍ଗ କରିବା ପାଇଁ ସଙ୍କଳ୍ପ କରିଥିଲେ, କିନ୍ତୁ ତାଙ୍କର ଏହି ସଙ୍କଳ୍ପ ଜୀବନ-ମାର୍ଗରେ ନିର୍ବିଘ୍ନ ଗତି କରିପାରିନାହିଁ । ସମଗ୍ର ଜୀବନ ଅବିରାମ ସାହିତ୍ୟ-ସେବାରେ ନିର୍ବାହ କରିବା ସଙ୍କଳ୍ପ କେତେକାଂଶ ପୂର୍ଣ୍ଣ ହୋଇଥିଲେ ମଧ୍ୟ ତାଙ୍କର ଅଦମ୍ୟ ପିପାସା ତାଙ୍କୁ ମନରେ ପୂର୍ଣ୍ଣତାର ଶାନ୍ତି ଦେଉନଥିଲା । ସେ ସବୁବେଳେ ଅନୁଭବ କରୁଥିଲେ ଯେ ସେ, ନିଜେ ଯାହା କରିଛନ୍ତି ଓ କରୁଛନ୍ତି ତାହା ଯଥେଷ୍ଟ ନୁହେଁ, ଲକ୍ଷ୍ୟ ଅପୂର୍ଣ୍ଣ ରହୁଛି । ଏହି ନୈରାଶ୍ୟ ତାଙ୍କର ଅଦମ୍ୟ ଉତ୍ସାହର ଫଳ ବ୍ୟତୀତ ଅନ୍ୟ କିଛି ନୁହେଁ, ତାହା ଛଦ୍ମମାତ୍ର, ପ୍ରକୃତ ନୈରାଶ୍ୟ ନୁହେଁ ।

ଅଧ୍ୟୟନ : ଆଲୋଚନା:—ସେ ଅବିରାମ ଅଧ୍ୟୟନ କରୁଥିଲେ । ଇଂରେଜୀ, ଓଡ଼ିଆ, ବଙ୍ଗଳା, ହିନ୍ଦି, ସଂସ୍କୃତ ଭାଷାର ବହୁ ନୂତନ ଓ ପ୍ରାଚୀନ ଗ୍ରନ୍ଥ ପାଠ କରିଥିଲେ । ଉତ୍କୃଷ୍ଟ ଗ୍ରନ୍ଥମାନଙ୍କରୁ ସମୁଚିତ ସାରଗର୍ଭକ ଭାବ, ବାଣୀ ଗ୍ରହଣ କରିବାରେ ସେ ସଦା ତତ୍ପର ଥିଲେ । ଓଡ଼ିଶାର ପ୍ରାଚୀନ କବି ସାରଳାଦାସ, ଜଗନ୍ନାଥଦାସ, ବଳରାମଦାସ, ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣଦାସ ପ୍ରଭୃତିଙ୍କ କାବ୍ୟ କବିତା ପାଠକରି ଆନନ୍ଦ ଲାଭ କରୁଥିଲେ ଏବଂ ସଦ୍‌ଜନ ଗୋଷ୍ଠିରେ ବେଳେ ବେଳେ ଆଲୋଚନା କରି ସୁଖ ଓ ଶାନ୍ତି ପାଉଥିଲେ ।

କବି ଓ କବିତା ପ୍ରତି ଆଦର :—ନବ୍ୟଯୁଗର ବହୁ କବି ଓ ଲେଖକଙ୍କର କୃତି ପାଠ କରିବାରେ ସେ ସବୁବେଳେ ତତ୍ପର ଥିଲେ । ' ଉତ୍କଳ ସାହିତ୍ୟ'' (ମାସିକ ପତ୍ର) ୧୨ଶ ଭାଗରେ ସମ୍ପାଦକ ସାହିତ୍ୟିକ ବିଶ୍ୱନାଥ କର କହିଛନ୍ତି—"ଆଧୁନିକ ଉତ୍କଳ ଅତି ନଗଣ୍ୟ କୌଣସି ଲେଖକର ଅତି ସାମାନ୍ୟ ଖଣ୍ଡିଏ ପୁସ୍ତକ ବା ଗୋଟିଏ ସାମାନ୍ୟ ରଚନା ବାହାରିବା ମାତ୍ରେ ତାହା ସେ ପାଠ ନକରି ରହିପାରୁ ନଥିଲେ । ପୁଣି ନିକଟସ୍ଥ ସାହିତ୍ୟ ବନ୍ଧୁମାନଙ୍କ ସହିତ ସେ ସବୁ ବିଷୟ ଆଲୋଚନା ନକରିବା ପର୍ଯ୍ୟନ୍ତ ସୁସ୍ଥିର ହୋଇ ପାରୁ ନଥିଲେ । କୌଣସିଠାରେ କାହାରି ଉଲ୍ଲେଖ-ଯୋଗ୍ୟ ରଚନା ଦୃଷ୍ଟିରେ ପଡ଼ିଲା ମାତ୍ରକେ ଲେଖକ ସମ୍ବନ୍ଧରେ ସମସ୍ତ ବିଷୟ ଜାଣିବା ପାଇଁ ଆଗ୍ରହାନ୍ୱିତ ହେଉଥିଲେ ଏବଂ ସୁଯୋଗ ପାଇଲେ ସ୍ୱୟଂ ତାହାର ଦ୍ୱାରସ୍ଥ ହୋଇ ଉତ୍ସାହିତ କରୁଥିଲେ । ଉତ୍କଳରେ ଜଣେ ସୁକବି ବା ସୁଲେଖକର ଆବିର୍ଭାବ ଦେଖିଲେ ତାଙ୍କର ଆନନ୍ଦର ସୀମା ରହେନାହିଁ—ଯେଉଁଠାକୁ ଯିବେ ସେଠାରେ ତାହାର ଗୁଣ ଗାଇବେ, ତାହାର ରଚନାର ପ୍ରଶଂସା କରିବେ ।"

ଏଥିରେ ଅତ୍ୟୁକ୍ତି କିଛି ନଥିଲା । ସମସାମୟିକ ଜଣେ ସାଧକ ଓ ବନ୍ଧୁଙ୍କ ମତ ବାସ୍ତବ ଘଟଣା ଉପରେ ପ୍ରତିଷ୍ଠିତ ।

ଆଜୀବନ ସାହିତ୍ୟପ୍ରେମୀ, ସାହିତ୍ୟସାଧକ ଓ ସାହିତ୍ୟ-ଉପାସକ ରାଧାନାଥଙ୍କ ସହୃଦୟତାହିଁ ଏହି ମଧୁର ବ୍ୟବହାରର କାରଣ । ସାହିତ୍ୟ-ସାଧକ ତାଙ୍କର ପରମ ବନ୍ଧୁ, ତାଙ୍କୁ ସେ ସର୍ବଦାବେଳେ ପ୍ରୀତି ଚକ୍ଷୁରେ ଦେଖୁଥିଲେ । ସାହିତ୍ୟ ରସିକଙ୍କ ସହିତ ଆଲୋଚନା ତାଙ୍କୁ ପରମ ଶାନ୍ତି ଦେଉଥିଲା । ଆଲୋଚନା-ବେଳେ ସଂସାରର ଯାବତୀୟ ଜଞ୍ଜାଳକୁ ଭୁଲି ଯାଉଥିଲେ, ନିଜକୁ ମଧ ଭୁଲି ଯାଉଥିଲେ । ସାହିତ୍ୟ ଆଲୋଚନା ଓ ଜ୍ଞାନାନୁଶୀଳନରେ ତାଙ୍କର ପ୍ରଗାଢ଼ ଅନୁରାଗ ଓ ତନ୍ମୟତା ତାଙ୍କ ଜୀବନର ଏକ ପ୍ରଧାନ ଅଙ୍ଗ ଥିଲା ।

ନବଶିକ୍ଷା ପ୍ରଚାର :—ଓଡ଼ିଶାର ଶିକ୍ଷା ରାଧାନାଥଙ୍କଠାରେ ବିଶେଷ ଭାବରେ ଋଣୀ । "ଓଡ଼ିଶାରେ ଏ ମହାତ୍ମାଙ୍କର ଶିକ୍ଷାବିଭାଗୀୟ ଉଚ୍ଚ-ତମ ପଦଲାଭ କରିବା ସମୟରୁ ଉତ୍କଳରେ ଶିକ୍ଷାର ନୂତନ ସୃଷ୍ଟି ହୋଇଅଛି । ପଲ୍ଲୀଗ୍ରାମରେ ସୁଦ୍ଧା ଶିକ୍ଷାର ପ୍ରଚାର ହୋଇଅଛି । ପୁରୀ ଜିଲ୍ଲାର ବ୍ରାହ୍ମଣ ସମ୍ପ୍ରଦାୟ ଇଂରେଜ ରାଜତ୍ୱର ଆରମ୍ଭ ସମୟରୁ ବିଦେଶୀୟ ବିଦ୍ୟାଧ୍ୟୟନ ପ୍ରତି ଘୃଣା ପ୍ରକାଶ କରି ଓଡ଼ିଶାବାସୀ ଅନ୍ୟସମସ୍ତ ଜାତି ଅପେକ୍ଷା ପ୍ରାୟ ନିମ୍ନତର ସୋପାନରେ ଅବସ୍ଥାନ କରୁଥିଲେ । ଶିକ୍ଷା ଅଭାବରୁ ଏମାନେ ଅତ୍ୟନ୍ତ ଦୁରବସ୍ଥା ଥିବା ଦେଖି ଏ ମହାତ୍ମା ପ୍ରତ୍ୟେକ ଶାସନରେ ଉପସ୍ଥିତ ହୋଇ ସଦୁପଦେଶ ପ୍ରଦାନ ପୁରଃସର ବ୍ରାହ୍ମଣ ବାଳକମାନଙ୍କୁ ବିଦେଶୀୟ ଶିକ୍ଷାପ୍ରତି ଉନ୍ମୁଖ କରାଇଥିଲେ ଏବଂ ସମସ୍ତ ଶାସନରେ ବିଦ୍ୟାଳୟମାନ ସ୍ଥାପନ କରିଥିଲେ । ସେଥି ଯୋଗୁଁ ଆଜି ବ୍ରାହ୍ମଣତନୟମାନେ ବିଶ୍ୱବିଦ୍ୟାଳୟର ଉଚ୍ଚଉପାଧି ଧାରଣ କରି-

ଅଛନ୍ତି । ଏହା କି କମ୍ ଉଦାରତା ଏବଂ ସମଦର୍ଶିତାର କାର୍ଯ୍ୟ ? (ଉ. ସା. ୧୨ଶ ୪ର୍ଥ । ସଂ । ମ: ମ: ସଦାଶିବ ମିଶ୍ର କାବ୍ୟକଣ୍ଠ) । ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ବ୍ରାହ୍ମଣପଣ୍ଡିତମାନଙ୍କ ମଧ୍ୟରୁ କେହି କେହି ଏ ଦିଗରେ ଉଦ୍ୟମ କରୁଥିଲେ । କିନ୍ତୁ ରାଧାନାଥ ପରିକଳ୍ପିତ ନିରବଚ୍ଛିନ୍ନ ଉଦ୍ୟମ କରି ଶିକ୍ଷାର ଗତିକୁ ତ୍ୱରାନ୍ୱିତ କରି ପାରିଥିଲେ ।

ଶିକ୍ଷକ :—ରାଧାନାଥ ଛାତ୍ରମାନଙ୍କୁ ପୁତ୍ର ଅପେକ୍ଷା ଅଧିକ ସ୍ନେହ କରୁଥିଲେ । ପୁରୀ ଜିଲ୍ଲା ସ୍କୁଲରେ ସେ ପ୍ରଥମେ ଦ୍ୱିତୀୟ ଶିକ୍ଷକ ରୂପେ କାର୍ଯ୍ୟ କରୁଥିବା ସମୟଠାରୁ ଛାତ୍ର ଓ ଶିକ୍ଷକ ସମ୍ପ୍ରଦାୟର ସମ୍ମାନର ପାତ୍ର ହୋଇପାରି ଥିଲେ । ତାଙ୍କର ଅମାୟିକ ବ୍ୟବହାର, ମାର୍ଜିତ ରୁଚି, ଉନ୍ନତ ଶିକ୍ଷା, ଉନ୍ନତ ଚରିତ୍ର ଏହାର କାରଣ । ତାଙ୍କର ଶିକ୍ଷାଦାନ ପଦ୍ଧତି ସମସ୍ତଙ୍କର ପ୍ରଶଂସା ଅର୍ଜ୍ଜନ କରିପାରିଥିଲା । ତାଙ୍କଠାରୁ ବହୁ ଉଚ୍ଚଶିକ୍ଷିତ ବିଶ୍ୱବିଦ୍ୟାଳୟ ଡିଗ୍ରିଧାରୀ ଶିକ୍ଷକମାନଙ୍କ ପଠନଶୈଳୀ ଅପେକ୍ଷା ଉତ୍କୃଷ୍ଟ ଥିବା ଦେଖା ଯାଉଥିଲା । ଛାତ୍ରମାନେ ତାଙ୍କଠାରୁ ବହୁ ସଦୁପଦେଶ ପାଉଥିଲେ । ଜଣେ ସମସାମୟିକ ଶିକ୍ଷକ ତଥା ବିଜ୍ଞ ପଣ୍ଡିତ ଲେଖିଛନ୍ତି, "ତାହାଙ୍କ ପଠନରେ ଏହି ବିଶେଷତ୍ୱ ଥିଲା ଯେ, ଯାହା ଯାହା ଶ୍ରେଣୀରେ ପଢ଼ାଇ ଥାଆନ୍ତି, ସେ ସମସ୍ତ ହୃଦ୍‌ଗତ କରାଇବା ନିମିତ୍ତ ପ୍ରାତଃ ସନ୍ଧ୍ୟା ଭ୍ରମଣ କାଳରେ ଛାତ୍ରବୃନ୍ଦଙ୍କୁ ସାଙ୍ଗରେ ନେଇ ପ୍ରାକୃତିକ କାର୍ଯ୍ୟମାନଙ୍କର ପଠିତ ବିଷୟକୁ ମିଳାଇ ଚିତ୍ରପଟରେ ଚିହ୍ନିତ କରି ଦେଉଥାନ୍ତି । ଏ ରୀତିରେ ସ୍ଥୂଳବୁଦ୍ଧି ଛାତ୍ରମାନେ ମଧ୍ୟ କଠିନ ବିଷୟକୁ ସହଜରେ ଆୟତ୍ତ କରିପାରୁଥିଲେ ।" (ଉତ୍କଳ ସାହିତ୍ୟ, ୧୨ଶ ଭା. ୪ର୍ଥ ସଂଖ୍ୟା; "ସ୍ୱର୍ଗୀୟ କବିବର ରାଧାନାଥ । ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ, ପୁରୀ) ।

ପ୍ରକୃତି ଉପାସକ:—ଉତ୍କଳର ପ୍ରାକୃତିକ ଶୋଭା ରାଧାନାଥଙ୍କୁ ମୁଗ୍ଧ କରି ଦେଉଥିଲା । ପ୍ରକୃତିର ସୌନ୍ଦର୍ଯ୍ୟ ସାଗରରେ ସେ ନିମଗ୍ନ ହୋଇଯାଉଥିଲେ । ପ୍ରାକୃତିକ ସୌନ୍ଦର୍ଯ୍ୟର ଅଧିକାଂଶ ସ୍ଥଳଗୁଡ଼ିକୁ ଦର୍ଶନ କରିବା ନିମନ୍ତେ ସେ ଅତି ବ୍ୟଗ୍ର ହେଉଥିଲେ । ଶାରୀରିକ ଅସୁସ୍ଥତାକୁ ତାଙ୍କର ପ୍ରତିବନ୍ଧକ ହେବା ପାଇଁ ସେ ଅନେକ ସମୟରେ ସୁଯୋଗ ଦେଉ ନଥିଲେ । ଅସୁସ୍ଥ ଅବସ୍ଥାରେ ମଧ୍ୟ ଉତ୍କଳର ବହୁ ଦର୍ଶନୀୟ ସ୍ଥାନ ଭ୍ରମଣକରି ସେ ଆନନ୍ଦ ଉପଭୋଗ କରୁଥିଲେ । ସେ ପ୍ରକୃତିର ଶୋଭାରେ ଏତେ ତନ୍ମୟ ହୋଇ ଯାଉଥିଲେ ଯେ ସମସ୍ତ ବାଧାବିଘ୍ନ ନିମାନ ବହୁ କଷ୍ଟ ସହ୍ୟ କରି ଦୁର୍ଗମ ପଥରେ ବହୁ ଦୂରକୁ ଯିବାପାଇଁ ମଧ୍ୟ କୁଣ୍ଠାବୋଧ କରୁନଥିଲେ । ସେ ଜୀବନର ଶେଷାବସ୍ଥାରେ ମଧ୍ୟ ଏହି ପ୍ରାକୃତିକ ସୌନ୍ଦର୍ଯ୍ୟ-ଦର୍ଶନ ପିପାସାର ବଶବର୍ତ୍ତୀ ହୋଇ ମୃତ୍ୟୁର ଅଳ୍ପ କେତେଦିନ ପୂର୍ବରୁ ସୁଦ୍ଧା ପାର୍ବତ୍ୟ ଅଞ୍ଚଳକୁ ଯିବାପାଇଁ ପଶ୍ଚାତ୍‌ପଦ ହୋଇନଥିଲେ । ଏହାଦ୍ୱାରା ତାଙ୍କର ମୃତ୍ୟୁର ସମୟ ନିକଟ ହୋଇ ଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରାକୃତିକ ସୌନ୍ଦର୍ଯ୍ୟରସିକ ରାଧାନାଥ ପ୍ରକୃତିର ଶୋଭା ଦର୍ଶନ କରୁ କରୁ ମୃତ୍ୟୁ ବରଣ କରିବାକୁ ସୁଦ୍ଧା କୁଣ୍ଠାବୋଧ କରୁନଥିଲେ ।

ବହୁଦିନ ଭ୍ରମି ଭ୍ରମି ଅବିରତେ, ଦେଖିଲିଇ ନାନା ସ୍ଥାନ ଭୂଭାରତେ ।
କି ଉତ୍ତରଖଣ୍ଡେ କି ଦକ୍ଷିଣାପଥ, ଭ୍ରମିଲି ମୁଁ ଭାଗ୍ୟବଶେ ଚକ୍ରବତ
ଇତ୍ୟାଦି ।

ସତ୍ୟପ୍ରତି ଶ୍ରଦ୍ଧା:—ସତ୍ୟପ୍ରିୟତା ତାଙ୍କର ଏକ ବିଶିଷ୍ଟ ଗୁଣ । ସେ ସତ୍ୟ ପ୍ରକାଶ କରିବାପାଇଁ କୁଣ୍ଠାବୋଧ କରୁନଥିଲେ । ଏହାର ପ୍ରଭାବ ତାଙ୍କର ଜୀବନରେ ଯେପରି ପ୍ରତିଫଳିତ ହୋଇଥିଲା,

ଲେଖାରେ ମଧ୍ୟ ସେପରି ପ୍ରକାଶ ପାଇଥିଲା । ଏହି କାରଣରୁ ତାଙ୍କର ରଚନା ବହୁ ଅଂଶରେ ପ୍ରତ୍ୟକ୍ଷବାଦ ଉପରେ ପ୍ରତିଷ୍ଠିତ ଥିଲା । ଆଂଶିକ ସତ୍ୟକୁ ସେ ସତ୍ୟ ରୂପେ ଗ୍ରହଣ କରିଥିବା ସ୍ପଷ୍ଟ । କବି ପକ୍ଷେ ଏହା ମାର୍ଜନୀୟ ହେଲେ ମଧ୍ୟ ସୀମାଲଙ୍ଘନରେ ଦୋଷ ବୋଲି ପ୍ରତିପାଦିତ ହୁଏ ।

ସେ ସାହିତ୍ୟ ମାଧ୍ୟମରେ ସୁନୀତି ଓ ସୁରୁଚିର ପ୍ରତିଷ୍ଠା ଦୃଢ଼ କରିବା ପାଇଁ ଚେଷ୍ଟା କରିଛନ୍ତି । ସ୍ଥଳ ବିଶେଷରେ ଅତିଶୟୋକ୍ତି ଦ୍ୱାରା "ସବୁ ପଥର ହୀରା ନୁହେଁ" ଏହି ନୀତିକୁ ସେ କେତେକାଂଶରେ ଲଙ୍ଘନ ମଧ୍ୟ କରିଛନ୍ତି ।

ବିନୟ :—ରାଧାନାଥଙ୍କ ଜୀବନରେ "ବିଦ୍ୟା ଦଦାତି ବିନୟଂ" ନୀତି ପୂର୍ଣ୍ଣ ରୂପରେ ପ୍ରକାଶିତ ହୋଇଥିଲା । ଶିକ୍ଷାଳୟର ଶିକ୍ଷା କେବଳ ଯଥେଷ୍ଟ ନୁହେଁ । ସଂସାର, ଲୋକସମାଜ ଓ ନିଜକୁ ଚିହ୍ନିବା ପାଇଁ ଯେଉଁ ପ୍ରକୃତ ଜ୍ଞାନର ଆବଶ୍ୟକ ହୁଏ ତାହାହିଁ ପ୍ରକୃତ ବିଦ୍ୟା । ଜଡ଼ତା, ମୂର୍ଖତାଦି ଅବିଦ୍ୟାନାମରେ ପରିଚିତ । ବିଦ୍ୟାଳୟର ଶିକ୍ଷା ସହିତ ଆତ୍ମିକଜ୍ଞାନର ସଂମିଶ୍ରଣ ତାଙ୍କର ଚିତ୍ତକୁ ନିର୍ମଳ କରିବାରେ ବହୁ ସାହାଯ୍ୟ କରିଥିଲା । ଏହି କାରଣରୁ ସେ ନିଜର ଦୋଷଦୁର୍ବଳତାକୁ ସାଧାରଣରେ ପ୍ରକାଶ କରିବା ପାଇଁ ମଧ୍ୟ ପଶ୍ଚାତ୍‌ପଦ ହେଉନଥିଲେ । ବିଦ୍ୟାଜନିତ ବିନୟ ତାଙ୍କ ଚରିତ୍ରର ଏକ ଅମୂଲ୍ୟ ରତ୍ନ; ଏହି ବିନୟ କପଟୀର ବିନୟ ନୁହେଁ, ଆନ୍ତରିକତାର ବିନୟ ।

ସଜ୍ଜନପ୍ରୀତି—"ସଜ୍ଜନ ପ୍ରତି କର୍ତ୍ତବ୍ୟ ପାଳନରେ ମଧ୍ୟ ରାଧାନାଥ ଉଚ୍ଚ ଆଦର୍ଶ ଦେଖାଇଛନ୍ତି । ଏହି କର୍ତ୍ତବ୍ୟ ପାଳନରେ ତାହାଙ୍କର ଅସାଧାରଣ ସହିଷ୍ଣୁତା ଦେଖାଯାଇଅଛି ।" (ଚନ୍ଦ୍ରମୋହନ ମହାରଣା) ।

ଆଶ୍ରିତବତ୍ସଳତା—"ସେ ଆଶ୍ରିତବତ୍ସଳ ଥିଲେ । ଅଧୀନ ବା ଆଶ୍ରିତଜନର ଦୋଷ ଉପେକ୍ଷା କରିବା ତାହାଙ୍କର ଗୋଟିଏ ଅସାଧାରଣ ଗୁଣ ଥିଲା । ମାନବପ୍ରକୃତି ଅସମ୍ପୂର୍ଣ୍ଣ ଓ ଦୁର୍ବଳ, ଏହା ସେ ଉତ୍ତମରୂପେ ହୃଦୟଙ୍ଗମ କରିଥିଲେ ; ତେଣୁ ପରଦୋଷ-ଦର୍ଶିତା ଇତରବୃତ୍ତି ତାଙ୍କ ମନରେ ସ୍ଥାନ ପାଇ ନଥିଲା । ଏଥିପାଇଁ ଆଶ୍ରିତ ଲୋକେ ସର୍ବଦା ତାହାଙ୍କର ମଙ୍ଗଳକାମନା କରୁଥିଲେ ।" (ଚ: ମହାରଣା)

## ଉଦାର ଧର୍ମଭାବ—

ରାଧାନାଥଙ୍କ "ବୈରାଗ୍ୟ" ଧର୍ମରାଜ୍ୟରେ ସାମ୍ପ୍ରଦାୟିକ ଭାବ ନଥିବା ସୂଚାଉଥିଲେ ମଧ୍ୟ କେହି କେହି ଏ ସମ୍ବନ୍ଧରେ ନିଃସନ୍ଦେହ ହୋଇ ପାରୁ ନଥିଲେ । ବିଶେଷତଃ "ଦରବାର" ପାଠକମାନଙ୍କ ମନରେ ଏହିଭାବ ବେଳେ ବେଳେ ଜାଗ୍ରତ ହେଉଥିଲା । ଏହି ସନ୍ଦେହର ନିରାକରଣ ଜଣେ ସମସାମୟିକ ବିଖ୍ୟାତ ପଣ୍ଡିତଙ୍କ ମନ୍ତବ୍ୟରୁ ସୂଚିତ ହେଉଛି । ସେ ଲେଖିଛନ୍ତି—

"ଏ ମହାଶୟ ଏପରି ଉଚ୍ଚପଦସ୍ଥ ଏବଂ ଉପାଧିବିଶିଷ୍ଟ ହେଲେହେଁ ସେଥିପ୍ରତି ଆଦୌ ଆସ୍ଥା ପ୍ରକାଶ କରୁ ନ ଥିଲେ । ସାଂସାରିକ ସକଳ କାର୍ଯ୍ୟର ଅନିତ୍ୟତା ଦୃଷ୍ଟିରେ ଲତପ୍ରତ ତାହାଙ୍କ ହୃଦୟରେ ସଦା ବୈରାଗ୍ୟ ଜାଗରୁକ ଥିଲା । ଏହାଙ୍କ "ଦରବାର" ନାମକ କାବ୍ୟ ଯେଉଁମାନେ ପାଠ କରିଥିବେ ସେମାନେ ଉପର୍ଯ୍ୟୁକ୍ତ ବିଷୟ ସତ୍ୟମୂଳକ କି ନା ତାହା ଅନାୟାସରେ ବୁଝିପାରୁଥିବେ । ଆମ୍ଭେମାନେ ସର୍ବଦା ଏହି ମହାଶୟଙ୍କଠାରେ ଏ ବିଷୟରେ ଭୂରି ଭୂରି ଉଦାହରଣ ପ୍ରତ୍ୟକ୍ଷ କରିଅଛୁଁ ।

"ବିଦ୍ୟା ବିବାଦାୟ ଧନଂ ମଦାୟ,
ଶକ୍ତିଃପରେଷାଂ ପରିପୀଡ଼ନାୟ ।
ଖଳସ୍ୟ ସାଧୌର୍ବିପରୀତମେତତ୍,
ଜ୍ଞାନାୟ ଦାନାୟ ଚ ରକ୍ଷଣାୟ ।

ଏହି ପଦ୍ୟଟିର ଅଭିପ୍ରାୟ ଅନୁସାରେ ଏ ମହାଶୟଙ୍କ ବିଦ୍ୟାଧ୍ୟୟନ ବିବାଦ ନିମିତ୍ତ ନ ଥିଲା, କେବଳ ଜ୍ଞାନୋପାର୍ଜନ ନିମିତ୍ତ ଥିଲା । ଏ ହେତୁ ମନୋରାଜ୍ୟରେ ଧର୍ମଭାବ ସତତ ବିଦ୍ୟମାନ ଥିଲା । ଆଦିତଃ ଭକ୍ତିଭାବ ସାମ୍ପ୍ରଦାୟିକ ଚିହ୍ନଦ୍ୱାରା ବହିର୍ଭାଗରେ ପ୍ରକାଶିତ ହେଉଥିଲା । କ୍ରମଶଃ ଜ୍ଞାନବୃଦ୍ଧିସହ ସାମ୍ପ୍ରଦାୟିକଭାବ ତିରୋହିତ ହୋଇ ନିଗୂଢ଼ ଭାବରେ ମନୋରାଜ୍ୟରେ ଉକ୍ତ ଭାବ ପୂର୍ଣ୍ଣରୂପେ ଅଧିକାର ସ୍ଥାପନ କରିଥିଲା; କିନ୍ତୁ ବହିଃ ପ୍ରଦେଶରେ ସେ ଭାବ ବୁଝିବାକୁ କୌଣସି ଉପାଦାନ ନଥିବାରୁ ନାନା ବ୍ୟକ୍ତି ତାଙ୍କ ସମ୍ବନ୍ଧରେ ନାନା ପ୍ରକାର ଅନୁମାନ କରୁଥିଲେ । ମାତ୍ର ହିନ୍ଦୁଧର୍ମ ପ୍ରତି ତାଙ୍କର କି ପ୍ରକାର ଦୃଢ଼ ବିଶ୍ୱାସ ଥିଲା ତାହା ଅନ୍ତରଙ୍ଗ ବ୍ୟକ୍ତିମାନଙ୍କ ଭିନ୍ନ ଅନ୍ୟମାନଙ୍କ ଜାଣିବା ପକ୍ଷରେ ଦୁରୂହ ହୋଇଥିଲା ।" (ମ: ମ: ସଦାଶିବ କାବ୍ୟକଣ୍ଠ: ଉ· ସା: ୧୨ଭାଗ ୪ର୍ଥ ସଂଖ୍ୟା )

## କାର୍ଯ୍ୟରେ କୃତିତ୍ୱ—

"କାର୍ଯ୍ୟକ୍ଷେତ୍ରରେ ମନୁଷ୍ୟର ପରୀକ୍ଷା ହୁଏ । ରାଜକାର୍ଯ୍ୟ ଓ ସଂସାର କାର୍ଯ୍ୟରେ ରାଧାନାଥ କୃତିତ୍ୱର ପରିଚୟ ଦେଇଛନ୍ତି । ଏ ବିଷୟରେ ସେ ଓଡ଼ିଶାରେ ଜଣେ ଆଦର୍ଶ ଲୋକ ଥିଲେ । ଅନ୍ୟାନ୍ୟ ଗୁଣ ମଧ୍ୟରେ କର୍ତ୍ତବ୍ୟ – ପରାୟଣତା ରାଜ୍ୟକାର୍ଯ୍ୟରେ ତାହାଙ୍କର ଉନ୍ନତିର ମୂଳକାରଣ ଅଟେ । ସମୟର ମୂଲ୍ୟ ତାହାଙ୍କୁ ଉତ୍ତମରୂପେ

ଜଣା ଥିଲା । ତରବେଗ ତାହାଙ୍କର କର୍ତ୍ତବ୍ୟ ସମ୍ପାଦନରେ ବିଘ୍ନ ଜନ୍ମାଇ ପାରିନାହିଁ । କାର୍ଯ୍ୟକୁଶଳତାରେ ସେ ଏପରି ଅଭ୍ୟସ୍ତ ହୋଇଥିଲେ ଯେ ଆୟାସ ପ୍ରତୀୟମାନ ହେଉନଥିଲେ । କାର୍ଯ୍ୟଦକ୍ଷତା ବହର, ବିନୟ, ସୌମ୍ୟାକୃତି ଏହି ଚତୁଷ୍ଟୟଦ୍ୱାରା ସେ ଅନେକଙ୍କର ପ୍ରୀତିଭାଜନ ହୋଇ ପାରିଥିଲେ ।” (ଚନ୍ଦ୍ରମୋହନ ମହାରଣା, ଉତ୍କଳ ସାହିତ୍ୟ, ଫାଲ୍‌ଗୁନ-ଚୈତ୍ର ୧୩ ୧୫ )

ବାକ୍ୟ ଓ କାର୍ଯ୍ୟରେ ସାମଞ୍ଜସ୍ୟ — ବାକ୍ୟ ଓ କାର୍ଯ୍ୟରେ ରାଧାନାଥ ସବୁବେଳେ ସାମଞ୍ଜସ୍ୟ ରକ୍ଷା କରି ଚଳୁଥିଲେ । ଠକିବା ବା କପଟ କରିବା ମନୋଭାବ ତାଙ୍କୁ ଆଦୌ ସ୍ପର୍ଶ କରି ନଥିଲା । ଯେଉଁ କାର୍ଯ୍ୟ ତାଙ୍କ ଦ୍ୱାରା ସମ୍ଭବ ନୁହେଁ ତାହା ସେ କେବେ କରିବେ ବୋଲି ପ୍ରତିଶ୍ରୁତି ଦେଉନଥିଲେ କିମ୍ବା ବୃଥା ଆଶା ଜାଗ୍ରତ କରାଉ ନଥିଲେ ।

ପ୍ରାଚ୍ୟ ସଂସ୍କୃତି ପ୍ରୀତି — ରାଧାନାଥ ଇଂରେଜୀ ଶିକ୍ଷା ଲାଭ କରି ଉଚ୍ଚ ରାଜକର୍ମଚାରୀ ହୋଇଥିଲେ ମଧ୍ୟ ପାଶ୍ଚାତ୍ୟ ସଭ୍ୟତାର ଦୁର୍ଗୁଣ ତାଙ୍କୁ ସ୍ପର୍ଶ କରି ନଥିଲା । ପାଶ୍ଚାତ୍ୟ ରୀତିରେ ଯାହା ଜୀବନର ସର୍ବୋଦୟ କରିବାରେ ସମର୍ଥ ତାହାକୁ ସେ ଗ୍ରହଣ କରୁଥିଲେ । ସମୟାନୁବର୍ତ୍ତିତା ଏହାର ଏକ ଉଦାହରଣ । କବି ସମୟାନୁବର୍ତ୍ତିତା ପ୍ରତି ବିଶେଷ ଧ୍ୟାନ ଦେଉଥିଲେ । ଶିକ୍ଷା-ଦାନ ପଦ୍ଧତି ମଧ୍ୟ ଅନ୍ୟ ଏକ ଉଦାହରଣ । ସେ ସ୍ୱ ପ୍ରାଚୀନ ପ୍ରାଚ୍ୟ ସଭ୍ୟତାର ସଦ୍‌ଗୁଣକୁ ଗ୍ରହଣ କରିଥିଲେ ; ହୃଦୟବତ୍ତା, ନିଷ୍କପଟ ବ୍ୟବହାର, ଏଥିର ଅନ୍ତର୍ଭୁକ୍ତ ।

ଗୁଣଗ୍ରାହକତ୍ୱ — ରାଧାନାଥ ଗୁଣଗ୍ରାହକ ଥିଲେ ଓ ଆଶୁପ୍ରତ୍ୟୁତ୍ପନ୍ନ ଥିଲେ । ତାଙ୍କଠାରେ ଅତିରିକ୍ତ ଗୁଣଗ୍ରାହକତା ମଧ୍ୟ ଦେଖାଯାଉଥିଲା ଏବଂ ସେଥିପାଇଁ ସେ ବେଳେ ବେଳେ ଦୁଃଖ ଭୋଗ ମଧ୍ୟ କରୁଥିଲେ ।

"ବିଷମୟ ସଂସାରର ସ୍ୱାର୍ଥପରତା" ପ୍ରତି ତାଙ୍କର ବିଶେଷ ଦୃଷ୍ଟି ନଥିବାରୁ ସେ ଏ କ୍ଷେତ୍ରରେ ବିଶେଷ ଅଭିଜ୍ଞତା ଅର୍ଜନ କରି ପାରି ନଥିଲେ । ଫଳରେ ସଞ୍ଚୟ ମନବୃତ୍ତି ବିଶେଷଭାବରେ ତାଙ୍କୁ ସ୍ପର୍ଶ କରି ନଥିଲା । ତାଙ୍କର ସାରଲ୍ୟ ଓ ସମବେଦନା ତାଙ୍କୁ ଆଶୁପ୍ରତ୍ୟୟୀ କରିଦେଇଥିଲା ।

ମନୁଷ୍ୟର ଉପାସକ—ରାଧାନାଥ ମନୁଷ୍ୟର ଉପାସକ ଥିଲେ । କ୍ଷୁଦ୍ର ସାମ୍ପ୍ରଦାୟିକ ମନୋଭାବ, ଜାତିଗତ ମନୋଭାବ ତାଙ୍କୁ ସ୍ପର୍ଶ କରି ନଥିଲା । ଜଣେ ସମସାମୟିକ ଲେଖିଛନ୍ତି—"ରାଧାନାଥଙ୍କ ମାନବପ୍ରୀତି ଏବଂ ମାନବଭକ୍ତି ଉପନିଷଦ୍ ପ୍ରଭୃତିର ଭାବରାଜ୍ୟ ଅତିକ୍ରମ କରି ସେବାରାଜ୍ୟରେ ଉପସ୍ଥିତ ହୋଇଥିଲା । ରାଧାନାଥ କେବଳ ମାନବଜୀବନର ମହତ୍ତ୍ୱ ଅନୁଭବ କରି ମାନବ ସେବାରେ ନିଯୁକ୍ତ ରହି ତୃପ୍ତି ଲାଭ କରୁ ନଥିଲେ, କିପରି ସେହି ମନୁଷ୍ୟତ୍ୱ ବିକଶିତ ହୋଇ ପାରିବ, ତା'ର ଉପାୟବିଧାନରେ ସମଗ୍ର ଶକ୍ତି ବ୍ୟୟ କରିଥିଲେ ।" ରାଧାନାଥ ଏକାବେଳକେ ପୂର୍ଣ୍ଣ ବୈରାଗୀ ଥିଲେ ବୋଲି କୁହା ନଯାଇ ପାରିଲେ ମଧ୍ୟ ସାଂସାରିକ ସଂକୀର୍ଣ୍ଣତା ତାଙ୍କର ଚରିତ୍ରକୁ କଳଙ୍କିତ କରି ନଥିଲା ।

ପରୋପକାର : ବଦାନ୍ୟତା—ଜଣେ ସମସାମୟିକ ଶିକ୍ଷାବିତ୍ ଲେଖିଛନ୍ତି—" ବଦାନ୍ୟତା ପାଇଁ ରାଧାନାଥଙ୍କର ଖ୍ୟାତି ନାହିଁ । ମାତ୍ର ନିୟମିତ ଓ ଅନିୟମିତ ରୂପେ ସେ ଯାହାକୁ ଦାନ କରୁଥିଲେ, ତାହା ପାଇଁ ସେ ଶ୍ଳାଘାର ଆକାଂକ୍ଷା ବା ଅପେକ୍ଷା କରୁ ନଥିଲେ । ସଂସ୍କୃତ ପଣ୍ଡିତମାନଙ୍କ ମଧ୍ୟରେ ଯେଉଁମାନଙ୍କ ପ୍ରତି ଲକ୍ଷ୍ମୀ ବିମୁଖ ସେମାନେ ତାହାଙ୍କଠାରେ ଉପସ୍ଥିତ ହେଲେ ସେ ସେମାନଙ୍କୁ ଆନନ୍ଦରେ ସ୍ୱକୀୟ ଶକ୍ତି ଅନୁସାରେ ଦାନ କରୁଥିଲେ । ଏହି ଦାନଶୀଳତା ଓ ଗ୍ରାହକତା ପାଇଁ ପଣ୍ଡିତମାନେ ତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ ।" (ଡଃ ମହାରଣା)

ପରୋପକାର ତାଙ୍କ ଚରିତ୍ରର ଏକ ବିଶିଷ୍ଟ ଗୁଣ । ବିପନ୍ନ ଲୋକକୁ ବିପଦରୁ ଉଦ୍ଧାର କରିବା ପାଇଁ ସେ ସବୁବେଳେ ଚେଷ୍ଟା କରୁଥିଲେ । ସେ ନିଜେ ଯଥାଶକ୍ତି ଆର୍ଥିକ ସାହାଯ୍ୟ ଦେଇ ଏବଂ ଅନ୍ୟମାନଙ୍କଠାରୁ ସାହାଯ୍ୟ କରାଇ ଦେଇ ବିପନ୍ନଙ୍କ ପ୍ରତି ସହାନୁଭୂତି ପ୍ରଦର୍ଶନ କରୁଥିଲେ ।

ପର-ଛିଦ୍ର ଅନ୍ୱେଷଣ କରିବା ତାଙ୍କ ପ୍ରକୃତି-ବିରୁଦ୍ଧ ଥିଲା । ଅନେକ ସମୟରେ ସେ ଅତି କଟୁ ସମାଲୋଚନାରେ ମଧ୍ୟ ବିଶେଷ ଭାବରେ ବିଚଳିତ ହେଉ ନଥିଲେ କି ବିରକ୍ତିରଞ୍ଜନ ହେଉ ନ ଥିଲେ ।

ପୁତ୍ରସ୍ନେହ – ଶଶିଭୂଷଣ ଚିରରୁଗ୍‌ଣ ଥିବାରୁ ପିତା ବିଶେଷ ଭାବରେ ଚିନ୍ତିତ ହୋଇ ପଡୁଥିଲେ । ରାଜକାର୍ଯ୍ୟରେ ତାଙ୍କୁ ଭ୍ରମଣରେ ଯିବାକୁ ପଡୁଥିବାରୁ ସେ ସବୁବେଳେ ପୁତ୍ରଙ୍କ ପାଖରେ ରହିନପାରି ଦୁଃଖିତ ହେଉଥିଲେ । ସ୍ୱାସ୍ଥ୍ୟର ଉନ୍ନତି ଆଶାରେ ବିଭିନ୍ନ ସ୍ୱାସ୍ଥ୍ୟକର ସ୍ଥାନକୁ ପରିବର୍ତ୍ତନ ସକାଶେ ଯିବାକୁ ଶଶିବାବୁଙ୍କୁ ପରାମର୍ଶ ଦେଉଥିଲେ ; ଅର୍ଥବ୍ୟୟ ବିଗରେ ଚିନ୍ତିତ ନ ହେବା ପାଇଁ ମଧ୍ୟ କହୁଥିଲେ । "ଯଦି ସ୍ଥାନ ପରିବର୍ତ୍ତନ ତୁମର ସ୍ୱାସ୍ଥ୍ୟର ଉନ୍ନତି କରୁଛି ତାହା ହେଲେ ଯେତେ ଦୂରପାର ସେତେ ଯାଅ । ଖର୍ଚ୍ଚ ପାଇଁ ଚିନ୍ତା କର ନାହିଁ । ଦରକାର ହେଲେ, ମୁଁ ନିଜେ ଅନାହାରରେ ରହି ଅର୍ଥ ଯୋଗାଇବାକୁ ପ୍ରସ୍ତୁତ ଅଛି ।" (ଖୋର୍ଦ୍ଧାରୁ ଶଶିବାବୁଙ୍କ ଠାକୁ ଇଂରେଜୀ ଚିଠିର କେତେକାଂଶ ୧୮. ୧୦. ୯୪) "ତୁମ୍ଭେ ପରିବର୍ତ୍ତନ ପାଇଁ ଯେତେଥର ପାର ଯାଅ । ତୁମ୍ଭେ ଜାଣି ରଖ, ତୁମର ସ୍ୱାସ୍ଥ୍ୟରକ୍ଷା ହେଉଛି ମୋର ସର୍ବପ୍ରଧାନ ଦାୟିତ୍ୱ ।" (ବାଲେଶ୍ୱର ଜିଲ୍ଲା ଲକ୍ଷ୍ମଣନାଥଠାରୁ ଶଶିବାବୁଙ୍କଠାକୁ ଇଂରେଜୀ ଚିଠିର ଅଂଶ । ୮।୧।୯୫) ପୁଣି

ଅନ୍ୟ ଚିଠିରେ "ମୁଁ ଯୁକ୍ତିଭିତ୍ତିବ କଲୁ ତୁମେ ଯେପରି ସମ୍ପ୍ରଦାୟ ଔଷଧ ଏବଂ ପଥ୍ୟାଦି ସେବନ କରିବାରେ ତ୍ରୁଟି ନକର । ଅନ୍ୟାନ୍ୟ ଚିନ୍ତାମଧ୍ୟରେ ତୁମର ସ୍ୱାସ୍ଥ୍ୟର ଚିନ୍ତାହିଁ ମୋର ପ୍ରଧାନତମ ଚିନ୍ତା । ସାଂସାରିକ ଖ୍ୟାତି ଗୌରବ ମୁଁ ତୁମର ସ୍ୱାସ୍ଥ୍ୟ ତୁଳନାରେ ତୃଣବତ୍ ଜ୍ଞାନ କରେ । ଯଦି ପରିବର୍ତ୍ତନକ୍ଷମ ହୁଅନ୍ତା ତୁମର ଅସୁସ୍ଥତା ମୁଁ ସ୍ୱୟଂ ନେଇଥାନ୍ତି" (ବଙ୍ଗଳା ଚିଠି)

ଗ୍ରାମ କଳହରେ ଲିପ୍ତ ନରହିବାକୁ ପରାମର୍ଶ—"ଗ୍ରାମରେ ଦୁଇ ଦଳ ମଧ୍ୟରେ କାହାରି ସଙ୍ଗରେ ହେଲେ ଯୋଗ ଦେବନାହିଁ । ଗ୍ରାମର ରାଜନୀତିରେ ଯୋଗଦେବା ଭଲ କାର୍ଯ୍ୟ ନୁହେଁ । ଏହାଠାରୁ ଦୂରରେ ରହ ।" (କଟକରୁ ଶଶିବାବୁଙ୍କଠାକୁ ଇଂରେଜୀ ଚିଠି । ନିତ୍ୟ ଗୀତା ଓ ସମ୍ବାଦପତ୍ରପାଠ ନିମନ୍ତେ ଉପଦେଶ—୧୦।୩।୯୭)

ସେ ପ୍ରତିଦିନ ସମ୍ବାଦପତ୍ର ଓ ଭଗବଦ୍‌ଗୀତା ପାଠ କରିବାକୁ ପରାମର୍ଶ ଦେଉଥିଲେ । ଗୀତା ପୃଥିବୀରେ ସର୍ବୋତ୍କୃଷ୍ଟ ଧର୍ମଗ୍ରନ୍ଥ ଥିବା ସେ ବ୍ୟକ୍ତ କରିଥିଲେ । ନିୟମିତ ଭାବରେ ଗୀତାର ଚର୍ଚ୍ଚା କରିବାକୁ ଉପଦେଶ ଦେଉଥିଲେ । (ରାଧାନାଥଙ୍କ ଶଶିଭୂଷଣଙ୍କ-ଠାକୁ ପୁରୀଜିଲ୍ଲାର ଚନ୍ଦକାଠାରୁ ଇଂରେଜୀ ଚିଠି ।)

ଅଫିସର ରାଧାନାଥଙ୍କ ସରଳ ବ୍ୟବହାର- ରାଧାନାଥ ଶିକ୍ଷାବିଭାଗର ଉଚ୍ଚତମ କର୍ମଚାରୀ ହେଲେ ମଧ୍ୟ ଅଧସ୍ତନ କର୍ମଚାରୀଙ୍କ ପ୍ରତି ହାକିମୀଦୃଷ୍ଟିରେ ବ୍ୟବହାର ଦେଖାଉ ନଥିଲେ । ଇନ୍‌ସ-ପେକ୍ଟର ଅଫିସର ଗୋଟିଏ ପାର୍ଶ୍ୱରେ ଦୁଇଖଣ୍ଡ ଲମ୍ବ ମଶିଣା ଉପରେ ସେ ବସି ସମସ୍ତ କାର୍ଯ୍ୟକରୁଥିଲେ । ଦେହରେ ପୋଷାକ ପିନ୍ଧୁ-ନଥିଲେ, ମୁକ୍ତ ଦେହରେ ବସୁଥିଲେ । ଏହି ମଶିଣା ଉପରେ ତାଙ୍କ ସହିତ ଅଧସ୍ତନ କର୍ମଚାରୀ, ଶିକ୍ଷକ ପ୍ରଭୃତି ସମସ୍ତେ ବସି କଥାବାର୍ତ୍ତା କରୁଥିଲେ । ସେଠାରେ ଉଚ୍ଚ ଅଧସ୍ତନର ସ୍ଥାନ ନ ଥିଲା । ସମସ୍ତେ

ମୁକ୍ତ ହୃଦୟରେ ବ୍ୟବହାର କରୁଥିଲେ । ରାଧାନାଥ ସ୍ୱଗୃହରେ ମଧ୍ୟ ଏକ ମଶିଣା ଉପରେ ବସି ଅଫିସ୍ କାଗଜପତ୍ର ଦେଖୁଥିଲେ ଏବଂ ଭଦ୍ରବ୍ୟକ୍ତିମାନଙ୍କ ସହିତ ଆଳାପ କରୁଥିଲେ । କରଣୀମାନେ ଅଫିସରେ ଚୌକିରେ ବସି କାର୍ଯ୍ୟ କରୁଥିଲେ । "ଅନେକ ସମୟରେ ଅପରିଚିତ ଲୋକମାନେ ଆସି କୌଣସି କରଣୀଙ୍କୁ ରାଧାନାଥ ବୋଲି ଭ୍ରମ କରି ସମ୍ମାନ ଓ ସଙ୍କୋଚ ସହକାରେ ପ୍ରଶ୍ନ କରିଥାଆନ୍ତି, ଓ ରାଧାନାଥଙ୍କୁ ଦେଖି ସୁଦ୍ଧା ତାଙ୍କୁ ଚିହ୍ନି ନପାରି ଭ୍ରୂକ୍ଷେପ କରୁ ନଥାଆନ୍ତି । ଅଫିସର ଅପର ଏକ ପ୍ରକୋଷ୍ଠରେ ଚଉକି ଟେବୁଲ ସଜ୍ଜିତ ହୋଇ ରହିଥାଏ, ସାହେବ ପ୍ରଭୃତି କେହି ଆସିଲେ ରାଧାନାଥ ଖଣ୍ଡିଏ କୁର୍ତ୍ତା ପିନ୍ଧି ସେଠାରେ ତାହାଙ୍କ ସହିତ ଭେଟ ହୁଅନ୍ତି । ଅଫିସ୍‌ରେ ରାଧାନାଥ ଖଣ୍ଡିଏ ଧୋତି ପିନ୍ଧି ଖାଲି ଦେହରେ ମସିଣା ଉପରେ ବସି ସମସ୍ତ ଆଗନ୍ତୁକଙ୍କ ସହିତ କଥାବାର୍ତ୍ତା ତଥା ଅଫିସର ସମସ୍ତ କାର୍ଯ୍ୟ ସମ୍ପନ୍ନ କରୁଥାଆନ୍ତି । ସାହେବୀ ପୋଷାକ ପରିହିତ ଆସିଷ୍ଟାଣ୍ଟ ଇନ୍‌ସ୍‌ପେକ୍ଟର ଏବଂ ଡେପୁଟି ଇନ୍‌ସପେକ୍ଟରମାନେ ମଧ୍ୟ ପୋଷାକଜନିତ ଅସୁବିଧା ସତ୍ତ୍ୱେ ସେହି ମଶିଣାରେ ବସିବାକୁ ବାଧ୍ୟ ହୋଇଥାଆନ୍ତି । ସମୟ ସମୟରେ ସେମାନଙ୍କ ସୁବିଧା ସକାଶେ ଅଫିସର ପ୍ରକୋଷ୍ଠାନ୍ତରରୁ ଚଉକି ଆଣାଗଲେ ସୁଦ୍ଧା ଇନ୍‌ସ୍‌ପେକ୍ଟରଙ୍କ ମସିଣାରେ ବସିବା ଅବସ୍ଥାରେ ସେମାନେ ଚଉକିରେ ବସିବାକୁ କୁଣ୍ଠିତ ହେଉଥାଆନ୍ତି । ସ୍ୱାଭାବିକତା ଓ ସାରଲ୍ୟର ପ୍ରତିମୂର୍ତ୍ତିସ୍ୱରୂପ ରାଧାନାଥଙ୍କ ସହିତ ଶିକ୍ଷାବିଭାଗୀୟ ଆସିଷ୍ଟାଣ୍ଟ ଇନ୍‌ସ୍‌ପେକ୍ଟର, ଡେପୁଟି ଇନ୍‌ସପେକ୍ଟର ପ୍ରଭୃତିଙ୍କଠାରୁ ଗୁରୁଟ୍ରେନିଙ୍ଗର ଅବଧାନ ଓ ନିମ୍ନ କର୍ମଚାରୀ ଓ ଶିକ୍ଷକ ପର୍ଯ୍ୟନ୍ତ ସମସ୍ତେ ଏକ ମଶିଣାରେ ବସିବାର ଦୃଶ୍ୟ ସମସ୍ତଙ୍କର ଚିତ୍ତାକର୍ଷକ ହୋଇଥାଏ ।" (ରା: ଜୀ: ପୃ୭୨-୭୩) । ଏହା ସରକାରୀ ଅଫିସ୍

ପରିଚାଳନାରେ ଅସୁବିଧା ସୃଷ୍ଟି କରୁଥିଲେ ମଧ୍ୟ ଇନ୍‌ସପେକ୍ଟରଙ୍କ ସରଳ ଅମାୟିକ ଓ ହାର୍ଦ୍ଦିକ ବ୍ୟବହାର ଯୋଗୁଁ କାହାରି ମନରେ ଅସନ୍ତୋଷ ଜାତ ହେଉନଥିଲା ।

**ସ୍ୱଦେଶ ପ୍ରେମ** :—ରାଧାନାଥ ସ୍ୱଦେଶପ୍ରେମୀ ଥିଲେ । ଜନ୍ମଭୂମି ଉତ୍କଳର ସର୍ବବିଧ ଉନ୍ନତି ପାଇଁ ସେ ଚିନ୍ତା କରୁଥିଲେ ଏବଂ ସେ ଦିଗରେ କାର୍ଯ୍ୟ ମଧ୍ୟ କରୁଥିଲେ । ଉତ୍କଳ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନରେ ସେ ସମଗ୍ର ଜୀବନ ଅତିବାହିତ କରିଥିଲେ । ଏକ ଓଡ଼ିଆଭାଷାଭାଷୀ ଅଞ୍ଚଳର ଗଠନ ପାଇଁ ଉତ୍କଳ ସମ୍ମିଳନୀ ଯେଉଁ ବ୍ରତ ନେଇ ଗଠିତ ହୋଇଥିଲା ସେଥିରେ ସେ ଆରମ୍ଭରୁ ପୂର୍ଣ୍ଣପ୍ରାଣରେ ଯୋଗ ଦେଇଥିଲେ । ତାଙ୍କର "ସର୍ବେଷାଂ ନୋ ଜନନୀ ଭାରତ" ଗୀତ ତାଙ୍କର ଭାରତପ୍ରୀତିର ନିଦର୍ଶନ । 'ମହାଯାତ୍ରା'ରେ ଶିବାଜୀଙ୍କ ଉଦ୍ଦୀପ୍ତବାଣୀ ଏହି ଜାତିସ୍ୱଭାବର ପ୍ରକାଶ ମାତ୍ର । ପ୍ରାଚୀନଗୌରବମଣ୍ଡିତ ଉତ୍କଳର ବର୍ତ୍ତମାନ ଯୁଗର ଅଧୋଗତି ଦେଖି ସେ ମର୍ମାହତ ହୋଇଥିଲେ ଏବଂ ହୃତଗୌରବକୁ ଫେରାଇ ଆଣିବା ପାଇଁ ଦେଶବାସୀଙ୍କୁ ନିଜ ଲେଖାଦ୍ୱାରା ଉଦ୍‌ବୁଦ୍ଧ କରୁଥିଲେ ।

**ବିଳାସବ୍ୟସନ** – ରାଧାନାଥ ବିଳାସପ୍ରିୟ ନଥିଲେ । ବୃଥା ସମୟନଷ୍ଟ ତାଙ୍କର ସହ୍ୟ ହେଉନଥିଲା । ଅତିରିକ୍ତ ବ୍ୟସନରେ ମାତିବା ଦେଖିଲେ ସେ ବିରକ୍ତ ହେଉଥିଲେ । ମନକୁ ଖୁସି ରଖିବା ଓ ଆରାମ କରିବା ନିମିତ୍ତ ତାସ ଖେଳ ଓ ସଙ୍ଗୀତ ଶିକ୍ଷା ସେ ମନା କରୁନଥିଲେ, କିନ୍ତୁ ଏଥିରେ ଅତିରିକ୍ତ ମାତିବାକୁ ଘୃଣା କରୁଥିଲେ । ପଚିଶବର୍ଷ ବୟସ ପର୍ଯ୍ୟନ୍ତ ରାଧାନାଥ ତାସଖେଳ ଓ ଅନ୍ୟାନ୍ୟ କ୍ରୀଡ଼ା ସମ୍ବନ୍ଧରେ ମୋଟେ ଧ୍ୟାନ ଦେଇନଥିଲେ— ଜାଣିନଥିଲେ ବୋଲି କହିଲେ ଚଳେ । ଖେଳ ଓ ସଙ୍ଗୀତ ଜୀବନକୁ

ଲକ୍ଷ୍ୟ ସାଧନରେ ଏକ ଉପାୟ ସିନା, କେବଳ ଲକ୍ଷ୍ୟ ନୁହନ୍ତି ; ଜୀବନ ଏକ ଗୁରୁଦାୟିତ୍ୱପୂର୍ଣ୍ଣ ବ୍ୟାପାର; ଏହି ହେତୁ ମନୁଷ୍ୟ ବ୍ୟସନରେ ଯେତେ କମ୍ ମାତେ ସେତେ ଭଲ; ଏହା ସେ ଉପଦେଶ ଦେଉଥିଲେ । (ଶଶିବାବୁଙ୍କଠାକୁ ୧୧।୮।୯୨ର ଚିଠି ) ।

ସମୟର ମୂଲ୍ୟ ସେ ବୁଝିଥିଲେ ଏବଂ ଏହି କାରଣରୁ ସେ ଅଯଥା କାଳକ୍ଷେପଣ ସ୍ୱଭାବକୁ ସୁଖ ପାଉନଥିଲେ । ବାଲ୍ୟଜୀବନରେ ଅଯଥା ସମୟ ନଷ୍ଟ କଲେ ପରିଣତ ବୟସରେ ଅନୁଶୋଚନା କରିବାକୁ ପଡ଼ିବ ବୋଲି ପୁତ୍ରମାନଙ୍କୁ କହୁଥିଲେ ।

**ଉତ୍ତମ ବ୍ୟବହାର :—** ଉତ୍ତମ ବ୍ୟବହାର, କାୟମନୋବାକ୍ୟରେ ସଂଯମତା ପ୍ରତି ଦୃଷ୍ଟି ରଖିବାକୁ ସେ ଉପଦେଶ ଦେଉଥିଲେ । ସେ ନିଜେ ଏହା ପାଳନ କରି ଅନ୍ୟମାନଙ୍କୁ ପାଳନ କରିବାକୁ କହୁଥିଲେ । ସୁବ୍ୟବହାର ଓ ବିଦ୍ୟାର୍ଜ୍ଜନ ପ୍ରତି ସ୍ପୃହା ଯୋଗୁଁ ସେ ନିଜ ବିଦ୍ୟାଳୟରେ ଶ୍ରେଣୀର ପ୍ରଥମ ଛାତ୍ର ବିବେଚିତ ହେଉଥିଲେ । ସ୍ୱପୁତ୍ର ଓ ଅନ୍ୟମାନଙ୍କୁ ମଧ୍ୟ ଏପରି ହେବା ପାଇଁ କହୁଥିଲେ ।

**ଶାନ୍ତିପ୍ରିୟତା :—** ପର ସହିତ କଳହ କରିବା ସ୍ୱଭାବକୁ ସେ ଆଦୌ ପସନ୍ଦ କରୁନଥିଲେ ; ସ୍ୱପୁତ୍ରମାନଙ୍କୁ ଏହାର ବହୁଦୂରରେ ରହିବାପାଇଁ ଉପଦେଶ ଦେଉଥିଲେ ।

ସେ କୌଣସି ପାରିବାରିକ ଦ୍ୱନ୍ଦକୁ ସୁଖ ପାଉନଥିଲେ । ଶାନ୍ତି ପାଇଁ ଯେକୌଣସି ତ୍ୟାଗ କରିବାକୁ ସେ ପ୍ରସ୍ତୁତ ଥିଲେ । ଶାନ୍ତି ତାଙ୍କ ଜୀବନର ଏକ ବ୍ରତ ଥିଲା । ଯଦି ଟିକିଏ ସ୍ୱାର୍ଥତ୍ୟାଗ କରିଦେଲେ କୁଟୁମ୍ବ ଭିତରେ ଦ୍ୱନ୍ଦ ଦୂର ହୋଇଯିବ, ତାହା ହେଲେ ତାହା କରିବା ସପକ୍ଷରେ ସେ ପରାମର୍ଶ ଦେଉଥିଲେ । ସଂସାର ସୁବିଧା ଓ ମୀମାଂସାର ସଂସାର ; ଯେଉଁମାନେ ନିଜ ସ୍ୱାର୍ଥପ୍ରତି ସଜାଗ ରହି

ଅନ୍ୟର ସୁବିଧାପ୍ରତି ଅନ୍ଧ ହୋଇଯାଆନ୍ତି ସେମାନେ ଶେଷରେ ଦୁଃଖ ଭୋଗ କରନ୍ତି, ସେମାନଙ୍କରହିଁ ବେଶି ଲୋକସାନ ହୁଏ । "ଯେଉଁ-ମାନେ କ୍ଷୁଦ୍ରସ୍ୱାର୍ଥବୁଦ୍ଧିରେ ଜଡ଼ିତ ହୋଇ ଆମପ୍ରତି ବ୍ୟବହାର କରୁଛନ୍ତି ସେମାନଙ୍କ ପ୍ରତି ସ୍ୱାର୍ଥତ୍ୟାଗ କରି ବ୍ୟବହାର କର ; ଜଗତ ଜାଣୁ ଯେ, ସ୍ୱାର୍ଥତ୍ୟାଗୀ ମୂଢ଼ ନୁହେଁ ।" ଏହି ଉପଦେଶ ସେ ଦେଉ-ଥିଲେ (—ଶଶିବାବୁଙ୍କଠାକୁ ୧୦।୩।୯୬ର ଚିଠି )

ଘଟଣାର ରୂପରେ ପଡ଼ି ହଠାତ୍ କିଛି କରିଦେବା ପାଇଁ ସେ ମତ ଦେଉନଥିଲେ । ବୁଦ୍ଧି ବିଚାରି, ବାରଂବାର ହାନିଲାଭ ବିଚାରି କରି କାର୍ଯ୍ୟ କରିବା ପାଇଁ ସେ କହୁଥିଲେ ।

ରାଧାନାଥଙ୍କ ଜୀବନର ବହୁ ସଦ୍‌ଗୁଣ ଭିତରୁ ଏହି କେତୋଟି କେବଳ ଏଠାରେ ବର୍ଣ୍ଣିତ ହେଲା । ତାଙ୍କ ଚରିତ୍ରରେ ଯେ ଦୁର୍ବଳତା ନଥିଲା, ଏହା ନୁହେଁ, କିନ୍ତୁ ତାର ପରିମାଣ ଓ ଗୁରୁତ୍ୱ ଏତେ ଅଳ୍ପ ଯେ ସେସବୁ ସଦ୍‌ଗୁଣ-ସାଗରରେ ଲୀନ ହୋଇଯାଇଥିଲା ।

କବିଙ୍କ ଆତ୍ମନିନ୍ଦାସୂଚକ "ନିବେଦନ" ପାଠ କରି ଜଣେ ବିଖ୍ୟାତ ପଣ୍ଡିତ ଲେଖିଥିଲେ, "ତାଙ୍କର ସାରଲ୍ୟ ଏବଂ ସତ୍ୟପ୍ରିୟତାର ପରିଚୟ ମୁଦ୍ରିତ 'ନିବେଦନ'ରୁ ସମସ୍ତେ ଅବଗତ ଅଛନ୍ତି । ଅତଏବ ଏ ବିଷୟରେ ବିଶେଷ ଦୃଷ୍ଟାନ୍ତ ଉଲ୍ଲେଖ କରିବାର ଆବଶ୍ୟକତା ନାହିଁ । ମନୁଷ୍ୟମାତ୍ରକେ ଦୋଷଯୁକ୍ତ; ତେବେ ଦୋଷ କେଉଁଠାରେ ବେଶି, କେଉଁଠାରେ ଅଳ୍ପ । ଯେଉଁଠାରେ ଗୁଣରାଶି ବିଶେଷ ଓ ଦୋଷଭାଗ ଅଳ୍ପ ପରିମାଣରେ ବିଦ୍ୟମାନ, ସେ ସ୍ଥଳରେ ଦୋଷ ଧର୍ତ୍ତବ୍ୟ ନୁହେଁ; ଯେଉଁଠାରେ ଦୋଷଭାଗ ଅଧିକ, ସେଠାରେ ଦୋଷ ଉଲ୍ଲେଖ ଯୋଗ୍ୟ । ଏ ମହାତ୍ମାଙ୍କଠାରେ ଗୁଣଭାଗ ଅଧିକ, ଦୋଷଭାଗ ଅତ୍ୟଳ୍ପ ଥିବା ଯୋଗୁଁ ଦୋଷାଂଶ ପରିହାର କରି ଗୁଣଭାଗ ଉଲ୍ଲେଖଯୋଗ୍ୟ ହେଲା । ଏ କଥା ମଧ୍ୟ କାଳିଦାସ କୁମାରସମ୍ଭବ ନାମଧେୟ ଗ୍ରନ୍ଥରେ

କହିଯାଇଛନ୍ତି । ଯଥା ;— 'ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ ।' ଚନ୍ଦ୍ରଠାରେ ଗୁଣଭାଗ ଅଧିକ ଥିବାରୁ କଳଙ୍କ ମଧ୍ୟ ଗୁଣରୂପରେ ପରିଣତ ହୋଇଅଛି; ଅର୍ଥାତ୍ ସେ ଦୋଷ ଉଲ୍ଲେଖଯୋଗ୍ୟ ନୁହେଁ । ଏ ମହାତ୍ମା ସକଳ ବିଷୟରେ ଉତ୍କଳର ଆଦର୍ଶ ପୁରୁଷ ଥିଲେ × × ।" (ଉତ୍କଳ ସାହିତ୍ୟ ୧୨ଶ ଭାଗ ୪ର୍ଥ ସଂଖ୍ୟା । ମ. ମ· ସଦାଶିବ ମିଶ୍ର, କାବ୍ୟକଣ୍ଠ ) ଏହା ସହିତ ଏକମତ ନହେବାର କାରଣ ନାହିଁ ।

"ରାଧାନାଥ ଦେବୋପମ ଦୁର୍ଲ୍ଲଭ ଗୁଣରାଶିର ଆଧାର ଥିଲେ । ଦୟା, ଦାକ୍ଷିଣ୍ୟ, ବିନୟ, ସାରଲ୍ୟ, କ୍ଷମା, ସୌଜନ୍ୟ ତାଙ୍କ ଚରିତରେ ମୂର୍ତ୍ତି ପରିଗ୍ରହ କରିଥିଲା । ରାଧାନାଥଙ୍କର ଜୀବନ ବିଧାତାଙ୍କର ଗୋଟିଏ ଅପୂର୍ବ ସୃଷ୍ଟି—ଜୀବନଟି ଯେମନ୍ତ ଗୋଟିଏ ମଧୁଭାଣ୍ଡ । ଏତେ କୋମଳତା ଏତେ ମଧୁରତା ଜୀବନରେ ଆଉ କାହାରିଠାରେ ଦେଖିଅଛୁଁ ବୋଲି ମନେ ହେଉନାହିଁ । ରାଧାନାଥ ଯେଉଁଠାକୁ ଯାଇଛନ୍ତି, ଯାହା ସଙ୍ଗରେ ମିଶିଛନ୍ତି, ସର୍ବତ୍ର ମଧୁବର୍ଷଣ କରିଛନ୍ତି । କୌଣସି ପ୍ରକାର କଠୋରତା ସେ ଜୀବନର ସୀମା ସ୍ପର୍ଶ କରିନଥିଲା—କଠୋର ବ୍ୟବହାର ତାଙ୍କର ପ୍ରକୃତି-ବିରୁଦ୍ଧ ଥିଲା । ସେହି ହୃଦୟର କୋମଳତା ଦୁର୍ବଳତାର ଆକାର ଧାରଣ କରି ସମୟ ସମୟରେ ତାଙ୍କର ବ୍ୟବହାରକୁ ଟିକିଏ ବିସଦୃଶ କରି ଦେଉଥିଲା । ରାଧାନାଥଙ୍କ ଜୀବନରେ ଯାହା ଯେତେବେଳେ ଦୋଷ ଲକ୍ଷିତ ହେଉଅଛି ତାହାର ମୂଳ ଏହିଠାରେ । ଏତିକ ନ ବୁଝିଲେ ତାଙ୍କ ଚରିତର ମହତ୍ତ୍ୱ ସମ୍ୟକ୍ ଉପଲବ୍ଧି କରିବା କଠିନ । × ×" ( ବିଶ୍ୱନାଥ କର : ଉତ୍କଳ ସାହିତ୍ୟ : ୧୧ଶ ଭା. ୧୨ଶ ସଂଖ୍ୟା ) ।



# ସପ୍ତଦଶ ପରିଚ୍ଛେଦ

## "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ"—ଆନ୍ଦୋଳନ

ରାଧାନାଥ ଜନ୍ମଗ୍ରହଣ କରିବା ପୂର୍ବରୁ ଓଡ଼ିଶାରେ ମୁଦ୍ରିତ ପାଠ୍ୟ ପୁସ୍ତକ ଓ ଗ୍ରନ୍ଥ ଅତି ଅଳ୍ପ ଥିଲା । ଖ୍ରୀଷ୍ଟିଆନ୍ ମିଶନାରୀମାନଙ୍କ ଉଦ୍ୟମରେ କେତେଖଣ୍ଡ ଖ୍ରୀଷ୍ଟିଆନ୍ ଧର୍ମଗ୍ରନ୍ଥ ଇଂରେଜୀରୁ ଅନୁବାଦିତ ହୋଇ ପ୍ରକାଶିତ ହୋଇଥିଲା । ସ୍କୁଲ ସଂଖ୍ୟା ଅଳ୍ପ ଥିବାରୁ ଆଧୁନିକ ଧରଣର ପାଠ୍ୟପୁସ୍ତକ ରଚନା ଦିଗରେ ଅତି କ୍ଷୀଣ ଉଦ୍ୟମ ହୋଇଥିଲା । ଏ ଦିଗରେ ମଧ୍ୟ ପାଦ୍ରୀ ସାହେବମାନେ ଅଗ୍ରଣୀ ହୋଇଥିଲେ । କେତେଖଣ୍ଡି ବଙ୍ଗଳା ପାଠ୍ୟପୁସ୍ତକ ଅନୁବାଦିତ ହୋଇ ବ୍ୟବହୃତ ହେଉଥିଲା । ସରକାର ବହୁସଂଖ୍ୟାରେ ପାଠ୍ୟପୁସ୍ତକ କ୍ରୟ କରି ବିଦ୍ୟାଳୟମାନଙ୍କୁ ଯୋଗାଉଥିଲେ । ଗ୍ରାମର ଚାଟଶାଳୀମାନଙ୍କରେ ପ୍ରାଚୀନ ରୀତିରେ ଶିକ୍ଷା ପ୍ରଚଳିତ ଥିଲା । ସଂସ୍କୃତ ପଣ୍ଡିତ ଓ ଅବଧାନମାନଙ୍କ ହସ୍ତରେ ଶିକ୍ଷା ରହିଥିଲା କହିଲେ ଚଳେ । ଓଡ଼ିଶାରେ ମାସିକ, ସାପ୍ତାହିକ ପ୍ରଭୃତି ପତ୍ରପତ୍ରିକା ବେଶି ସଂଖ୍ୟାରେ ନଥିଲା । ଯେଉଁଗୁଡ଼ିକ ପ୍ରକାଶ ପାଇଥିଲା ସେଗୁଡ଼ିକ ବେଶିଦିନ ତିଷ୍ଠି ପାରିନଥିଲା ।

ନଅଙ୍କ (ଖ୍ରୀ୧୮୬୬)ର ଭୀଷଣ ଦୁର୍ଭିକ୍ଷ ପରେ ଓଡ଼ିଶା ଜନସାଧାରଣଙ୍କର ଚକ୍ଷୁ ଉନ୍ମୀଳିତ ହୋଇଗଲା । ଲୋକଙ୍କ ମଧ୍ୟରେ ଆଧୁନିକ ରୀତିର ଶିକ୍ଷା ପ୍ରତି ଆଗ୍ରହ ଜାଗ୍ରତ ହୋଇ ଉତ୍ତରୋତ୍ତର

ବୃଦ୍ଧି ପାଇଲା । ଏହା ଫଳରେ କ୍ରମେ ପତ୍ରପତ୍ରିକା, କାବ୍ୟ କବିତାଦି ଗ୍ରନ୍ଥ ଓ ପାଠ୍ୟପୁସ୍ତକର ସଂଖ୍ୟା ବୃଦ୍ଧି ପାଇଲା । ମୁଦ୍ରଣଯନ୍ତ୍ରର ସଂଖ୍ୟା ମଧ୍ୟ ବର୍ଦ୍ଧିତ ହେଲା । ଓଡ଼ିଶାର ଲୋକଙ୍କ ପ୍ରାଣରେ ନୂତନ ଉନ୍ମାଦନା ନୂତନ ଚେତନା ଜାଗ୍ରତ ହେବାରୁ ସବୁ କ୍ଷେତ୍ରରେ ଉନ୍ନତିର ଲକ୍ଷଣ ଦେଖାଗଲା ।

ରାଧାନାଥଙ୍କ ଜନ୍ମସମୟଠାରୁ ଓଡ଼ିଶାରେ ସଂସ୍କୃତି କ୍ଷେତ୍ରରେ ଯେଉଁ କ୍ରମବର୍ଦ୍ଧମାନ ଉନ୍ନତି ଦେଖାଯାଇଥିଲା ତାହାର ରୂପରେଖର କଞ୍ଚିତ ଆଭାସ ନିମ୍ନଲିଖିତ ସମୟ ତାଲିକାରୁ ମିଳିପାରିବ ।

୧୮୪୮—ରାଧାନାଥଙ୍କ ଜନ୍ମ ।

୧୮୪୯—"ଜ୍ଞାନାରୁଣ" ପତ୍ରିକା ପ୍ରକାଶ । ସମ୍ପାଦକ-ରେଭେରେଣ୍ଡ୍ ଡବ୍ଲ୍ୟୁ. ସି. ଲେସି (Rev. W. C. Laecy)

୧୮୫୮—ବାଲେଶ୍ୱର ଜିଲ୍ଲା ସ୍କୁଲରେ ରାଧାନାଥଙ୍କ ଷଷ୍ଠ ଶ୍ରେଣୀରେ ନାମ ଲେଖା ।

୧୮୬୦—ବ୍ରାହ୍ମଧର୍ମର ପ୍ରଚାର ପାଇଁ ବଙ୍ଗର ମହର୍ଷି ଦେବେନ୍ଦ୍ର-ନାଥ ଠାକୁରଙ୍କଦ୍ୱାରା ବ୍ରହ୍ମ ଉପାସନା ସମାଜ ପ୍ରତିଷ୍ଠା ।

୧୮୬୧—"ଅରୁଣୋଦୟ" ମାସିକ ପତ୍ରିକାର ପ୍ରକାଶନ । ଓଡ଼ିଶାରେ ଖ୍ରୀଷ୍ଟିଆନ୍ ଭର୍ଣ୍ଣାକୁଲାର ସୋସାଇଟି ତରଫରୁ ପ୍ରକାଶିତ ।

୧୮୬୧—'ଓଡ଼ିଆ ବ୍ୟାକରଣ' ୩ୟ ସଂସ୍କରଣ ପ୍ରକାଶ । ଲେଖକ – ରେଭେରେଣ୍ଡ ସଟନ୍ ।

୧୮୬୩ – ରାଧାନାଥଙ୍କ ବାଲେଶ୍ୱର ଜିଲ୍ଲା ସ୍କୁଲ ଶିକ୍ଷା ଶେଷ ।

୧୮୬୪ – କଲିକତା ପ୍ରେସିଡେନ୍‌ସି କଲେଜରେ ରାଧାନାଥଙ୍କ କଲେଜ ଶିକ୍ଷା ଆରମ୍ଭ ।

୧୮୬୪ – ଶିକ୍ଷା ବିଭାଗରେ ରାଧାନାଥଙ୍କ କର୍ମଜୀବନ ଆରମ୍ଭ ।

୧୮୬୪—ବାଲେଶ୍ୱରର ମିଶନ ସ୍କୁଲରେ ଫକିରମୋହନଙ୍କ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ।

୧୮୬୫ – ରେଭେନ୍‌ସା ସାହେବ ଓଡ଼ିଶାର କମିଶନର ରୂପେ ନିଯୁକ୍ତି ।

୧୮୬୫—ଯୁଲାଇ ମାସରେ କଟକରେ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ମୁଦ୍ରଣାଳୟ ପ୍ରତିଷ୍ଠା ।

୧୮୬୬—ନଅଙ୍କ ଦୁର୍ଭିକ୍ଷ ।

ବଙ୍ଗର ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ବଙ୍ଗଭାଷାରେ ରଚିତ 'ଶକୁନ୍ତଳା' ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶ ।

'ଧର୍ମ ପୁସ୍ତକର ଅନ୍ତଭାଗ'—ଗ୍ରୀକ୍ ଭାଷାରୁ ଅନୁବାଦିତ ଖ୍ରୀଷ୍ଟିୟାନ ଧର୍ମଗ୍ରନ୍ଥର ପ୍ରକାଶ । ( ୫୦୦ ପୃଷ୍ଠାର ବିରାଟ ପୁସ୍ତକ ) ।

ଖ୍ରୀଷ୍ଟିୟାନମାନଙ୍କଦ୍ୱାରା ଓଡ଼ିଆରେ ସମ୍ପୂର୍ଣ୍ଣ ବାଇବଲ୍‌ର ମାର୍ଜିତ ୩ୟ ସଂସ୍କରଣ ।

"ସାବଦିକ ପୁରାବୃତ୍ତର ସାର"ର ପ୍ରକାଶ । ଲେଖକ— ନବୀନଚନ୍ଦ୍ର ଷଡ଼ଙ୍ଗୀ ।

'ଉତ୍କଳଦୀପିକା'ର ପ୍ରକାଶ । ସମ୍ପାଦକ – ଶ୍ରୀ ଗୌରୀଶଙ୍କର ରାୟ । ୧୮୬୭—ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ "ବ୍ୟାକରଣ କୌମୁଦୀ" ଓ ରାମକମଳ ଶର୍ମ୍ମାଙ୍କ "ଧାତୁବିବେକ"ର ଓଡ଼ିଆ ଅନୁବାଦ ପ୍ରକାଶ । ଲେଖକ – ଗୋବିନ୍ଦଚନ୍ଦ୍ର ମହାପାତ୍ର ।

୧୮୬୮—ରାଧାନାଥଙ୍କ ବଙ୍ଗ ଭାଷାରେ ରଚିତ "କବିତା-ବଳୀ"ର ପ୍ରଥମ ଭାଗ ପ୍ରକାଶ ।

ଏହି ସୂଚନାଟି ପୂର୍ଣ୍ଣାଙ୍ଗ ନ ହେଲେ ମଧ୍ୟ ଏହାଦ୍ୱାରା ରାଧାନାଥ କର୍ମଜୀବନରେ ପ୍ରବେଶ କରିବା ପର୍ଯ୍ୟନ୍ତ ସମୟର ଏକ ଚିତ୍ରର ଧାରଣା କରାଯାଇପାରିବ ।

ଓଡ଼ିଶାର ଜନସାଧାରଣ ଜାତିଧର୍ମ ନିର୍ବିଶେଷରେ ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି କାମନା କରି ବହୁ ଉଦ୍ୟମ କରୁଥିଲେ । ସରକାରୀ ଇଂରେଜ ଉଚ୍ଚକର୍ମଚାରୀମାନେ ମଧ୍ୟ ଏହି ଉଦ୍ୟମକୁ ସର୍ବତୋଭାବେ ସାହାଯ୍ୟ କରୁଥିଲେ । କିନ୍ତୁ, 'ଗୃହ ଶତ୍ରୁ ବିଭୀଷଣ' ପରି କେତେ କେତେ ବଂଗୀୟ କର୍ମଚାରୀ ଏହି ଉଦ୍ୟମକୁ ପଣ୍ଡ କରିଦେବା ପାଇଁ ଗୁପ୍ତରେ ଓ ପ୍ରକାଶ୍ୟରେ ପ୍ରଗାଢ଼ ଚେଷ୍ଟା କରୁଥିଲେ । ଏମାନଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରି 'ଉତ୍କଳ ଦୀପିକା' (୩୦।୩।୬୯)ରେ ତୀବ୍ର ସମାଲୋଚନା କରିଥିଲେ । ଓଡ଼ିଶାବାସୀଙ୍କ ପ୍ରାଣର ଭାଷା ଦୀପିକାର ମନ୍ତବ୍ୟରେ ପ୍ରକାଶ ପାଇଛି ।

ବଂଗର ବିଖ୍ୟାତ ଐତିହାସିକ ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ନେତୃତ୍ୱରେ ବଂଗ ଓ ଓଡ଼ିଶାର କେତେଜଣ ମୁଷ୍ଟିମେୟ ବଂଗୀୟ ଭଦ୍ରବ୍ୟକ୍ତି ଓଡ଼ିଆ ଭାଷାକୁ ଲୋପ କରି ତାହା ସ୍ଥାନରେ ବଂଗ ଭାଷାକୁ ଓଡ଼ିଶାରେ ସର୍ବତ୍ର ପ୍ରଚଳନ କରିବାପାଇଁ ଉଦ୍ୟମର ସୂତ୍ରପାତ କରିଥିଲେ ଏବଂ ଲେଖା ଓ ବକ୍ତୃତାରେ ଏହାର ପ୍ରଚାର ଆରମ୍ଭ କରିଦେଲେ । ଏହାକୁ ଅତ୍ୟନ୍ତ ମାରାତ୍ମକ ବୋଲି କହିଲେ ଯଥେଷ୍ଟ ହେବନାହିଁ, — ଏହା ଏକାବେଳକେ ଓଡ଼ିଆ ଜାତି ଓ ସଂସ୍କୃତିକୁ ଲୋପ କରିଦେବା ପାଇଁ ଏକ ପ୍ରବଳ ଯତ୍ନ ।

ଏହି ନୀଚ ଚକ୍ରାନ୍ତର ରୂପରେଖ ସମ୍ବନ୍ଧରେ ବିଶେଷ ରୂପେ ଅବଗତ ହୋଇପାରିବାରୁ ଓଡ଼ିଶାବାସୀ ସତର୍କତା ଅବଲମ୍ବନ କରି ଷଡ଼ଯନ୍ତ୍ରକୁ ପଣ୍ଡ କରି ଦେଇଥିଲେ । 'ଉତ୍କଳ ଦୀପିକା' ମାଧ୍ୟମରେ ଗୌରୀଶଙ୍କର ରାୟ ଓ ଅନ୍ୟ ହିତାକାଂକ୍ଷୀମାନେ ପ୍ରବଳ ପ୍ରତିବାଦ କରିଥିଲେ ; ଏଥିରେ ବହୁ ବିଶିଷ୍ଟ ଓଡ଼ିଶାପ୍ରେମୀ ଇଂରେଜ ଉଚ୍ଚକର୍ମଚାରୀ ମଧ୍ୟ ଲେଖନୀ ଚାଳନା କରି ସାହାଯ୍ୟ କରିଥିଲେ ।

'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହ'— ଏହି ଶିରୋନାମାରେ ଏହି କୁଚକ୍ରୀମାନେ ବକ୍ତୃତା ଓ ଲେଖାଦ୍ୱାରା ପ୍ରଚାର କରୁଥିଲେ ।

ଉତ୍କଳବାସୀ ବଙ୍ଗୀୟ ସମ୍ପ୍ରଦାୟ ଏହି ଆନ୍ଦୋଳନକୁ ଘୋର ବିରୋଧ କରୁଥିଲେ । ସେମାନଙ୍କ ତୀବ୍ର ପ୍ରତିବାଦ ସ୍ୱର ବଙ୍ଗ ସରକାରଙ୍କ ଉପରେ ପ୍ରବଳ ପ୍ରଭାବ ପକାଇଥିଲା । ଗୌରୀଶଙ୍କରଙ୍କ ନେତୃତ୍ୱରେ ଉତ୍କଳର ବଙ୍ଗୀୟ ସମ୍ପ୍ରଦାୟ ପ୍ରକୃତ ଦେଶପ୍ରେମର ଆଦର୍ଶ ଦେଖାଇ ଥିଲେ ।

"ଦୀପିକା" ସମ୍ପାଦକୀୟ ସ୍ତମ୍ଭରେ ଲେଖିଥିଲେ—

**"ଉତ୍କଳ ଭାଷାର ଉନ୍ନତି ପ୍ରତି ବ୍ୟାଘାତ"**

ଉତ୍କଳ ଭାଷାର ଉନ୍ନତି ପକ୍ଷରେ ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ଓ ଦେଶୀୟ ଲୋକମାନେ ଯେ ରୂପ ଯତ୍ନ କରୁଅଛନ୍ତି ତାହାର ସୀମା ନାହିଁ । ଅଳ୍ପକାଳ ମଧ୍ୟରେ ଉତ୍କଳରେ ଯେମନ୍ତ ବିଦ୍ୟାଳୟ ସ୍ଥାପନ ଓ ଉତ୍କଳ ଭାଷାରେ ପୁସ୍ତକ ମୁଦ୍ରିତ କାର୍ଯ୍ୟ ହେଉଅଛି ଏହା ଦେଖି ସମସ୍ତଙ୍କର ବିଶ୍ୱାସ ହୁଅଇ ଯେ ଅଚିରେ ଉତ୍କଳ ଭାଷାର ଉନ୍ନତି ହେବ ତଥାଚ ଆମ୍ଭେମାନେ ବୋଧକରୁଁ ଯେ ଅବଧି ପ୍ରକୃତ ଉପାୟର ଅନୁସରଣ ହୋଇନାହିଁ ଓ ଭାଷାର ଉନ୍ନତି ବିପକ୍ଷରେ ଏକ ଗୁରୁତର ପ୍ରତିବନ୍ଧକ ରହିଅଛି ।

ଏଥିର ପରିଚୟ ଦେବା ପୂର୍ବରୁ ଆମ୍ଭେମାନେ କେତେକ ଲୋକର ଭ୍ରମ ସଂଶୋଧନ କରିବାର ଉଚିତ ବିବେଚନା କରୁଅଛୁଁ । ପାଠକମାନଙ୍କ ସ୍ମରଣ ଥିବ ଯେ ଗତ ଡିସେମ୍ବର ମାସରେ କଲିକତା ବାସୀ ସୁବିଖ୍ୟାତ ବାବୁ ରାଜେନ୍ଦ୍ରଲାଲମିତ୍ର ଏ ପ୍ରଦେଶକୁ ଆସି କଟକ ଡିବେଟିଂକ୍ଲବରେ ଗୋଟିଏ ବକ୍ତୃତା କରିଥିଲେ । ଆମ୍ଭେମାନେ ତାହାଙ୍କ ଇଂରାଜବକ୍ତୃତା କରିବାର କ୍ଷମତାକୁ ପ୍ରଶଂସା କରିଥିଲୁଁ ମାତ୍ର ସେ ବିଦେଶୀୟ ହଠାତ୍ ଗୋଟିଏ ବକ୍ତୃତା କରିଥିଲେ ବୋଲି

ତାହାଙ୍କ ମତାମତର ଆଲୋଚନା କରି ନ ଥିଲୁଁ । ଅଳ୍ପ କାଳହେଲା ଜାଣିପାରିଲୁଁ ଯେ ତାହାଙ୍କ ମତକୁ ଅନେକ ଲୋକ ଉତ୍କୃଷ୍ଟ ଜ୍ଞାନ କରି ସେଥିରେ ଅନୁଗାମୀ ହୋଇ ଅଛନ୍ତି । ସୁତରାଂ ଏତେବେଳେ ତାହାଙ୍କ ମତର ଭ୍ରମ ଦର୍ଶାଇବା ଆବଶ୍ୟକ ହେଲା ।

ବାବୁ ରାଜେନ୍ଦ୍ରଲାଲ ମିତ୍ର ସେହିଦିନ ସଭାରେ ବ୍ୟକ୍ତକଲେ ଯେ "ଉତ୍କଳର ଯଥାର୍ଥ ହିତାକାଂକ୍ଷୀ ଯେ ହେବେ ସେ ସର୍ବାଗ୍ରେ ଉତ୍କଳ ଭାଷା ଉଠାଇଦେଇ ବଙ୍ଗଭାଷା ପ୍ରଚଳନ କରିବାର ଚେଷ୍ଟା କରିବେ, କାରଣ, ତାହାଙ୍କ ମତରେ ଯେତେ କାଳ ଉତ୍କଳ ଭାଷା ଉଠିଯାଇ ନାହିଁ ତେତେକାଳ ଏ ଦେଶର ଉନ୍ନତି ହେବା ଅସମ୍ଭବ । ସେ ଆପଣାମତର ପୋଷକତାରେ ଏହି ହେତୁ ଦର୍ଶାଇଲେ ଯେ ଦୁର୍ଭିକ୍ଷ କମିଶନରଙ୍କର ଗଣନାନୁସାରେ ଉତ୍କଳର ଲୋକସଂଖ୍ୟା ବର୍ତ୍ତମାନ କୋଡ଼ିଏ ଲକ୍ଷ ଅଟଇ ଓ ଏଥିରୁ ସ୍ତ୍ରୀ ବାଳକ ଇତ୍ୟାଦି ମିହାଦେଲେ କେବଳ ଦଶବାର ଲକ୍ଷଲୋକ ଲେଖାପଢ଼ା ଜାଣିବାର ସମ୍ଭବ, କିନ୍ତୁ ଏତିକିଲୋକ କି ଗୋଟିଏ ସ୍ୱତନ୍ତ୍ରଭାଷା ରଖିପାରନ୍ତି ? ଅଳ୍ପ ଗ୍ରାହକ ଥିବାରୁ ଏଠାରେ କେହି ନୂତନ ପୁସ୍ତକାଦି କରି କୃତକାର୍ଯ୍ୟ ହେବାର ଅସମ୍ଭବ । ବଙ୍ଗଦେଶ ବହୁ ବିସ୍ତୃତ ଓ ସେଠାର ଲୋକ ସଂଖ୍ୟା ଅଧିକବୋଲି ସେଠାରେ ଭାଷାର ଏତାଦୃଶ ଉନ୍ନତି ହୋଇ ଅଛି । ଯେବେ ଉତ୍କଳରେ ବଙ୍ଗଭାଷା ପ୍ରଚଳ ହୁଅଇ ତେବେ ବଙ୍ଗ-ଦେଶର ପୁସ୍ତକମାନ ଏଠାରେ ଚଳିବ ଓ ଏଠାଲୋକେ ଅନାୟାସରେ ଉତ୍ତମ ପୁସ୍ତକ ପାଇପାରିବେ । ଏହାର ଉଦାହରଣ ସ୍ୱରୂପ ଉକ୍ତ ବାବୁ କହିଲେ ଯେ ବଙ୍ଗଦେଶରେ ଗତ ଛଅମାସରେ ପ୍ରାୟ ୪୩୦୦ ଖଣ୍ଡ ବଙ୍ଗ ପୁସ୍ତକ ମୁଦ୍ରିତ ହେଲା କିନ୍ତୁ ଉତ୍କଳରେ ୪୭।୪୮ଖଣ୍ଡରୁ ଅଧିକ ନ ହେଲା । ଏଥିରୁ ସ୍ପଷ୍ଟ ପ୍ରମାଣ ଯେ ଉତ୍କଳ ଭାଷା କଦାଚ ଉନ୍ନତି ହୋଇ ନ ପାରେ ।"

"ଆମ୍ଭେମାନେ ଜ୍ଞାନ କରିଥିଲୁଁ ଯେ ରାଜେନ୍ଦ୍ରବାବୁ ଉତ୍କଳକୁ ଆସି ଏଠାରେ ଅନେକ ବିଷୟ ଅବଗତ ହୋଇଛନ୍ତି କିନ୍ତୁ ଉପର୍ଯ୍ୟୁକ୍ତ କଥାମାନ ଶୁଣି ବିସ୍ମିତ ହେଲୁ । ବାସ୍ତବରେ ସେ ଆପଣା ଅନ୍ତର୍ଗତ ଭାବ ବ୍ୟକ୍ତ କଲେ କିମ୍ବା ସ୍ୱଦେଶାନୁରାଗୀ ହୋଇ ମିଥ୍ୟା-କାରଣ ପ୍ରଦର୍ଶନ ପୂର୍ବକ ଆପଣାମତ ସ୍ଥାପନ କରିବାକୁ ଚେଷ୍ଟା କଲେ ତାହା ସ୍ଥିର କରିବା କଠିନ ବୋଧ ହେଉଅଛି । ଯେତେ-ବେଳେ ସେ ଉତ୍କଳର ଲୋକସଂଖ୍ୟାର କଥା କହିଲେ ସେ କି ଜାଣୁ ନ ଥିଲେ ଯେ ଉକ୍ତ ଲୋକସଂଖ୍ୟା କେବଳ ମୋଗଲବନ୍ଦିର ଅଟଇ ଓ ଉତ୍କଳଭାଷା ପ୍ରଚଳିତ ଥିବା ଦେଶର ଉତ୍ତରସୀମା ମେଦିନୀପୁର, ଦକ୍ଷିଣସୀମା ଗଞ୍ଜାମ ଓ ପୂର୍ବ ପଶ୍ଚିମରେ ବଙ୍ଗ ଅଖାତଠାରୁ ସମ୍ବଲପୁର ପର୍ଯ୍ୟନ୍ତ ବିସ୍ତୃତ ? ଯେବେ ଏକଥା ତାହାଙ୍କୁ ଜଣାନଥିଲା ତେବେ ସେ ଅକାରଣ ଶ୍ରୋତାମାନଙ୍କୁ ଆପଣା ଅଜ୍ଞାନର ଭାଗୀକରି ଅନିଷ୍ଟ କରିଅଛନ୍ତି । ଯାହାର ଯେଉଁ ବିଷୟର ଜ୍ଞାନ ନାହିଁ ସେ ବିଷୟରେ କୌଣସି କଥା କହିବାର ଅନୁଚିତ ଅଟଇ । ପ୍ରକୃତରେ ଦେଖାଯାଏ ଯେ ଉତ୍କଳଭାଷା ପ୍ରଚଳିତ ଥିବା ଭୂମିଖଣ୍ଡର ଆୟତନ ବଙ୍ଗ ପ୍ରଚଳିତ ଦେଶରୁ ଊଣା ନୁହଇ । ଅତଏବ, ଉତ୍କଳଭାଷା ଉନ୍ନତ ହେବାର ସମ୍ପୂର୍ଣ୍ଣ ସମ୍ଭାବନା ଅଛି । ଆଉ ପୁସ୍ତକ ମୁଦ୍ରାଙ୍କନର ବିଷୟ ଯାହା ଉଲ୍ଲେଖ କଲେ ତାହା ଆହୁରି ଭ୍ରମାତ୍ମକ ଅଟଇ । ଆମ୍ଭେମାନେ ପୁନଃ ପୁନଃ କହୁଅଛୁ ଯେ ବଙ୍ଗଦେଶ ପ୍ରତି ଗବର୍ଣ୍ଣମେଣ୍ଟଙ୍କର ଯେତେଦିନ ହେଲା ସୁଦୃଷ୍ଟି ପଡ଼ିଅଛି ଉତ୍କଳ ପ୍ରତି ତାହା ହୋଇନାହିଁ ସୁତରାଂ ଉତ୍କଳ ପଛକୁ ପଡ଼ିରହିଅଛି । ଯେବେ ପ୍ରଥମରୁ ଦୁଇ ପ୍ରଦେଶ ପ୍ରତି ସମାନଦୃଷ୍ଟି ଥାନ୍ତା ଓ ସେଥିରେ ଉତ୍କଳ ଅବସ୍ଥା ବଙ୍ଗ ପ୍ରତି ନ୍ୟୂନ ହୁଅନ୍ତା ତେବେ ରାଜେନ୍ଦ୍ର ବାବୁଙ୍କ କଥା ଶୋଭା ପାନ୍ତା, କିନ୍ତୁ ସେକାଳ ଓ ଅବସ୍ଥା ପ୍ରତି ବିବେଚନା

ନକରି ସମାନ ଫଳ ପାଇବାର ଆଶାକଲେ ତାହା କରୂପେ ପୂର୍ଣ୍ଣ ହେବ ? ଦୁର୍ଭିକ୍ଷ ପଡ଼ିଲାଦିନୁ ଗଭର୍ଣ୍ଣମେଣ୍ଟଙ୍କର ଏ ଦେଶ ପ୍ରତି କଟାକ୍ଷପାତ ହେଲାରୁ ଯେରୂପ ଏହାର ଉନ୍ନତି ଦେଖାଯାଏ ଯେବେ ଦଶବର୍ଷ ପୂର୍ବରେ ଏହି କାର୍ଯ୍ୟମାନଙ୍କର ଅନୁଷ୍ଠାନ ହୋଇଥାନ୍ତା ତେବେ ରାଜେନ୍ଦ୍ରବାବୁ ସ୍ୱମତ ସ୍ଥାପନାର୍ଥ ଅଭାବ ଦେଖି ବ୍ୟସ୍ତ ହୁଅନ୍ତେ । ଅତଏବ, ଆମ୍ଭେମାନେ କହୁଅଛୁଁ ଯେ ରାଜେନ୍ଦ୍ରବାବୁଙ୍କ ମତ ଅତ୍ୟନ୍ତ ଭ୍ରମମୂଳକ ଓ ଯେଉଁମାନେ ସେଥିର ଅନୁଗାମୀ ହୋଇଅଛନ୍ତି ସେମାନେ ନିରର୍ଥକ କୁହୁଡ଼ିରେ ପହଁରି କେବଳ ଆପଣା ହସ୍ତପଦକୁ କ୍ଳେଶ ଦେଉଅଛନ୍ତି ।

ତେବେ ଉତ୍କଳଭାଷା ଉନ୍ନତି ପ୍ରତି କି ବ୍ୟାଘାତ ଅଛି ? ଆମ୍ଭମାନଙ୍କର ବିଶ୍ୱାସ ଏହି ଯେ, ବର୍ତ୍ତମାନ ଉତ୍କଳ ଭାଷା 'ତିନି-ଥେଁଟିଆ କାକୁଡ଼ି ବାଡ଼ି' ପ୍ରାୟ ଚୁଛାକୁ ଛତିଗ୍ରସ୍ତ ହେଉଅଛି । ଏହାର ରକ୍ଷକ ତିନିଗଭର୍ଣ୍ଣମେଣ୍ଟ ହୋଇଛନ୍ତି ।

ଏକ ଭାଗ ବଙ୍ଗଳା ଗଭର୍ଣ୍ଣମେଣ୍ଟ ହସ୍ତେ, ଏକ ଭାଗ ମଧ୍ୟ-ପ୍ରଦେଶର ଗଭର୍ଣ୍ଣମେଣ୍ଟ ହସ୍ତେ ଏବଂ ଅନ୍ୟ ଏକ ଭାଗ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ହସ୍ତେ ପଡ଼ିବାରୁ ଏହାର ସର୍ବାଙ୍ଗ ସମାନ ରୂପେ ଗଠନ ହେଉନାହିଁ । ଏକ ଏକ ସ୍ଥାନରେ ଏକ ଏକ ପ୍ରଥା ପ୍ରଚଳିତ ଏବଂ ଏକ ଏକ ପ୍ରକାର ପୁସ୍ତକ ପଠିତ ହୁଅଇ । କେଉଁ ନିୟମ ଭଲ ଅବା ମନ୍ଦ ଜାଣିବାର ଉପାୟ ନାହିଁ । ସୁତରାଂ, ଉତ୍କଳଭାଷା ଦୁଇ-ଘର କୁଣିଆ ହୋଇ ଉପବାସ ଶୋଉଅଛି । କେହି ଏହାର ଚର୍ଚ୍ଚା କରିବାକୁ ନାହିଁ । ଏରୂପ ଅବସ୍ଥା ଅତି ଶୋଚନୀୟ ଓ ଆମ୍ଭମାନଙ୍କ ମତରେ ଶୀଘ୍ର ଏହାର ପ୍ରତିକାର କରିବା ଉଚିତ । × ×"
( ତା ୧୩ ତାରିଖ ମାର୍ଚ୍ଚ ୧୮୬୯ । ଉତ୍କଳ ଦୀପିକା )

## ବଙ୍ଗଳା ଅକ୍ଷରରେ ଓଡ଼ିଆ ଭାଷା ଲେଖିବା ପ୍ରସ୍ତାବ

"କଟକ ଷ୍ଟାର" ସମ୍ବାଦପତ୍ରରେ ୧୮୬୯ ଜୁଲାଇ ପ୍ରଥମ ସପ୍ତାହର ସଂଖ୍ୟାରେ ଇଂରାଜୀରେ ଉମାଚରଣ ହାଲଦାର ଖଣ୍ଡିଏ ସୁଦୀର୍ଘ ପତ୍ର ପ୍ରକାଶ କରାଇଥିଲେ । ତାର ଉଦ୍ଦେଶ୍ୟ ହେଲା, ବଙ୍ଗଳା ଅକ୍ଷରରେ ଉତ୍କଳଭାଷା ପୁସ୍ତକ ଓ ସମ୍ବାଦପତ୍ରାଦି ମୁଦ୍ରିତ ହେବ ; ଏହାଦ୍ୱାରା ବଙ୍ଗଳା ଓ ଉତ୍କଳ ଉଭୟ ପ୍ରଦେଶର ଲୋକେ ସହଜରେ ଓଡ଼ିଆ ଭାଷା ଉତ୍ତମରୂପେ ଓ ସହଜରେ ଶିକ୍ଷା କରିପାରିବେ । ସେ ଯେଉଁସବୁ ଯୁକ୍ତି ଦେଇଥିଲେ ସେ ସମ୍ବନ୍ଧରେ "ଉତ୍କଳ ଦୀପିକା" ବ୍ୟଙ୍ଗକରି ପ୍ରତିବାଦରେ ଲେଖିଥିଲେ—

"× × ଯୁକ୍ତିମାନ ମଧ୍ୟ ଅଲୌକିକ ଅଟଇ । ତନ୍ମଧ୍ୟରେ ପ୍ରଧାନ ଯୁକ୍ତି ଏହି କି ଯେବେ ବଙ୍ଗଳା କାଗଜ ବଙ୍ଗଳା କଲମ ଓ ସିହାଇରେ ଉତ୍କଳ ଅକ୍ଷର ଲେଖାଗଲା ତେବେ ବଙ୍ଗଳା ଅକ୍ଷରରେ କିପାଁ ଲେଖା ନ ହେବ ? ଅସ୍ମଦ୍ଦେଶୀୟ ପାଠକ-ମାନେ ଯେବେ କାଗଜ, କଲମ ଓ ସିହାଇର ସୃଷ୍ଟିର ବିଷୟ ନ ଜାଣନ୍ତି ତେବେ ସ୍ମରଣ ରଖନ୍ତୁ ଯେ ଏସବୁ ବଙ୍ଗଳାରେ ଜାତ ହୋଇଅଛି । ଆଉର ଗୋଟିଏ ଯୁକ୍ତିର କଥା ଶୁଣନ୍ତୁ । ଓଡ଼ିଆ ଓ ବଙ୍ଗଳା ଅକ୍ଷର ସବୁକୁ ବାବୁ ବଡ଼ ମନୋଯୋଗପୂର୍ବକ ପରୀକ୍ଷା ତୁଳନା କରି ଦେଖିଲେ ଯେ ବଙ୍ଗଳା ଅକ୍ଷରର ବଡ଼ ଶୋଭା ହୋଇଅଛି ! × ×"

ଓଡ଼ିଶାରୁ ଓଡ଼ିଆଭାଷା ପରିବର୍ତ୍ତରେ ବଙ୍ଗଳା ଭାଷା ପ୍ରଚଳନ କରିବା ପାଇଁ ଯେଉଁ ଆନ୍ଦୋଳନ ହେଉଥିଲା ଏଥିସହିତ ଉପର ଲିଖିତ ପ୍ରସ୍ତାବର ଯେ ସମ୍ପର୍କ ରହିଛି ଏହି ସନ୍ଦେହ ଓଡ଼ିଆବାସୀଙ୍କ ମନରେ ଜାତ ହୋଇଥିଲା ।

ଏହି 'ମାରାତ୍ମକ 'ଆନ୍ଦୋଳନ' ସମ୍ପର୍କରେ ସମର୍ଥକମାନେ ପତ୍ରପତ୍ରିକାରେ ମଧ୍ୟ ଖ୍ରିଷଣ ଚର୍ଚ୍ଚା ଆରମ୍ଭ କରି ଦେଇଥିଲେ । ଏଥିର ପ୍ରମାଣ କଲିକତାର ବ୍ରାହ୍ମ ସମାଜର ମୁଖପାତ୍ର ଇଣ୍ଡିଆନ୍ ମିରର୍ (Indian Mirror)ରେ ଉତ୍କଳର ଶିକ୍ଷା ପ୍ରଣାଳୀ ସମ୍ବନ୍ଧରେ ଏକ ମନ୍ତବ୍ୟ ପ୍ରବନ୍ଧ ଖ୍ରୀ ୧୮୬୯ ସେପ୍ଟେମ୍ବର ତା ୧୭ରିଖରେ ପ୍ରକାଶିତ ହୋଇଥିଲା । ଏହାର ସାରାଂଶ ଉତ୍କଳ ଦୀପିକା "ଓଡ଼ିଶାରେ ବଙ୍ଗଭାଷା ଶିକ୍ଷା" ଶିରୋନାମାରେ ପ୍ରକାଶ କରିଥିଲେ । (ଉ: ଦୀ: ୨୫।୯।୧୮୬୯)

"ସମ୍ପାଦକ ବୋଲନ୍ତି ଯେ ଯଦ୍ୟପି କି ଅବଧି ବଙ୍ଗଳା ଓ ଓଡ଼ିଆ ମଧ୍ୟରେ ପରସ୍ପର ବିବାହ କରିବାର ରୀତି ପ୍ରଚଳ ହୋଇ ନାହିଁ ତଥାପି ଉତ୍କଳ ଓ ବଙ୍ଗଦେଶ ଲୋକ ମଧ୍ୟରେ ଏମନ୍ତ ନୈକଟ୍ୟ ସମ୍ବନ୍ଧ ଅଛି ଯେ ଅନ୍ୟ କୌଣସି ଦୁଇ ଦେଶ କି ପ୍ରଦେଶର ଲୋକ ମଧ୍ୟରେ ସେ ରୂପ ସୁହୃଦତା ନାହିଁ । ଅତଏବ ଓଡ଼ିଶାବାସୀମାନେ ଯେ ବଙ୍ଗଳା ଶିକ୍ଷା କରିବାକୁ ଚେଷ୍ଟିତ ହେବେ ଏଥିରେ ବିଚିତ୍ର କି ଅଛି ? ଓଡ଼ିଆମାନେ କାହିଁକି ବଙ୍ଗଳା ଶିକ୍ଷା କରିବାକୁ ଆଗ୍ରହ ହୁଅନ୍ତି ସମ୍ପାଦକ ତହିଁର ଏହି କାରଣମାନ ଦେଇଅଛନ୍ତି । ଯଥା— ବଙ୍ଗଳା ଭାଷାରେ ଉତ୍କୃଷ୍ଟ ପୁସ୍ତକମାନ ଅଛି ଓ ଏ ଭାଷା ସହଜରେ ଶିକ୍ଷା ହୋଇପାରେ । ଉତ୍କଳୀୟମାନେ ଜାଣନ୍ତି ଯେ ଏ ଭାଷା ଯାହାଙ୍କର ଅଟଇ ସେମାନେ ବିଦ୍ୟା ଓ ସଭ୍ୟତାରେ ଅଧିକ ଉନ୍ନତି ଲାଭ କରିଅଛନ୍ତି । ସେମାନେ ଆହୁରି ଜାଣନ୍ତି ଯେ ବଙ୍ଗଭାଷା ବହୁ ବିସ୍ତୃତ ରାଜ୍ୟ ଖଣ୍ଡ ଓ ଅନେକ ଜାତିର ଲୋକଙ୍କ ମଧ୍ୟରେ ବ୍ୟବହୃତ ହୁଅଇ ଏବଂ ତାହାର ଗଠନ ସୁନ୍ଦର, ସ୍ୱର ସୁଶ୍ରାବ୍ୟ, ଉଚ୍ଚାରଣ କରିବା ସହଜ ଓ ତାଙ୍କ ମାତୃଭାଷାଠାରୁ ଉତ୍କୃଷ୍ଟ ଅଟଇ । ଏହି ସମସ୍ତ ଜାଣି ଓ ବଙ୍ଗାଳୀମାନଙ୍କଠାରୁ ଅନେକ

ପ୍ରକାର ସାହାଯ୍ୟର ପ୍ରତ୍ୟାଶା କରି ଉତ୍କଳୀୟମାନେ ଆପଣା ପୁତ୍ରଙ୍କୁ ବଙ୍ଗଭାଷାରେ ଶିକ୍ଷା ଦେଉଅଛନ୍ତି । ସମ୍ପ୍ରତି ଗଭର୍ଣ୍ଣମେଣ୍ଟ ବଙ୍ଗଳାଭାଷା ଉଠାଇଦେଇ ଓଡ଼ିଆଭାଷା ବିଦ୍ୟାଳୟରେ ଚଳାଇବାର ·ଚେଷ୍ଟା କାହିଁକି କରିଅଛନ୍ତି, ସମ୍ପାଦକ ବୁଝିପାରୁ ନାହାନ୍ତି କିନ୍ତୁ ସେ ଏତିକି ଜାଣନ୍ତି ଯେ ଓଡ଼ିଆମାନେ ଏଥିରେ ଭାରି ଅସନ୍ତୁଷ୍ଟ ଅଛନ୍ତି ଏବଂ ତାହା ନିବାରଣ ନିମିତ୍ତ ଗଭର୍ଣ୍ଣମେଣ୍ଟଙ୍କୁ ପ୍ରଦାନ କରିବା କାରଣ ଏକଖଣ୍ଡ ଦରଖାସ୍ତ କଲିକତାସ୍ଥ କୌଣସି ବନ୍ଧୁଙ୍କ ନିକଟକୁ ପଠାଇଛନ୍ତି ।" (ଉତ୍କଳ ଦୀପିକାରେ ପ୍ରକାଶିତ ସାରାଂଶ । ଉ: ଦୀ: ଭାଗ ସଂ ୩୯. ୨୫।୯।୧୮୬୯)

ଏହି ପ୍ରବନ୍ଧକୁ ତୀବ୍ର ସମାଲୋଚନା କରି ଓ ଲେଖକଙ୍କ ଯୁକ୍ତିର ଅସାରତା ଓ ଅଳୀକତା ପ୍ରତିପାଦନ କରି ଶେଷରେ ଦୀପିକା ଲେଖିଛନ୍ତି ଯେ, "ବଙ୍ଗାଳୀମାନେ ଏଠାରେ ଅନେକ ପ୍ରକାର ଉଦ୍‌ଯୋଗ କରି ଯହୁଁ ଓଡ଼ିଆ ଉଠାଇବାକୁ ଅକ୍ଷମ ହେଲେ ଏବେ ଏଠାରେ ଆଉ କିଛି ଚେଷ୍ଟା ନ କରି ଦେଶି ଲୋକଙ୍କ ଆଶ୍ରୟ ନେଇଅଛନ୍ତି ପୁଣି ସାହସ ଏଡ଼େ ଯେ ଖଣ୍ଡେ ଦରଖାସ୍ତ ମଧ୍ୟ ଏଠାରୁ ପ୍ରାପ୍ତ କରାଇଅଛନ୍ତି । × × ସେ ଯାହା-ହେଉ, ଆମ୍ଭେମାନେ ଇଣ୍ଡିଆନ୍ ମିରରର ସମ୍ପାଦକ ଓ ତାଙ୍କ ସମ୍ବାଦଦାତାଙ୍କୁ ଅନୁରୋଧ କରୁଅଛୁଁ ଯେ ଓଡ଼ିଆମାନେ ବଙ୍ଗଳା ଶିକ୍ଷାପ୍ରତି କେଡ଼େ ଅଦମ୍ୟ ଓ ବଙ୍ଗଳାଭାଷା ଅଦ୍ୟାପି ବିଦ୍ୟାଳୟରେ ପ୍ରଚଳ ଥିବାରୁ ଶିକ୍ଷାର କାର୍ଯ୍ୟରେ କେତେ ବ୍ୟାଘାତ ହେଉଅଛି ଯେବେ ଏ ସମସ୍ତ ସେମାନଙ୍କର ଜାଣିବାର ଇଚ୍ଛାଥାଏ ଓ ଯେବେ ଉତ୍କଳ ପ୍ରତି ସେମାନେ ଯଥାର୍ଥ ମନୋଯୋଗୀ ଅଛନ୍ତି ତେବେ ଏ ବିଷୟରେ ଅଦ୍ୟାପି ସାଧାରଣ ପକ୍ଷରୁ ଗଭର୍ଣ୍ଣମେଣ୍ଟକୁ ଯେଉଁ

ଆବେଦନପତ୍ର ଯାଇଅଛି ଓ ଜିଲ୍ଲାର କଲେକ୍ଟର ଓ କମିଶନର ଯେ ସମସ୍ତ କଥା ଲେଖିଛନ୍ତି ଥରେ ସେ ସମସ୍ତ ପାଠ କରନ୍ତୁ । ବର୍ତ୍ତମାନ ଉକ୍ତ କାଗଜମାନ ଶିକ୍ଷା ବିଭାଗ ଡିରେକ୍ଟରଙ୍କ କଚେରିରେ ଅଛି । ସେଠାକୁ ଗଲେ ଅବଶ୍ୟ ଦେଖି ପାରିବେ । ସେ ସମସ୍ତର ମର୍ମରୁ ଅବଗତ ହୋଇ ଆପଣା ଆପଣା ମନ୍ତବ୍ୟ ଲେଖିଲେ ଉତ୍ତମ ହେବ । ମିଛାକୁ ଲୋକଙ୍କୁ ଭ୍ରମରେ ପକାଇବା ଉଚିତ ନୁହେଁ ।” (ଉ: ଦୀ: ଭାଗ ୪ ସ ୩୯, ୨୫।୯।୧୮୬୯)

## ଓଡ଼ିଆରେ ଶିକ୍ଷାଦାନ ଆଦେଶ

ଓଡ଼ିଶାର ଦୃଢ଼ ଦାବିକୁ ଉଦାରହୃଦୟ, ନ୍ୟାୟବାନ୍ ଉଚ୍ଚ ରାଜକର୍ମଚାରୀମାନେ ସମର୍ଥନ କରିବାରୁ ଓଡ଼ିଶାରେ ବଙ୍ଗଭାଷା ପ୍ରଚଳନ ଆନ୍ଦୋଳନ ବିଫଳ ହେଲା । ଶିକ୍ଷା ବିଭାଗର ଡିରେକ୍ଟର ସାହେବ ବଙ୍ଗଭାଷା ପ୍ରଚାରକମାନଙ୍କଦ୍ୱାରା ପ୍ରଭାବିତ ହୋଇ ସେମାନଙ୍କ ମତକୁ ସମର୍ଥନ କରିଥିଲେ । କିନ୍ତୁ ଓଡ଼ିଶାର କମିସନର ରେଭେନ୍‌ସା ଓ ସ୍କୁଲ ଇନ୍‌ସପେକ୍ଟର ମାର୍ଟିନ୍ ଯୁକ୍ତିଯୁକ୍ତ କାରଣ ଦେଖାଇ ସରକାରଙ୍କଠାରେ ଏହି ଆନ୍ଦୋଳନର ବିରୋଧ କରିଥିଲେ । ମାର୍ଟିନ୍‌ଙ୍କ ମତକୁ ଲେଫ୍‌ଟେନେଣ୍ଟ ଗଭର୍ଣ୍ଣର ଯୁକ୍ତିଯୁକ୍ତ ମନେ କରି ଓଡ଼ିଶାରେ ସର୍ବତ୍ର ଓଡ଼ିଆ ଭାଷା ପ୍ରଚଳନ କରିବାକୁ ଆଦେଶ ଦେଲେ । ଓଡ଼ିଆ ପାଠ୍ୟପୁସ୍ତକ ନିର୍ବାଚନ ସମ୍ପର୍କରେ ଏକ କମିଟି ନିଯୁକ୍ତ କରିଯିବା ପାଇଁ ଲୋକେ ଯେଉଁ ଦାବୀ କରୁଥିଲେ ତାହା ସରକାର ମଞ୍ଜୁର କରିଥିବାରୁ ଓଡ଼ିଆଭାଷାରେ ପାଠ୍ୟପୁସ୍ତକ ରଚନାର ଆଉ ଅନ୍ତରାୟ ରହିଲାନାହିଁ । ବଙ୍ଗଭାଷା ପ୍ରଚଳନ ସମର୍ଥକମାନଙ୍କୁ ଲକ୍ଷ୍ୟକରି ‘ଦୀପିକା’ କହିଛନ୍ତି, ‘ପାଠକମାନେ ଏଥିରୁ ଜାଣିବେ ଯେ ଏତେ ବଙ୍ଗଳା ଓ ଓଡ଼ିଆଭାଷା ଯେନ ଯେତେ ବିରୋଧ

ଜାତ ହୋଇଥିଲା, ତାହା ସମସ୍ତ ରହିତ ହେଲା ଓ ଯେଉଁମାନେ ବଳେ ପଶି ଓଡ଼ିଶାର ହିତ କରିବାକୁ ସହର ମଫସଲରେ ଚେଷ୍ଟା କରି କୌଣସି ଉପାୟ ପରିତ୍ୟାଗ କରିନଥିଲେ ସେମାନଙ୍କ ଶ୍ରମ ସାର୍ଥକ ହେଲା ନାହିଁ ।”

ଶିକ୍ଷାବିଭାଗର ଡ଼ିରେକ୍ଟରଙ୍କ ପରାମର୍ଶକୁ ପ୍ରତ୍ୟାଖ୍ୟାନ କରି ସ୍କୁଲ ଇନ୍‌ସପେକ୍ଟରଙ୍କ ମତକୁ ଗ୍ରହଣ କରି ଲେଫ୍‌ଟ୍‌ନେଣ୍ଟ ଗଭର୍ଣ୍ଣର ଯେଉଁ ମନ୍ତ ଘୋଷଣା କରିଥିଲେ ତାହାର ସାରାଂଶ ଏହା—

ପ୍ରଥମ—କଟକ ହାଇସ୍କୁଲ ଓ ଅନ୍ୟ ଦୁଇ ଜିଲ୍ଲାସ୍କୁଲରେ ବଙ୍ଗଳା ଅଥବା ଓଡ଼ିଆ ଭାଷା ପାଠକରିବା ଛାତ୍ରଙ୍କ ସ୍ୱେଚ୍ଛାଧୀନ ରହିବ ; ଅଥବା ସରକାରଙ୍କ ମତରେ ଦୁଇ ଭାଷା ଶିକ୍ଷା କରିବାକୁ ହେବ ।

ଦ୍ୱିତୀୟ—ମଧ୍ୟଶ୍ରେଣୀର ଇଂରେଜୀ ଓ ଭାଷାସ୍କୁଲରେ ସବୁ ବିଷୟର ଶିକ୍ଷା ଉତ୍କଳ ଭାଷାରେ ଦିଆଯିବ. ଇଂରେଜୀ ଅବଶ୍ୟ ପଢ଼ିବାକୁ ହେବ ଏବଂ ବଙ୍ଗଳା ସ୍ୱେଚ୍ଛାଧୀନ ରହିବ ।

ତୃତୀୟ—ମଧ୍ୟମ ଶ୍ରେଣୀର ଉତ୍କଳ ବିଦ୍ୟାଳୟରେ ଯେ ପର୍ଯ୍ୟନ୍ତ ଉତ୍କଳଭାଷାରେ ଉତ୍ତମ ସାହିତ୍ୟ ପୁସ୍ତକ ହୋଇନାହିଁ, ସେ ପର୍ଯ୍ୟନ୍ତ ଭାଷା ଶିଖିବା ପାଇଁ ବଙ୍ଗଳା ପଢ଼ାଯିବ ।

ଚତୁର୍ଥ—ନିମ୍ନଶ୍ରେଣୀର ଉତ୍କଳ ବିଦ୍ୟାଳୟରେ କେବଳ ଉତ୍କଳ ଭାଷାରେ ଶିକ୍ଷା ଦିଆଯିବ ।

ଉତ୍କଳ ଭାଷାରେ ପାଠ୍ୟପୁସ୍ତକର ସଂଖ୍ୟା ଯଥେଷ୍ଟ ହୋଇ-ନଥିବାରୁ ଏପରି କରାଗଲା ।

ଲେ: ଗଭର୍ଣ୍ଣରଙ୍କ ମତର ମର୍ମ ହେଲା, ଜିଲ୍ଲାସ୍କୁଲର ତଳ ସମସ୍ତ ବିଦ୍ୟାଳୟରେ ଉତ୍କଳ ଭାଷାରେ ଶିକ୍ଷା ବିଧାନ ହେବ ଏବଂ ଜିଲ୍ଲା ସ୍କୁଲ ଓ ହାଇସ୍କୁଲରେ ଛାତ୍ରମାନେ ଇଚ୍ଛା କଲେ ବଙ୍ଗଳା ଶିକ୍ଷା କରିପାରିବେ । ଏହି ଆଦେଶକୁ ଶୀଘ୍ର କାର୍ଯ୍ୟରେ ପରିଣତ

କରିବାପାଇଁ ସରକାର ଡିରେକ୍ଟରଙ୍କୁ ଆଦେଶ ଦେଇଥିଲେ । ଏହା ୧୮୬୯ର ଶେଷ ଭାଗର ଘଟନା ।

ଏହି ସରକାରୀ ଆଦେଶରେ ଆନନ୍ଦ ପ୍ରକାଶ କରି "ଉତ୍କଳ ଦୀପିକା" (୨୭।୧୧।୧୮୬୯)ରେ ଲେଖିଥିଲେ—

"ଆମ୍ଭେମାନେ ଏ ସମସ୍ତ କଥା ଅବଗତ ହୋଇ କେତେ ଆନନ୍ଦିତ ହୋଇଅଛୁଁ ବର୍ଣ୍ଣନା କରିବାକୁ ଅସମର୍ଥ । ଏହି ଉତ୍କଳ ଓ ବଙ୍ଗଭାଷା ବିଷୟରେ ଆମ୍ଭମାନଙ୍କ କ ପର୍ଯ୍ୟନ୍ତ କ୍ଳେଶ ସହିବାକୁ ହୋଇଅଛି ତାହା କାହାରିକୁ ଅବିଦିତ ନାହିଁ । ନିନ୍ଦା ଓ ବ୍ୟଙ୍ଗୋକ୍ତି ଛଡ଼ା ଦରବାର ପର୍ଯ୍ୟନ୍ତ ଟଣା ହୋଇଥିଲୁଁ । କିନ୍ତୁ ପରିଶେଷରେ। ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେଲା । ଏମନ୍ତ ନୁହଇ । ଆମ୍ଭେମାନେ ପୁନଃ ପୁନଃ ଯେ ପ୍ରସ୍ତାବମାନ କରିଥିଲୁଁ ତାହା ଗବର୍ଣ୍ଣମେଣ୍ଟୁ ପ୍ରକାଶ ହେଲା । ଆମ୍ଭମାନଙ୍କର ହିତାକାଂକ୍ଷୀ କମିଶନର ଶ୍ରୀଯୁକ୍ତ ରେଭେନ୍‌ସା ସାହେବ ଏ ବିଷୟରେ ଯେପର୍ଯ୍ୟନ୍ତ ଉତ୍କଳର ହିତସାଧନରେ କୃତକାର୍ଯ୍ୟ ହେଲେ ତାହାଁର ଉପଯୁକ୍ତ ଧନ୍ୟବାଦ କିରୂପେ ବ୍ୟକ୍ତ କରିବୁ ସ୍ଥିର କରିବାକୁ ଅସମର୍ଥ ହେଉଅଛୁଁ । ଏ ତାହାଙ୍କର କୀର୍ତ୍ତିସ୍ତମ୍ଭପ୍ରାୟ ରହିଲା, ସନ୍ଦେହ ନାହିଁ । ପରିଶେଷରେ ବକ୍ତବ୍ୟ ଏହି ଯେ, ଅଷଟ୍ୟ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ଗବର୍ଣ୍ଣମେଣ୍ଟଙ୍କୁ ଉତ୍କଳ ଭାଷାରେ ଶିକ୍ଷାଦାନ ବିଷୟରେ ଯେଉଁ ଦରଖାସ୍ତ କରିଥିଲେ ଶ୍ରୀଯୁକ୍ତ ଲେଫ୍‌ଟ୍‌ନେଣ୍ଟ ଗଭର୍ଣ୍ଣର ସାହେବ ତାହାକୁ ଯୁକ୍ତିଯୁକ୍ତ ଜ୍ଞାନ କରି ପ୍ରଶଂସା କରିଅଛନ୍ତି । × ×"

## ଉତ୍କଳଭାଷାରେ ଶିକ୍ଷାଦାନର ଆବଶ୍ୟକତା

ଓଡ଼ିଶାରେ ସ୍କୁଲମାନଙ୍କରେ ଓଡ଼ିଆ ଭାଷା ପ୍ରଚଳନ ହେବାର ସରକାରୀ ଆଦେଶ ହେବା ପରେ ମଧ୍ୟ ଓଡ଼ିଶା ଛାତ୍ରମାନଙ୍କର କେତେକ ଅସୁବିଧା ରହିଯାଇଥିଲା । ଉପଯୁକ୍ତ ଓଡ଼ିଆ ପାଠ୍ୟପୁସ୍ତକ

ଅଭାବରୁ ସରକାର ଆଜ୍ଞା କଲେ ଯେ ଏ ଅଭାବ ଦୂର ହେବା ପର୍ଯ୍ୟନ୍ତ ବଙ୍ଗଳା ଭାଷାରେ ଶିକ୍ଷା ଦିଆ ଯାଉଥିବ । ଗବର୍ଣ୍ଣମେଣ୍ଟ ସବୁପ୍ରକାର ବିଦ୍ୟାଳୟରୁ ବଙ୍ଗଳା ଉଠାଇଦେଇ ବର୍ତ୍ତମାନ କେବଳ ମଧ୍ୟମ ଶ୍ରେଣୀରେ ବଙ୍ଗଳା ପଢ଼ାଇବା ପାଇଁ ଅନୁମତି ଦେଇଥିଲେ । ଓଡ଼ିଶାର ଅଧିକାଂଶ ସ୍କୁଲ ମଧ୍ୟମ ଶ୍ରେଣୀର ଥିବାରୁ ପିଲାମାନେ ବଙ୍ଗଳା ପଢ଼ିବାକୁ ବାଧ ହେଉଥିଲେ । ଏହି ଅଭାବ ପ୍ରତି ଦୃଷ୍ଟି ଦେଇ "ଉତ୍କଳ ଦୀପିକା" ଲେଖିଛନ୍ତି—"ଗବର୍ଣ୍ଣମେଣ୍ଟ ବୋଲନ୍ତି ଯେ ଉତ୍କଳ ଭାଷାରେ ଉତ୍ତମ ପୁସ୍ତକ ସୁଲଭ ହେବା ପର୍ଯ୍ୟନ୍ତ ବଙ୍ଗଳା ଭାଷାରେ ଶିକ୍ଷା ଦିଆଯାଉଥିବ ଓ ଶିକ୍ଷାବିଭାଗର କର୍ମକର୍ତ୍ତାମାନେ ତଦନୁସାର ବଙ୍ଗଳା ଚାରୁପାଠ ପାଠ୍ୟ ପୁସ୍ତକ ବୋଲି ଧାର୍ଯ୍ୟ କରିଅଛନ୍ତି । ଏଥିକୁ ଯେ ସ୍ଥଳେ ସେହି ପୁସ୍ତକ ଉତ୍କଳରେ ଅନୁବାଦିତ ହୋଇ ବିକ୍ରୟ ହେଉଅଛି ସେ ସ୍ଥଳେ ବଙ୍ଗଳା ଭାଷା ପୁସ୍ତକ ରଖିବାରେ ବିଶେଷ କି ଲାଭ ? ଉତ୍କଳ ଚାରୁପାଠ ପଢ଼ାଇବାରେ କି କ୍ଷତି ହେବ ଆମ୍ଭେମାନେ ସ୍ଥିର କରିବାକୁ ଅକ୍ଷମ ହେଉଅଛୁଁ । ବାସ୍ତବରେ କିଛି କ୍ଷତି ନାହିଁ ଏବଂ ଏତିକରେ ବଙ୍ଗଳା ରହିଅଛି ବୋଲି ଅନେକ କ୍ଷତିର ସମ୍ଭାବନା ଦେଖାଯାଏ ।" ବଙ୍ଗଳା ଚାରୁପାଠ ବଦଳରେ ତାର ଓଡ଼ିଆ ଅନୁବାଦ ବହି ପାଠ୍ୟ ପୁସ୍ତକରୂପେ ଧାର୍ଯ୍ୟ କରିବାକୁ ସରକାରଙ୍କ-ଠାରେ ଦୀପିକା ଦାବୀ କରିଥିଲେ ।

ଏହି ସମ୍ପର୍କରେ ଜଣେ କେହି "ଉତ୍କଳ ଦୀପିକା"ରେ ଖଣ୍ଡିଏ ପତ୍ର ପ୍ରକାଶ କରି ଅଭାବ ଅସୁବିଧାର ଗୋଟିଏ ସୁନ୍ଦର ଚିତ୍ର ଦେଇଛନ୍ତି । ସେ ସମ୍ପାଦକଙ୍କଠାକୁ ଲେଖିଛନ୍ତି—

"ଏତେ କହି କହି ଉତ୍କଳ ଦେଶର ଦୁଃଖ ନଗଲା । ବାଳକମାନଙ୍କର ଦୁଃଖ ସବୁଠାରୁ ଅଧିକ । ସେମାନେ ଦୁଇନାବରେ ଗୋଡ଼ଦେଇ ବୁଡ଼ି ମଲେ । ଆପଣ ଅନୁଭବ କରିବା ହୋଇଥିବେ

ଯେ, ମଫସଲରେ ବାଳକମାନେ କେତେ ସହଜରେ ବଙ୍ଗଳା କଥା ଉଚ୍ଚାରଣ କରନ୍ତୁ, ବିଶେଷରେ ଯେଉଁମାନେ କି ବଙ୍ଗାଳିଙ୍କ ସହିତ ବସା ଉଠା କରିନାହାନ୍ତି ତାଙ୍କ ବଙ୍ଗଳା କହିବା ତ ଅତି ରମଣୀୟ । ନାଁ ହେଲା ଓଡ଼ିଶାରେ ସବୁ ଶିକ୍ଷା ଦିଆଗଲା କିନ୍ତୁ ପ୍ରକୃତରେ ବୁଝିଲେ ବଙ୍ଗଳା ଉତ୍ତମରୂପେ ପଢ଼ା ହେଉଅଛି । ସେମାନଙ୍କର ଅଧିକାଂଶସମୟ ଭାଷାଶିକ୍ଷା ଓ ତଦୁଚ୍ଚାରଣରେ ଗଲା । ଜ୍ଞାନ ଉପାର୍ଜ୍ଜନକୁ ଅତି ଅଳ୍ପ ରହିଲା । ବାଳକମାନେ ବଙ୍ଗଳାରେ ଅପଟୁଥିବାରୁ ଶିକ୍ଷକମାନେ କେତେବେଳେ କେତେବେଳେ ବାଧିତ ହୋଇ ବଙ୍ଗଳାରେ ବୁଝାନ୍ତି କି କଥୋପକଥନ କରନ୍ତି । "କାଲ୍" ବୋଲି କହିଲେ କେହି କାଳିଆ ବୁଝିଲେ, କେହି ବା କାଲ କି ବଧିର ବୁଝିଲେ, କେହି ଗଲା କାଲି କି ଆସନ୍ତାକାଲି ବୁଝିଲେ, ଓ ଓଡ଼ିଶାରେ ଯେ କହନ୍ତି ଆଲ ବୋଇଲେ କାଲ ଶୁଣିଲେ ସେଇଟା ହୋଇଅଛି । ମଫସଲ ବିଦ୍ୟାଳୟ-ମାନଙ୍କର ଏହିପରି ଦୁରବସ୍ଥା । ଛାତ୍ରବୃତ୍ତି ପରୀକ୍ଷାର ଏହି ଉଦ୍ଦେଶ୍ୟ ଯେ, ବାଳକମାନଙ୍କୁ ସେମାନଙ୍କର ଆପଣା ଆପଣା ଭାଷାରେ କିଛୁ ପରିମାଣରେ ଶିକ୍ଷା ଦେଇ 'ପରେ ତାହାଙ୍କୁ ଇଂରେଜୀ ବିଦ୍ୟାରେ ସମଧିକ ନିପୁଣ କରି ଉତ୍ତମ ଉତ୍ତମ ଶାସ୍ତ୍ରାଧ୍ୟାପନ କରାଇବା । କିନ୍ତୁ ସେ ଉଦ୍ଦେଶ୍ୟ ବର୍ତ୍ତମାନ ନହୋଇ ଉତ୍କଳବାଳକମାନଙ୍କୁ ଭାଷାବିତ୍ ପଣ୍ଡିତ କରିବାର ହେଉଅଛି । ସବୁ ବଙ୍ଗଳା ତ ଉଠିଗଲା । ବର୍ତ୍ତମାନ ଶିକ୍ଷାର ସମସ୍ତ ଆରମ୍ଭ ମାତ୍ର । ଏତେବେଳେ ସେହି ବଙ୍ଗଳା ଗ୍ରନ୍ଥପାଠ ହସ୍ତପୃଭାଗ ବ୍ୟବହାର କରିବାର କି ପ୍ରୟୋଜନ ? ତତ୍ପରିବର୍ତ୍ତରେ ତହିଁର ତର୍ଜମା ସମ୍ବଲପୁରର ବାବୁ ବଞ୍ଛାନିଧିଚରଣ ପଟ୍ଟନାୟକଙ୍କକୃତ ପୁସ୍ତକ ପଢ଼ାଇଲେ ଅତି ଉତ୍ତମ ହୁଅନ୍ତା । ଏଥିରେ ବାଳକମାନେ ବିଦେଶୀୟ ଭାଷା ଶିକ୍ଷାରେ ଯେତେ ସମୟ ଅପବ୍ୟୟ କରୁଅଛନ୍ତି ସେହି ସମସ୍ତ ସେମାନେ ଯେବେ ଜ୍ଞାନୋପାର୍ଜ୍ଜନରେ

ବ୍ୟସ୍ତ କରିବେ ତେବେ ସେମାନଙ୍କର ବାସ୍ତବିକ କେତେ ଉପକାର ନ ହେବ ? ଏହି ବର୍ଷ ପରୀକ୍ଷାରେ ଯେଉଁ ଫଳ ତାହା ଦେଖିଲେ ଜାଣିବ ଯେ ବାଳକମାନେ ଦୁଇଭାଷା ଶିକ୍ଷାକରି ଉତ୍ତମ ପରୀକ୍ଷା ଦେଇଛନ୍ତି । ଏବର୍ଷ ବଙ୍ଗଳା ଭାଷା ଶିକ୍ଷା ଇଚ୍ଛାଧୀନ କରିଦିଅ ଆରବର୍ଷ ଦେଖିବ ବାଳକମାନେ କପରି ପରୀକ୍ଷା ଦେବେ ଓ ଫଳ କାଦୃଶ ହେବ । × ×"

ବଙ୍ଗଳାରୁ ଅନୁବାଦ ଗ୍ରନ୍ଥ ପାଠ୍ୟପୁସ୍ତକ ରୂପେ ଗ୍ରହଣ କରିବାକୁ କେହି କେହି ନାରାଜ ଦେଖାଯାଉଥିଲେ ଏବଂ ଏହାକୁ ଜାତିର ଗୌରବର ହାନିକର ବ୍ୟାପାର ବୋଲି ମନେ କରୁଥିଲେ । କିନ୍ତୁ ପତ୍ରପ୍ରେରକ ଏଥିରେ କୌଣସି ଦୋଷ ବା ଅପମାନ ଦେଖୁ ନଥିଲେ ଏବଂ ଅଳ୍ପକାଳ ମଧ୍ୟରେ ବହୁସଂଖ୍ୟାରେ ଓଡ଼ିଆ ବହି ପ୍ରକାଶିତ ହେବାର ଆଶା ପତ୍ରପ୍ରେରକ ପୋଷଣ କରିଥିଲେ । ( ଉ. ଦୀ. ଭା୫. ସଂ୪। ୨୯।୧।୧୮୭୦ )

## "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ"

୧୮୭୦ ଆରମ୍ଭ ସରିକି ଓଡ଼ିଆ ଭାଷା ଲୋପ କରି ସ୍କୁଲ ଓ କଚେରୀମାନଙ୍କରେ ବଙ୍ଗଳା ଭାଷା ପ୍ରଚଳନପାଇଁ କେତେଜଣ ବଙ୍ଗୀୟ ଭଦ୍ରବ୍ୟକ୍ତି ପ୍ରଗାଢ଼ ଆନ୍ଦୋଳନ କରିସାରିଥିଲେ । (ଡାକ୍ତର) ରାଜେନ୍ଦ୍ରଲାଲ ମିତ୍ର ଏ ଦିଗରେ ବିଶେଷ ଅଗ୍ରଣୀ ଥିଲେ । ଏହି ଆନ୍ଦୋଳନର ମୁଖ୍ୟ ଉଦ୍ଦେଶ୍ୟ ସାଧନ ଦିଗରେ ଓଡ଼ିଶାରେ ସରକାରୀ ସ୍କୁଲ ଓ କଚେରୀମାନଙ୍କରେ କାମ କରୁଥିବା କେତେଜଣ ବଙ୍ଗୀୟ ଭଦ୍ରବ୍ୟକ୍ତି ଖୁବ୍ ଉଦ୍ୟୋଗ କରୁଥିଲେ । ବାଲେଶ୍ୱର ଗବର୍ଣ୍ଣମେଣ୍ଟ ବିଦ୍ୟାଳୟର ପଣ୍ଡିତ ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଏ ଦିଗରେ

ବିଶେଷ ପରିଶ୍ରମ କରିବାର ଦେଖାଯାଏ । ଶୂନ୍ୟକୁ ଭର୍ତ୍ତି ଦେବାପାଇଁ ସେ ବହୁତ ଶ୍ରମ କରିଥିଲେ । 'ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ' ନାମ ଦେଇ ଖଣ୍ଡିଏ ବଙ୍ଗଳା ବହି ସେ ଲେଖି ପ୍ରଚାର କରିଥିଲେ । ଉତ୍କଳ ଓ ବଙ୍ଗ ଭାଷା ଏକ ଥିବା ପ୍ରତିପାଦନ କରି ଓଡ଼ିଆ ଭଷାର ସ୍ୱତନ୍ତ୍ର ଅସ୍ତିତ୍ୱର ଆବଶ୍ୟକତା ନାହିଁ ବୋଲି ପ୍ରଚାର କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ଏହି ଗ୍ରନ୍ଥ ଓଡ଼ିଶାରେ ଖୁବ୍ ଚହଳ ପକାଇ ଦେଇଥିଲା । ଉତ୍କଳ ଦୀପିକା ଏହି ଗ୍ରନ୍ଥ ସମ୍ବନ୍ଧରେ ଅତି ତୀବ୍ର ସମାଲୋଚନା କରି ଗ୍ରନ୍ଥର ଲିଖିତ ବିଷୟ ଯେ ଅସାର ଓ ଅଳୀକ ତଥ୍ୟ ତାହା ପ୍ରକାଶ କରିଥିଲେ । ପ୍ରାୟ ଦେଢ଼ବର୍ଷ ପୂର୍ବେ ସରକାର ଓଡ଼ିଶାରେ ଓଡ଼ିଆଭାଷା ଚଳିବ ବୋଲି ସିଦ୍ଧାନ୍ତ ଗ୍ରହଣ କରିଥିଲେ ମଧ୍ୟ କେତେ ଜଣ ବଙ୍ଗୀୟ ଭଦ୍ରବ୍ୟକ୍ତି ଏ ବିଷୟରେ ପୁନର୍ବାର ଆନ୍ଦୋଳନ ଚଳାଇବାକୁ ଉଦ୍ୟମ କରିଥିଲେ ।

"× × ଉତ୍କଳ ଓ ବଙ୍ଗଭାଷା ଯେନି କେତେ କାଳରୁ ଯେ ବିବାଦ ହୋଇଥିଲା ଏ ପୁସ୍ତକ ତହିଁର ଫଳ ଅଟଇ ଓ ଗ୍ରନ୍ଥକର୍ତ୍ତା କାୟିକ ଶ୍ରମ ଓ ଅର୍ଥବ୍ୟୟ ସ୍ୱୀକାର ପୂର୍ବକ ସ୍ୱଦେଶାନୁରାଗର ଯେମନ୍ତ ପରିଚୟ ଦେଇଅଛନ୍ତି ତାହା ପ୍ରଶଂସାଯୋଗ୍ୟ, ସନ୍ଦେହ ନାହିଁ । କେହି କେହି ବୋଲନ୍ତି ଯେ ଓଡ଼ିଆ ବଙ୍ଗଳାର ବାଦ ଗଭର୍ଣ୍ଣମେଣ୍ଟରୁ ନିଷ୍ପତ୍ତି ହେବାର ଜାଣି ଗ୍ରନ୍ଥକର୍ତ୍ତା କାହିଁକି ଅନର୍ଥକ କ୍ଲେଶ ଓ ଧନ ବ୍ୟୟରେ ମତ୍ତ ହେଲେ । ଏଥିରେ ଗ୍ରନ୍ଥକର୍ତ୍ତା ସ୍ୱଜାତିର ଗୋଟିଏ ଲକ୍ଷଣ "ହୁଜ୍ଜତେ ବଙ୍ଗାଲ" ଯେଉଁ ପ୍ରବାଦ ଅଛି ତାହା ସାର୍ଥକ କରିଅଛନ୍ତି ।

"ଗ୍ରନ୍ଥକର୍ତ୍ତା ପୁସ୍ତକର ଆରମ୍ଭରେ ଲେଖିଛନ୍ତି ଯେ, ଭାଷାତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମତାନୁସାରେ ଓଡ଼ିୟା, ବଙ୍ଗଳା,

ହିନ୍ଦି ପ୍ରଭୃତି ଦେଶ ଭାଷା ଏକ ମୂଳରୁ ଉତ୍ପନ୍ନ ଅର୍ଥାତ୍ ଓଡ଼ିଆ ବଙ୍ଗଳା ଇତ୍ୟାଦି କେହି ସ୍ୱତନ୍ତ୍ର ଭାଷା ନୁହନ୍ତି । କିନ୍ତୁ ତଦୁପରାନ୍ତ ଓଡ଼ିଆକୁ ବଙ୍ଗଳା ବୋଲି ସିଦ୍ଧାନ୍ତ କରିଛନ୍ତି । ଏଥିକୁ ତାଙ୍କର କେଉଁକଥା ସତ୍ୟ ବୁଝିବାର କଠିନ । ବୋଧ ହୁଅଇ ଭାଷାବିଦ୍-ମାନଙ୍କ କଥା ମିଥ୍ୟା ହୋଇନଥିବ । ନଚେତ୍ ଯେଉଁ ଉତ୍କଳ ଭାଷାର କଥା ଗ୍ରନ୍ଥକର୍ତ୍ତା ଲେଖନ୍ତି ତାହାଛଡ଼ା ଆଉ କିଛି ସ୍ୱତନ୍ତ୍ର ଓଡ଼ିଆଭାଷା ଥିବ । ସେ ଯାହାହେଉ ଆମ୍ଭେମାନେ ଓଡ଼ିଆ ଭାଷାକୁ କେବେହେଁ ସ୍ୱତନ୍ତ୍ର ଭାଷା ବୋଲି ବୋଲୁନାହୁଁ । ଏହାକୁ ସଂସ୍କୃତର ଅଧୀନ ବୋଲି ଜାଣୁ । ଗ୍ରନ୍ଥକର୍ତ୍ତାଙ୍କ ମତରେ କି ବଙ୍ଗଳା ସ୍ୱତନ୍ତ୍ରଭାଷା ଯେ, ଓଡ଼ିଆ ତାହା ସଙ୍ଗରେ କିୟଦଂଶରେ ମିଶିବାରୁ ସେ ସ୍ୱତନ୍ତ୍ର ଭାଷା ହେଲନାହିଁ ? ମାତ୍ର ଦୁଃଖର ବିଷୟ ଯେ ବଙ୍ଗଳାଭାଷା ସ୍ୱତନ୍ତ୍ର ଥିବା ପକ୍ଷରେ କିଛି ପ୍ରମାଣ ଦେଇ ନାହାନ୍ତି ଓ ଯେବେ ଏକ ଆର୍ଯ୍ୟ ଜାତିଙ୍କ ସମାଗମରେ ଏକ ସ୍ଥାନରେ ହିନ୍ଦି ଓ ଅନ୍ୟ ସ୍ଥାନରେ ବଙ୍ଗଳା ଭାଷା ସୃଜନ ହେଲା ତେବେ ଏକ ସ୍ଥାନରେ ଓଡ଼ିଆ ଭାଷା ହେବାର କି ଅସୁବିଧା ହେଲା ଜଣାପଡୁନାହିଁ । ହିନ୍ଦୋସ୍ଥାନରୁ ଓଡ଼ିଶାକୁ ଲୋକ ଆସିବାର କି ବଙ୍ଗଳା ଭିନ୍ନ ବାଟ ନଥିଲା ? ଯେଉଁ ଖଣ୍ଡରେ ଗ୍ରନ୍ଥକର୍ତ୍ତାଙ୍କ ମତରେ ଏକଭାଷା ଅର୍ଥାତ୍ ବଙ୍ଗଳା ଭାଷା ହେବା ଉଚିତ, ସେ ଖଣ୍ଡର ଆଦିମନିବାସୀ, ଯଥା, ଗାରୋ, ସାନ୍ତାଳ, କନ୍ଧ, ଜୁଅଙ୍ଗ, ଶବର ଇତ୍ୟାଦିଙ୍କ ଭାଷା ଭିନ୍ନ କାହିଁକି ହେଲା ? ବୋଧ ହୁଅଇ ଏଥିର ଉତ୍ତର ପାଇଁ ଗ୍ରନ୍ଥକର୍ତ୍ତା ଡାକ୍ତର ହଣ୍ଟରଙ୍କ ସାହାଯ୍ୟ ନେଇ କହିବେ ଯେ ଏ ସମସ୍ତ ଭାଷାର ମୂଳ ଏକ ଅଟଇ ମାତ୍ର ଭାଷା ପୃଥକ୍ ଥିବାର ଅସ୍ୱୀକାର କରି ପାରିବେ ନାହିଁ ।

"କେବଳ କେତେକ ସୂସାଦୃଶ୍ୟ ହେତୁରୁ ଯେବେ ଦୁଇ ବା ଅଧିକ ଭଷାକୁ ଏକ ବୋଲିଯାଇପାରେ ତେବେ ସେହି ଓଡ଼ିଶାରୁ ହିନ୍ଦ ଓ ବଙ୍ଗଳା ବାହାରଥିବାର କହିଲେ ଦୋଷ ହେବନାହିଁ । ମାତ୍ର ଓଡ଼ିଆମାନେ ତୁଚ୍ଛକୁ ଏତେ ଅହଙ୍କାର କରନ୍ତି ନାହିଁ ଅଥଚ ବିଚାରକଲେ ଅହଙ୍କାର କରିବାର ଅନେକ କାରଣ ଅଛି । ଓଡ଼ିଶାର କୀର୍ତ୍ତିକଳାପ ବଙ୍ଗଳାରେ ନାହିଁ । ଓଡ଼ିଶାର ରାଜା ଏକ ସମୟରେ ବଙ୍ଗଳାର ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ । ବଙ୍ଗଳାର କୌଣସି ରାଜା କେବେ ଓଡ଼ିଶାକୁ ଜୟ କରିଥିବାର ଶୁଣାନାହିଁ । ଅତଏବ ବଳବୀର୍ଯ୍ୟ ଓ ଶିଳ୍ପ କୌଶଳରେ ଓଡ଼ିଶାର ପୂର୍ବକାଳୀୟ ଲୋକ ବଙ୍ଗଳାରୁ ଶ୍ରେଷ୍ଠ ଥିବା ପ୍ରତ୍ୟକ୍ଷ ଭାଷା ନିମିତ୍ତ ଅନ୍ୟଠାରେ ଋଣୀ ହୋଇଥିଲେ, କଦାଚ ସମ୍ଭବ ନୁହଇ । ବରଂ ଓଡ଼ିଶାର ଭାଷା କେତେକ ବଙ୍ଗଳାରେ ଚଳିବାର ଅନୁମାନସିଦ୍ଧ ଅଟେ ଓ ଗ୍ରନ୍ଥକର୍ତ୍ତା ମେଦିନୀପୁର ଓଲବାଡ଼ିଆ ପ୍ରଭୃତି କେତେ କଥା ସଙ୍ଗେ ଓଡ଼ିଆଭାଷାର ତୁଲ୍ୟ ଥିବାର ଯାହା ଲେଖିଛନ୍ତି, ସେଥିରୁ ଉକ୍ତ ପ୍ରକାର ଅନୁମାନ ବାସ୍ତବ ଥିବାର ଜଣାଯାଏ । ବିଶେଷରେ ଓଡ଼ିଆରେ ଯେତେ ପ୍ରାଚୀନ ଭାଷ ଗ୍ରନ୍ଥ ଅଛି ବଙ୍ଗଳାରେ ତେତେ ନାହିଁ । ମାଗିଆଣିଲା ଜିଅଣରେ କି କୁଟମ୍ବ ପୋଷାଯାଆନ୍ତା । ସେ ଯାହା ହେଉ ଆମ୍ଭେମାନେ ଗ୍ରନ୍ଥକର୍ତ୍ତାଙ୍କ ଭାଷାତତ୍ତ୍ୱ ଜ୍ଞାନରେ ସନ୍ତୁଷ୍ଟ ହେବାର କୌଣସି କାରଣ ଦେଖୁନାହୁଁ । ଆମ୍ଭମାନଙ୍କୁ ବୋଧହୁଅଇ, ସେ କେବଳ ଓଡ଼ିଆ ବଙ୍ଗଳାର ସମତା ଉପରେ ନିର୍ଭର କରି ତହିଁର ସମର୍ଥନ ନିମିତ୍ତ ଭାଷାତତ୍ତ୍ୱଜ୍ଞଙ୍କର ଦୁହାଇ ଦେଇଅଛନ୍ତି । ଏଥର ସେ ସମତା ବିଷୟରେ ତାହାଙ୍କ ମତର ବିଚାର କରିବା ଆବଶ୍ୟକ ।

"ଗ୍ରନ୍ଥକର୍ତ୍ତା ଓଡ଼ିଆ ବଙ୍ଗଳାର ସମତା ଦେଖାଇବା ବିଷୟରେ ପ୍ରକାଶ୍ୟରେ କୌଣସି ଯତ୍ନର ତ୍ରୁଟି କରିନାହାନ୍ତି । ଉତ୍କଳ ସାହିତ୍ୟ

ବ୍ୟାକରଣ ଅଭିଧାନ ସମ୍ବାଦପତ୍ର ଗୀତ ଇତ୍ୟାଦି ନାନା ପ୍ରକାର ଓଡ଼ିଆ ରଚନାରୁ କିଛି କିଛି ଉଦ୍ଧୃତ କରି ଆପଣା କଥା ସପ୍ରମାଣ କରିଅଛନ୍ତି । ଏ ଯୁକ୍ତି ସବୁ ବଙ୍ଗାଳୀଙ୍କ ମନରେ ଏମନ୍ତ ଘେନିଅଛି ଯେ ସେମାନେ କୃତାର୍ଥ ହୋଇଅଛନ୍ତି । ମାତ୍ର ବାସ୍ତବରେ କଅଣ ଉତ୍କଳୀୟମାନଙ୍କୁ ପଚାରିଥିଲେ ଜାଣିପାରନ୍ତେ । ଗ୍ରନ୍ଥକର୍ତ୍ତା ସେତେ ଶ୍ରମ କରିବାକୁ ସମ୍ମତ ହୋଇ ନାହାନ୍ତି । ସେ ଦୁଇଚାରିଟା ବାଲେଶ୍ୱରୀ କଥା ଶୁଣି ଆପଣା ବୁଦ୍ଧିକି ଧନ୍ୟବାଦ ଦେଇ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଥିବାର ଜଣାଯାଏ । କେଡ଼େ ମୂର୍ଖପଣିଆ ! ପୁଣି ତାହା ସଙ୍ଗେ ସାହସ ମଧ କେଡ଼େ ! ସଂସ୍କୃତ, ପାରସୀ ଓ ହିନ୍ଦି ଶବ୍ଦମାନଙ୍କୁ ଅନାୟାସରେ ବଙ୍ଗଳା ବୋଲି ପରିଚୟ ଦେଇ ଅଛନ୍ତି । ଯେବେ କିଞ୍ଚିତ ପାର୍ଶି କିମ୍ବା ହିନ୍ଦି ଜାଣିଥାଆନ୍ତେ ତେବେ କେଉଁ ଶବ୍ଦ କେଉଁ ଭାଷାରୁ ଜାତ ବାରି ଦେଇପାରନ୍ତେ ଓ ଯେବେ କିଛି ଓଡ଼ିଆ ଶିଖି ଥାଆନ୍ତେ ତେବେ କେତେଗୁଡ଼ାଏ ଭ୍ରମରୁ ଉଦ୍ଧାର ପାଇଥାଆନ୍ତେ । ଥରେ ମଫସଲର ଓଡ଼ିଆ ସଙ୍ଗେ କଥା କହିଲେ ଜାଣନ୍ତେ ଯେ ଘଟି, ବାଟି, ଗୃହିଣୀ, ସୁପାରି, ସମୁଦ୍ର, ତରକାରି, ଆନଲ, ଧୁନସି, ଚକଆ ଇତ୍ୟାଦି କେହି ଓଡ଼ିଆ ବୁଝିପାରଇ ନାହିଁ ଏବଂ ପିଲସୋଜ, ଗିଲାସ, ଅବଖୋରା, ସତରଞ୍ଜି, ଗାଲିଚ୍ଛ, ତକ୍ତପୋଷ (ଏହାକୁ ଗ୍ରନ୍ଥକାର ତପ୍ତକୋଷ ବୋଲି ଲେଖିଛନ୍ତି) ଓଡ଼ିଆ ଓ ବଙ୍ଗାଳୀଙ୍କର ସମାନରୂପେ ଅଧିକାର ଅଛି, କାରଣ ସେ ସମସ୍ତ ପାରସୀ ଅବା ହିନ୍ଦି, ଗୋଟିଏ ହେଲା ବଙ୍ଗଳା ନୁହଇ । ଚାଳ, ସାମସେଇ, ମଥାଦବି, ଜହ୍ନି, ପରିବା, ଭୁଣ, ଜାଇ, ନଶୁଣୀ, ଆଙ୍କୁଡ଼, ତେଲୌଣୀ, ପିଞ୍ଚା, ପରଷୁଣିଆ, ପାଣେଇ ପ୍ରଭୃତି ବିଶୁଦ୍ଧ ଓଡ଼ିଆ ଶବ୍ଦମାନ ଯେବେ ଥରେ ତାଙ୍କ କର୍ଣ୍ଣ-ପ୍ରବେଶ ହୋଇଥାଆନ୍ତା ତେବେ ଏତେ ବଣା ହୁଅନ୍ତେ ନାହିଁ । କିମ୍ବା ଗୁଡ଼ାଏ ଭୁଚ୍ଛା ବଙ୍ଗଳା

କଥା ଲେଖି ଯେବେ ଓଡ଼ିଆ ସଙ୍ଗେ ସେ ସବୁର ସମତା ଦେଖାଇ ଆନ୍ତେ ତେବେ ହେଲେ ତାହାଙ୍କ କଥା କିଛି ଗ୍ରାହ୍ୟ ହୁଅନ୍ତା । ତାହା ନକରି କେବଳ ସଂସ୍କୃତ ଓ ଅନ୍ୟାନ୍ୟ ଭାଷାରୁ ଉତ୍ପନ୍ନ କେତେଗୁଡ଼ିଏ ଶବ୍ଦ ଲେଖି ପାଠକଙ୍କୁ ଏକପ୍ରକାର ପ୍ରତାରଣା କରିଅଛନ୍ତି ବୋଲିବାକୁ ହେବ । ନୋହିଲେ ସେ ଆପେ ପ୍ରତାରିତ ହୋଇଅଛନ୍ତି; ଯେହେତୁ କିଛି ଓଡ଼ିଆ ନଜାଣି ସବୁ ଜାଣିଥିବାର ପ୍ରକାଶ କରନ୍ତି । ଓଡ଼ିଆଭାଷା ଯେବେ ସେ କିଛିମାତ୍ର ଜାଣିଥାଆନ୍ତେ ତେବେ ତନିମ୍ନଲିଖିତ ଗୀତଟିରେ ହୁନ୍ଦର ଅର୍ଥକୁ ସୁନ୍ଦର କରନ୍ତେ ?

ନଟବର ଶ୍ୟାମ ସୁନ୍ଦର ଦେଖିଲେ ଲାଗଇ ହୁନ୍ଦର ॥

ଦୁଇଆଡ଼େ ସୁନ୍ଦର ଲାଗିବାରୁ କି ସୁନ୍ଦର ଭାବ ହେଲା ! ହୁନ୍ଦର ଶବ୍ଦ ଯେ ପାର୍ଶୀ ହୁନର୍‌ର ଅପଭ୍ରଂଶ ଓ ଏଠାରେ ତାହାର ଅର୍ଥ କୌତୁକ ଏତକ ସୁଦ୍ଧା ଜାଣି ନାହାନ୍ତି । ଅଥଚ ଜାଣିବାପାଏ ସମ୍ଭାଳ ନ ହୋଇ ହୁପରି ଗ୍ରନ୍ଥକାର ବୋଲି ଦାଣ୍ଡିକୁ ବାହାରି ଅଛନ୍ତି । ଏଥିରୁ ବଳକରି ଗାଲୁଆପଣ ଆଉ ଦେଖାନାହିଁ । ଗ୍ରନ୍ଥକାର ଯେବେ ପକ୍ଷପାତଶୂନ୍ୟ ହୋଇ ବିଚାର କରିବାକୁ ଚେଷ୍ଟା କରିଥାନ୍ତେ ତେବେ ଜାଣିପାରନ୍ତେ ଯେ ବର୍ତ୍ତମାନ ବଙ୍ଗଳା ଓ ଓଡ଼ିଶାର ଯେ ପୁସ୍ତକାଦି ହେଉଅଛି ତହିଁରେ ଅଧିକ ସଂସ୍କୃତ ଶବ୍ଦ ମିଶ୍ରିତ ହେଉଥିବାରୁ ଏଦୁହିଁଙ୍କର ବିସ୍ତର ସମତା ଦେଖାଯାଏ । ମାତ୍ର ଅବୋଧ ଓଡ଼ିଆ ଓ ବଙ୍ଗାଳୀ ଦୁହେଁ ଏ ଭାଷା ବୁଝିବାକୁ ଅକ୍ଷମ । ଶିକ୍ଷାଲାଭ ନକଲେ ଏଥିରେ ପ୍ରବେଶ ହୋଇପାରୁ ନାହାନ୍ତି । କିନ୍ତୁ କେହି କାହାରି ଦେଶ୍ୟ ଭାଷାକୁ ସହଜରେ ବୁଝିପାରନ୍ତି ନାହିଁ । ସୁତରାଂ ଏ ଦୁଇ ଭାଷାକୁ ପୃଥକ୍ ବୋଲିବାକୁ ହେବ ଓ କାନ୍ତିବାବୁ କେତେ ପୁସ୍ତକ ରଚନା କରନ୍ତୁ ଦୁଇ ଭାଷା କଦାଚ ଏକ ହୋଇ ନ ପାରିବ । (ଉ: ଦୀ: ଭା ୫ ସଂ: ୪।୨୮।୨।୭୦ ।)

କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ରଚିତ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟ" (ନାମକ ବଙ୍ଗଳା ଗ୍ରନ୍ଥର ସମାଲୋଚନା ସ୍କୁଲ ଇନ୍‌ସ୍‌ପେକ୍ଟର ଭୂଦେବ ମୁଖୋପାଧ୍ୟାୟଙ୍କ ସମ୍ପାଦକତ୍ୱରେ ପ୍ରକାଶିତ କଲିକତାର "ଏଡୁକେସନ୍ ଗେଜେଟ" ନାମକ ସମ୍ବାଦପତ୍ରରେ ପ୍ରକାଶ ପାଇଥିଲା । ତାହାର କେତେକ ଅଂଶର ଅନୁବାଦ କରି "ଉତ୍କଳ ଦୀପିକା" ପ୍ରକାଶ କରିଥିଲେ —

"ଫଳତଃ ଆମ୍ଭମାନଙ୍କ ବିବେଚନାରେ ସେ ଯେଉଁ ପ୍ରଣାଳୀରେ "ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ" ପ୍ରମାଣ କରିଅଛନ୍ତି ସେ ପ୍ରଣାଳୀ ଅବଲମ୍ବନ କଲେ କେବଳ ଓଡ଼ିଆ କାହିଁକି ହିନ୍ଦି ମଧ୍ୟ ସ୍ୱତନ୍ତ୍ର ଭାଷା ନୋହେ ଏ କଥାର ସପ୍ରମାଣ ହୋଇପାରେ । ବଙ୍ଗଳା ଏବଂ ଓଡ଼ିଆ ଭାଷାରେ ଯେପରି ଅନେକ ମେଳ ଅଛି ହିନ୍ଦି ଏବଂ ବଙ୍ଗଳାରେ ମଧ୍ୟ ସେହିପରି ମେଳ ଦେଖାଯାଏ । ହିନ୍ଦି ଭାଷାରେ ଅତି ପ୍ରସିଦ୍ଧ ପ୍ରେମସାଗର ଓ ତୁଳସୀଦାସ କୃତ ରାମାୟଣରୁ କିଛି ଉଦ୍ଧୃତ କରିଦେଲୁଁ । ପାଠକବର୍ଗ ବିଚାର କରି ଦେଖିବେ ।

"ସାମଲର୍ଜୁନ ବୋଲେ ଦୀନନାଥ ଇହ,
ନାରଦଜୀକି କୃପ ହେ ଯୋ ଆପ୍‌କେ ଚରଣ
ପରଶେ ଆଉର ଦରଶନ କିଆ ।" ତୁଳସୀ ରାମାୟଣ
(୧୧ଶ ଅଧ୍ୟାୟ)

"ଭଯେ ପ୍ରଗଟ କୃପାଳା ଦୀନ ଦୟାଲା
କୌଶଲ୍ୟା ହିତକାରୀ
ହରଷିତ ମହତାରୀ ମନ୍ନ ମନୋହାରୀ
ଅଦ୍ଭୁତ ରୂପ ନିହାରୀ

ଲୋଚନ ଅଭିରାମା ତନୁ ଘନଶ୍ୟାମା
ନିଜ ଆୟୁଧ ଭୁଜଧାରୀ ।
ଭୂଷଣ ବନମାଳୀ ନୟନ ବିଶାଳୀ
ଶୋଭାସିନ୍ଧୁ ଖରାରୀ ॥

ଭାରତଚନ୍ଦ୍ରଙ୍କର ଏକ ଏକ ସ୍ଥଳରେ ମଧ୍ୟ ଯେପରି ହିନ୍ଦି ରଚନା ଅଛି ସମସ୍ତେ ସେ ହିନ୍ଦି ରଚନା ବୁଝିପାରନ୍ତି । ବସ୍ତୁତଃ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଅବଲମ୍ବିତ ବିଚାରପଦ୍ଧତିକି ଯେବେ ସମୀଚୀନ ବୋଲି ବିବେଚନା କରାଯାଏ, ତେବେ ଯେପରି ଓଡ଼ିଶା ଦେଶରେ ବଙ୍ଗଳା ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇଅଛି ସେହିପରି ବଙ୍ଗଳା ଓ ଓଡ଼ିଶା ଉଭୟ ଦେଶରେ ହିନ୍ଦି ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇ-ପାରେ । ଅଥବା ସମୁଦାୟ ଆର୍ଯ୍ୟାବର୍ତ୍ତରେ ଏକ ବଙ୍ଗ ଭାଷା ବା ଓଡ଼ିୟା ଭାଷା ବା ଏକ ଆସାମୀଭାଷା କିମ୍ବା ଏକ ହିନ୍ଦିଭାଷା ପ୍ରଚଳିତ ହେବା ଉଚିତ ବୋଲି ପ୍ରତିପନ୍ନ ହୋଇପାରେ । ବସ୍ତୁତଃ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ପଦ୍ଧତି ସର୍ବାବୟବେ ଅବଲମ୍ବନ କରି ବିଶ୍ୱାସ କଲେ ନାନାବିଧ ପରସ୍ପର ବିରୋଧଧର୍ମଶୀଳ ସିଦ୍ଧାନ୍ତ ଆସି ଉପସ୍ଥିତ ହୁଅଇ ଏହି ମାତ୍ର ।

"ସେ ଯେଉଁ ସ୍ଥଳେ ଓଡ଼ିୟା ଓ ବଙ୍ଗଳାର ମେଳ ଦେଖି-ଅଛନ୍ତି ସେ ସ୍ଥଳେ ଦୁହିଁଙ୍କି ବଙ୍ଗଳା ବୋଲି ଅଛନ୍ତି । ଯେଉଁ ସ୍ଥଳେ ଭିନ୍ନରୂପ ଦେଖିଅଛନ୍ତି ସେ ସ୍ଥଳରେ ଓଡ଼ିଆକୁ ବିଶୁଦ୍ଧ ବଙ୍ଗଳାର ଅପଭ୍ରଂଶ ବୋଲିଅଛନ୍ତି । ଏହି କି ବିଚାରର ରୀତି । ଯେଉଁ ସ୍ଥଳରେ ଦୁହିଁଙ୍କର ମେଳ ହେଲା ସେ ସ୍ଥଳେ ବଙ୍ଗଳା କାହିଁକି ବିଶୁଦ୍ଧ ଓଡ଼ିଆର ଅପଭ୍ରଂଶ ନହେଲା ? ଏହି ଅପଭ୍ରଂଶ ଶବ୍ଦ ମାତ୍ର ମହା ଅନର୍ଥକର । କିଏ କାହାର ଅପଭ୍ରଂଶ ବୋଲି ନିର୍ଦ୍ଦେଶିତ ହେଲା

ତେବେ ଏତେ ବିଚାରର କି ଆବଶ୍ୟକ ଥିଲା । ଏପରି ଯାଚିତ ପୂର୍ବପକ୍ଷ ହୋଇ ବିଚାର କଲେ ସକଳ ବିଷୟରେ ମଧ୍ୟ ମନୋମତ ରୂପ ସିଦ୍ଧାନ୍ତ ଲାଭ କରାଯାଇପାରେ ।

"ବସ୍ତୁତଃ ଓଡ଼ିଆ ଓ ବଙ୍ଗଳାର ଅପଭ୍ରଂଶ ନୋହେ ଏବଂ ବଙ୍ଗଳା ମଧ୍ୟ ଓଡ଼ିଆର ଅପଭ୍ରଂଶ ନୋହେ । ବଙ୍ଗଳା ଓଡ଼ିଆ ଓ ଆସାମୀ ଏକ ମୂଳରୁ ସମୁତ୍ପନ୍ନ ଏକ ଏକ ବୃକ୍ଷର ଭିନ୍ନ ଭିନ୍ନ ଶାଖା ସ୍ୱରୂପ । ଏକପ୍ରସୂତିର ଭିନ୍ନ ସନ୍ତତି ମାତ୍ର । ମୂଳ ବୃକ୍ଷ କାଳ-ସହକାରରେ ଲୋପ ପାଇଅଛି । ଶାଖାଗଣ ଆପଣା ଆପଣା ଅନ୍ତର୍ନିହିତ ଶକ୍ତିପ୍ରଭାବରେ ପରସ୍ପରର ନିରପେକ୍ଷ ହୋଇ ପ୍ରାଣ ଧାରଣ କରୁଅଛନ୍ତି । ଏମାନଙ୍କୁ ବଳପୂର୍ବକ ଏକ ଶରୀରରେ ପରିଣତ କରିବାକୁ ଚେଷ୍ଟା କଲେ ବୃଥା ପ୍ରଯତ୍ନ ହେବ । ଜୀବ-ସ୍ରୋତ ଯେ ଦ୍ୱିଧାହୋଇ ପ୍ରବାହିତ ହେଉଅଛି ତାହା ଆଉ ମିଳିବାର ନୋହେ । ସେ ମିଳିବାର ସମୟ ଯାଇଅଛି, ଯେବେ ବଙ୍ଗଳା ଓ ଓଡ଼ିଆ ମିଳିଯିବାର ହୋଇଥାନ୍ତା ଏମାନଙ୍କର ଶୈଶବାବସ୍ଥାରେ ସେ ମେଳ ଘଟିଥାଆନ୍ତା । ବର୍ତ୍ତମାନ ଏ ଦୁହେଁ ସମଧିକ ପରିପୁଷ୍ଟ ଓ ସ୍ୱାଧୀନ ଭାବରେ ପ୍ରାଣଧାରଣର ଉପଯୋଗୀ ଅଙ୍ଗ ପ୍ରତ୍ୟଙ୍ଗ ଭୂଷିତ ହୋଇଅଛନ୍ତି । ଏତେବେଳେ ଏମାନଙ୍କରୁ କାହାକୁ ବଳପୂର୍ବକ ଅଦାଲତ ଓ ବିଦ୍ୟାଳୟମାନଙ୍କରୁ ଦୂରୀଭୂତ କଲେ ଲୋପ ପାଇବ ନାହିଁ । ପ୍ରତ୍ୟୁତ ଅଦାଲତ ଓ ବିଦ୍ୟାଳୟରେ ବଳପ୍ରଚଳିତ ଭାଷାର କ୍ରମେ ଅବନତି ହେବ । ଆମ୍ଭେମାନେ ଆସାମର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ଦେଖିଅଛୁ । ଓଡ଼ିଶାର ଅଦାଲତରେ ପ୍ରଚଳିତ ବଙ୍ଗଭାଷା ମଧ୍ୟ ଦେଖିଅଛୁଁ ।

"କି କାରଣରୁ ଭାଷା ପୃଥକ୍ ପୃଥକ୍ ହୋଇପଡ଼େ ଶ୍ରୀଯୁକ୍ତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ସଂକ୍ଷେପରେ ତାହା ଉଲ୍ଲେଖ କରିଛନ୍ତି ।

ସେ ସମସ୍ତ କାରଣର ମୂଳ କାରଣ ଏହି, ଭିନ୍ନ ପ୍ରଦେଶୀୟ ଲୋକଙ୍କର ପରସ୍ପର ମିଳନର ଅସଦ୍‌ଭାବ । ଯେଉଁ କାରଣରୁ ପରସ୍ପର ମିଳନର ଅସଦ୍‌ଭାବ ହୁଅଇ ଭିନ୍ନ ରାଜାଧିକାର ଓ ଭିନ୍ନ ପ୍ରାକୃତିକ ଅବସ୍ଥାର ସେହି କାରଣ । ଭିନ୍ନ ରାଜାଧିକାର ଓ ପ୍ରାକୃତିକ ଅବସ୍ଥା ହେଲେ ଜନସାଧାରଣ ମଧ୍ୟରେ ମନୋବୃତ୍ତି ଚାଳନାର ପ୍ରଣାଳୀ ମଧ୍ୟ ଭିନ୍ନ ହୋଇପଡ଼େ, ଉଭୟ ଦେଶ ଭଦ୍ର ସମାଜର ଭାବ ପୃଥକ୍ ହୋଇଯାଏ । ନୂତନ ନୂତନ କାବ୍ୟ ଗ୍ରନ୍ଥାଦିର ପ୍ରଚାର ହେଉଥାଏ । ପ୍ରଥମ ବିଚ୍ଛେଦ ସମୟରେ ଯେ ସାମାନ୍ୟ ପ୍ରଭେଦ ଲକ୍ଷିତ ହୁଅଇ କାଳରେ ତାହା ବହୁ ମୁଖ ହେବାରୁ ଉଭୟ-ପ୍ରଦେଶୀୟ ଭାଷା ସମ୍ୟକ ମୂର୍ତ୍ତି ଧାରଣ କରେ । ଯେଉଁ ପରିମାଣରେ ଏହି ସମସ୍ତ କାରଣ ପ୍ରବଳ ଥାଏ ସେହି ପରିମାଣରେ ଭାଷାବିଚ୍ଛେଦ ଘଟି ଉଠେ । ଏହିରୂପେ ଭାଷାଭେଦ କ୍ରମୋନ୍ନତ ବର୍ଦ୍ଧିତ ହେଲେ ତାହାର ଆଉ ପୁନର୍ମିଳନର ସମ୍ଭାବନା ରହି ନ ପାରେ । ତେବେ ଏକର ଉଚ୍ଛେଦରେ ଅପରର ସଂସ୍ଥାପନର ସମ୍ଭାବନା ଥାଏ ସତ୍ୟ କିନ୍ତୁ ଯେ ସମସ୍ତ କାରଣରେ ତାଦୃଶ ଭାଷା ବୈଷମ୍ୟ ଘଟିଥିଲା କେବଳ ତାହାର ଅସଦ୍‌ଭାବ ଘଟାଇଲେ ଯେ କାହାର ଉଚ୍ଛେଦ ଘଟିପାରେ ଏମନ୍ତ ନୋହେ । ତାହାର ବିପରୀତ କାରଣର ସଦ୍‌ଭାବ ଘଟିଲେ ତାଦୃଶ ଉଚ୍ଛେଦ ଅପରର ସଂସ୍ଥାପନର ସମ୍ଭାବନା ଅର୍ଥାତ୍ ଏକର କର୍ତ୍ତୃକ ଅପରର ଉପରେ ରାଜାଧିକାର ସଂସ୍ଥାପନା ଥାଏ ଏବଂ ଉଭୟ ପ୍ରଦେଶ ଭଦ୍ରସମାଜର ସମ୍ୟକ୍ ସମ୍ମିଳନ ସମ୍ଭବ ହୁଏ । ଏକ ପ୍ରଦେଶରେ ଅସାଧାରଣ ଗୁଣସମ୍ପନ୍ନ କାବ୍ୟ ରଚନାଦିର ପ୍ରଚାର ଅପର ପ୍ରଦେଶରେ ତାହାର ସମ୍ୟକ୍ ଅସଦ୍‌ଭାବ ଇତ୍ୟାଦି କାରଣରେ କ୍ରମଶଃ ଏକର ଉଚ୍ଛେଦ ହୋଇ ଅପରର ସଂସ୍ଥାପନାର ସମ୍ଭାବନା ଥାଏ । କିନ୍ତୁ ଏରୂପ କାରଣର

ସମ୍ଭାବ ବଙ୍ଗଳା ଓ ଓଡ଼ିଶାମଧ୍ୟରେ କେଉଁଠାରେ ? ଯେବେ ଆମ୍ଭେମାନେ କଟକରେ ଯାଇଁ ରାଜା ହୋଇ ପାରନ୍ତୁ ତାହା ହେଲେ କାଳରେ ଉଡ଼ିଶ୍ୟାରେ ବଙ୍ଗ ଭାଷା ଚଳି ପାରିବାର ସମ୍ଭାବନା ଥିଲା । ଏବଂ ସେଥି ନିମିତ୍ତ ଆମ୍ଭମାନଙ୍କର ଉଡ଼ିଶ୍ୟା ଦେଶୀୟ ଅଦାଲତ ଓ ବିଦ୍ୟାଳୟର ଭାଷା ବଳପୂର୍ବକ ପରିବର୍ତ୍ତିତ କରିବାର ଆବଶ୍ୟକ ହୁଅନ୍ତା ନାହିଁ ।" (ଉତ୍କଳଦୀପିକା· ଭା. ୫· ସଂ· ୧୮।୩୦।୪।୧୮୭୦) ।

## ବଙ୍ଗଳାଭାଷା ଚଳାଇବା ପାଇଁ ପୁଣି ଉଦ୍ୟମ

ଓଡ଼ିଶାର ସ୍କୁଲମାନଙ୍କରେ ଓଡ଼ିଆଭାଷା ଚଳିବ ବୋଲି ସରକାର ଘୋଷଣା କରି ସାରିବା ପରେ କଟକ ସହରରେ କେତେ ଜଣ ବଙ୍ଗାଳୀ ଭଦ୍ରବ୍ୟକ୍ତି ବଙ୍ଗଳାଭାଷାରେ ଓ ବଙ୍ଗଳା ଅକ୍ଷରରେ ଗୁପ୍ତ ଦରଖାସ୍ତ ସହରର ଘରେଘରେ ବୁଲାଇ ଓଡ଼ିଆଙ୍କର ସ୍ୱାକ୍ଷର ସଂଗ୍ରହ କରିବାରେ ଲାଗିଥିଲେ । "ଉତ୍କଳ ଭାଷା ଉଠାଇଦେଇ ବଙ୍ଗଭାଷା ଏଠାର ବିଦ୍ୟାଳୟ ସମୂହରେ ପ୍ରଚଳିତ କରିବାପାଇଁ ଏ ଦରଖାସ୍ତରେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା ହୋଇଅଛି ।" ଦୀପିକା ଲେଖିଛନ୍ତି—"ବଂଗାଳିମାନେ ନ୍ୟାୟଯୁଦ୍ଧରେ ନପାରି ବୋଧହୁଅଇ ଏଥର ଅସୁରଙ୍କ ପରି ମାୟା ପ୍ରକାଶ କରିଅଛନ୍ତି । କିନ୍ତୁ କେହି ଅସୁର ମାୟାକରି ପରିଶେଷରେ ଦେବତାଙ୍କୁ ଜିଣିବାର ଶୁଣାନାହିଁ । ଯାହା ହେଉ ଓଡ଼ିଆମାନେ ସାବଧାନ ହୁଅନ୍ତୁ ଯେମନ୍ତ ମାୟାରେ ପଡ଼ି "ନାଓ୍ୱାକଫ୍ ସହି" ନ କରନ୍ତୁ । (ଉ· ଦୀ· ଭା. ୫ ସଂ· ୧୩।୨୭।୩।୧୮୭୦)

ବାଲେଶ୍ୱରର "ସମ୍ବାଦବାହିକା" ପତ୍ରିକାରେ ପ୍ରକାଶ ପାଇଥିଲା କି ଉକ୍ତ ଜିଲାର ସ୍କୁଲ ସମୂହର ଡେପୁଟୀ ଇନ୍ସ୍‌ପେକ୍ଟର

ବାବୁ ଶିବଦାସ ଭଟ୍ଟାଚାର୍ଯ୍ୟ ଉତ୍କଳଭାଷା ଉଚ୍ଛେଦର ଚେଷ୍ଟା କରିବାରୁ ବାଲେଶ୍ୱରର ପ୍ରାୟ ସମସ୍ତ ଜମିଦାର ମହାଜନ ସରକାରୀ କର୍ମଚାରୀ ତାହାଙ୍କ ବଦଳ ପାଇଁ ଇନସ୍ପେକ୍ଟରଙ୍କଠାରେ ଆବେଦନ କରିଛନ୍ତି । ନଗରବାସୀମାନେ ସେହି ଆବେଦନ ପତ୍ରକୁ କଲେକ୍ଟର ବିମ୍ସ ସାହେବଙ୍କୁ ଦେଇଥିଲେ ; ଏହାକୁ ସେ ଡିରେକ୍ଟରଙ୍କ ପାଖକୁ ପଠାଇଦେଇଥିଲେ । ଏଭଳି ଅବସ୍ଥା ହେଲା । (ଭାଷାବିତ୍ ବିମ୍ସ ସାହେବ ଓଡ଼ିଆଭାଷାର ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ମତ ବ୍ୟକ୍ତ କରିଥିଲେ ।) "ଉତ୍କଳ ଦୀପିକା" ଲେଖିଛନ୍ତି—"ଘରର ଢିଙ୍କି ଯେବେ କୁମ୍ଭୀର ହେଲା ତେବେ ତାହାକୁ ତଡ଼ିଦେବା ପାଇଁ ବାଲେଶ୍ୱରବାସୀମାନେ ଯାହା କରିଛନ୍ତି ତାହା ଉଚିତ ହୋଇଛି ।"

—(ଉ' ଦୀ. ହ' ୫' ସଂ. ୧୩।୨୭।୩।୭୦)

---

## ଓଡ଼ିଆଭାଷା ଉଠାଇବାପାଇଁ ପୁଣି ଦରଖାସ୍ତ

ଓଡ଼ିଶାରୁ ଓଡ଼ିଆ ଭାଷା ଉଠାଇ ଦେଇ ବଙ୍ଗଳା ଭାଷା ପ୍ରଚଳନ କରାଯାଉ ବୋଲି ଏକ ଦରଖାସ୍ତ ବଙ୍ଗଳା ଅକ୍ଷରରେ ଛପା ହୋଇଥିଲା । ଗୋପନ ଭାବରେ ଓଡ଼ିଶାରେ କେତେଜଣ ବଙ୍ଗାଳୀ ଭଦ୍ରବ୍ୟକ୍ତି ଏଥିପାଇଁ ସ୍ୱାକ୍ଷର ସଂଗ୍ରହ କରୁଥିଲେ । ସେହି ଦରଖାସ୍ତଟି ଓଡ଼ିଶାର ହାକିମମାନଙ୍କ ଜରିଆରେ ସରକାରଙ୍କଠାକୁ ନଯାଇ ସିଧାସଳଖ କଲିକତା ପଠାଇଦିଆଗଲା । କଲିକତାରେ ଜଣେ ବିଶିଷ୍ଟ ବଙ୍ଗାଳୀ ସେହି ଦରଖାସ୍ତକୁ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ହାତରେ ଦେଲେ । ଏଥିରେ ଶହେ ଲୋକଙ୍କର ଦସ୍ତଖତ୍ ହୋଇଥିବା ସମ୍ବାଦ ଉତ୍କଳଦୀପିକା ପାଇଥିଲେ ।

ଦରଖାସ୍ତରେ ଦସ୍ତଖତ ସଂଗ୍ରହ କରିବା କାର୍ଯ୍ୟ ଗୋପନରେ ଚାଲୁଥିବାରୁ କଲିକତା 'ଆଡ଼୍‌ଭୋକେଟ'ର ଜଣେ ପ୍ରତିନିଧି ଆସି ଗୋପନ ଭାବରେ ଦସ୍ତଖତ ସଂଗ୍ରହ କରୁଥିଲେ । କଟକ ସୋସାଇଟିର ମୁଖପତ୍ର "ଉତ୍କଳ ହିତୈଷିଣୀ"ରେ ଏହି ଆନ୍ଦୋଳନ ସପକ୍ଷରେ କିଛି ଲେଖା ବାହାରି ଥିବାରୁ ଏହାକୁ ଲକ୍ଷ୍ୟଅଭିଯୋଗ କରି ଉତ୍କଳଦୀପିକା ଆକ୍ଷେପ କରିଥିଲେ କି କଟକ ସୋସାଇଟିର ଏଭଳି କାର୍ଯ୍ୟ ଅତି ନିନ୍ଦନୀୟ ।

ଉତ୍କଳଦୀପିକା ପୁଣି (୧୬।୪।୧୮୭୦ରେ) ଲେଖିଥିଲେ— "ଗତ ପ୍ରକାଶିତ ଉତ୍କଳ ହିତୈଷିଣୀରେ ଗୋଟିଏ ଚମତ୍କାର ପ୍ରସ୍ତାବ ବାହାରିଅଛି । ଓଡ଼ିଆ ଓ ବଙ୍ଗାଳୀଙ୍କ ମଧ୍ୟରେ ଭାଷା ବିଷୟରେ କଳି ହେବାର ଦେଖି ଏ ଦୁଇଜାତିର ଲୋକ ମଧ୍ୟରେ କି ସମ୍ବନ୍ଧ ଅଛି ଲେଖକ ସେଥିର ବିଚାର କରି ସ୍ଥିର କରିଅଛନ୍ତି ଯେ ଗତ ସାତଶ ବର୍ଷଠାରୁ ଓଡ଼ିଶା ଉପରେ ବଙ୍ଗଳାର ଆଧିପତ୍ୟ ଅତି ସ୍ପଷ୍ଟ ରୂପେ ଦେଦୀପ୍ୟମାନ ଅଛି । କି ଶାସନ କି ଧର୍ମ କି ଭାଷା ସବୁ ବିଷୟର ଉନ୍ନତି ପାଇଁ ବଙ୍ଗଳାଠାରେ ଓଡ଼ିଶା ଋଣୀ ଅଟଇ । ସେ ବୋଲନ୍ତି ଯେ ଗଙ୍ଗବଂଶୀୟ ରାଜାମାନଙ୍କ ଆଦିପୁରୁଷ ବଙ୍ଗଳାରୁ ଆସି ଏଠାରେ ରାଜତ୍ୱ ସ୍ଥାପନ କରିଥିଲେ ଓ ସେହି କାଳ ଉତ୍କଳ ଇତିହାସର ପ୍ରଧାନ ସମୟ ଅଟଇ । ଯଦ୍ୟପି କି ଷ୍ଟର୍ଲିଂ ସାହେବଙ୍କ ମତରେ ସେ କର୍ଣ୍ଣାଟ ଦେଶରୁ ଆସିଥିଲେ ମାତ୍ର ଉଇଲସନ ସାହେବ ବୋଲନ୍ତି ଯେ ସେମାନେ ଗଙ୍ଗାନଦୀ ତୀରସ୍ଥ ଦେଶର ରାଜା ଥିଲେ ଓ ସେ ଦେଶ ବର୍ତ୍ତମାନ ମେଦିନୀପୁର ଓ ଓ ତମଲୁକ୍ ନାମରେ ଖ୍ୟାତ । ତଦୁତ୍ତାରୁ କଳାପାହାଡ଼ ନାମରେ ବଙ୍ଗାଳୀ ବ୍ରାହ୍ମଣ ବଙ୍ଗଳା ସେନା ସହିତ ଉତ୍କଳକୁ ଆସି ଏଠାରେ ସ୍ୱାଧୀନ ରାଜତ୍ୱ ଧ୍ୱଂସ କଲା । ପରିଶେଷରେ ବଙ୍ଗଳାର ସୁବେଦାରଙ୍କ ଅଧୀନରେ ଓଡ଼ିଶା ବହିବର ରହିଅଛି ।

"ଧର୍ମର ମତ ବିଷୟରେ ଦେଖାଯାଏ ଯେ ଚୈତନ୍ୟ ମହାପ୍ରଭୁ ବଙ୍ଗଳାରେ ଅବତୀର୍ଣ୍ଣ ହୋଇ ଓଡ଼ିଶା ଲୋକଙ୍କୁ ବୈଷ୍ଣବଧର୍ମରେ ଦୀକ୍ଷା ଦେଲେ । ଏହିଠାରୁ ବୌଦ୍ଧଧର୍ମ ଲୋପହେଲା ଓ କେବଳ ବ୍ରାହ୍ମଣ ଛଡ଼ା ଆଉ ସମସ୍ତେ ଏତେବେଳଯାଏ ଚୈତନ୍ୟ ମହାପ୍ରଭୁଙ୍କର ମତାବଲମ୍ବୀ ହୋଇ ଅଛନ୍ତି ।

"ଭାଷା ଉନ୍ନତି ପକ୍ଷରେ ଏରୂପ ଲେଖକ ବୋଲନ୍ତି ଯେ ଚୈତନ୍ୟ ଦେବଙ୍କ ଅବତାର ପୂର୍ବରଚିତ କୌଣସି ଉତ୍କଳଭାଷା-ଗ୍ରନ୍ଥ ନାହିଁ । ମହାଭାରତ ରଚୟିତା ଶାରଳାଦାସ ଏଥିର ଅନେକ ଦିନ ଉତ୍ତାରୁ ଜନ୍ମଗ୍ରହଣ କଲେ ଓ ସେ ଜଣେ ବୈଷ୍ଣବ ଓ ଚୈତନ୍ୟ ମହାପ୍ରଭୁଙ୍କର ବଡ଼ ଭକ୍ତଥିଲେ । କେବଳ ଚୈତନ୍ୟଙ୍କ ମତ ପ୍ରଚାର କରିବା ପାଇଁ ଭାଷାଗ୍ରନ୍ଥ ରଚନା କରିବାର ଆବଶ୍ୟକ ହେଲା । ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ ଦାସ ଓ ଅଭିମନ୍ୟୁସାମନ୍ତ ସିଂହାର ଏମାନେ ସମସ୍ତେ ପୂରା ବୈଷ୍ଣବ ଓ ଏଠାର ଭାଷା ଗ୍ରନ୍ଥ ସବୁ ବୈଷ୍ଣବ ଧର୍ମଆଡ଼କୁ ଟଳିଅଛି ।

"ପରିଶେଷରେ ଲେଖକ କହିଅଛନ୍ତି ଯେ ବର୍ତ୍ତମାନ କାଳରେ ଯାହା କିଛି ବିଦ୍ୟାଶିକ୍ଷା ଓ ସାହସ ଏ ସ୍ଥାନରେ ଦେଖାଯାଏ, ତାହା କେବଳ ବଙ୍ଗାଳୀ ଜମିଦାର ଓ ଅନ୍ୟବଙ୍ଗଳା ନିବାସୀଙ୍କ ସାହାଯ୍ୟରୁ ସମ୍ପନ୍ନ ହୋଇଅଛି ।"

ଉତ୍କଳ ହିତୈଷିଣୀରେ ଏହି ପ୍ରବନ୍ଧ ପ୍ରକାଶ ପାଇବାରୁ ଓଡ଼ିଆଙ୍କ ମନରେ କଷ୍ଟ ହୋଇଥିଲା । ଉତ୍କଳଦୀପିକା ବ୍ୟଙ୍ଗ କରି ଲେଖିଥିଲେ—'ହେ ଉତ୍କଳୀୟମାନେ; ଯେବେ ପୂର୍ବରେ ଏ କଥାମାନ ଶୁଣି ନଥିଲ ତେବେ ଥରେ ଚିତ୍ତ ଦେଇ ଶୁଣ ; ଆପଣ-ମାନଙ୍କର ହିତକାଙ୍କ୍ଷୀ ହିତୈଷିଣୀ କେତେ ପରିଶ୍ରମ ଓ ଅନୁସନ୍ଧାନ କରି ଏ କଥାମାନ ବାହାର କରିଅଛନ୍ତି ।" (ଉ: ଦୀ: ଭା: ୫: ସଂ: ୧୭।୪।୭୦)

ଏହି ଆନ୍ଦୋଳନକୁ ଏଭଳି ସବୁ ଲେଖା ସାହାଯ୍ୟ କରିଥିଲା ବୋଲିବାକୁ ହେବ । ଏହାର ଅନିଷ୍ଟକାରିତା ବୁଝିପାରି ଓ "କଟକ ସୋସାଇଟି" ଏହା ପଛରେ ଥିବାର ଆଶଂକା କରି "ଉତ୍କଳୋନ୍ନତିବିଧାୟିନୀ ସଭା"ର ଏକ ବୈଠକ ଏପ୍ରେଲ ୧୮୭୦ରେ କଟକରେ ହୋଇଥିଲା । ଏହି ସଭାରେ ଗୋପନ ଆନ୍ଦୋଳନ ସମ୍ବନ୍ଧରେ ଉତ୍କଳୀୟମାନଙ୍କ କର୍ତ୍ତବ୍ୟ ବିଚାର୍ଯ୍ୟ ବିଷୟ ଥିଲା । ଏହି ସଭାରେ ବଙ୍ଗଳା ଦରଖାସ୍ତ ପାଠ ହେଲା । "ତହିଁରେ ସଭ୍ୟମାନେ ଏକମତ ହୋଇ କହିଲେ ଯେ ଏଥିରେ ଯେ ସମସ୍ତ କଥା ଲେଖା ଅଛି ତହିଁରୁ ଗୋଟିଏ ସୁଦ୍ଧା କୌଣସି ଉତ୍କଳୀୟ ମନରେ ଉଦୟ ହୋଇଥିବା ଅନୁମାନକୁ ଆସୁନାହିଁ । ତେବେ ଯେଉଁମାନେ ଏଥିରେ ସ୍ୱାକ୍ଷର କରୁଅଛନ୍ତି ସେମାନେ ନ ବୁଝି ବା ପ୍ରତାରିତ ହୋଇ ତେମନ୍ତ କରୁଥିବେ ସନ୍ଦେହ ନାହିଁ । ଅତଏବ ସଭାରେ ସ୍ଥିର ହେଲା ଯେ ଦରଖାସ୍ତ ଲିଖିତ ବିବରଣମାନ ଏକ ବିଜ୍ଞାପନ ଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଇ ସେମାନଙ୍କୁ ସଭାର ସମ୍ପାଦକ ଅନୁରୋଧ କରନ୍ତୁ ଯେ, ଭ୍ରମରେ ପଡ଼ି କେହି ଯେମନ୍ତ ସେଥିରେ ସ୍ୱାକ୍ଷର ନ କରନ୍ତୁ ।" (ଉ: ଦୀ: ଭା: ୫: ସଂ ୧୬: ୧୬।୪।୭୦)

## ମିଥ୍ୟା ପ୍ରଚାର

"ଉତ୍କଳ ହିତୈଷିଣୀ କୁଆଡ଼େ ପ୍ରକାଶ କରିଥିଲେ (ଅପ୍ରେଲ ଚାରିଖ ଓ ୧୬ ତାରିଖରେ) ଯେ 'ନର୍ମ୍ୟାଲ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇଥିବା ଗୁରୁଶ୍ରେଣୀୟମାନେ ମଫସଲରୁ ବଙ୍ଗଳା ନ ଜାଣିବା ଯୋଗୁଁ ଫେରି ଆସିଲେ ।" କିନ୍ତୁ ପୁରୀରୁ ଜିଲ୍ଲା ଡେପୁଟୀ ଇନସ୍ପେକ୍ଟର ଗୋବିନ୍ଦଚନ୍ଦ୍ର ମହାପାତ୍ର ଓ କଟକ ଜିଲ୍ଲା ସଦରର ଡେପୁଟୀ ଇନସ୍ପେକ୍ଟର ପ୍ୟାରୀମୋହନ ସେନ ଏ ସମ୍ବାଦ

ଅମୂଳକ ବୋଲି ବ୍ୟକ୍ତ କରିଥିଲେ । ବାଲେଶ୍ୱରରୁ ଫକୀରମୋହନ ସେନାପତି ମଧ୍ୟ ଖବରକାଗଜ ଜରିଆରେ ଏଥିରେ କିଛି ସତ୍ୟତା ନଥିବା କଥା କହିଥିଲେ । ଏହା ଅଭିସନ୍ଧିମୂଳକ ବୋଲି ଆପତ୍ତି ହେଲା । ଓଡ଼ିଶାର ମଫସଲରେ ଲୋକେ ବଙ୍ଗଳା ଭାଷା ଗ୍ରହଁ କରନ୍ତି ଓଡ଼ିଆ ଭାଷା ଗ୍ରହଁ ନାହାନ୍ତି ବୋଲି ପ୍ରଚାର କରିବା ଉଦ୍ଦେଶ୍ୟରେ ଏହି ଗଳ୍ପ ଗଢ଼ା ଯାଇଛି । ଏହା "କେବଳ ଚପଳତାଦ୍ୟୋତକ ବ୍ୟତୀତ ଅନ୍ୟ କିଛି ନୁହେ ।" (ଉ: ଦୀ: ଭା: ୫: ସଂ: ୧୮: ୩୦।୪।୭୦)

## ଓଡ଼ିଆ ଭାଷା ପ୍ରତି ଆଦର ଓ ଅନାଦର

କଟକ ନର୍ମାଲ ସ୍କୁଲର "ସୁପରିଣ୍ଟେଣ୍ଡେଣ୍ଟ" ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀଙ୍କ ଦ୍ୱାରା ସଙ୍ଗୃହୀତ ଓ କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ "ଶିକ୍ଷାବଧାନ" ନାମକ ପୁସ୍ତକର ସମାଲୋଚନା ପ୍ରସଙ୍ଗରେ ଉତ୍କଳଦୀପିକା ଓଡ଼ିଆ ଭାଷାର ଉନ୍ନତିର କି ଅନ୍ତରାୟ ଥିଲା ଏବଂ ତାହା କିପରି ବଦୁରିତ ହୋଇଯାଇଛି ସେ ବିଷୟ ପ୍ରକାଶ କରିଛନ୍ତି ।

"× × ଏ ଦେଶରେ ଗବର୍ଣ୍ଣମେଣ୍ଟ ଶିକ୍ଷାଦାନ କଲା ଦିନରୁ ଶିକ୍ଷା ବିଭାଗର ପ୍ରଧାନ କର୍ମକାରକ ଓ ତତ୍ତ୍ୱାବଧାରକମାନେ ବଙ୍ଗ ଦେଶୀୟ ଥିବାରୁ ଦେଶଭାଷାର ଉନ୍ନତି ଚେଷ୍ଟା ନକରି ଆପଣା ଭାଷା ଶିକ୍ଷାର ବିସ୍ତାର କରୁଥିଲେ ଓ ଯଦ୍ୟପି କି ବର୍ତ୍ତମାନ ପ୍ରାୟ ଉତ୍କଳ ବଙ୍ଗଳାଭାଷା ଯେନ ତେନ ପ୍ରକାରେଣ ପ୍ରକାଶ୍ୟରୂପେ ବିବାଦ ନଥିଲା ମାତ୍ର ଶିକ୍ଷାର ଫଳ ବଙ୍ଗଳା ଭାଷାର ଉନ୍ନତି ଥିଲା । ଜଣେ ମାତ୍ର ଡେପୁଟି ଇନସ୍ପେକ୍ଟର ବାବୁ କୈଳାସଚନ୍ଦ୍ର ତର୍କାଳଙ୍କାର ଆପଣା କର୍ତ୍ତବ୍ୟ କର୍ମ ଯଥାର୍ଥମତେ ସାଧନ କରିବାକୁ ମନସ୍ଥ କରି

ଉତ୍କଳଭାଷାରେ ଦୁଇ ଏକଖଣ୍ଡି ପୁସ୍ତକ ପ୍ରଚାର କରିଥିଲେ ଓ ଆଉରି କିଛି କାଳ ରହିଥିଲେ ଭଲ କରିଥାନ୍ତେ ଏରୂପ ଆଶା ହୋଇଥିଲା । ଅନ୍ୟାନ୍ୟ କର୍ମକାରକମାନେ ଉତ୍କଳଭାଷାରେ ଉତ୍ତମ ପାଠ୍ୟପୁସ୍ତକ ନାହିଁ ଇତ୍ୟାଦି ଆଳସ୍ୟପୂର୍ଣ୍ଣ ବାକ୍ୟରେ କର୍ତ୍ତୃପକ୍ଷଙ୍କୁ ଭଣ୍ଡି ବିନା ପରିଶ୍ରମରେ ବେତନ ଭୋଗ କରିବାରେ ବ୍ୟସ୍ତ ଥିଲେ । ବାବୁ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ଉତ୍କଳଭାଷାରେ ଉତ୍ତମ ପାଠ୍ୟ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହେବାରୁ ଆମ୍ଭମାନଙ୍କର ନିଶ୍ଚୟ ବିଶ୍ୱାସ ହେଉଛି ଯେ ଏ ମହାଶୟ ଆପଣା ଗୁରୁଭାର ବହନ ପକ୍ଷରେ ଯଥାର୍ଥ ରୂପେ ମନୋଯୋଗୀ ହୋଇଅଛନ୍ତି । ଏ ରୂପ ବ୍ୟକ୍ତିମାନେ ଉତ୍କଳକୁ 'ଅଜ୍ଞାନତମିରାଚ୍ଛନ୍ନ' ଦେଶ କହିଲେ ମଧ୍ୟ କ୍ଷୋଭ ନାହିଁ କାରଣ ଏମାନେ ତାହା ଧ୍ୱଂସ କରିବାକୁ ଯତ୍ନ ଓ ପରିଶ୍ରମ କରୁଅଛନ୍ତି । × ×" (ଉ: ଦୀ: ଭା: ୫: ସଂ: ୨୪: ୧୮।୬।୭୦)

ଓଡ଼ିଆ ଭାଷା ଓ ଓଡ଼ିଶାର ଗୌରବ ରକ୍ଷା ନିମନ୍ତେ ଗୌରୀଶଙ୍କର ରାୟ ପ୍ରମୁଖ ଓଡ଼ିଶା ଅଧିବାସୀ ବଙ୍ଗୀୟ ଭଦ୍ରବ୍ୟକ୍ତି-ମାନେ ଯେଉଁ ଅଦମ୍ୟ ଉତ୍ସାହ ଓ ସାହସ ସହକାରେ କାର୍ଯ୍ୟ କରିଛନ୍ତି ତାହା ଉତ୍କଳ କେବେ ପାସୋରି ପାରିବ ନାହିଁ, ଓଡ଼ିଆ ଭାଷା ଓ ସମ୍ପ୍ରଦାୟ ସେମାନଙ୍କଠାରେ ଚିରଋଣୀ ହୋଇରହିଥିବ ।

ସେ ସମୟର ଏ ଶଙ୍କଟମୟ ପରିସ୍ଥିତି ଓଡ଼ିଶା, ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟ, ଓଡ଼ିଆ ସଂସ୍କୃତିକୁ ଚିରଦିନ ନିମନ୍ତେ ଲୋପ କରିଦେବା ପାଇଁ ସମର୍ଥ ଥିଲା । ଜାତିଧର୍ମ ଭାଷା ନିର୍ବିଶେଷରେ ଓଡ଼ିଶାବାସୀ ଯେଉଁ ପ୍ରତିବାଦ କରିଥିଲେ ତାହା ଓଡ଼ିଶା ଇତି-ହାସରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ରହିଥିବ ।

ଏହି ଆନ୍ଦୋଳନରେ ଓଡ଼ିଶାବାସୀଙ୍କୁ ସମର୍ଥନ କରି ସ୍କୁଲ ଇନସ୍ପେକ୍ଟର ଓ ବରିଷ୍ଠ ବଙ୍ଗୀୟ ଲେଖକ ମହାମନା ଭୂଦେବ

ମୁଖାର୍ଜୀ ଯେଉଁ ଉଦ୍ୟମ କରିଛନ୍ତି ତାହା ମଧ୍ୟ ଅବିସ୍ମରଣୀୟ ହୋଇ ରହିଥିବ ।

"ଉତ୍କଳଦୀପିକା"ର, ଉତ୍କଳକୁ ବହୁ ଦାନ ମଧ୍ୟରେ, ଓଡ଼ିଆଭାଷାର ପୁନର୍ଜୀବନପ୍ରାପ୍ତି ଆନ୍ଦୋଳନର ନେତୃତ୍ୱ ଏକ ବିଶିଷ୍ଟ ଦାନ ।

ଓଡ଼ିଶାରେ ଏହି ଆନ୍ଦୋଳନ ଫଳରେ ଲୋକଙ୍କ ମନରେ ଯେଉଁ ଦେଶାତ୍ମବୋଧ ଭାବ ଜାଗ୍ରତ ହୋଇଥିଲା ତାହା ଓଡ଼ିଶାକୁ ନୂତନ କରି ଗଠନ କରିବାରେ ସମର୍ଥ ହୋଇଥିଲା । ଫକୀର-ମୋହନ, ରାଧାନାଥ, ରାମଶଙ୍କର ରାୟ ପ୍ରଭୃତି ସାହିତ୍ୟ ରଥୀମାନେ ଏହି ଆନ୍ଦୋଳନ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ ; ଓଡ଼ିଆଭାଷା ଓ ସାହିତ୍ୟ, ଓ ଓଡ଼ିଆର ସର୍ବାଙ୍ଗୀନ ଉନ୍ନତି ପାଇଁ ସେମାନେ ସଫଳ ଉଦ୍ୟମ କରିଥିଲେ ।

ଏହି କାରଣରୁ ଓଡ଼ିଶାର ଏହି ଘୋର ସନ୍ଧିବେଳରେ ରାଧାନାଥଙ୍କ ଲେଖମା ରଚନା ଓ ଅନ୍ୟାନ୍ୟ ଦେଶହିତକର କାର୍ଯ୍ୟ ବିଶିଷ୍ଟ ତା ଲାଭ କରିଛି ।

---

# ଅଷ୍ଟାଦଶ ପରିଚ୍ଛେଦ

## ସେକାଳର ପୁସ୍ତକ ରଚନା ଅବସ୍ଥା

ରାଧାନାଥଙ୍କ କର୍ମଜୀବନର ପ୍ରାରମ୍ଭ ଅବସ୍ଥାରେ ଉତ୍କଳରେ ଆଧୁନିକ ଶିକ୍ଷା ଉପଯୋଗୀ ପାଠ୍ୟପୁସ୍ତକର ସଂଖ୍ୟା ନଗଣ୍ୟ ଥିଲା କହିଲେ ଚଳେ । ସରକାର (ବଙ୍ଗସରକାର) ସମଗ୍ର ପ୍ରଦେଶ ପାଇଁ ଏକ ପାଠ୍ୟପୁସ୍ତକ କମିଟି ନିଯୁକ୍ତ କରିଥିଲେ । ଏହି କମିଟି ଓଡ଼ିଶା ନିମନ୍ତେ ସ୍ୱତନ୍ତ୍ର ଧ୍ୟାନ ଦେଇ ପାରୁ ନଥିବାରୁ ଓଡ଼ିଶା ପାଇଁ ସ୍ୱତନ୍ତ୍ର ପାଠ୍ୟପୁସ୍ତକ କମିଟି ଗଠନ କରିବା ନିମନ୍ତେ ସରକାରଙ୍କଠାରେ ଏହି ଦାବୀ ହୋଇଥିଲା । ୧୮୬୯ରେ ସମଗ୍ର ଓଡ଼ିଶାରେ ଓଡ଼ିଆଭାଷା ମାଧ୍ୟମରେ ଶିକ୍ଷା ପ୍ରଚଳନ ହେବା ନିମନ୍ତେ ସରକାର ଆଦେଶ ଦେବାରୁ ଓଡ଼ିଆରେ ଉପଯୁକ୍ତ ପାଠ୍ୟପୁସ୍ତକ ରଚନା ପାଇଁ ସରକାରୀ ଓ ବେସରକାରୀ ଉଦ୍ୟମ ହେଲା । ଓଡ଼ିଆ ପାଠ୍ୟପୁସ୍ତକ ବାଛିବାପାଇଁ ସରକାର ଏକ ସ୍ୱତନ୍ତ୍ର କମିଟି ନିଯୁକ୍ତ କଲେ । ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ର ସ୍କୁଲ ବିଭାଗ ଡେପୁଟି ଇନ୍‌ସପେକ୍ଟର ହୋଇ ନିଯୁକ୍ତ ହୋଇଥିଲେ । ଶ୍ରୀ ମହାପାତ୍ର ପ୍ରଥମ ଓଡ଼ିଆ ଡେପୁଟି ଇନ୍‌ସପେକ୍ଟର । କଟକର ସାଧାରଣ ଶିକ୍ଷା ସମ୍ବନ୍ଧୀୟ କମିଟିରେ କର୍ଣ୍ଣେଲ୍ ଷ୍ଟାନ୍‌ଲି, କାପ୍ତେନ୍ ଲେ ଓ ବାବୁ ମହେଶଚନ୍ଦ୍ର ବନ୍ଦୋପାଧ୍ୟାୟ ସଭ୍ୟ ମନୋନୀତ ହୋଇଥିବା ଜଣାଯାଏ । ଏହି କମିଟିଙ୍କୁ ଢେଙ୍କାନାଳର ରାଜା

ଏକ ହଜାରଟଙ୍କା ଦାନ କରିଥିଲେ; ବେସରକାରୀ ଉଦ୍ୟମରେ ପାଠ୍ୟପୁସ୍ତକ ଓ ସାଧାରଣ ପୁସ୍ତକ ରଚନା ଓ ମୁଦ୍ରଣ ଏହାର ଲକ୍ଷ୍ୟ ଥିଲା ।

## ଉତ୍କଳର ପୁସ୍ତକ ପରୀକ୍ଷା କମିଟି

ଢେଙ୍କାନାଳର ରାଜାଙ୍କ ଇଚ୍ଛାଅନୁସାରେ କଟକର ସାଧାରଣ ଶିକ୍ଷା ସମ୍ବନ୍ଧୀୟ କମିଟି ଓଡ଼ିଆ ପୁସ୍ତକ ମୁଦ୍ରିତ କରାଇବା ଉଦ୍ଦେଶ୍ୟରେ ଗ୍ରନ୍ଥ ପରୀକ୍ଷା ପାଇଁ ନିମ୍ନଲିଖିତ ଭଦ୍ରବ୍ୟକ୍ତିମାନଙ୍କୁ ନେଇ ଏକ ପରୀକ୍ଷା ଶାଖା କମିଟି ୫।୨।୧୮୭୯ରେ ନିଯୁକ୍ତ କରିଥିଲେ । ଶ୍ରୀଡବଲ୍ୟୁ ସି. ଲେସି, ଶ୍ରୀ ବାବୁ ଜଗନ୍ମୋହନ ରାୟ, ସଚ୍ଚିଦାନନ୍ଦ ଦାସ, ଦ୍ୱାରକାନାଥ ଚକ୍ରବର୍ତ୍ତୀ, କାଳୀପଦ ବନ୍ଦୋପାଧ୍ୟାୟ, ନବୀନଚନ୍ଦ୍ର ଷଡ଼ଙ୍ଗୀ, ବନମାଳୀ ସିଂହ, ଗୌରୀଶଙ୍କର ରାୟ ।

କଟକ ଶିକ୍ଷା କମିଟି ୧୮୭୯ ଅକ୍ଟୋବର ମାସରେ ସ୍ଥିର କଲେ ଯେ କୌଣସି ଏକଖଣ୍ଡ ଉତ୍କଳପୁସ୍ତକ ରଚନା ସକାଶେ ଟ୩୦୦ଙ୍କା ପର୍ଯ୍ୟନ୍ତ ପୁରସ୍କାର ଦିଆଯିବ । ଶାଖା କମିଟି ଏହି ସିଦ୍ଧାନ୍ତ ଅନୁସାରେ ସ୍ଥିର କଲେ ଯେ ଉତ୍କଳର ଏକଖଣ୍ଡ ଇତିହାସ ରଚନା ସକାଶେ ଏହି ପୁରସ୍କାର ଦିଆଯିବ ।

## ଓଡ଼ିଆ ପୁସ୍ତକ ଲେଖାପାଇଁ ପୁରସ୍କାର

ଓଡ଼ିଆ ଭାଷାରେ ଆଧୁନିକ ସ୍କୁଲପାଠୋପଯୋଗୀ ପୁସ୍ତକର ସଂଖ୍ୟା ଅତି ଅଳ୍ପ ଥିବାରୁ ଲେଖକମାନଙ୍କୁ ଉତ୍ସାହିତ କରିବା ସକାଶେ ଢେଙ୍କାନାଳର ରାଜାଙ୍କ ପାଣ୍ଠିରୁ ଶିକ୍ଷା କମିଟି କେତେଖଣ୍ଡି ପାଠ୍ୟ

ପୁସ୍ତକ ରଚନା କରିବା ସାଧାରଣ ମଧ୍ୟ ସ୍ଥିର କଲେ । ନିମ୍ନଲିଖିତ ପୁସ୍ତକ ପ୍ରୟୋଜନ ଥିବାରୁ ନଭେମ୍ବର ମାସ (ଖ୍ରୀ୧୮୭୯) ଶେଷ ସୁଦ୍ଧା ପୁସ୍ତକ କମିଟିଙ୍କ ହାତରେ ଅର୍ପଣ କରିବାକୁ କୁହାଯାଇଥିଲା ।

| | | | | |
|---|---|---|---|---|
| ପ୍ରାକୃତିକ ବିଜ୍ଞାନ | ପୃ ୧୦୦ | | ପୁରସ୍କାର | ଟ ୮୦୲ |
| ଅଙ୍କ | ,, | ୭୦ | ,, | ଟ ୪୦୲ |
| ଜରିପ | ,, | ୮୫ | ,, | ଟ ୮୦୲ |
| ଉତ୍କଳ ଭୂଗୋଳ | ,, | ୪୫ | ,, | ଟ ୩୦୲ |
| ଭାରତବର୍ଷର ଭୂଗୋଳ | ,, | ୧୨୦ | ,, | ଟ ୯୦୲ |
| ଇଂଲଣ୍ଡର ଇତିହାସ | ,, | ୧୨୦ | ,, | ଟ ୯୦୲ |
| ବୀଜ ଗଣିତ | ,, | ୧୫୦ | ,, | ଟ୧୫୦୲ |
| ସ୍ୱାସ୍ଥ୍ୟରକ୍ଷା | ,, | ୭୦ | ,, | ଟ ୪୦୲ |
| ପ୍ରାକୃତିକ ଭୂଗୋଳ | ,, | ୧୦୦ | ,, | ଟ ୮୦୲ |
| ଜୀବତତ୍ତ୍ୱ | ,, | ୧୩୦ | ,, | ଟ୧୨୦୲ |

ସେତେବେଳେ ଓଡ଼ିଆ ପାଠ୍ୟପୁସ୍ତକ ଗୁଡ଼ିକ ବଙ୍ଗଳା ପାଠ୍ୟ-ପୁସ୍ତକର ଅନୁକରଣରେ ଲେଖା ହେଉଥିଲା । ସ୍ଥଳବିଶେଷରେ 'ଅନୁକରଣ' ପରିବର୍ତ୍ତେ 'ହନୁକରଣ' ମଧ୍ୟ ହେଉଥିଲା । ଏହାକୁ ସୁଧୀସମାଜ ସମର୍ଥନ କରୁନଥିଲେ । ସାଧାରଣ ପୁସ୍ତକରଚନାରେ ମଧ୍ୟ ଏହି ତ୍ରୁଟି ଦେଖାଯାଉଥିଲା ।

ସେତେବେଳର ବିଦ୍ୟାଳୟମାନଙ୍କର ପାଠ୍ୟପୁସ୍ତକ ରୂପେ ଚଳାଇବା ପାଇଁ ଯେଉଁ କେତେଖଣ୍ଡି ପୁସ୍ତକ ଓଡ଼ିଆରେ ରଚିତ ହୋଇଥିଲା, ତାହାର ରୂପରେଖ ସମ୍ବନ୍ଧରେ ବିଚ୍ଛନ୍ଦଚରଣ ପଟ୍ଟନାୟକ (ସମ୍ବଲପୁର ଜିଲ୍ଲା ସ୍କୁଲ ଇନ୍‌ସ୍ପେକ୍ଟର) "ଉତ୍କଳ ଦୀପିକା"କୁ ଏକ ଚିଠି ଦେଇଥିଲେ । ଏହାର କିଞ୍ଚିତ୍ ଆଭାସ "ଉତ୍କଳଦୀପିକା" ବାବୁ ଜଗମୋହନ ଲାଲଙ୍କ "ଭ୍ରମଭଞ୍ଜନ" ପୁସ୍ତକ ସମ୍ବନ୍ଧରେ

ଯେଉଁ ଆଲୋଚନା ପ୍ରକାଶ କରିଥିଲେ ସେଥିରେ ଥିଲା । ଏଠିରେ ଏହି ବିଷୟର ପୁନରାଲୋଚନା ହୋଇଥିଲା ମାତ୍ର । "ଭ୍ରମଭଞ୍ଜନ" ସୁବିଖ୍ୟାତ ଇଂରେଜ କବି ପାର୍ଣ୍ଣେଲ୍‌ଙ୍କ "ସନ୍ନ୍ୟାସୀ" ନାମକ କବିତାରୁ ବିଷୟ ଗ୍ରହଣକରି ଉତ୍କଳ ଦେଶ ପ୍ରଚଳିତ ନାନା ପ୍ରକାର ଛନ୍ଦ ଗୀତରେ ରଚିତ ହୋଇଥିଲା । "ଦୀପିକା" ଲେଖିଥିଲେ :—

"ଆମ୍ଭେମାନେ ଏ ଗ୍ରନ୍ଥକୁ ଅତିସମାଦର ସହିତ ଗ୍ରହଣ କରିଅଛୁଁ । ସମ୍ପ୍ରତି ଉତ୍କଳଦେଶର ହିତାକାଙ୍କ୍ଷୀମାନେ ସାଧାରଣ ବିଦ୍ୟାଲୟ ଓ ବାଳକଙ୍କ ଶିକ୍ଷା ନିମିତ୍ତ ଅନେକ ପୁସ୍ତକ ରଚନା କରୁଅଛନ୍ତି, ମାତ୍ର ଦୁଃଖର ବିଷୟ ଯେ ଦୁଇ ଏକଖଣ୍ଡ ପୁସ୍ତକ ଭିନ୍ନ ଆଉ ସମସ୍ତ ବଙ୍ଗପୁସ୍ତକର ଅବିକଳ ଅନୁବାଦ ଅଟଇ । ବଙ୍ଗଳା ସଙ୍ଗେ ଉତ୍କଳର ପ୍ରକାଶ୍ୟ ବିଭିନ୍ନତା ଅଳ୍ପ ଜଣାଯିବାରୁ ଅନୁବାଦ-କର୍ତ୍ତାମାନେ ଏହିରୂପ ପୁସ୍ତକ ରଚନାର ଉପାୟ ସହଜ ଜ୍ଞାନକରି ସେଥିରେ ପ୍ରବୃତ୍ତ ହେଉଅଛନ୍ତି ଏବଂ ବସ୍ତୁତଃ ଅବିକଳ ଅନୁବାଦ ଯେ କେଡ଼େ କଠିନ ତାହା ସେମାନେ ଜ୍ଞାନ କରନ୍ତି ନାହିଁ । ଏଥିରୁ ଏହିଫଳ ହୋଇଅଛି ଯେ ପ୍ରତିଦିନ ଉତ୍କଳ ଭାଷା ବଙ୍ଗଳାର ଭାବଭଙ୍ଗୀକୁ ପ୍ରାପ୍ତ ହୋଇ ଏକପ୍ରକାର ନୂତନ ଭାଷା ସୃଜନା ହେଉଅଛି । ଗ୍ରନ୍ଥକର୍ତ୍ତାମାନେ ବଙ୍ଗଳା ଭାଷାରେ ଶିକ୍ଷାପ୍ରାପ୍ତ ହୋଇ ବଙ୍ଗଳା ଭାଷାଗ୍ରନ୍ଥ ଅନୁବାଦ କରିବା ସମୟରେ ଅନେକ ବଙ୍ଗଳାଶବ୍ଦ ଓ ଭାବପ୍ରକାଶର ନିୟମକୁ ଉତ୍କଳ ମନେ କରି ସେ ସମସ୍ତର ପ୍ରତିଶବ୍ଦ ଲେଉନ୍ତି ନାହିଁ ସୁତରାଂ ତଦ୍ଦ୍ୱାରା ଉତ୍କଳଭାଷାର ଅନେକ କ୍ଷତି ହେଉଅଛି । ଯେବେ ଅନୁବାଦ ନକରି କେବଳ ବିଷୟ ଗ୍ରହଣ ପୂର୍ବକ ଅନୁବାଦ କର୍ତ୍ତାମାନେ ପୁସ୍ତକରଚନାର ପ୍ରବୃତ୍ତିକୁ ତୃପ୍ତି କରନ୍ତେ, ତେବେ ବହୁତ ବଙ୍ଗଳାମିଶ୍ରିତ ଉତ୍କଳପୁସ୍ତକ ଦେଖାଯାନ୍ତା । ଯାହା ହେଉ, "ଭ୍ରମଭଞ୍ଜନ" ଏ ଦୋଷରୁ ମୁକ୍ତ ପାଇଅଛି । କେବଳ

ବଙ୍ଗପୁସ୍ତକର ଅନୁବାଦ ନୁହଇ ବୋଲି ଯେ ଏହା ଭଲ ହେଲା ଏମନ୍ତ ନୁହେଁ । ମାତ୍ର ଗ୍ରନ୍ଥକର୍ତ୍ତା ଅବିକଳ ଅନୁବାଦକୁ ଉତ୍ତମ ଜ୍ଞାନ ନ କରି ଜାଣି ଶୁଣି ତ୍ୟାଗ କରିଥିବାରୁ ଏରୂପ ଗ୍ରନ୍ଥ ହୋଇଅଛି । × ×...” (ଉ: ଦୀ: ସ୍ୱ: ସ ୨. ୧୩।୨।୧୮୭୮ )

ଓଡ଼ିଶାରେ ଉପଯୁକ୍ତ ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ନଥିବା ବିଷୟରେ କମିସନର ସାହେବ ବାରଂବାର ସରକାରଙ୍କ ଦୃଷ୍ଟି ଆକର୍ଷଣକରି ତାହାର ପ୍ରତିକାର ଚିନ୍ତା କରିବାକୁ ପରାମର୍ଶ ଦେଇଥିଲେ । ସରକାର ଏ କଥାର ମର୍ମ ହୃଦୟଙ୍ଗମ କରି ସ୍ଥିର କଲେ ଯେ ଉତ୍କଳଭାଷାରେ ପାଠ୍ୟ ପୁସ୍ତକ ଗବର୍ଣ୍ଣମେଣ୍ଟଙ୍କ ବ୍ୟୟରେ ମୁଦ୍ରିତ ହେବ । କେଉଁ କେଉଁ ପୁସ୍ତକର ଅଭାବ ଅଛି ତାହା ଶିକ୍ଷା ବିଭାଗ ତରଫରୁ ଅନୁସନ୍ଧାନ ହୋଇ ସେ ସମସ୍ତର ତାଲିକା କରିବା ପାଇଁ ଆଦେଶ ହୋଇଥିଲା । କେଉଁ ବହିର ଛାପାଖର୍ଚ୍ଚ କେତେ ହେବ ତାହା ମଧ୍ୟ ନିର୍ଣ୍ଣିତ ହେବା ପାଇଁ ଆଦେଶରେ ଥିଲା ।

ଏହି ସିଦ୍ଧାନ୍ତ ଯେ ଓଡ଼ିଆ ଭାଷାର ଉନ୍ନତି ପକ୍ଷରେ ଅତି ମୂଲ୍ୟବାନ ଥିଲା ଏଥିରେ କୌଣସି ସନ୍ଦେହ ନାହିଁ ।

ଲେଖକମାନେ ନିଜନିଜର ଲେଖାର ପାଣ୍ଡୁଲିପି ଶିକ୍ଷା କମିଟିଙ୍କ ହାତରେ ଦେବେ ଏବଂ ପରୀକ୍ଷା ପରେ ମନୋନୀତ ହେଲେ ଗ୍ରନ୍ଥଟି ସରକାରୀ ବ୍ୟୟରେ ଛାପା ହୋଇ ପ୍ରଦେଶର ସବୁ ସ୍କୁଲରେ ଚଳିବ । ଏହାର ଲାଭ ଅବଶ୍ୟ ଲେଖକ ଭୋଗ କରିବେ ।

କିନ୍ତୁ ଗ୍ରନ୍ଥକର୍ତ୍ତାଙ୍କ ଲାଭ ସେତେ ହେବାର ଆଶା ନଥିଲା । କାରଣ, ବହି ବେଶି ବିକ୍ରି ହେଉନଥିଲା । ଓଡ଼ିଆ ଅଞ୍ଚଳ ତିନୋଟି ପ୍ରଦେଶର ଶାସନାଧୀନ ଥିବାରୁ ସବୁଠାରେ ଏକପ୍ରକାର ବହି ପାଠ୍ୟପୁସ୍ତକ ନଥିଲା । ବିଭିନ୍ନ ପ୍ରକାର ପୁସ୍ତକ ଚଳୁଥିବାରୁ ବହି ବିକ୍ରିର

ପରିମାଣ ବେଶି ନଥିଲା । କିନ୍ତୁ ଏହି ତିନି ପ୍ରଦେଶ (ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟ-ପ୍ରଦେଶ) ବଙ୍ଗସରକାରଙ୍କ ମନୋନୀତ ପାଠ୍ୟପୁସ୍ତକକୁ ସବୁ ସ୍କୁଲରେ ଚଳାଇ ଆଉ ସ୍ୱତନ୍ତ୍ର ପୁସ୍ତକର ପ୍ରଚଳନନକଲ ପୁସ୍ତକବନ୍ଦୀ ନିଶ୍ଚୟ ବୃଦ୍ଧିପାଆନ୍ତା ଏବଂ ଲେଖକମାନେ ଲାଭବାନ୍ ହୁଅନ୍ତେ । ଏହି କାରଣରୁ ସରକାରଙ୍କଠାରେ ସବୁ ଓଡ଼ିଆ ଅଞ୍ଚଳରେ ଏକପ୍ରକାର ପାଠ୍ୟପୁସ୍ତକ ପ୍ରଚଳନ କରିବା ନିମନ୍ତେ ଦାବୀ ହୋଇ-ଥିଲା । ପୁଣି ଆଉ ଏକ ଦୋଷ ଦେଖା ଯାଉଥିଲା । "ଏକ ଏକ ବିଭାଗର ଶିକ୍ଷା କର୍ମଚାରୀମାନେ ସ୍ୱେଚ୍ଛାମତେ କାହାରି ପୁସ୍ତକକୁ ଆଦର ଓ କାହାରି ପୁସ୍ତକକୁ ଅନାଦର କରି ପାରୁଥିବାରୁ ଅନେକ ପକ୍ଷପାତ ଚଳୁଅଛି । ଏଥିରେ ଭଲଲୋକର ଉତ୍ସାହ ନହୋଇ ଯାହାର ମୁରବିବଳ ଅଛି ସେହି କୃତକାର୍ଯ୍ୟ ହେଉଅଛି । ଓଡ଼ିଆ ବିଦ୍ୟାଳୟର ସମସ୍ତ ବିଦ୍ୟାଳୟ ସକାଶେ ଜଣେ ଇନସ୍‌ପେକ୍ଟର ହେଲେ ଅବଶ୍ୟ ଭଲ ହୁଅନ୍ତା । ମାତ୍ର ଯେବେ କୌଣସି କାରଣରୁ ତାହା ଶୀଘ୍ର ନ ହୋଇପାରେ ତେବେ ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟ-ପ୍ରଦେଶର ଶିକ୍ଷା ବିଭାଗର ଡାଇରେକ୍ଟରଙ୍କ ମଧ୍ୟରେ ପତ୍ରଦ୍ୱାରା କୌଣସି ବନ୍ଦୋବସ୍ତ ହେଲେ ଆପାତତଃ ସବୁଠାରେ ଏକ ପ୍ରକାର ପୁସ୍ତକ ଚଳିବାର ନିୟମ ହୋଇପାରେ ଓ ଆମ୍ଭମାନଙ୍କ ବିବେ-ଚନାରେ ଏପରି ନିୟମ ଯେତେ ଶୀଘ୍ର ହୁଅଇ ତେତେ ଭଲ ହେବ ।" (ଉ: ଦୀ: ଭ ୫: ସ ୪୧: ୨୧।୧୦।୭୦)

## ଉତ୍କଳ ପୁସ୍ତକ କମିଟି ପାରିତୋଷିକ

ସରକାରୀ ଉଦ୍ୟମରେ ପାଠ୍ୟପୁସ୍ତକ ପ୍ରକାଶ କରିବା ପାଇଁ ଯେଉଁ ଦାବୀ ହୋଇଥିଲା ତାହା ସରକାର ଗ୍ରହଣ କରିନେଇ ୧୮୭୨ରେ ଲେଫ୍‌ଟ୍‌ନେଣ୍ଟ ଗଭର୍ଣ୍ଣର କମ୍ବେଲ ସାହେବ ଉତ୍କଳଭାଷାରେ

ବିଦ୍ୟାଳୟର ପାଠ୍ୟପୁସ୍ତକ ପ୍ରଣୟନ ନିମିତ୍ତ ୫୩୦୦୦୯ ତିନିହଜାର ଟଙ୍କା ପୁରସ୍କାର ଦାନ କରିବାକୁ ମଞ୍ଜୁର ଦେଇଥିଲେ । ଏହାର ସଦ୍‌ବ୍ୟବହାର ଉଦ୍ଦେଶ୍ୟରେ ପରାମର୍ଶ ଦେଇ ଉତ୍କଳ ଦୀପିକା ଟିପ୍‌ପଣୀ କଲେ—"× × ବର୍ତ୍ତମାନ ଓଡ଼ିଆ ଭାଷାରେ ଯେତେ ପୁସ୍ତକ ମୁଦ୍ରିତ ହୋଇଅଛି, ସେ ସବୁକୁ ଏକତ୍ର କରି ପ୍ରତ୍ୟେକର ଉପଯୋଗିତା ପ୍ରତି ବିଚାର ହେଉ । ଯେଉଁ ପ୍ରକାରର ବିଦ୍ୟାଳୟର ଯେଉଁ ଶ୍ରେଣୀରେ ଯାହା ପଢ଼ିବାର, ତାହା ସ୍ଥିର ହେଉ ଓ ଯାହା ଅଛି ଓ ଯାହା ପ୍ରୟୋଜନ ଏ ଦୁଇବିଷୟ ଦୃଷ୍ଟିରେ ଯେଉଁ ଯେଉଁ ପୁସ୍ତକ ସେ ପ୍ରକାର ନିୟମରେ ପ୍ରଣୟନ କରିବାକୁ ହେବ ତହିଁର ବିଜ୍ଞାପନ ପ୍ରଶସ୍ତରୂପରେ ଦିଆଯାଉ ଓ ଛମାସରୁ ଅନ୍ୟୂନ ଦୀର୍ଘକାଳ ଏକ ଏକ ପୁସ୍ତକ ପାଇଁ ସମୟ ଦିଆଯାଉ । ତାହାହେଲେ ଅବଶ୍ୟ ଓଡ଼ିଶାରେ ଯେତେଦୂର ଉତ୍କୃଷ୍ଟ ପୁସ୍ତକ ପ୍ରାପ୍ତିର ସମ୍ଭବ, ତାହା ହୋଇ ପାରିବ ଓ କେହି ଚତୁର ଲୋକ ସୁଯୋଗ ବୁଝି ଆପଣା ଅଭୀଷ୍ଟ ସାଧନ କରିବାକୁ ସମର୍ଥ ହେବ ନାହିଁ ।" [ଉ: ଦୀ. ଭା. ସଂ ୨୧।୨୦।୯।୭୨]

"ଚତୁର ଲୋକମାନେ" "ସୁଯୋଗ" ନେଇ ନିଜ ନିଜର ପାଠ୍ୟପୁସ୍ତକକୁ ମଞ୍ଜୁର କରାଇନେବା ପାଇଁ ଯୋଗାଡ଼ କରୁଥିଲେ ।

ଏତେ ସୁବିଧାସତ୍ତ୍ୱେ ବାଧାବିଘ୍ନ ଓଡ଼ିଶାରେ ପାଠ୍ୟପୁସ୍ତକ ଓ ସାଧାରଣ ପୁସ୍ତକ ରଚନା କ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ରାଧାନାଥ ପ୍ରଥମେ ବଙ୍ଗଳାରେ ସ୍ୱରଚିତ "କବିତାବଳୀ" ପ୍ରକାଶ କରିଥିଲେ ମଧ୍ୟ ପରେ ଓଡ଼ିଆରେ ଲେଖିବାକୁ ଆରମ୍ଭ କଲେ । ସମସାମୟିକ ନବଶାକୁ ଦେଶାତ୍ମବୋଧ ଜୟ କରିପାରିଥିଲା ।

# ଊନବିଂଶ ପରିଚ୍ଛେଦ

## ଚନ୍ଦ୍ରଭାଗା

ଆଧୁନିକ ଓଡ଼ିଶାର କ୍ଷୁଦ୍ର କାବ୍ୟମାନଙ୍କ ମଧ୍ୟରେ ଚନ୍ଦ୍ରଭାଗା ପ୍ରଥମ ପଥପ୍ରଦର୍ଶକ ବୋଲି ମନେ ହୁଏ । ରାଧାନାଥ ଏହି କ୍ଷୁଦ୍ର କାବ୍ୟଟି ରଚନା କରିବା ପୂର୍ବରୁ ଅନେକଗୁଡ଼ିଏ କବିତା ଲେଖି-ଥିଲେ । ରାଧାନାଥଙ୍କ କ୍ଷୁଦ୍ର କାବ୍ୟମାନଙ୍କ ଭିତରେ ଏହା ସର୍ବ ପ୍ରଥମ ଥିବା ଜଣାଯାଏ ।

ଓଡ଼ିଶାର ଗୌରବ ବିଖ୍ୟାତ କୋଣାର୍କ ମନ୍ଦିରର ପତନର କାରଣ ସମ୍ପର୍କୀୟ ଏକ କାଳ୍ପନିକ ପୌରାଣିକ ଗଳ୍ପ ଏହି କ୍ଷୁଦ୍ର କାବ୍ୟର ବିଷୟବସ୍ତୁ । ଏହି ଗଳ୍ପଟି କୌଣସି ପ୍ରାଚୀନ ପୁରାଣ-ମାନଙ୍କରେ ଥିବା ଜଣାଯାଉ ନଥିଲେ ମଧ୍ୟ ଗଳ୍ପଟିରେ ପୌରାଣିକ ଦେବଦେବୀମାନଙ୍କ ସମ୍ପର୍କ ଥିବାରୁ ଏହା ପୌରାଣିକ ଗଳ୍ପ ପରି ପ୍ରତୀୟମାନ ହେଉଛି ।

କବି ଏହି ପ୍ରଥମ କ୍ଷୁଦ୍ରକାବ୍ୟଟି ପୌରାଣିକ ଆଖ୍ୟାନ ଶୈଳୀରେ ରଚନା କରି ପୌରାଣିକ କଥାବସ୍ତୁ ପ୍ରତି ତାଙ୍କର ପ୍ରଗାଢ଼ ମମତା ଥିବା ସୂଚନା ଦେଇଛନ୍ତି । ପରବର୍ତ୍ତୀ ଅନେକ-ଗୁଡ଼ିଏ କାବ୍ୟ କବିତା କବି ପୌରାଣିକ କଥାବସ୍ତୁ ଅବଲମ୍ବନରେ ଲେଖିଛନ୍ତି ।

କୋଣାର୍କ ମନ୍ଦିରର ପତନର କାରଣ ସମ୍ବନ୍ଧରେ ରାଧାନାଥଙ୍କ ଗଳ୍ପଟି ଓଡ଼ିଶାରେ ପ୍ରଚଳିତ କିମ୍ବଦନ୍ତୀମାନଙ୍କ ଭିତରେ ନାହିଁ । ପୁରୀର ଜଗନ୍ନାଥ ମନ୍ଦିରର ସିଂହାସନ ଉପରେ ପୂଜା ପାଉଥିବା ବଳଭଦ୍ର, ସୁଭଦ୍ରା, ଓ ଜଗନ୍ନାଥ ମୂର୍ତ୍ତି ଅସମ୍ପୂର୍ଣ୍ଣ କଳେବର ଧାରଣ କରିଛନ୍ତି ଏବଂ ଏହି ସମ୍ବନ୍ଧରେ ଉତ୍କଳରେ କିମ୍ବଦନ୍ତୀ ରହିଛି । ପୁଣି, ଇନ୍ଦ୍ରଦ୍ୟୁମ୍ନ ନିର୍ମାଣ କରିଥିବା ଜଗନ୍ନାଥ ମନ୍ଦିର ବାଲୁକା-ରାଶିରେ ପୋତି ହୋଇଯାଇ ଅଦୃଶ୍ୟ ହୋଇଯିବା ସମ୍ବନ୍ଧରେ ମଧ୍ୟ କିମ୍ବଦନ୍ତୀ ଅଛି । କବି କୋଣାର୍କ ମନ୍ଦିରର ପତନ ସମ୍ପର୍କରେ ଏକ ଗଳ୍ପ ସୃଷ୍ଟି କରିବା ଦ୍ୱାରା ଏହା କାଳକ୍ରମେ କିମ୍ବଦନ୍ତୀର ଆକାର ଧାରଣ କରିବା ଆଶା କରିଥିବେ ; କିନ୍ତୁ କବିଙ୍କର କଳ୍ପନାହିଁ ମୁଖ୍ୟ ଥିବାରୁ ଏହି ଗଳ୍ପଟିକୁ ସେହିଗରୁ କେବଳ ବହିର ଯୋଗ୍ୟ; ଇତିହାସ କିମ୍ବା କିମ୍ବଦନ୍ତୀର ବିଶ୍ୱାସଯୋଗ୍ୟତାର ପରିମାଣ ଉପରେ ନୁହେଁ ।

କଥାବସ୍ତୁଟି ଗ୍ରୀସ୍ ଦେଶୀୟ ଆପୋଲୋ ଓ ଡାଫ୍ନୀଙ୍କ ପ୍ରଣୟ କାହାଣୀ ଅବଲମ୍ବନ ଥିବା ଅନୁମାନ କରାଯାଏ । ଏହାଦ୍ୱାରା କଥାବସ୍ତୁର ଗୌରବରେ କୌଣସି କ୍ଷତି ଉପୁଜୁନାହିଁ । କାରଣ ଏଠାରେ କବି ରାଧାନାଥଙ୍କ ଲେଖନୀର ଶକ୍ତି ନୂତନ ଜଗତ ସୃଷ୍ଟି କରିବାରେ ସମର୍ଥ ହୋଇ ପାରିଛି ।

ଉପାଖ୍ୟାନ :—ପୁରୁଷୋତ୍ତମ କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥଙ୍କ ଅଭିଷେକୋତ୍ସବ ଦର୍ଶନ ଆଶାରେ ମନ୍ଦିର ସିଂହଦ୍ୱାରରେ ଦେବଦେବୀ-ମାନେ ଯେ ଯାହାର ପୂଜାସମ୍ଭାର ଘେନି ଖଡ଼ା ହୋଇଥିଲେ । ହରଚଣ୍ଡୀ, ବାଣପୁରର ଭଗବତୀ, ଏକାମ୍ରକ୍ଷେତ୍ରର ଭୁବନେଶ୍ୱରୀ, ବାଙ୍କୀର ଚର୍ଚ୍ଚିକା, ବରୁଣେଇ ପର୍ବତସ୍ଥିତ ବରୁଣେଈ, ଦେବୀଦ୍ୱାରର ଚଣ୍ଡିକା, କଟକଚଣ୍ଡୀ, ଝଙ୍କଡ଼ର ସିଂହ ଶାରଳା, କାଳିଯାଈ ପ୍ରଭୃତି

ଉତ୍କଳର ପ୍ରସିଦ୍ଧ ଦେବତାମାନେ ଉପସ୍ଥିତ ଥିଲେ । କୋଣାର୍କର ଦେବତା ସୂର୍ଯ୍ୟଦେବ ମଧ୍ୟ ସିଂହଦ୍ୱାରରେ ଉପସ୍ଥିତ ଥିଲେ । ଏହି ସମୟରେ କନ୍ଦର୍ପ ଓ ରତି ସେଠାକୁ ଆସି ପହଞ୍ଚିବାରୁ ପ୍ରତିହାରୀ ଜୟ ବିଜୟ ସେ ଦୁହିଁଙ୍କୁ ବାଟ ଛାଡ଼ି ଦେଲେ । ଫଳରେ ଏମାନେ ପଛେ ଆସି ଆଗେ ଦେଉଳ ଭିତରେ ପଶିବାରୁ ସୂର୍ଯ୍ୟଦେବ ଏଥିରେ କ୍ରୋଧାନ୍ୱିତ ହେଲେ । ମହୋତ୍ସବ ସାରି ସବୁଦେବଦେବୀ ଯେ ଯାହା ପୁରକୁ ସ୍ୱ ସ୍ୱ ବାହନରେ ନଣି ଫାଷ୍ଟବା ପୂର୍ବରୁ ଫେରିଗଲେ । ଗଲାବେଳେ ସୂର୍ଯ୍ୟଦେବ କନ୍ଦର୍ପଙ୍କୁ କ୍ରୋଧରେ କହିଲେ, "ଛଡ଼ାଇ ଦେବଟି ତୋର ଏହି ବଡ଼ାଇ ।" ପରେ ଉଭୟଙ୍କ ଭିତରେ ବଚସା ହେଲା । କନ୍ଦର୍ପ ସୂର୍ଯ୍ୟଙ୍କ ଉପରେ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ପ୍ରିୟା ସହିତ ଅନ୍ତରୀକ୍ଷରେ ଲୁଚି ରହିଲେ । ସୂର୍ଯ୍ୟଦେବ ବେଲେଶ୍ୱର-ଠାରେ (ପୁରୀ ଓ କୋଣାର୍କ ମଧ୍ୟରେ ସମୁଦ୍ରକୂଳରେ ଅବସ୍ଥିତ ପ୍ରସିଦ୍ଧ ଶିବଙ୍କ ଆସ୍ଥାନ) ଉପସ୍ଥିତ ହେବାକ୍ଷଣି କନ୍ଦର୍ପ ତାଙ୍କର ଶରକୁ ଶାଣ ଦେଲେ ।

ବେଲେଶ୍ୱରଠାରେ ପରଶୁରାମଙ୍କ ଶିଷ୍ୟ ସୁମନ୍ୟୁ ଋଷିଙ୍କ ଆଶ୍ରମ-ଥିଲା । ସେଠାରେ ସାଗର-ଅପ୍ସରୀ ଗର୍ଭରୁ ଏକ ଦୁହିତା ଜନ୍ମ ହୋଇ-ଥିଲା । ତାକୁ ସୁମନ୍ୟୁ ପାଳିଥିଲେ । ଏହି କନ୍ୟାର ନାମ ଚନ୍ଦ୍ରଭାଗା । ଯଥାକାଳରେ ଚନ୍ଦ୍ରଭାଗାର ଅଙ୍ଗ ଅଭିନବ ଯୌବନରେ ମଣ୍ଡିତ ହେଲା; "ନେହ ଯୁଗେ ଯୁବା ପିଇନ୍ତି ଯେଉଁ ରୂପ ଅମୃତ, ସେ ଅମୃତେ କଲା ଯୌବନ ବାଳାତନୁ ଧଉତ ।" ଚନ୍ଦ୍ରଭାଗା କଳରେ ଦିବ୍ୟ ଶୋଭା ଦିଶୁଲା ହେଲା । କ୍ଷୀରବ୍ଧିବାସିନୀ ଲକ୍ଷ୍ମୀ ସ୍ୱୀୟ ପ୍ରିୟସଖୀ ଅପ୍ସରୀର ଅନୁରୋଧରେ ତାଙ୍କ ଦୁହିତା ଚନ୍ଦ୍ରଭାଗା ପାଇଁ ବିବିଧ ବସ୍ତ୍ର ଭୂଷଣ ଦେଲେ । ବାଳା ସର୍ବଦା ବିଜନ ଦେଶରେ ପ୍ରମୋଦରେ ଭ୍ରମଣ କରୁଥିବାରୁ ପୁରୁଷକଥାକୁ ଟିକେ ଡରୁ ଥିଲା ଏବଂ ପ୍ରେମପ୍ରସଙ୍ଗକୁ ବିଷ ପ୍ରାୟ ମଣୁ ଥିଲା ।

ସୂର୍ଯ୍ୟଦେବ ସ୍ୱ ମନ୍ଦିରରୁ ଫେରୁଥିବା ସମୟରେ ବେଳେଶ୍ୱର-ଠାରେ ଚନ୍ଦ୍ରଭାଗା ଖେଳୁଥିଲେ । ସେହି ସମୟରେ ତାଙ୍କର ଶୋଭା ଅତୁଳନୀୟ ଥିଲା; "ଯେଉଁଣେ ଅନାଉଛନ୍ତି ଲଳନା, ଫୁଲ ଯାଏ ବରଷି ।" ଏହି ଅପରୂପ ଲାବଣ୍ୟମୟୀ ପ୍ରତିମାକୁ କନ୍ଦର୍ପ ଦେଖିଲେ ଏବଂ ତାଙ୍କର ପ୍ରତିଶୋଧ ନିମନ୍ତେ ନିଷ୍ପାପ ସରଳା ପ୍ରେମଧିରୁ ଚନ୍ଦ୍ରଭାଗାକୁ ସାଧନ ରୂପେ ବ୍ୟବହାର କଲେ । ସୂର୍ଯ୍ୟଦେବ ଆକାଶପଥରେ ବେଳେଶ୍ୱରଠାରେ ଉପସ୍ଥିତ ହେବା କ୍ଷଣି ଚନ୍ଦ୍ରଭାଗା ଉପରେ ତାଙ୍କର ଦୃଷ୍ଟି ପଡ଼ିଲା ଏବଂ ତାଙ୍କର "ପଡ଼ିଲା, ଉଡ଼ିଲା ହୃଦୟ, ଧୈର୍ଯ୍ୟ ବୁଡ଼ିଲା କ୍ଷଣେ ।" କନ୍ଦର୍ପ ଏହି ଅବସ୍ଥା ଜାଣିପାରି ଉପଯୁକ୍ତ ସମୟରେ ସୂର୍ଯ୍ୟଙ୍କ ପ୍ରତି କାମଶର ନିକ୍ଷେପ କଲେ ଏବଂ ପଶ୍ଚାତରେ ଚନ୍ଦ୍ରଭାଗା ଉପରେ ମଧ୍ୟ ଶର ପକାଇଲେ । ଫଳରେ ଅନୁରାଗ-ବିରାଗର ଦ୍ୱନ୍ଦ୍ୱ ଉପସ୍ଥିତ ହେଲା । ସୂର୍ଯ୍ୟଦେବ ଚନ୍ଦ୍ରଭାଗାକୁ ପାଇବା ପାଇଁ ଯେତେ ଅନୁନୟ ବିନୟ ହେଉଥିଲେ ସେତେ ବିରାଗ ଚନ୍ଦ୍ରଭାଗାଙ୍କ ମନରେ ଜାତ ହେଉଥିଲା । ଚନ୍ଦ୍ରଭାଗା ଭୟରେ ବିହ୍ୱଳ ହୋଇ 'ଉତ୍ତରମୁଖ'ରେ ଦୌଡ଼ିଲେ ଏବଂ ସୂର୍ଯ୍ୟଦେବ ତାଙ୍କ ପଛରେ ଗୋଡ଼ାଇଲେ । ଶେଷରେ ସୁନ୍ଦରୀ ଊର୍ଦ୍ଧ୍ୱଶ୍ୱାସ ହୋଇ ମହୋଦଧି କୂଳରେ ଉପସ୍ଥିତ ହେଲେ ଏବଂ ନିଜମାତାଙ୍କୁ ପ୍ରାର୍ଥନା କରି ତାଙ୍କର ସ୍ୱ ଅପରୂପ ଶୋଭା ହରଣ କରିବାକୁ କହିଲେ ଏବଂ ସ୍ୱ କୋଳକୁ ନେଇଯିବା ପାଇଁ ବସୁଧାଙ୍କୁ ପ୍ରାର୍ଥନା କଲେ । ମୁହୂର୍ତ୍ତକ ମଧ୍ୟରେ ସମୁଦ୍ରରୁ ପର୍ବତାକାର ଊର୍ମିମାଳା ଉତ୍ଥିତ ହେଲା ଏବଂ ଚନ୍ଦ୍ରଭାଗା ସେହି ନୀଳତରଙ୍ଗରେ କାହିଁ ଉଭେଇ ଗଲା । ହୁହୁଁ ହୁହୁଁ ଘନଘୋଷ ପ୍ରାୟ ଭୈରବ ଶବ୍ଦ ଶୁଣାଗଲା ଏବଂ ସୂର୍ଯ୍ୟଦେବ ଚକିତ ନୟନରେ ଦେଖୁ ଦେଖୁ ତାଙ୍କର ମନ୍ଦିର ଭୂମିସାତ୍ ହୋଇଗଲା । ଧ୍ୟାନଯୋଗରେ ସୁମନ୍ୟୁ ସୂର୍ଯ୍ୟଙ୍କ କାର୍ଯ୍ୟକଳାପ ଜାଣିପାରି ଶାପ

ଦେବା ଫଳରେ ଏହା ଘଟିଥିଲା । ସୂର୍ଯ୍ୟଦେବ ବିମନା ହୋଇ ସ୍ୱ ମଣ୍ଡଳକୁ ଫେରିଗଲେ ; କୋଣାର୍କ କ୍ଷେତ୍ରରୁ ଅର୍କ-ପୂଜା ବିଧାନ ଲୋପ ପାଇଲା; ସେହିଦିନୁ ଅର୍କକ୍ଷେତ୍ର ମରୁଭୂମିରେ ପରିଣତ ହେଲା ! କେବଳ ଦେଉଳର ମୁଖଶାଳାଟି ପୂର୍ବ-ଗୌରବ-ସାକ୍ଷିଣୀ ରୂପେ ରହିଲା ।

କାବ୍ୟଟି ରାମକେରୀ ରାଗରେ ରଚିତ ; କବି ଉତ୍କଳର ଏହି ପ୍ରାଚୀନ ଜନପ୍ରିୟ ରାଗଟିକୁ ମାଧ୍ୟମ ରୂପେ ବ୍ୟବହାର କରି ରଚନା ପ୍ରବାହକୁ ସୁଗମ କରିଛନ୍ତି ।

ଅନୁପ୍ରାସାଳଙ୍କାରର ସୁଷମ ପ୍ରୟୋଗ ଯୋଗୁଁ କାବ୍ୟର ଭାଷା ମଧୁର ଓ ମନୋମୁଗ୍‌ଧକର ହୋଇଅଛି ଏବଂ କାବ୍ୟର ସୌନ୍ଦର୍ଯ୍ୟ ବର୍ଦ୍ଧିତ ହୋଇଛି । କଠିନ ଓ ଦୁର୍ବୋଧ୍ୟ ଶବ୍ଦମାନଙ୍କର ପ୍ରୟୋଗର ସ୍ୱଳ୍ପତା କାବ୍ୟଟିର ମାଧୁରୀ ଉପଭୋଗ କରିବାରେ ସାହାଯ୍ୟ କରିଛି । ଏହି ପ୍ରସାଦଗୁଣ ବିଶିଷ୍ଟ ପଦାବଳୀର କାବ୍ୟଟି କ୍ଷୁଦ୍ର ହେଲେ ମଧ୍ୟ ପରିପୂର୍ଣ୍ଣ ଭାବରେ ରସ ସୃଷ୍ଟି କରିବାରେ ସମର୍ଥ ହୋଇଛି । ଭାଷା ସରଳ ଓ ମାର୍ଜିତ ।

ଉପଧାମିଳନ କାବ୍ୟର ସମସ୍ତ ପଦରେ ବ୍ୟବହୃତ ହୋଇ-ଥିବାରୁ ଭାଷାର ମାଧୁର୍ଯ୍ୟ ବର୍ଦ୍ଧିତ ହୋଇଛି । ରାଧାନାଥଙ୍କ ପୂର୍ବରୁ ପ୍ରାଚୀନ କବି ଶିପୁରାରି ଦାସ "ରାମକୃଷ୍ଣ କେଳୀ କଲ୍ଲୋଳ" କାବ୍ୟରେ ଏହାର ପ୍ରୟୋଗ କୃତିତ୍ୱ ସହକାରେ କରିପାରି ଓଡ଼ିଆ କାବ୍ୟ ରାଜ୍ୟରେ ଏ କ୍ଷେତ୍ରରେ ପ୍ରଥମ ଓ ବଳିଷ୍ଠ ପଥପ୍ରଦର୍ଶକ ହୋଇଛନ୍ତି ।

କବି ଚନ୍ଦ୍ରଭାଗାରେ କାବ୍ୟାଳଙ୍କାରର ପ୍ରୟୋଗ ସ୍ଥଳବିଶେଷରେ କରିଥିବାରୁ ରଚନାଟିର ଗୌରବ ବୃଦ୍ଧି ପାଇଛି । ଉପେନ୍ଦ୍ରାଦି ଅଳଙ୍କାରପ୍ରିୟ କବିମାନଙ୍କ ପରି ରାଧାନାଥ କାବ୍ୟଟିକୁ ଅଳଙ୍କାରର

ବହୁଳ ପ୍ରୟୋଗ କରି ଭାରାକ୍ରାନ୍ତ କରି ନାହାନ୍ତି ; ସହଜ ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ଫୁଟାଇବାରେ ସେ କୃତକାର୍ଯ୍ୟ ହୋଇଛନ୍ତି । ରାଧାନାଥଙ୍କ ପୂର୍ବରୁ ବହୁ ପ୍ରାଚୀନ କବି ଏପରି ଅଳଙ୍କାରଭାରବିହୀନ, ସରଳ-ସ୍ୱାଭାବିକ-ସୌନ୍ଦର୍ଯ୍ୟପୂର୍ଣ୍ଣ କବିତା ଓ କାବ୍ୟ ଲେଖି ଧନ୍ୟ ହୋଇଛନ୍ତି । ଆଧୁନିକ ଯୁଗରେ ଅର୍ଥାତ୍ ଇଂରେଜୀ-ଶିକ୍ଷିତ ଓ ପ୍ରଭାବିତ କବିମାନଙ୍କ ମଧ୍ୟରେ ରାଧାନାଥ ଏ କ୍ଷେତ୍ରରେ ଅଗ୍ରଣୀ; ଓଡ଼ିଆ କାବ୍ୟରାଜ୍ୟରେ ସେ ଏ କ୍ଷେତ୍ରରେ ଅଗ୍ରଣୀ ବୋଲି କହିବା ସତ୍ୟ ହେବ ନାହିଁ ।

ଅନୁପ୍ରାସ—(୧) ଅଭିଷେକୋତ୍ସବ ଦର୍ଶନ ଆଶେ ସିଂହଦୁଆରେ
ବିଜେ ଆଜ ଦେବଦେବୀଏ ଯେଝା ପୂଜାସମ୍ଭାରେ ।
(୨) ହାଟକ-ଗଉରୀ-କଟକ-ଚଣ୍ଡୀ ନାଗରୀ ବେଶେ
ଅମଳ ରଜନ କୁସୁମ ଶୋଭେ ଶ୍ୟାମଳ କେଶେ ।
(୩) ବାରୁଣୀ ଶଇଳ ଶିଖରେ ପୁଣି ଯେତ୍ପୁ ବସନ୍ତ,
(୪) ରମାଙ୍କର ବାଲ୍ୟସଙ୍ଗିନୀ ସିନ୍ଧୁଶିରୀ ସୁନ୍ଦରୀ । ଇତ୍ୟାଦି

ଯମକ— ତମୋଦମ୍ଭହର ଜଗତେ ତୁମ୍ଭ କର ସରି କେ
ଦମ୍ଭି-ଦମ୍ଭ-ହର ତେସନ ଫୁଲଶର ସରି କେ ।

ମାଳୋପମା—ମିଶିଯାଏ ଯଥା ପ୍ରତିଭା ତାରା ରବିକରଣେ
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱାତ୍ମା ଚରଣେ,
ମିଶିଯାଏ ଯଥା ଚପଳା ନୀଳଜଳଦ ଅଙ୍ଗେ
ମିଶିଗଲା ତଥା ଅବଳା ସେହି ନୀଳତରଙ୍ଗେ ।

ଚନ୍ଦ୍ରଭାଗାର ବିଷୟବସ୍ତୁଟି ଏକ ବିୟୋଗାନ୍ତକ କାହାଣୀ । କରୁଣରସପ୍ରଧାନ ଏହି କାବ୍ୟଟି ଏହି ରସ ସୃଷ୍ଟି କରି ପାଠକର ହୃଦୟକୁ କରୁଣରସାପ୍ଲୁତ କରିବାରେ ସମର୍ଥ ହୋଇପାରିଛି । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କଥାସ୍ରୋତର କ୍ରମବର୍ଦ୍ଧମାନ ବେଗ ପାଠକର ମନକୁ ସଂପୂର୍ଣ୍ଣ ରୂପେ ଆୟତ୍ତ କରି ନେଇଛି ।

କବିଙ୍କ ବର୍ଣ୍ଣନାଗୁଡ଼ିକ ସ୍ୱଭାବସୁନ୍ଦର; ମାନବଚରିତ୍ରସୃଷ୍ଟି ନିର୍ଜ୍ଜୀବ ନୁହେଁ ।

'ସର୍ବଶ୍ରେଅପ୍ରତିହତଗତି' ସ୍ୱଭାବ ସ୍ମର ଓ ସ୍ମରରମଣୀ ଜଗନ୍ନାଥଙ୍କ ମନ୍ଦିରର ଜୟ ବିଜୟ ଦ୍ୱାର ଏଡ଼ି, ପୂର୍ବାଗତ ସୂର୍ଯ୍ୟଦେବଙ୍କୁ ପଶ୍ଚାତରେ ରଖି ମନ୍ଦିର ଭିତରକୁ ପଶି ଯିବାରୁ ସୂର୍ଯ୍ୟଦେବ କନ୍ଦର୍ପଦମ୍ପତିଙ୍କ ।ଉପରେ କ୍ରୋଧାନ୍ୱିତ ସମୟରେ ସୂର୍ଯ୍ୟଦେବ ଓ କାମଦେବଙ୍କ ବଚନିକା ଦେବୋଚିତ ହୋଇନାହିଁ । ତେବେ ଏଭଳି ବଚନିକା ଶାରଳା ଦାସଙ୍କ ମହାଭାରତରେ ଓ ଅନ୍ୟାନ୍ୟ ବହୁ ଓଡ଼ିଆ ପୁରାଣରେ ଥିବାରୁ କବି ଏହାକୁ ସ୍ୱାଭାବିକ ରୀତି ରୂପେ ଧରି ନେଇ ଥିବା ସମ୍ଭବ;କିନ୍ତୁ ଏହା କାବ୍ୟର ଗୌରବ ବୃଦ୍ଧି କରିନାହିଁ ।

"ବଚନିକା"ର ପ୍ରଭାବରେ ଜର୍ଜରିତ ସ୍ମର ପ୍ରତିଶୋଧ ଲକ୍ଷ୍ୟରେ ସୂର୍ଯ୍ୟଦେବଙ୍କ ଉପରେ କାମଶର ପ୍ରହାର କଲେ । ବେଲେଶ୍ୱର ଆଶ୍ରମବାସୀ ସୁମନ୍ୟୁଙ୍କ ସାଗରସମ୍ଭବା ପାଳିତା କନ୍ୟା ଚନ୍ଦ୍ରଭାଗାଙ୍କୁ ଦେଖି ସୂର୍ଯ୍ୟଦେବ କାମରେ ଅସ୍ଥିର ହେଲେ ଏବଂ କନ୍ୟାଙ୍କୁ ଧରିବା ପାଇଁ ଗୋଡ଼ାଇଲେ । କନ୍ୟା ଭୟବିହ୍ୱଳିତହୋଇ ବ୍ୟାକୁଳଚିତ୍ତରେ ପଳାୟନ କଲା । କନ୍ୟା ଉପରେ ମାରଙ୍କ ବିଶିଖର ପ୍ରୟୋଗନାହିଁ ଏହାର କାରଣ । ଚନ୍ଦ୍ରଭାଗା ଉପାୟାନ୍ତର ନଦେଖି ସମୁଦ୍ରରେ ଝାସ ଦେଲା ; ମାତା ମହୋଦଧି ଦୁହିତାକୁ ସ୍ୱକ୍ରୋଡ଼କୁ ନେଇଗଲେ । ସୁମନ୍ୟୁ ଧ୍ୟାନବଳରେ ସୂର୍ଯ୍ୟଦେବଙ୍କର ଏହି ନିନ୍ଦଣୀୟ କାର୍ଯ୍ୟକଳାପ ଜାଣିପାରି ତାଙ୍କୁ ଶାପ ଦେଲେ ଏବଂ ସେହି ଶାପ-ବଳରେ ସୂର୍ଯ୍ୟକ୍ଷେତ୍ରର ସୂର୍ଯ୍ୟଙ୍କ ଆରାଧନା ପୀଠ କୋଣାର୍କ ମନ୍ଦିର ଧ୍ୱଂସ ହୋଇଗଲା ; ସୂର୍ଯ୍ୟ ଅପୂଜା ହୋଇ ରହିଲେ ଏବଂ ତାଙ୍କର ଗୌରବର ବସ୍ତୁ ଧ୍ୱଂସ ହୋଇଯିବାରୁ ସେ ଅପମାନିତ ହେଲେ ।

ବାଲେଶ୍ୱରଠାରୁ ଚନ୍ଦ୍ରଭାଗା ମୁହାଁଣ ପ୍ରାୟ ଦକ୍ଷିଣକୋଣ ହେବ; ଉତ୍ତର ପୂର୍ବ ବା ପୂର୍ବ ଦିଗରେ ହେବ ; କୋଣାର୍କ ମଧ୍ୟ ଉତ୍ତର ପୂର୍ବ ହେବ । ବେଳେଶ୍ୱର ନିକଟସ୍ଥ ସମୁଦ୍ର କୂଳରେ ଏହି ଘଟଣାଟି ହୋଇଥିଲା । "ହରିଣଲୋଚନା ଏ ରୂପେ ଧାଏଁ ଉତ୍ତର ମୁଖେ" "ଉର୍ଦ୍ଧଶ୍ୱାସେ ଧନୀ ଉଦଧି-କୂଳେ ହେଲା ସ୍ଥଗିତ" ଏହି ଦୁଇଟି ନିର୍ଦ୍ଦେଶରୁ ଚନ୍ଦ୍ରଭାଗାର ତତ୍କାଳୀନ ଅବସ୍ଥିତି ନିର୍ଦ୍ଦିଷ୍ଟଭାବରେ ନିର୍ଣ୍ଣୟ କରି ହେଉନାହିଁ ।

ଚନ୍ଦ୍ରଭାଗାର ରୂପବର୍ଣ୍ଣନା ଏହି କାବ୍ୟଟିରେ ପ୍ରଧାନ ଅଂଶ ଅଧିକାର କରିଛି । କବିଙ୍କ ବର୍ଣ୍ଣନାଶୈଳୀ ସୁନ୍ଦର ହୋଇଛି । ଉପମାଗୁଡ଼ିକ ବର୍ଣ୍ଣନାମାଧୁରୀ ସହାୟକ ହୋଇଛି । ବେଳାଭୂମିରେ ଛାଇଳା ଲାଜ ଭୟରେ ପଳାଉଥିବାର ବର୍ଣ୍ଣନା ଅତୀବ ରମଣୀୟ ହୋଇଛି । ଚିତ୍ରଟି ଜୀବନ୍ତ ହୋଇ ପାରିଛି ।

କବି ଜଗନ୍ନାଥଙ୍କୁ ସର୍ବଦେବଙ୍କ ଅଧୀଶ୍ୱର ଓ ଜଗନ୍ନାଥ ମନ୍ଦିରକୁ ଓଡ଼ିଶାର ସର୍ବ ଦେବ ମନ୍ଦିର ଭିତରେ ପ୍ରଧାନ ପୀଠ ରୂପେ ଚିତ୍ରଣ କରିଛନ୍ତି । ଉତ୍କଳସ୍ଥ ସର୍ବ ପୀଠରୁ ଦେବଦେବୀମାନେ ଅଭିଷେକୋତ୍ସବ ସମୟରେ ନୀଳାଚଳରେ ଉପସ୍ଥିତ ହେଉଥିବା ଘଟଣାରୁ ଏହା ସ୍ପଷ୍ଟ ହେଉଛି ।

କାବ୍ୟଟିରେ ଭିଷାମିତ୍ର, ହର୍ଯ୍ୟକ୍ଷ ପରି କ୍ଲିଷ୍ଟ ଶବ୍ଦର ପ୍ରୟୋଗ ମଧ୍ୟ ଦେଖାଯାଏ ।

"କହୁଥିଲେକ" – ପ୍ରାଚୀନ କବିମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥିବା କ୍ରିୟାପଦଗତ ଅନୁସାରେ ସ୍ୱାର୍ଥରେ କ୍ରିୟାରେ 'କ' ପ୍ରତ୍ୟୟ—ଏଠାରେ କବି ଏହି କ୍ରିୟାପଦଟି ବ୍ୟବହାର କରିଛନ୍ତି ।

କାବ୍ୟଟିର କଳେବରର ଆକାର କବି ପୂର୍ବରୁ ନିର୍ଣ୍ଣୟ କରିପାରିଥିବାହିଁ ଅନୁମାନ, କାରଣ କାବ୍ୟଟିରେ ଚନ୍ଦ୍ରଭାଗାର

ଜନ୍ମ ବୃତ୍ତାନ୍ତ, ସୁମନ୍ୟୁଙ୍କ ଦ୍ୱାରା କନ୍ୟାର ଲାଳନପାଳନ, ଚନ୍ଦ୍ରଭାଗା ଠାରେ ଯୌବନସୁଲଭ ଭାବରାଜି, କନ୍ୟାର ଅନ୍ତର୍ଦ୍ଧାନ ପରେ ସୁମନ୍ୟୁଙ୍କ ଶୋକାକୁଳିତ ହୃଦୟର ଭାବୋଚ୍ଛ୍ୱାସ ପ୍ରଭୃତି କବି ବର୍ଣ୍ଣନା ନକରି ତ୍ୟାଗକରିଛନ୍ତି । ନାୟିକା 'ଚନ୍ଦ୍ରଭାଗା'ର ଜୀବନ ବୃତ୍ତାନ୍ତକୁ ଏହି କାବ୍ୟଟିର ପ୍ରଧାନ ବିଷୟବସ୍ତୁ ନକରି ଚନ୍ଦ୍ରଭାଗା ତୀର୍ଥ ଓ କୋଣାର୍କ ମନ୍ଦିରର କଥାବସ୍ତୁକୁ ପ୍ରାଧାନ୍ୟ ଦେଇଥିବାରୁ ଏହି ତ୍ୟାଗର କାରଣ ସହଜେ ଅନୁମେୟ ।

କବି କାବ୍ୟଟିରେ ସଂସ୍କୃତ ଶବ୍ଦ ବହୁଳ ଭାବରେ ବ୍ୟବହାର କରିଛନ୍ତି । ଓଡ଼ିଶାର ଉପେନ୍ଦ୍ରପ୍ରମୁଖ କେତେକ ପ୍ରାଚୀନ କବି ସଂସ୍କୃତ ଶବ୍ଦ ବହୁଳ ବା "ସାହିତ୍ୟିକ' ରଚନା କରିଥିବାରୁ ଏହାକୁ ସେ ଦୋଷ କିମ୍ବା ଅବାଞ୍ଛିତ ବୋଲି ମନେ ନକରିଥିବା ସ୍ୱାଭାବିକ ।

# ବିଂଶ ପରିଚ୍ଛେଦ

## ନନ୍ଦିକେଶ୍ୱରୀ

ଉତ୍କଳର ରାଜଧାନୀ ବାରାଣସୀ କଟକ(ପ୍ରାଚୀନ ନାମ ଅଭିନବବାରାଣସୀ ବର୍ତ୍ତମାନ ନାମ କଟକ ।) ଉତ୍କଳର ରାଜଚକ୍ରବର୍ତ୍ତୀ ସୁବର୍ଣ୍ଣ କେଶରୀ ରାଜତ୍ୱ କରୁଥିବା ସମୟରେ କଳିଙ୍ଗନଗର (ବର୍ତ୍ତମାନର ମୁଖଲିଙ୍ଗ ନଗର, ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଲ୍ ଜିଲ୍ଲା)ର ରାଜା ଚୋଡ଼ଗଙ୍ଗ ଦେବ ଉତ୍କଳ ଆକ୍ରମଣ କଲେ । ଦକ୍ଷିଣ କଳିଙ୍ଗ ସେତେବେଳକୁ ଚୋଡ଼ଗଙ୍ଗ ଅଧୀନକୁ ଆସିଯାଇଥିଲା କହିଲେ ଚଳେ । ଚୋଡ଼ଗଙ୍ଗ ଉତ୍କଳର ଦକ୍ଷିଣାଞ୍ଚଳ ଅଧିକାର କରି ନେଇ କ୍ରମେ ଉତ୍ତରକୁ ଅଗ୍ରସର ହେଲେ । ସୁବର୍ଣ୍ଣ କେଶରୀଙ୍କ ଅଜ୍ଞାତରେ ଏହି ଆକ୍ରମଣର ଅଗ୍ରଗତି ସମ୍ଭବ ହୋଇଥିଲା ବୋଲି କହି ହେବ ନାହିଁ । ଦକ୍ଷିଣ କଳିଙ୍ଗରାଜ ଚୋଡ଼ଗଙ୍ଗଙ୍କ ବିରାଟ ସମର ସଜ୍ଜା, ଓ ତାଙ୍କ ଆତ୍ମୀୟ ରାଜମହେନ୍ଦ୍ରୀର ଚାଲୁକ୍ୟ ରାଜା ଓ ଦାକ୍ଷିଣାତ୍ୟର ଚୋଳ ସମ୍ରାଟଙ୍କ ମିଳିତ ସାମରିକ ସାହାଯ୍ୟ ସୁବର୍ଣ୍ଣକେଶରୀଙ୍କୁ ବଳି ପଡ଼ିଥିଲା ।

ପ୍ରବଳ ପ୍ରତାପୀ ଚୋଡ଼ଗଙ୍ଗ ଦେବ ବହୁ ବର୍ଷ ଯୁଦ୍ଧ ଚଳାଇ ଓ ବହୁ ବାଧାବିଘ୍ନ ଅତିକ୍ରମ କରି ଉତ୍କଳ ରାଜଧାନୀ କଟକ ପର୍ଯ୍ୟନ୍ତ ଅଗ୍ରସର ହୋଇ ନଗରକୁ ଅବରୋଧ କଲେ ଏବଂ କଟକ ନଗରର ଦକ୍ଷିଣରେ ପ୍ରବାହିତ ହେଉଥିବା କାଠଯୋଡ଼ି ନଦୀ ତୀରରେ ଶିବିର ସ୍ଥାପନ କଲେ ।

ଉତ୍କଳ-ଦକ୍ଷିଣ କଳିଙ୍ଗ ଯୁଦ୍ଧରେ ଉତ୍କଳର ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦିଗସ୍ଥ ବହୁ ଖ୍ୟାତନାମା ବୀର ସ୍ୱଦେଶକୁ ରକ୍ଷା କରିବାପାଇଁ ପ୍ରାଣ ବଳି ଦେଇଥିଲେ । ସୁବର୍ଣ୍ଣକେଶରୀ "ଯୁଦ୍ଧ ପରେ ଯୁଦ୍ଧ ହାରି" ଅବଶେଷରେ ବଡ଼ାନାସୀ ଦୁର୍ଗର ଦ୍ୱାରକୁ ରୁଦ୍ଧ କରିବାପାଇଁ ଆଦେଶ ଦେଲେ ଏବଂ ନିଜେ ଗଡଚଣ୍ଡୀଙ୍କ ମନ୍ଦିରରେ 'ଅନଶନ' କରି 'ଅଧା' ପଡ଼ିଲେ । ଚଣ୍ଡୀ ସ୍ୱପ୍ନରେ ରାଜାଙ୍କ ଅଗ୍ରତରେ ଦଣ୍ଡାୟମାନ ହୋଇ ଆଜ୍ଞା ଦେଲେ—"ଗଙ୍ଗାଙ୍କ ବାକ୍ୟରେ ଶିବ ଚୋଡ଼ଗଙ୍ଗଙ୍କୁ ଉତ୍କଳ ସିଂହାସନ ଦେବାପାଇଁ ଇଚ୍ଛା କରିଛନ୍ତି । ଶିବଙ୍କ ଇଚ୍ଛା ବିଫଳ ହେବାର ନୁହେଁ । ସମ୍ମୁଖ ସମରରେ ଆକ୍ରମଣକାରୀକୁ ଜୟ କରିବା ସମ୍ଭବ ନଥିବାରୁ ଏହି ଆଶା ତ୍ୟାଗ କରି ଗଡ଼ଦ୍ୱାର ରୁଦ୍ଧ କର ।" ଚଣ୍ଡୀ ରାଜାଙ୍କୁ ଏକ "କୌସ୍ତୁମଣି" ପ୍ରଦାନ କରି କହିଲେ—"ଯାବତ ଏ ମଣି ତୋର ଶିରରେ ଥିବ ଶତ୍ରୁ ବୀରମାନେ ଦୁର୍ଗ ଭିତରେ ପ୍ରବେଶ କରି ପାରିବେ ନାହିଁ । ଯତ୍ନ କରି ଏହି ମଣିଟିକୁ ରଖି ନ ପାରିଲେ "ରାଜଦଣ୍ଡ ଯିବ କରୁ ଅପସରି ।"

ସ୍ୱପ୍ନ ଭଗ୍ନ ହେବାକ୍ଷଣି ରାଜା ଦୁର୍ଗଦ୍ୱାର ରୁଦ୍ଧ କରିବାପାଇଁ ଆଦେଶ ଦେଲେ । ଆକ୍ରମଣକାରୀ ବହୁ ଦିନ ଚେଷ୍ଟା କରି ମଧ୍ୟ ସଫଳକାମ ନ ହେବାରୁ ଧୈର୍ଯ୍ୟ ହରାଇଲେ ଏବଂ ଦୁର୍ଗ ଅଧିକାର ଆଶା କ୍ରମେ ସେମାନଙ୍କ ମନରୁ ଦୂର ହେବାକୁ ବସିଲା । ସୈନିକମାନେ ବିରକ୍ତ ହୋଇ ସ୍ୱଦେଶକୁ ଫେରିଯିବା ପାଇଁ ଚିନ୍ତା କରିବାକୁ ଲାଗିଲେ ଏବଂ "ଅସନ୍ତୋଷ ସେମାନଙ୍କ ହୃଦୟର ସଙ୍ଗୀତ" ହେଲା । ଆଉ ଏକ ଦିନ ପରେ ସ୍ୱଦେଶକୁ ଫେରିବାକୁ ସେମାନେ ସ୍ଥିର କଲେ । ଏହି ସମୟରେ ସନ୍ଧ୍ୟାରେ ଚୋଡ଼ଗଙ୍ଗ ପ୍ରକାଶ କଲେ ଯେ ତାଙ୍କୁ ସ୍ୱପ୍ନରେ ଗଙ୍ଗା ଦେବୀ ପ୍ରସନ୍ନ ହୋଇ ଓଡ଼ିଶାରେ ଶକ୍ତି ପୂଜା ଉଠାଇ ଦେଇ ବୈଷ୍ଣବଧର୍ମ

ସ୍ଥାପନ କରିବାକୁ ଆଜ୍ଞା ଦେଇଛନ୍ତି ପ୍ରକାଶ କଲେ । ଉତ୍କଳର ବିଦ୍ରୋହୀ ସେନାପତି ବାସୁଦେବ ମଧ୍ୟ ଚୈତ୍ରଗଙ୍ଗଙ୍କ ଶିବିରରେ ଉପସ୍ଥିତ ଥିଲେ ।

ଆକ୍ରମଣକାରୀମାନେ ଯୁଦ୍ଧ କ୍ଷେତ୍ରରୁ ଅପସରି ଯାଇ ସ୍ୱଦେଶକୁ ଫେରିଯିବା ସିଦ୍ଧାନ୍ତ କରିଥିବା ସମ୍ବାଦ ଅବରୁଦ୍ଧ ବଡ଼ାବାସୀ ଗଡ଼ରେ ପହଞ୍ଚିବାକ୍ଷଣି ସମସ୍ତଙ୍କ ମନରେ ଆନନ୍ଦର ତରଙ୍ଗ ଖେଳିଗଲା । ସମସ୍ତେ ଆନନ୍ଦରେ ଗଡ଼ଚଣ୍ଡୀଙ୍କ ଆରାଧନା ପାଇଁ ବିରାଟ ଆୟୋଜନ କଲେ ।

ଆକ୍ରମଣକାରୀ ସ୍ୱଦେଶକୁ ଫେରିଯାଉଥିବା ସମ୍ବାଦ ଶ୍ରବଣ କରିବା ପରେ ସୁବର୍ଣ୍ଣକେଶରୀଙ୍କ ଏକମାତ୍ର ସନ୍ତତି ନନ୍ଦିକା ଜେମାଙ୍କ ମନ ବିରସ ହୋଇପଡ଼ିଲା । ଗଡ଼ର ଆନନ୍ଦ ଉଲ୍ଲାସ ତାଙ୍କ ହୃଦୟକୁ ସ୍ପର୍ଶ କରି ପାରିଲା ନାହିଁ । ନିଶାର୍ଦ୍ଧ ସମୟରେ ଦୁର୍ଗର ନରନାରୀ, ରାଜା ମନ୍ତ୍ରୀ ଆଦି ରାଜପରିବାରର ଲୋକେ ନିଦ୍ରା ଯିବା ପରେ ନନ୍ଦିକା ଚିନ୍ତାରେ ନିମଗ୍ନ ହୋଇପଡ଼ିଲେ । ଯୁଦ୍ଧ କ୍ଷେତ୍ରରେ ଗଡ଼ତଳେ ଚୈତ୍ରଗଙ୍ଗଙ୍କ ଅପୂର୍ବ ରୂପ ଲାବଣ୍ୟ ଓ ବୀରତ୍ୱ ଦେଖି ନନ୍ଦିକା ମୁଗ୍ଧ ହୋଇ ଯାଇଥିଲେ ଏବଂ ମନେ ମନେ ତାଙ୍କୁ ପତି ରୂପେ ବରଣ କରିଥିଲେ । ନିଶାବସାନ ହେଲେ 'ପ୍ରାଣତପନ' ଚୈତ୍ରଗଙ୍ଗ କଟକ ତ୍ୟାଗ କରି ତାଙ୍କ ଦୃଷ୍ଟି ପଥରୁ ଅନ୍ତର୍ହିତ ହୋଇ ଯିବେ, ଏହି ଭାବନା ଜେମାଙ୍କୁ ଅଥୟ କରିଦେଲା ।

ପୂର୍ବେ ମନ୍ତ୍ରୀ ବାସୁଦେବ ଚୈତ୍ରଗଙ୍ଗଙ୍କ ସହିତ ନନ୍ଦିକାଙ୍କ ବିବାହର ପ୍ରସ୍ତାବ କରିଥିଲେ ଏବଂ ସୁବର୍ଣ୍ଣକେଶରୀ ଏଥିରେ ରାଜି ନ ହେବାରୁ ବାସୁଦେବ ଗୋପନରେ ସ୍ୱଦେଶରୁ ପଳାୟନ କରି ଚୈତ୍ରଗଙ୍ଗଙ୍କ ସହିତ ଯୋଗଦେଲେ । ଚୈତ୍ରଗଙ୍ଗ ବାସୁଦେବଙ୍କ ସାହାଯ୍ୟଲାଭ କରି ଉତ୍କଳ ଆକ୍ରମଣ କରିଥିଲେ । ନନ୍ଦିକା ମନେ

ମନେ ଶ୍ୱେତଗଙ୍ଗଙ୍କୁ ପ୍ରେମକରି ପତ୍ନୀରୂପେ ବରିଥିବାରୁ ତାଙ୍କୁ ମନାଇ ପାରିଲେ ଯୁଦ୍ଧ ବନ୍ଦ ହେବା ସଙ୍ଗେ ସଙ୍ଗେ ଶ୍ୱେତଗଙ୍ଗଙ୍କୁ ସେ ପତ୍ନୀରୂପେ ପ୍ରାପ୍ତ ହେବେ ଏବଂ ଉତ୍କଳ ସିଂହାସନର ଶ୍ୱେତଗଙ୍ଗ ଉତ୍ତରାଧିକାରୀ ହେଲେ ତାଙ୍କ ମନର ଆକାଂକ୍ଷା ପୂରଣ ହେବ, ଏହି ଆଶାରେ ନଭୃତରେ ନିଜେ ଶ୍ୱେତଗଙ୍ଗଙ୍କ ସହିତ ଦେଖା କରିବା ପାଇଁ ସେ ସ୍ଥିର କଲେ । ପିତାଙ୍କ ମସ୍ତକର ଦେବୀଦତ୍ତ ନୈଜମଣିଟିକୁ ରାତିରେ ଚୋରାଇ ଆଣି ଦକ୍ଷିଣ ଦିଗର ସୁଡ଼ଙ୍ଗ ଦ୍ୱାର ମେଲା କରି ଗଡ଼ରୁ ବାହାରି ପଡ଼ିଲେ । ରାତି ଶେଷ ପହରରେ ଚନ୍ଦ୍ରାସ୍ତ ସମୟରେ ନନ୍ଦକା ଶ୍ୱେତଗଙ୍ଗଙ୍କ ଶିବିର ଦ୍ୱାରଦେଶରେ ଉପସ୍ଥିତ ହେଲେ । ସେହି ସମୟରେ ଶ୍ୱେତଗଙ୍ଗ ଶିବିର ସମ୍ମୁଖରେ ରଣ ବେଶରେ ବସି ଅଭିଯାନର ଫଳାଫଳ ସମ୍ବନ୍ଧରେ ଚିନ୍ତା କରୁଥିଲେ । ସମ୍ମୁଖରେ ନାରୀ ମୂର୍ତ୍ତିଙ୍କୁ ଦେଖି ସେ ବିସ୍ମିତ ହୋଇ ପଡ଼ିଲେ । ନନ୍ଦକା ନିକଟରୁ ଶ୍ୱେତଗଙ୍ଗଙ୍କ ଅପୂର୍ବ ରୂପରାଶି ସନ୍ଦର୍ଶନ କରି ମୁଗ୍ଧ ହୋଇଗଲେ ଏବଂ ନିଜେ ସ୍ୱତଃପ୍ରବୃତ୍ତ ହୋଇ ନିଜର ଅଭିଳାଷ ପ୍ରକାଶ କଲେ । ନୈଜମଣିଟିକୁ ଶ୍ୱେତଗଙ୍ଗଙ୍କ ହସ୍ତରେ ଅର୍ପଣ କରି ଶ୍ୱେତଗଙ୍ଗଙ୍କୁ ନନ୍ଦକା "ପ୍ରତିଦାନେ କେବଳ ପ୍ରେମ ଭିକ୍ଷା" କଲେ ।

ବୀର ଶ୍ୱେତଗଙ୍ଗ ନନ୍ଦକାଙ୍କ କାର୍ଯ୍ୟକୁ ପସନ୍ଦ କଲେ ନାହିଁ । ନନ୍ଦକା ପୂର୍ବପୁରୁଷମାନଙ୍କ ଗୌରବକୁ କୁଠାରାଘାତ କରି "ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ" ଏହି ତିନି ମହାପାପକୁ ଏକ "କରଣିରେ"ରେ ସାଧନ କରିଥିବାରୁ ଶ୍ୱେତଗଙ୍ଗ ଧିକ୍କାର କଲେ । ନନ୍ଦକା ଏତେବେଳେ ନିଜର ଭ୍ରମ ବୁଝି ପାରିଲେ , ଅନୁତାପ ଫଣୀ ଅନଳ ଉଗାରି ସହସ୍ର ମୁଖରେ ତାଙ୍କ ମର୍ମସ୍ଥଳକୁ ଦଂଶନ କଲା ।

ଗ୍ୟେଡ଼ଗଙ୍ଗଙ୍କ ଆଦେଶରେ ନନ୍ଦକାଙ୍କୁ ଏକ ଶିବିକାରେ ବସାଇ ପ୍ରହରୀମାନେ ବଡ଼ାନାସୀ ଦୁର୍ଗ ଆଡ଼କୁ ଅଗ୍ରସର ହେଲେ । ବାଟରେ ଅନୁତପ୍ତାଗ୍ନିଦଗ୍ଧା ନନ୍ଦକା ନିଜର କାର୍ଯ୍ୟକୁ ଧିକ୍କାର କରି ଶିବିକା ଭିତରେ ପିତାମାତା ସ୍ୱଜନଙ୍କ ପ୍ରତି ଏକ ପତ୍ର ଲେଖିସାରି ଆତ୍ମହତ୍ୟା କଲେ । ଗଡ଼ ଭିତରେ ଶିବିକା ଖୋଲିଲା ବେଳକୁ ତେମାଙ୍କ ମୃତଦେହ କେବଳ ଭିତରେ ପଡ଼ିଥିଲା ।

ସୁବର୍ଣ୍ଣକେଶରୀ ମହାନଦୀ ଗର୍ଭରେ ଅବସ୍ଥିତ ପଠାରେ ତାଙ୍କର ଶବ ସଂସ୍କାର କରାଇଲେ ଏବଂ ସ୍ମାରକସ୍ୱରୂପ ସେଠାରେ ଏକ ସମାଧି ନିର୍ମାଣ କଲେ । ଚଣ୍ଡୀ ମନ୍ଦିରଟି ମଧ୍ୟ ନିର୍ମିତ ହେଲା । ଏହି ପଠା ସେହି ଦିନଠାରୁ ନନ୍ଦକା ଓ ଚଣ୍ଡୀଙ୍କ ଯୁକ୍ତ ନାମାନୁସାରେ "ନନ୍ଦକେଶ୍ୱରୀ ପଠା" ନାମରେ ପରିଚିତ ହୋଇ ଆସୁଅଛି ।

ଗ୍ୟେଡ଼ଗଙ୍ଗଙ୍କ ହସ୍ତରେ ଜୈବମଣି ଓ ଉତ୍କଳ ସିଂହାସନକୁ ଶୋକାକୁଳ ସୁବର୍ଣ୍ଣକେଶରୀ ସମର୍ପଣ କରିଦେଇ ଉଦାସୀ ହୋଇ କଟକ ତ୍ୟାଗ କଲେ । ବାଙ୍କୀ ନିକଟସ୍ଥ ସୁବର୍ଣ୍ଣପୁରଠାରେ ସେ ଶେଷ ଜୀବନ କଟାଇଥିଲେ ।

ଗ୍ୟେଡ଼ଗଙ୍ଗ ଜୈବମଣିଟିକୁ ପୁରୀଧାମର ଶ୍ରୀଜଗନ୍ନାଥଙ୍କୁ ଉପହାର ଦେଇଥିଲେ ।

ଦୁଃଖିନୀକ ହାହା ବିଧି ହେଲେ ବାମ
ଏ ଜୀବର ହେଲା ଏହି ପରିଣାମ ।

ଏହି କ୍ଷୁଦ୍ର କାବ୍ୟଟିରେ "ବିଧି"ର ବିଧାନ ଅବଶ୍ୟମ୍ଭାବୀ ଏହା କବି ପ୍ରତିପାଦନ କରିଛନ୍ତି ଏବଂ ଏକାଧିକ ସ୍ଥାନରେ ଏହା ସ୍ପଷ୍ଟ ଭାବରେ ବ୍ୟକ୍ତ କରିଛନ୍ତି । ଏହି ବିଧି ପୁଣି ସାନ୍ତ୍ୱନା ଦେବାରେ ପ୍ରଧାନ ଅସ୍ତ୍ର ରୂପେ ବ୍ୟବହୃତ ହୋଇଛି ।

କବି ଦୁଇଟି କ୍ଷୁଦ୍ର କ୍ଷୁଦ୍ର ସର୍ଗରେ କାବ୍ୟଟିକୁ ଭାଗ କରିଛନ୍ତି, ଉଭୟ ସର୍ଗ "ନଟବାଣୀ ବୃତ୍ତ"ରେ ରଚିତ । କାବ୍ୟଟିରେ

ସୁବର୍ଣ୍ଣ କେଶରୀ, ମନ୍ତ୍ରୀ ବାସୁଦେବ, ନନ୍ଦନା ଓ ଚୋଡ଼ଗଙ୍ଗଦେବଙ୍କ ପ୍ରଧାନ ବ୍ୟକ୍ତି । ସୈନିକ, ଦାସଦାସୀ ନଗରବାସୀ ପ୍ରଭୃତି ସାମାଜିକମାନଙ୍କର ଉଲ୍ଲେଖ ଥିଲେ ମଧ୍ୟ ଏମାନଙ୍କ ସ୍ପଷ୍ଟ, ବିସ୍ତୃତ ଚିତ୍ର ନାହିଁ; କାବ୍ୟର କଳେବରର କ୍ଷୁଦ୍ରତାହିଁ ଏହାର କାରଣ ବୋଲି ମନେ ହୁଏ ।

ପ୍ରଥମ ସର୍ଗରେ କବି କାବ୍ୟବିଷୟବସ୍ତୁର ଭୂମିକାହିଁ ଅବତାରଣା କରିଛନ୍ତି ଏବଂ ଏହି ସର୍ଗର ଗୁରୁଭାଗ ଓଡ଼ିଶାର ପ୍ରାକୃତିକ ଓ ଭୌଗୋଳିକ, ଚରିତ୍ର ଓ ଚିତ୍ର ବର୍ଣ୍ଣନା ଅଧିକାର କରିଛି । ଦ୍ୱିତୀୟ ସର୍ଗଟିର ଅଧିକାଂଶ ସ୍ଥାନ କାବ୍ୟବସ୍ତୁର ବିକାଶ ଓ ପରିଣତି ବର୍ଣ୍ଣନାରେ ଅଧିକୃତ ହୋଇଛି । ଉଚ୍ଚ ଭାବରାଶି, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, କମନୀୟ ପଦାବଳୀରେ ପ୍ରାକୃତିକ ଶୋଭା ବର୍ଣ୍ଣନା ନିମନ୍ତେ ଶେଷ ସର୍ଗଟି ସ୍ମରଣୀୟ ହୋଇ ରହିବ ।

## ସୁବର୍ଣ୍ଣକେଶରୀ

ସୁବର୍ଣ୍ଣକେଶରୀଙ୍କୁ ଜଣେ ଶାକ୍ତ ରୂପେ କବି ଚିତ୍ରିତ କରିଥିଲେ ମଧ୍ୟ ସେ ବୈଷ୍ଣବଧର୍ମର ବିରୋଧୀ ଥିବା ତାଙ୍କ କାର୍ଯ୍ୟକଳାପ ଓ କାବ୍ୟାବଳୀରେ ପ୍ରକାଶ ପାଉନାହିଁ । ସୁବର୍ଣ୍ଣକେଶରୀ ଜଣେ ସ୍ୱଦେଶପ୍ରେମୀ ରାଜାରୂପେ ଚିତ୍ରିତ ହୋଇଛନ୍ତି ଏବଂ ପ୍ରବଳ ପ୍ରତାପୀ ପ୍ରତିବେଶୀ ରାଜାଙ୍କର ଆକ୍ରମଣାତ୍ମକ ଅଭିଯାନକୁ ସେ ଭୟ କରି ନାହାନ୍ତି । ସବୁ ହିନ୍ଦୁଙ୍କ ପରି ଯୁଦ୍ଧର ସଙ୍କଟ ସମୟରେ ସେ ସ୍ୱ ଇଷ୍ଟଦେବତା ବା ଦେବୀଙ୍କ ଉପରେ ଏକାନ୍ତ ଭାବରେ ନିର୍ଭର କରିଛନ୍ତି ; ଗଡ଼ଚଣ୍ଡୀଙ୍କ ସନ୍ତୋଷ ବିଧାନ ପାଇଁ ଝୁଆ ପଡ଼ିବା ଓ ବିବିଧ ପୂଜାର ବ୍ୟବସ୍ଥା କରିବା ଏହାର ପ୍ରମାଣ ।

କବି କନ୍ୟାର ମୁଖରେ ପିତାଙ୍କର ଚରିତ୍ର ସମ୍ବନ୍ଧରେ ଯେଉଁ ଚିତ୍ର ଅଙ୍କନ କରିଛନ୍ତି ତାହା ପିତାଙ୍କର ଗୌରବ ବର୍ଦ୍ଧନ

କରି ନାହାଁନ୍ତି । ରାଜା ସ୍ଥବିର ହୋଇ ଯାଇଥିବାରୁ ସୁହୃଦମାନଙ୍କର ସତ୍‌ପରାମର୍ଶକୁ ଗ୍ରହଣ ନ କରି, "ଅନର୍ଥର ହେତୁ" ହୋଇଛନ୍ତି ବୋଲି ନନ୍ଦିକା କହିଛନ୍ତି ଏବଂ ବାସୁଦେବଙ୍କ ପ୍ରସ୍ତାବକୁ ସମର୍ଥନ କରିଛନ୍ତି । ନନ୍ଦିକା ବାସୁଦେବଙ୍କ ଦେଶତ୍ୟାଗ ପୂର୍ବରୁ ଏହା କହି ନାହାନ୍ତି; ରଣକ୍ଷେତ୍ରରେ ଶ୍ବେତ୍ରଗଙ୍ଗଙ୍କ ଅସୀମ ବୀରତ୍ବ ଓ ସୌନ୍ଦର୍ଯ୍ୟ ଦେଖି ମନେ ମନେ ତାଙ୍କୁ ଆତ୍ମସମର୍ପଣ କରିସାରିଥିବା ପରେ ଏହା ବ୍ୟକ୍ତ କରିଥିବାରୁ ତାହା ତାଙ୍କର ନବୋଢ଼-ପ୍ରଣୟ-ଜନିତ ଭାବୋଚ୍ଛ୍ବାସ ବୋଲି ବୁଝାଯିବ । କିନ୍ତୁ ନନ୍ଦିକାଙ୍କ ମତରେ ପିତା ସ୍ଥବିର ଦଶାକୁ ଭଜିବାରୁ "ସୁହୃଦଙ୍କ ବାକ୍ୟରେ ବଧିର" ହୋଇ ପଡ଼ିଛନ୍ତି ଏହି କାରଣରୁ ସେ ରାଜ୍ୟ ପରିଚାଳନା ନିମନ୍ତେ ଅନୁପଯୁକ୍ତ ହୋଇ ପଡ଼ିଛନ୍ତି । ପିତା କନ୍ୟା ନନ୍ଦିକାର ମନକୁ ଚିହ୍ନି ନ ପାରିବାରୁ ନନ୍ଦିକା ଦୁଃଖ କରିଛନ୍ତି ଏବଂ ପିତାଙ୍କୁ ନିନ୍ଦା କରି ତାଙ୍କର (ପିତାଙ୍କର) ଚରିତ୍ରକୁ ଟିକିଏ ନ୍ୟୂନ କରିଦେଇଛନ୍ତି ।

ନନ୍ଦିକାର ଶୋଚନୀୟ ମୃତ୍ୟୁ ପରେ ସୁବର୍ଣ୍ଣକେଶରୀଙ୍କ ଶ୍ବେତ୍ର-ଗଙ୍ଗଙ୍କ ସହିତ ମିତ୍ରତା ସ୍ଥାପନ ଘଟନାର ତାତ୍‌କାଳିକ ପ୍ରଭାବ ବୋଲିବାକୁ ହେବ, ଏଥିରେ ତାଙ୍କର ଚରିତ୍ରର ଜ୍ୟୋତି ଖର୍ବ ହୋଇ ନାହିଁ ।

ଶ୍ବେତ୍ରଗଙ୍ଗଙ୍କ ହସ୍ତରେ ରାଜ୍ୟ ସମର୍ପଣ କରି ବନବାସୀ ହେବା ସିଦ୍ଧାନ୍ତ ଏକମାତ୍ର ସନ୍ତତିର ଶୋଚନୀୟ ମୃତ୍ୟୁର ପରିଣାମ । ସୁବର୍ଣ୍ଣକେଶରୀଙ୍କର ବୈରାଗ୍ୟ ଜାତ ହେବା ସ୍ବାଭାବିକ । ପ୍ରଥମରୁ ଶ୍ବେତ୍ରଗଙ୍ଗଙ୍କୁ ଶତ୍ରୁ ରୂପେ ସୁବର୍ଣ୍ଣକେଶରୀ ଦେଖୁଥିଲେ ମଧ୍ୟ ଦୁହିତା ତାଙ୍କୁ ପତିରୂପେ ମନେ ମନେ ବରଣ କରିଥିବା ହେତୁ ଶ୍ବେତ୍ରଗଙ୍ଗଙ୍କୁ ସୁବର୍ଣ୍ଣକେଶରୀ ସ୍ନେହଚକ୍ଷୁରେ ଦେଖି ଜାମାତା ରୂପେ ସମ୍ମାନ ଓ ଆଦର କରିଛନ୍ତି । ସୁବର୍ଣ୍ଣକେଶରୀ ସ୍ବ ସିଂହାସନକୁ ଯୌତୁକ ରୂପେ

ଚୋଡ଼ଗଙ୍ଗଙ୍କୁ ଅର୍ପଣ କରିଛନ୍ତି ଏବଂ ଉପଯୁକ୍ତ ପାତ୍ରରେ ରାଜ୍ୟଭାର ଅର୍ପଣ କରିଥିବାରୁ ସେ ଶାନ୍ତିରେ ବନବାସ କରିଥିବେ । ଦୁହିତାର ମୃତ୍ୟୁ ପରେ ନିଜେ ଅକାରଣ କ୍ରୋଧରେ ଜର୍ଜରିତ ହୋଇ ପ୍ରବଳ ପ୍ରତାପୀ ଆକ୍ରମଣକାରୀ ବିରୁଦ୍ଧରେ ଯୁଦ୍ଧକୁ ଚଳାଇ ରଖିବା ନିମନ୍ତେ ସୁବର୍ଣ୍ଣକେଶରୀ ସିଦ୍ଧାନ୍ତ ଗ୍ରହଣ କରିନାହାନ୍ତି; ଏହା ଉଚିତ ହୋଇଛି ଏବଂ ପରିସ୍ଥିତି ଦୃଷ୍ଟିରେ ଯେତିକି ସମ୍ଭବ ତାହାହିଁ ସେ କରିଛନ୍ତି । ଏଥିରେ ଉତ୍କଳରାଜାଙ୍କର ଗୌରବରେ ହାନି ଘଟିନାହିଁ ।

## ଚୋଡ଼ଗଙ୍ଗ

ଗଙ୍ଗାଦେବୀଙ୍କ ବରପୁତ୍ର ଚୋଡ଼ଗଙ୍ଗଦେବ ଦେବୀ ଗଙ୍ଗାଙ୍କ ଆଦେଶ କ୍ରମେ ଉତ୍କଳରେ ଶକ୍ତିପୂଜାର ଲୋପସାଧନ କରି ବୈଷ୍ଣବ ଭକ୍ତିମତର ପ୍ରଚାର ନିମନ୍ତେ ଉତ୍କଳ ଆକ୍ରମଣ କରିଥିଲେ ବୋଲି କବି କହିଛନ୍ତି, ଉଭୟ ପକ୍ଷରେ ଶିବଙ୍କ ପତ୍ନୀଙ୍କ ସମର୍ଥନ ଥିଲା, ଚୋଡ଼ଗଙ୍ଗଙ୍କ ସପକ୍ଷରେ ଗଙ୍ଗା, ସୁବର୍ଣ୍ଣକେଶରୀଂଙ୍କ ପକ୍ଷରେ ଚଣ୍ଡୀ । ଚୋଡ଼ଗଙ୍ଗଙ୍କୁ ଧର୍ମବୀର ବୋଲି ଗଙ୍ଗାଙ୍କ ମୁଖରେ କବି କୁହାଇଛନ୍ତି ଏବଂ ରାଜା ଚୋଡ଼ଗଙ୍ଗ ଧର୍ମବୀର ଥିବାରୁ ଉତ୍କଳରେ ଧର୍ମ ସଂସ୍ଥାପନ କରିବା ପାଇଁ ସେ କେବଳ କ୍ଷମ । ଗଙ୍ଗାଦେବୀ ଉତ୍କଳଜୟ କରିବା ପାଇଁ ଚୋଡ଼ଗଙ୍ଗଙ୍କୁ ବର ଦେଇ ସମ୍ମୁଖ ସମରରେ ଦୁର୍ନିବାର କରିଛନ୍ତି ଏବଂ ସ୍ୱୟଂ ଦେବଦେବ ମହାଦେବ ଉତ୍କଳ ସିଂହାସନ ତାଙ୍କ ହସ୍ତଗତ ହେବା ପାଇଁ ବାଞ୍ଛା କରିଛନ୍ତି । ନିଜେ ଅତୁଳ ବଳଶାଳୀ, ସେଥିରେ ପୁଣି ଶିବ-ଗଙ୍ଗାଙ୍କ ବରଦ୍ୱାରା ବିଶେଷଭାବରେ ରକ୍ଷିତ, ଏଥିରେ ଦିଗ୍‌ବିଜୟୀ ପକ୍ଷରେ ଯାହା କର୍ତ୍ତବ୍ୟ ଚୋଡ଼ଗଙ୍ଗ ତାହାହିଁ କରିଛନ୍ତି । ବିଶ୍ୱାସଘାତକ, ଦେଶଦ୍ରୋହୀ ବାସୁଦେବଙ୍କ ସାହାଯ୍ୟ ଚୋଡ଼ଗଙ୍ଗଙ୍କୁ

ବିଶେଷ ଭାବରେ ଉପ୍ରାପିତ କରିଛି । ଦିଗ୍‌ବିଜୟୀ ପକ୍ଷେ ଅନ୍ୟ ରାଜ୍ୟ ଆକ୍ରମଣ କରିବା ତ ପ୍ରଧାନ କାର୍ଯ୍ୟ । ଯେ କୌଣସି କାରଣରୁ ହେଉ ସେ ଉତ୍କଳକୁ ଆକ୍ରମଣ କରି ରାଜଧର୍ମର ଅବମାନନା କରି ନାହାନ୍ତି । ଗଙ୍ଗା ଓ ହରିଙ୍କ ଆଦେଶ ଏବଂ ଧର୍ମରାଜ୍ୟ ସ୍ଥାପନ ଆକାଂକ୍ଷାର ଅବତାରଣା କରି କବି ଚୋଡ଼ଗଙ୍ଗଙ୍କ ପରରାଜ୍ୟ-ଆକ୍ରମଣଜନିତ ଦୋଷକୁ କ୍ଷାଳନ କରିବାକୁ ଚେଷ୍ଟା କରିଛନ୍ତି ।

ନନ୍ଦିକା ଅତର୍କିତଭାବରେ ଆତ୍ମସମର୍ପଣ କରିବା ପରେ ଚୋଡ଼ଗଙ୍ଗଙ୍କ ଭାବ ଓ କାର୍ଯ୍ୟ କଳାପରୁ ଚୋଡ଼ଗଙ୍ଗଙ୍କ ମହିମାମୟ ଚରିତ୍ରର ସ୍ପଷ୍ଟ ପରିଚୟ ମିଳୁଛି ।

କୋପେ, ଘୃଣା, ଦୁଃଖ, ବିସ୍ମୟ ମିଳିତ
ହୋଇ ହୃଦସର କଲେ ଆଲୋଡ଼ିତ,
କ୍ଷୋଭ ଅନ୍ତେ ଲଭି ବାକ୍ୟ ଅବସର
ରମଣୀକି ନୃପେ ଦିହିଲେ ଉତ୍ତର ।

କବି ତାଙ୍କୁ ଜଣେ ପ୍ରଧାନ ଯୁଦ୍ଧବୀର ଓ ଧର୍ମବୀର କରି ପରିଚିତ କରାଇବା ସଙ୍ଗେ ସଙ୍ଗେ ଜଣେ ଉଚ୍ଚ କୋଟୀର ନୀତିବାନ ବ୍ୟକ୍ତି ବୋଲି ମଧ୍ୟ ଚିତ୍ରିତ କରିଛନ୍ତି । ଚୋଡ଼ଗଙ୍ଗଙ୍କର ଉତ୍କଳର ପୂର୍ବ ଗୌରବ ଓ କେଶରୀବଂଶ ପବିତ୍ରତା ସମ୍ବନ୍ଧରେ ଉଚ୍ଚଧାରଣା ଥିବାରୁ ସେ ନନ୍ଦିକାଙ୍କୁ "ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ" ରୂପେ ଦେଖିବାକୁ ପ୍ରସ୍ତୁତ ନଥିଲେ; ଏହାକୁ ସେ ଘୃଣାଚକ୍ଷୁରେ ଦେଖିଛନ୍ତି । ତେଣୁ ତାଙ୍କୁ ଶାସ୍ତିଦେବା ପରିବର୍ତ୍ତେ ସସମ୍ମାନରେ ପିତୃଗୃହକୁ ପ୍ରେରଣା କରିଥିବା କାର୍ଯ୍ୟଟି ତାଙ୍କର ମହିମାମୟ ଚରିତ୍ରର ପରିଚୟ ଦେଇଛି ।

ନନ୍ଦିକାର ଅପାଚିତ ପ୍ରେମ ନିବେଦନ ଶୈଳୀକୁ ସେ ପସନ୍ଦ କରି ନାହାନ୍ତି । ଚୋଡ଼ଗଙ୍ଗ କ୍ଷତ୍ରିୟ, ରାଜାଧିରାଜ । ତାଙ୍କ ପକ୍ଷେ ଏକାଧିକ ପତ୍ନୀ ଗ୍ରହଣ ଦୋଷାବହ ନୁହେଁ । ତାଙ୍କର ଏକାଧିକ ପତ୍ନୀ ମଧ୍ୟ ଥିଲେ । ଏହାସତ୍ତ୍ୱେ ସେ ପ୍ରେମ ନିବେଦନ ମାନେ ସଫଳ ପ୍ରତିକ୍ରିୟା ଦେଖାଇ ନାହାନ୍ତି । ଚୋଡ଼ଗଙ୍ଗ ଖ୍ରୀ: ୦୭୭ରେ କଳିଙ୍ଗ ସିଂହାସନ ଆରୋହଣ କରିଥିଲେ । ସେ ଉତ୍କଳ ଆକ୍ରମଣ ଖ୍ରୀ ୧୧୧୨ ପୂର୍ବରୁ କରିଥିଲେ । ସେତେବେଳକୁ ତାଙ୍କର ବୟସ ପଞ୍ଚାଶରୁ ଊର୍ଦ୍ଧ୍ୱ ହୋଇଥିଲା । ପରିଣତ ବୟସର ସଂଯତ ଭାବ ତାଙ୍କୁ ଉପଦେଶକ ଆସନରେ ବସାଇଥିବା ଅସମ୍ଭବ ନୁହେଁ । ତେବେ କବିଙ୍କ କାବ୍ୟରେ ଏହାର ଆଭାସ ନାହିଁ ।

ଚୋଡ଼ଗଙ୍ଗ ଉତ୍କଳ ସିଂହାସନ ପାଇଥିବା ଘଟନାକୁ ଉତ୍କଳ-ବାସୀ ସମର୍ଥନ କରିଥିବାର୍ଥିବା ଜଣାଯାଏ । ଏଥିରେ ଚୋଡ଼ଗଙ୍ଗଙ୍କ ପ୍ରତି ଘୃଣାଭାବ ଥିଲେ ଉତ୍କଳର ନୃପମାନେ ତାଙ୍କୁ "ଭକ୍ତି ଉପାଦାନରେ" ପୂଜା କରି ନଥାଆନ୍ତେ ।

ସମଗ୍ର ଉତ୍କଳୁଁ ଆସି ନୃପମାନେ,
ଚୋଡ଼ରଙ୍କୁ ପୂଜିଲେ ଭକ୍ତି ଉପାଦାନେ ।

**ନନ୍ଦିକା**

କାବ୍ୟର ଦ୍ୱିତୀୟ ବା ଶେଷ ସର୍ଗରେ କବି ନାୟିକା ନନ୍ଦିକାର ଚରିତ ଓ ଚରିତ୍ର ବର୍ଣ୍ଣନା କରିଛନ୍ତି । ରାଜଚକ୍ରବର୍ତ୍ତୀଙ୍କ ଏକମାତ୍ର ସନ୍ତତି ଥିବାରୁ ଶୈଶବରୁ ନନ୍ଦିକା ଅତି ଯତ୍ନରେ ଲାଳିତପାଳିତ ହୋଇଥିବା କଥିତ ହୋଇଅଛି । କିନ୍ତୁ ତାଙ୍କର କାଳୋଚିତ ବିଦ୍ୟାଶିକ୍ଷା ବିଷୟରେ କବି କିଛି ଆଭାସ ଦେଇ ନାହାନ୍ତି । ତାଙ୍କର ବିଭିନ୍ନ ସମୟର ଭାବରାଶିରୁ ତାଙ୍କର ଉନ୍ନତ ଜ୍ଞାନର ପରିଚୟ ମିଳୁଛି ।

ପିତାଙ୍କର କାର୍ଯ୍ୟାବଳୀକୁ ସେ ନିଜର ଜୀବନର ସୁଖଦୁଃଖ ଦିଗରୁ ବିଚାର କରିବାରେ ଯଥେଷ୍ଟ ଜ୍ଞାନର ପରିଚୟ ଦେଇଛନ୍ତି । ମନ୍ତ୍ରୀ ବାସୁଦେବଙ୍କ ପ୍ରସ୍ତାବରେ ରାଜା ଅସମ୍ମତ ହେବାହାରି ତାଙ୍କ ଦୁର୍ଭାଗ୍ୟର ଫଳ ବୋଲି ସେ ଭାବିଛନ୍ତି । ନନ୍ଦିକାଙ୍କ ଯୋଗୁଁ "ମନ୍ତ୍ରୀ ବାସୁଦେବ ଦେଶଦ୍ରୋହୀ" ହେଲେ ; ସ୍ୱପ୍ନରେ ଚଣ୍ଡିକା ରାଜାଙ୍କ ମନ୍ତ୍ରୀ ଆମଣି ଦେଲେ, କିନ୍ତୁ ଏହା ନନ୍ଦିକାଙ୍କ ପକ୍ଷରେ "ଅଶନି" ହେଲା ।

ନନ୍ଦିକା ପିତାଙ୍କ ସମ୍ବନ୍ଧରେ ଯେଉଁ ମତ ଦେଇଛନ୍ତି ଇତିହାସ ଦିଗରୁ ତାହା ସମର୍ଥନୀୟ କି ନୁହେଁ କହି ହେଉନାହିଁ । ନନ୍ଦିକା ପିତାଙ୍କୁ 'ସ୍ଥବିର', "ସୁହୃଦଙ୍କ ବାକ୍ୟରେ ବଧିର" "ତାତ ହେଲେ ସିନା ଅନର୍ଥର ହେତୁ, ଶୁଭଗ୍ରହ କର୍ମେ ହେଲେ ଧୂମକେତୁ" ବୋଲି କହିଛନ୍ତି । "ଯାହା ଇଚ୍ଛା ତାହା ପର ଭାଗ୍ୟେ ଘଟୁ, ନିଜ ଚିତ୍ତବୃତ୍ତି ଚରିତାର୍ଥ ହେବାକୁ ପଟୁ ।" "ଚଳିବାକୁ ଶିଖିନାହିଁ ପରମନ, ସେ କି କେବେ ପ୍ରତିଭାପଣକୁ ଭାଜନ ।" ଏହି ମତ ବ୍ୟକ୍ତ କରି ନନ୍ଦିକା ପିତାଙ୍କୁ ସ୍ୱାର୍ଥପର ରୂପେ ଚିତ୍ରଣ କରିଛନ୍ତି ଏବଂ ଏହି କାରଣରୁ ସେ "ପ୍ରତିଭାପଣକୁ ଭାଜନ" ନୁହନ୍ତି ବୋଲି କହିଛନ୍ତି । ଏହି ଚିନ୍ତା ନନ୍ଦିକାର ସ୍ୱାର୍ଥ ଦିଗରୁ ସମର୍ଥନୀୟ ହେଲେ ମଧ୍ୟ ବୃହତ୍ତର ସ୍ୱାର୍ଥ ଦିଗରୁ ସମର୍ଥନଯୋଗ୍ୟ ନୁହେଁ । ସୁବର୍ଣ୍ଣ କେଶରୀ ରାଜା ; ତାଙ୍କୁ ପ୍ରଜାମାନେ ସ୍ନେହରେ ମାନି ଚଳୁଥିବା ବିଷୟ ଗଡ଼ ଅବରୋଧ ଓ ଦେବୀପୂଜା ଉପାଖ୍ୟାନରୁ ସ୍ପଷ୍ଟ ପ୍ରମାଣିତ ହେଉଛି । ଦେଶର ସମ୍ମାନ ରକ୍ଷା ପାଇଁ ସ୍ୱୟଂ ଦେବୀ ଚଣ୍ଡିକା ତାଙ୍କୁ ସାହାଯ୍ୟ କରିଛନ୍ତି, ସୁତରାଂ ବୃହତ୍ତର ସ୍ୱାର୍ଥ ଦିଗରୁ ରାଜା ଭୁଲ କରି ନାହାନ୍ତି । ପିତା ହିସାବରେ ସେ ଭୁଲ କରିଛନ୍ତି ବୋଲି ମଧ୍ୟ କୁହାଯିବ ନାହିଁ, କାରଣ ଗୈଡ଼ଗଙ୍ଗ ପ୍ରତି ନନ୍ଦିକାଙ୍କ ଥିବା ଅନୁରାଗ ବିଷୟ ସେ

ଜାଣି ନଥିଲେ ; କେବଳ ରାଜନୈତିକ କାରଣରୁ ବାସୁଦେବ ନନ୍ଦକାଙ୍କ ସହିତ ରୈରଗଙ୍ଗଙ୍କ ବିବାହର ତୀବ୍ର ପକ୍ଷପାତୀ ଥିଲେ ।

କୋମଳାଙ୍ଗୀ ନନ୍ଦକା ପିତାଙ୍କ କାର୍ଯ୍ୟକଳାପରେ ଅସନ୍ତୁଷ୍ଟ ହୋଇଥିଲେ ସ୍ୱ ଅଭିଷ୍ଟସିଦ୍ଧି ବାଟରେ ଏହା ପ୍ରତିବନ୍ଧକ ହେବାରୁ ଦୁହିତା ଉପରେ 'ପିତାର ଅଧିକାର' । ଧିକ୍କାର କରିଛନ୍ତି, କିନ୍ତୁ ସ୍ୱାମୀପାଦ ତଳେ ଅଯାଚିତ ଭାବରେ ପ୍ରେମ ଜୀବନ ସମର୍ପଣ କରିବା ପ୍ରସଙ୍ଗରୁ ନାରୀ-ଅଧିକାର ସମ୍ବନ୍ଧରେ ତାଙ୍କର ଦୃଷ୍ଟିକୋଣ ସୀମିତ ଥିଲା କହିବାକୁ ହେବ ।

ନନ୍ଦକା ନିଜ ସ୍ୱାର୍ଥ ଦୃଷ୍ଟିରୁ 'ପିତୃଦ୍ରୋହୀ' ହୋଇ ଓ ପୂର୍ବଗୌରବ ଭୁଲିଯାଇ "ଦେଶଦ୍ରୋହୀ" ହୋଇଛନ୍ତି ; ପ୍ରେମରାଜ୍ୟରେ ଏପରି ଘଟଣା ଅସମ୍ଭବ ନୁହେଁ ଏବଂ ଅସମର୍ଥନୀୟ ନୁହେଁ ମଧ୍ୟ । ଏହି ଦୃଷ୍ଟିରୁ ନନ୍ଦକାଙ୍କ ଦୁଃସାହସିକ କାର୍ଯ୍ୟଟି ଅବିମୃଶ୍ୟକାରିତାର ପରିଚୟ ଦେଉଥିଲେ ମଧ୍ୟ ସମର୍ଥନୀୟ ।

ରୈରଗଙ୍ଗ ଦେବ ନନ୍ଦକାଙ୍କ କାର୍ଯ୍ୟକଳାପକୁ ସମର୍ଥନ ନ କରିଥିବା ସ୍ପଷ୍ଟ । ଏଥିରେ ରୈରଗଙ୍ଗଙ୍କ ନିଷ୍ଠୁର ହୃଦୟର ସନ୍ଧାନ ନାହିଁ ; ହିନ୍ଦୁ ପରିବାରର ପାରଂପରିକ ଶୀଳତାବିରୁଦ୍ଧ ଥିବାରୁ ରୈରଗଙ୍ଗ ଏହାକୁ ସମର୍ଥନ କରିନାହାନ୍ତି । ଧର୍ମସଂସ୍ଥାପନ ନିଜର ଆଦର୍ଶ ଥିବାରୁ ତୁଚ୍ଛ ନାରୀପ୍ରେମ ତାଙ୍କ ହୃଦୟକୁ ପ୍ରଭାବିତ କରି ପାରିନାହିଁ । ସ୍ୱ ବଂଶର ମର୍ଯ୍ୟାଦା ସୁବର୍ଣ୍ଣକେଶରୀଙ୍କୁ ଦୁହିତାର ବିବାହ ପ୍ରସ୍ତାବରେ ଉଦାସୀନ ରଖିଥିଲା । ରୈରଗଙ୍ଗ ଶତ୍ରୁ, ଆକ୍ରମଣକାରୀ; ଶତ୍ରୁ ହସ୍ତରେ କନ୍ୟାକୁ ସମର୍ପଣ କରି ଶାନ୍ତି ସ୍ଥାପନ କରିବା ସୁବର୍ଣ୍ଣକେଶରୀଙ୍କ ପକ୍ଷରେ ଘୋର ଅପମାନ ଓ ଲଜ୍ଜାର ବିଷୟ ଥିବାରୁ ସେ ବୃଦ୍ଧ ବୟସରେ ମଧ୍ୟ ମନ୍ତ୍ରୀ ବାସୁଦେବଙ୍କ

ପ୍ରସ୍ତାବରେ କର୍ଣ୍ଣପାତ କରିନଥିଲେ । ନନ୍ଦିକା ନିଜ ସ୍ୱାର୍ଥରେ ବିହ୍ୱଳ ହୋଇପଡ଼ି ପିତାଙ୍କର ପ୍ରତିରକ୍ଷାମୂଳକ ଜାତୀୟ ସଂଗ୍ରାମକୁ 'ପ୍ରମାଦ' ଆଖ୍ୟା ଦେବା ଦ୍ୱାରା ସେ ଦେଶପ୍ରେମ ଓ ବଂଶଗୌରବର ମର୍ଯ୍ୟାଦା ଉତ୍ତମରୂପେ ଉପଲବ୍ଧି କରିପାରି ନଥିବାର ପରିଚୟ ଦେଇଛନ୍ତି ।

ନନ୍ଦିକାଙ୍କୁ ଦେଶଦ୍ରୋହୀ, ପିତୃଦ୍ରୋହୀ, ରାଜଦ୍ରୋହୀ ବୋଲି ଗ୍ରେଡ଼ଗଙ୍ଗ କହିଛନ୍ତି । ପ୍ରେମାସକ୍ତ ଚକ୍ଷୁରେ ମଧ୍ୟ ସେ ବିଦ୍ରୋହୀ ଏଥିରେ ସନ୍ଦେହ ନାହିଁ; ପ୍ରେମ ନିମନ୍ତେ ସେ ରାଜା, ପିତା, ଦେଶ, କୁଳଗୌରବ—କୌଣସି ପ୍ରତି ଦୃଷ୍ଟି ଦେଇ ନାହାନ୍ତି, ସ୍ୱହୃଦୟର ପ୍ରେମ ବଳରେ ବଳୀୟାନ୍ ହୋଇ ସେ ଦୁଃସାହସିକ କାର୍ଯ୍ୟ କରିଛନ୍ତି । ତାଙ୍କ ଦୁର୍ଭାଗ୍ୟକୁ ପଥରକାନ୍ଥ ଉପରେ ମୁଣ୍ଡ ବାଡ଼େଇବା ଦଶାକୁ ଲାଭ କରି ସେ ହତାଶ ହୋଇଛନ୍ତି ।

ନନ୍ଦିକା ଶତ୍ରୁହସ୍ତରେ ଆତ୍ମସମର୍ପଣକୁ ଶେଷ ଅସ୍ତ୍ର ରୂପେ ବ୍ୟବହୃତ କରିଥିଲେ । ହୃଦୟର ଆରାଧ୍ୟ ଦେବତା କାଳିଠାରୁ ତାଙ୍କ ଦୃଷ୍ଟି ପଥରୁ ଅନ୍ତର ହେବେ, ତାଙ୍କର ଜୀବନର ଆକାଙ୍କ୍ଷା ଚିରଦିନ ନିମନ୍ତେ ଲୋପ ପାଇଯିବ, ଏହି ଭାବନାର ତାଡ଼ନାରେ ସେ ଏକାବେଳକେ ହତାଶ ହୋଇ ପଡ଼ିଲେ ଏବଂ ଚୌର୍ଯ୍ୟବୃତ୍ତି ଅବଲମ୍ବନ କରି, ପିତୃଦ୍ରୋହୀ, ରାଜଦ୍ରୋହୀ, ଦେଶଦ୍ରୋହୀ ହୋଇ ସ୍ୱ ବଂଶଗୌରବକୁ ପଦାଘାତ କରି ପ୍ରାଣର ଦେବତା ଶତ୍ରୁ ଗ୍ରେଡ଼ଗଙ୍ଗଙ୍କୁ ଅଯାଚିତଭାବରେ ପ୍ରେମ ନିବେଦନ କରିଥିଲେ । ଏହି ଆଶା-ନିରାଶାର ଖେଳ ଅତି କରୁଣ ହୋଇଛି ଏବଂ କବି ଅତି ଚମତ୍କାର ଭାବରେ ତାହା ସୃଷ୍ଟି କରିପାରିଛନ୍ତି । ଗ୍ରେଡ଼ଗଙ୍ଗ "ଉତ୍କଳ-ଈଶ୍ୱର" ହେଲେ ସତ୍ୟ, କିନ୍ତୁ ନନ୍ଦିକା ତାଙ୍କୁ ପ୍ରେମବଳେ ଛିନ୍ନପତି କରି-ପାରିଲେ ନାହିଁ ।

ହସ୍ତଗତ ହେଲେ ସେହି ରତ୍ନବର
ପ୍ରାଣେଶ୍ୱର ହେବେ ଉତ୍କଳଈଶ୍ୱର ।
ପ୍ରେମବନ୍ଧନେ ତାଙ୍କୁ କରି ଛନ୍ଦପତି
ପ୍ରେମିକାକୁଳେ ମୁଁ ଦେଖାଇବି ଖ୍ୟାତି ।

ଏହି ବିୟୋଗାନ୍ତ କାବ୍ୟର ନାୟିକା ରୂପେ ନନ୍ଦଜା ମାନବ-ସମାଜର କରୁଣାର ପାତ୍ର ।

ବିଦ୍ରୋହଭାବ ମନକୁ ଗ୍ରାସ କଲେ ମନୁଷ୍ୟର ମନ ଓ ପ୍ରାଣ କଠିନ ହୋଇଯାଏ । ସେ ସହଜ ସ୍ୱଭାବ ଲଜ୍ଜା ଓ ଧୀରତାକୁ ଦୃଢ଼ଭାବରେ ତ୍ୟାଗ କରି ପିତାଙ୍କ କଠୋର ଶାସନକୁ ଅମାନ୍ୟ କରି, ସାମାଜିକ ଗୌରବକୁ ପାଦରେ ଦଳି ଦେଇ, ବିଦ୍ରୋହୀ ହୋଇ, ଅବାଟକୁ ବାଟ ବୋଲି ମଣି କାର୍ଯ୍ୟ କଲେ ।

ନନ୍ଦଜାର ଆତ୍ମହତ୍ୟା ତାଙ୍କର କାର୍ଯ୍ୟର ଏକମାତ୍ର ପରିଣତି ରୂପେ ଦେଖାଦେବ, ଏଥିରେ ସନ୍ଦେହ ନାହିଁ । ଚୋଡ଼ଗଙ୍ଗଙ୍କଠାରୁ ସ୍ୱ ଇଚ୍ଛାମତ ପ୍ରେମର ପ୍ରତିଦାନ ନପାଇ ବିଫଳମନୋରଥ ହୋଇ ଫେରିବା ପରେ ସେ ବା କେଉଁ ମୁଖରେ ପିତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ପାରନ୍ତେ ? ଆତ୍ମଗ୍ଲାନି ତାଙ୍କ ହୃଦୟକୁ ବିଦୀର୍ଣ୍ଣ କରିଦେବାରୁ ସେ ଆତ୍ମହତ୍ୟା କରିବା ଏକମାତ୍ର ପନ୍ଥା ବୋଲି ସ୍ଥିର କଲେ ।

## ପ୍ରକୃତି : ରୂପ : ବର୍ଣ୍ଣନା :—

କବି ଭାବୋଦ୍ରେକ ସରସ ମାର୍ଜିତ ପଦାବଳୀରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ବହୁ ପ୍ରାକୃତିକ ଦୃଶ୍ୟର ସଂକ୍ଷିପ୍ତ ବର୍ଣ୍ଣନା କରିଛନ୍ତି ।

ପ୍ରଭାତ ବର୍ଣ୍ଣନାରେ କବି ନିର୍ଜୀବ ପ୍ରକୃତିକୁ ପ୍ରାଣବନ୍ତ କରି-ପାରିଛନ୍ତି । କଳ୍ପନାପକ୍ଷୀର ପକ୍ଷ ନିଃସ୍ୱନ ଜଗତରେ ଉଷା-ଆଗମନର ସୂଚନା ଦେଲା । ଉଷାର ଆଗମନରେ କ୍ରମେ କ୍ରମେ ଚନ୍ଦ୍ର ନିଷ୍ପ୍ରଭ ହେଲେ ଏବଂ ପ୍ରାଚୀନଭ ରକ୍ତରାଗରେ ରଞ୍ଜିତ ହେଲା । କବି ଅତି ସୁନ୍ଦର ପଦରେ ଲେଖିଛନ୍ତି :—

କ୍ରମେ କ୍ରମେ ହେଲା ଚନ୍ଦ୍ରମା ନିଷ୍ପ୍ରଭ
ଉଷା ରାଗେ ରକ୍ତ ହେଲା ପ୍ରାଚୀନଭ ।
ମାତାଙ୍କ ପ୍ରବାହ ଯଥା ସିନ୍ଧୁ ଜଳେ
ଉଚ୍ଛୁଳିଲା ପ୍ରଭା ନୀଳନଭସ୍ଥଳେ ।
ନୀଳକାନ୍ତ-ବ୍ୟୋମ-ଅନ୍ତରାଳେ ଝଳି
ବିରାଜିଲା ବିମ୍ବ ଯେହ୍ନେ ଅରାବଳୀ ।
କୁଆଁ ତରୀ ତହିଁ ମଧ୍ୟ ବିରାଜିତା
ପ୍ରାଚୀ କରିଛି କି ରାମାନନ୍ଦୀ ଟିକା । ଇତ୍ୟାଦି । ୧ମସର୍ଗ ।

ଅଳ୍ପସଂଖ୍ୟକ ପଦରେ ବର୍ଣ୍ଣନାଟି ମନୋରମ ହୋଇଛି ଏବଂ କବିତ୍ୱପୂର୍ଣ୍ଣ ପଦାବଳୀ ବର୍ଣ୍ଣନାର ମାଧୁରୀକୁ ବହୁଗୁଣରେ ବର୍ଦ୍ଧିତ କରିଛି । ଏହି ଉଷା-ଆଗମନ ଚୋଡ଼ଗଙ୍ଗଙ୍କ ଭାବରାଶିର ସହିତ ଅନୁକୂଳ ହୋଇଛି । ଚୋଡ଼ଗଙ୍ଗ ସ୍ୱ ଇଷ୍ଟଦେବୀ ଗଙ୍ଗାଙ୍କ ପ୍ରବାହ ସିନ୍ଧୁଜଳରେ ମିଶିଲା ବେଳର ଛବି ଉଷା-ନଭରେ ଦେଖୁଛନ୍ତି ; ସ୍ୱ ମାନସଭାବ ପ୍ରକୃତିପଟରେ ପ୍ରତିଫଳିତ ହୋଇଛି ।

ବିଜନ କାନନରେ ଚୋଡ଼ଗଙ୍ଗଦେବଙ୍କ ଧ୍ୟାନ ସମୟରେ ଜଳରେ ଦେବୀଙ୍କ ଆଗମନର ଛବିଟି ସୁନ୍ଦର ହୋଇଛି । ଧ୍ୟାନଧାରଣା, ଉଚ୍ଚ ଆକାଂକ୍ଷା, ସ୍ୱ ଇଷ୍ଟଦେବୀଙ୍କ ଆଶୀର୍ବାଦଭିକ୍ଷା ସଦୃଶ ଉଚ୍ଚ ଭାବରାଜିର ପରିପ୍ରେକ୍ଷୀ ମଧ୍ୟ ଉନ୍ନତରୁଚିସମ୍ପନ୍ନ ହୋଇଛି । ସମଗ୍ର ପ୍ରକୃତି ଗମ୍ଭୀର ହୋଇ ଦେବୀଙ୍କ ଆଗମନକୁ ସମ୍ମାନରେ ଅପେକ୍ଷା

କରି ରହିଛି ; ଦେବୀଙ୍କ ଜଳରାଶି ଉପରେ ଆବିର୍ଭାବରେ ଗମ୍ଭୀରତାର ସ୍ପଷ୍ଟ ଚିହ୍ନ ରହିଛି ; ପ୍ରସଙ୍ଗର ଗୁରୁତ୍ୱ ତୁଳନାରେ ଏହି ଗାମ୍ଭୀର୍ଯ୍ୟ ସମକକ୍ଷ ହୋଇଛି ।

ନୟନ ଫେରାଇ ମୁଁ ଦେଖିଲି କନ୍ଦରେ
ଭେଦି କୃପାବେଦି କୃପାଣର ଧାରେ ।
କାଚଧାର ପ୍ରାୟେ ସ୍ୱଚ୍ଛ ଜଳଧାର
ଦେବମନ ପ୍ରାୟେ ଦିଶଇ ଉଦାର । × ×
ବନଦେବୀଙ୍କର ବିଳାସ ଦର୍ପଣ
କିମ୍ବା ବରୁଣର ସ୍ଫଟିକ ଭବନ ।
ଅବା ଜଗତର ସତ୍ତ୍ୱଗୁଣରାଶି
ଗୁପତରେ ତହିଁ ରୁଣ୍ଡ ହେଲା ଆସି ।
ମଧ୍ୟେ ସୁଗଭୀର ଜଳ ନୀଳାକାର
କି' ବା ସେ ଅତଳ ପାତାଳର ଦ୍ୱାର ।
ହ୍ରଦ-ଆସ୍ତରଣ ଶୋଭନ-ଅଞ୍ଚଳ—
ରୂପେ ବିକଶିଲେ ଜଳ-ପୁଷ୍ପ-ଦଳ,
ରମ୍ୟ-ତାମରସ ସରସୀସମ୍ପଦ
କୁମୁଦ କହ୍ଲାର ରକ୍ତକୋକନଦ ।
ସ୍ୱର୍ଗୀୟ ସୌରଭେ ପୂରିଲା ଅଟବୀ
ଜଳରାଶି ଭେଦି ଶୋଭିଲେ ଜାହ୍ନବୀ । × × ୧ମସର୍ଗ

ଦେବୀ ଜାହ୍ନବୀ ହ୍ରଦଜଳ ଉପରେ ଅବତୀର୍ଣ୍ଣ ହେବା ଦୃଶ୍ୟଟି ଅତି ସୁନ୍ଦର ହୋଇଛି ଏବଂ ସମଗ୍ର ପ୍ରକୃତି ଓ ଜୀବଜଗତ ଏଥିରେ ଭକ୍ତିପୂର୍ଣ୍ଣ ଆନନ୍ଦରେ ବିଭୋର ହୋଇଯାଇଛନ୍ତି ।

ଶଙ୍ଖ ସିଂହାସନେ ସଙ୍ଗେ ସହଚରୀ
ଉଦ୍ଭଳୀଯୁ ବେଶେ ଅପୂର୍ବ ସୁନ୍ଦରୀ ।

ଇନ୍ଦ୍ରଧନୁ ପ୍ରଭା ମଣ୍ଡଳେ ମଣ୍ଡିତ
ଶତଦଳେ ନୀଳକଳୀ ଭୂଷିତ ।
ମନ୍ଦାନିଳେ ଝୁଲୁଅଛି ସିଂହାସନ
ବର୍ଷ ତୋଳି ବର୍ହୀ ତାଣ୍ଡବେ ଯେସନ ।
ହେଲେ ଯହିଁ ଦେବୀ ଜଳେ ସମାସୀନା
ବାଜଣ ଉଠିଲା ବନଦେବୀ ବୀଣା ।
ତା ସଙ୍ଗେ ମିଶିଲା ଭ୍ରମର ସଙ୍ଗୀତ
ବନ ବିହଙ୍ଗର କାକଳି ଲଳିତ ।
ଦଶ କୋଟି ଶୋଇଥିଲେ ପ୍ରତିଧ୍ୱନି
ଜାଗି ଉଠିଲେ ସେ ଗୀତେ ସେହିକ୍ଷଣି ।
ହଂସ ଚକ୍ରବାକ ଜଳେ ଅବତରି
ବେଢିଣ ଦେବୀଙ୍କି ବୁଲିଲେ ପହଁରି
ମୃଗ ମୃଗୀ ଗିରେ ତୃଣାହାର ଛାଡ଼ି
ଉଦ୍‌ଗ୍ରୀବେ ରହିଲେ ହୋଇ ଧାଡ଼ି ଧାଡ଼ି ।

ଏ 'ସ୍ୱର୍ଗୀୟ ଦୃଶ୍ୟ'ରେ ସମସ୍ତେ ମୋହିତ ; ଏ 'ସ୍ୱର୍ଗୀୟ ଦୃଶ୍ୟ'କୁ 'ପିଇଲେ ନୟନେ' ଏବଂ ସେ 'ସ୍ୱର୍ଗୀୟ ଗୀତ'କୁ 'ପିଇଲେ ଶ୍ରବଣେ' ।

ରୂପ ବର୍ଣ୍ଣନାରେ କବି କୃତକାର୍ଯ୍ୟ ହୋଇଛନ୍ତି । ଗ୍ରେତ୍ତଗଙ୍ଗ ଓ ନନ୍ଦକାର ରୂପ ବର୍ଣ୍ଣନା ବେଶି ଦୀର୍ଘ କରିନଥିଲେ ମଧ୍ୟ କବି ସ୍ପଷ୍ଟ ସୁନ୍ଦର ଚିତ୍ର ଅଙ୍କନ କରି ପାରିଛନ୍ତି । ନନ୍ଦକାର ଯୌବନାବସ୍ଥାର ଲାବଣ୍ୟ ପ୍ରଭା କବି ଅଳ୍ପ ସଂଖ୍ୟକ ସାର୍ଥକ ପଦରେ ଚିତ୍ରଣ କରିଛନ୍ତି । ବସନ୍ତକାଳରେ ମଧୁମାସରେ ନବକିଶଳୟ ଭିତରେ କୁସୁମନିଚୟ ମଧ୍ୟରେ ପ୍ରସ୍ଫୁଟିତ କୁସୁମ ସଦୃଶ ଜେମାର ଯୌବନ-ପ୍ରକାଶ ଦେଖାଗଲା । ଯୌବନାବସ୍ଥାରେ ଜେମାର ଅଙ୍ଗ ପ୍ରତ୍ୟଙ୍ଗ,

ହାବଭାବ ପ୍ରଭୃତିର କୌଣସି ବର୍ଣ୍ଣନା କରି ନାହାନ୍ତି; ଏ ପ୍ରସଙ୍ଗ କଳ୍ପିତ ବସ୍ତୁ ହୋଇଥିଲେ ରସସୃଷ୍ଟିରେ ସହାୟକ ହୋଇ ଥାଆନ୍ତା । କାବ୍ୟର କଳେବର କ୍ଷୁଦ୍ର ରଖିବା ସଂକଳ୍ପରୁ କବି ଏପରି କରିଥିବା ସମ୍ଭବ । ସମଗ୍ର ବର୍ଣ୍ଣନାଟି ଉପମାମଣ୍ଡିତ ହୋଇ ସୁନ୍ଦର ରୂପ ଧାରଣ କରିଛି ।

ଶ୍ୱେତଗଙ୍ଗଙ୍କ ଶିବିରରେ ଅଳଙ୍କାର-ଭୂଷଣ-ବର୍ଜ୍ଜିତା, ଭାବଗମ୍ଭୀର ନାୟିକା ଦୋଳାୟିତ ମନରେ ଉପସ୍ଥିତ ହେବାକ୍ଷଣି ଶ୍ୱେତଗଙ୍ଗଙ୍କ ସମ୍ମୁଖରେ ତାଙ୍କର ଏକ କମନୀୟ ଚିତ୍ର କବି ଅଙ୍କନ କରି ନିଜ ଲେଖନୀକୁ ସାର୍ଥକ କରିଛନ୍ତି । ଛବିଟି କେତେ କରୁଣ, ଅଥଚ କେଡ଼େ ଶୋଭାପୂର୍ଣ୍ଣ ! ସୁଷମାରେ ସେ ଶାରଦୀୟ ଉଷାକୁ ନିନ୍ଦା କରୁଛି । ଅତ୍ୟଳ୍ପ ଭୂଷଣରେ ଏଣ୍ଟି ମତ୍ତକାଶୀ ଶୋଭାପାଉଛି । କବିଙ୍କ ବର୍ଣ୍ଣନାରେ ଉତ୍କଟ ଆଦିରସାତ୍ମକ ପଦଯୋଜନା ନାହିଁ, ବର୍ଣ୍ଣନା ସଂଯତ ହୋଇ ମଧ୍ୟ ରସଗର୍ଭକ ହୋଇପାରିଛି । କବିଙ୍କ ନାୟିକାର ବେଶଭୂଷା ସେହି ପ୍ରାଚୀନ କାଳର ବେଶଭୂଷା ସଙ୍ଗେ ସମାନ । ପ୍ରାଚୀନ କବିମାନଙ୍କର ବିଭିନ୍ନ ଅଙ୍ଗାଭରଣ ବର୍ଣ୍ଣନାରେ ବିଦ୍ୟମାନ ଥିବା ଉପମା ଓ ଶ୍ଳେଷ ଛଟା କିୟଦଂଶରେ ରାଧାନାଥଙ୍କ ଏହି ବର୍ଣ୍ଣନାରେ ଦେଖାଯାଏ ।

———

# ଏକବିଂଶ ପରିଚ୍ଛେଦ

## ଉଷା

ନୂରପୁରର ରାଜା ବୀରସିଂହ ଜଣେ ପ୍ରସିଦ୍ଧ ଶିକାରୀ ଥିଲେ । ତାଙ୍କର ଜୀବନ ସୁଖମୟ ଥିଲା । ତେବେ, 'ସନ୍ତତି ବିହୁନେ' ସେ ସବୁବେଳେ ଚିନ୍ତିତ ଥିଲେ । ଦିନେ ରାତିରେ ରାଜରାଣୀ ସ୍ୱପ୍ନରେ ଦେଖିଲେ ଯେ, ଏକ ଜ୍ୟୋତିର୍ମୟ ଅପୂର୍ବ ଲାବଣ୍ୟ ପ୍ରତିମା ନାରୀ ରୂପ ତାଙ୍କ ଗର୍ଭରେ ପ୍ରବେଶ କଲା । ଏହା ପରେ ରାଣୀଙ୍କ ଗର୍ଭବାସ ହେଲା ଏବଂ ସେ ଅପୂର୍ବ ସୁନ୍ଦରୀ କନ୍ୟାଟିଏ ପ୍ରସବ କଲେ । ଉଷା କାଳରେ କନ୍ୟାଟି ଜନ୍ମ ଲାଭ କରିଥିବାରୁ ପିତାମାତା କନ୍ୟାର ନାମ 'ଉଷା' ଦେଲେ ।

ଉଷା କ୍ରମେ ବର୍ଦ୍ଧିତ ହେବାକୁ ଲାଗିଲେ । ଯୌବନାବସ୍ଥାରେ ପଦାର୍ପଣ କରିବାରୁ ପିତା ତାଙ୍କୁ ମୃଗୟା କୌଶଳ ଶିକ୍ଷା କରିବାର ସୁଯୋଗ ଦେଲେ ଏବଂ ସେ ଏଥିରେ ସିଦ୍ଧହସ୍ତା ହେଲେ । 'ଯୁବତୀ ସୁଲଭ ସୌନ୍ଦର୍ଯ୍ୟ' ସହିତ 'ପ୍ରଖର ଶୌର୍ଯ୍ୟ'ର ମିଶ୍ରଣ ହେବାରୁ ରମଣୀ 'ରୁଦ୍ର ସୁନ୍ଦର' ରୂପ ଧାରଣ କଲେ । ମୃଗୟା ଅନୁସରଣ ଦ୍ୱାରା ଦ୍ରୁତଚରଣରେ ପଶୁପକ୍ଷୀଙ୍କୁ ଗୋଡ଼ାଇବାରେ ସେ ଦକ୍ଷ ହେଲେ ଏବଂ 'ସଂସାରେ ତାଙ୍କ ସଙ୍ଗେ ଗତିବେଗ'ରେ କେହି ସରି ନଥିଲେ ।

ବିବାହଯୋଗ୍ୟା ହେବାରୁ ଉଷା ଏକ ବିଷମ ପ୍ରତିଜ୍ଞା କଲେ; 'ଗତି ବେଗେ ତାକୁ ଯେ ଜିଣିବ ସେ ହେବ ପତି ତା'ର ।' ରାଜାଙ୍କ ଆଦେଶରେ ଦୀର୍ଘରାଜପଥ ରଚିତ ହେଲା; ବର୍ତ୍ମାରମ୍ଭରେ କାଳି ପ୍ରତି-ନିଧି ଚଣ୍ଡୀ ମୂର୍ତ୍ତି ସ୍ଥାପିତ ହେଲେ ଏବଂ ବର୍ତ୍ମାନ୍ତରେ ଏକ ରତ୍ନ-ଜଡ଼ିତ ସ୍ତମ୍ଭ ପ୍ରୋଥିତ ହେଲା । "ସଙ୍ଗେ ଧାଇଁ ଆଗେ ସ୍ତମ୍ଭକୁ ଛୁଇଁବ ଯେ

ଯୁବାମଣି, ସ୍ୱୟମ୍ବରରେ ତାଙ୍କୁ ବରଣମାଳା ଦେଇ ବରିବ ଧର୍ମ”; ହାରିଗଲେ ଯୁବକର ଶିରଚ୍ଛେଦ ହେବ, ଏହି ପଣ ରଖାଗଲା ।

ଊଷାଙ୍କୁ ପାଇବା ଆଶାରେ ବହୁଦେଶରୁ ବହୁ ଯୁବା ଏହି ସ୍ୱୟମ୍ବର କ୍ରୀଡ଼ାରେ ଯୋଗ ଦେଲେ, କିନ୍ତୁ କୃତକାର୍ଯ୍ୟ ହୋଇ ନପାରି ମସ୍ତକ ହରାଇଲେ ।

ଦିନେ ଊଷା ସହଚରୀମାନଙ୍କ ସଙ୍ଗରେ ବନକୁ ଶିକାର କରିବାକୁ ଯାଇଥିଲେ । ଊଷା ସହଚରୀମାନଙ୍କ ସହ ପୁଷ୍କରିଣୀରେ ପଶି ରୌଦ୍ରତାପରୁ ନିଜକୁ ରକ୍ଷା କରୁଥିଲେ । ଏହି ସମୟରେ ଦୁଇଟି ବନ୍ୟଶୂକର ସେମାନଙ୍କୁ ଆକ୍ରମଣ କଲେ । ଊଷା ଏକ ଶର ପେଶି ଗୋଟିଏ ଶୂକରକୁ ଶରବିଦ୍ଧ କଲେ । ସେହି ସମୟରେ ହଠାତ୍ ଜଣେ ଅଜଣା ଶିକାରୀର ଅନ୍ୟ ଏକ ଶର ଆସି ଅନ୍ୟ ଶୂକରକୁ ବିଦ୍ଧ କଲା । ଏହି ଦୃଶ୍ୟ ଦେଖି ଊଷା ଚମତ୍କୃତ ହୋଇଗଲେ । ଶିକାରୀର ଶର ଉପରେ ‘ଜୟନ୍ତ’ ନାମ ଅଙ୍କିତ ଥିବାରୁ ତାଙ୍କର ନାମ ଜଣାଗଲା ।

ହେମପୁରର ରାଜା ବାହନପତିଙ୍କ କୁମରଙ୍କ ନାମ ଜୟନ୍ତ । ଜୟନ୍ତ ଅପୂର୍ବ ଶୋଭାବନ୍ତ ଯୁବା । ସେ ଶସ୍ତ୍ର ଓ ଶାସ୍ତ୍ରରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ମୃଗୟାରେ ସେ ଅତି କୁଶଳତା ଆୟତ୍ତ କରିଥିଲେ । ଦିନେ କାର୍ତ୍ତିକେୟ ତାଙ୍କ ସହପାଠୀ ପର୍ଶୁରାମଙ୍କୁ ଭେଟିବା ପାଇଁ ଆକାଶ ମାର୍ଗରେ ସ୍ୱ ବାହନ ମୟୂର ଆରୋହଣ କରି ଯାଉଥିଲେ । ବନଦେବୀଙ୍କ ଆହ୍ୱାନକ୍ରମେ ସେ ବାହନକୁ ବନରେ ଛାଡ଼ି ଦେଇ ବିଶ୍ରାମ ନେଉଥିଲେ । ସ୍ୱର୍ଗ-ମୟୂରକୁ ଦେଖି ବନର ଅନ୍ୟ ମୟୂରମାନେ ଆନନ୍ଦରେ ନାଚିବାକୁ ଲାଗିଲେ । ମୟୂର-ମେଳା ଦେଖି କେହି ଜଣେ ଶିକାରୀ କାର୍ତ୍ତିକେୟଙ୍କ ମୟୂର ପ୍ରତି ଶର ନିକ୍ଷେପ କଲା । ଶର ପକ୍ଷୀକୁ ବିଦ୍ଧ

କରିବା ପୂର୍ବରୁ ପକ୍ଷୀଟି କାର୍ତ୍ତିକେୟଙ୍କର ଜାଣି ପାରି ଜୟନ୍ତ ପକ୍ଷୀ ସମ୍ମୁଖରେ ଦଣ୍ଡାୟମାନ ହୋଇ ଶରକୁ ନିବାରିଲେ । ଏଥିରେ କାର୍ତ୍ତିକେୟ ସନ୍ତୁଷ୍ଟ ହୋଇ ନିଜ ରୂପ ପ୍ରକାଶ କରି ଜୟନ୍ତଙ୍କୁ ବର ମାଗିବାକୁ କହିବାରୁ ଜୟନ୍ତ ବର ମାଗିଲେ—'ସଂକଟେ ସ୍ମରିଲେ ଅବତରି ଦାସେ ଦେବ ଅଭୟ ।' କାର୍ତ୍ତିକେୟ 'ତଥାସ୍ତୁ' କହି ସ୍ୱ ଗନ୍ତବ୍ୟ ପଥରେ ଚାଲିଗଲେ ।

ଜୟନ୍ତର ଏକବର୍ଷ ରହିଥିବାରୁ ସେ ଉଷା ସ୍ୱୟମ୍ବରରେ ଯୋଗ ଦେଲେ ନାହିଁ ଏବଂ ଏହି ସମୟଟି ସେ ମୃଗୟାରେ ଅତିବାହିତ କଲେ । ବନରେ ଉଷା ଶିକାର କରୁଥିବା ବେଳେ ତାଙ୍କର ଅପୂର୍ବ ରୂପସମ୍ଭାର ଦେଖି ସେ ମୁଗ୍ଧ ହୋଇ ଯାଇଥିଲେ; ପୁଣି ମୃଗୟାରେ ଉଷାଙ୍କର ସାହସ ଓ କୌଶଳ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲେ । ପ୍ରୀତି ଦ୍ୱିଗୁଣିତ ହୋଇ ଯାଇଥିଲା । "ଉଷା ଦିବ୍ୟରୂପେ ପୂର୍ବେଁ ହୋଇଥିଲା ଚିତ୍ତ ମୋହିତ, ସାହସ କୌଶଳ ଦେଖି ହେଲା ପୁଣି ଦ୍ୱିଗୁଣିତ ପ୍ରୀତି ।" "ଶୟନେ ସ୍ୟନ୍ଦନେ ବିଜୟେ ସଙ୍କଟେ, ଯୋଗ୍ୟ-ସଙ୍ଗିନୀ" ଉଷା ହେବା ଆଶା କରି ଜୟନ୍ତଙ୍କ ମନ ଉଚ୍ଛନ୍ନ ହେଲା । ସେ ନୂରୁପୁରକୁ ଯାଇ ନିଜ ପରିଚୟ ଦେଇ ପରୀକ୍ଷା ପାଇଁ ପ୍ରାର୍ଥୀ ହେଲେ ।

ପ୍ରାତଃକାଳରେ ପରୀକ୍ଷାର ଆୟୋଜନ ହେଲା । ସ୍ୱୟମ୍ବର ସ୍ଥଳରେ ଜୟନ୍ତର ଅପୂର୍ବ ସୌନ୍ଦର୍ଯ୍ୟ ଦର୍ଶନ କରି ଉଷା ମୋହିତ ହୋଇଗଲେ । ମୃଗୟା ସମୟରେ ନିଜର ଜୀବନ ରକ୍ଷା କରିଥିବାରୁ ତାଙ୍କ ହୃଦୟ କୃତଜ୍ଞତାରେ ପୂର୍ଣ୍ଣ ହୋଇଯାଇଥିଲା ; ବର୍ତ୍ତମାନ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କ ଚରଣ ତଳେ ମନପ୍ରାଣ ଢାଳି ଦେଲେ ।

ପରୀକ୍ଷା ଆରମ୍ଭରେ ଜୟନ୍ତ କାର୍ତ୍ତିକଙ୍କୁ ଧ୍ୟାନ କରି ତାଙ୍କର ବର ସ୍ମରଣ କରାଇ ଦେଲେ । କାର୍ତ୍ତିକ ଆକାଶରେ ରହି ମାନ-ସରଜାତ ତିନି ସ୍ୱର୍ଣ୍ଣପଦ୍ମ ତାଙ୍କ କରରେ ଦେଇ ଗନ୍ତବ୍ୟରେ ପଥରେ ଫିଙ୍ଗିବାକୁ ଆଦେଶ ଦେଲେ । ପରୀକ୍ଷାରେ ଜୟନ୍ତ ଓ ଊଷା ଉଭୟେ ଦୌଡ଼ିଲେ । ଜୟନ୍ତ ଊଷାକୁ ଅତିକ୍ରମ କରି କିଛି ଦୂର ଯିବା ପରେ ସ୍ୱର୍ଣ୍ଣପଦ୍ମରୁ ଗୋଟିଏ ବାଟରେ ଫିଙ୍ଗିଲେ । ଏହି 'ମୁକ୍ତାକେଶର ମରକତନାଳ ହେମକମଳ'କୁ ଦେଖି ଭୂଷାପ୍ରିୟ ଊଷା ଲୋଭ-ବଶରୁ ତାକୁ ତୋଳିନେଲେ । ଏହି ଅବସରରେ ଜୟନ୍ତ କିଛି ଦୂର ଅଗ୍ରସର ହୋଇଗଲେ । ଏହିପରି ଅନ୍ୟ ଦୁଇଟି କମଳକୁ ଫିଙ୍ଗିଲେ । ଶେଷ ପଦ୍ମଟି କାର୍ତ୍ତିକଙ୍କ ମାୟାରୁ ବେଶି ଗରୁ ହୋଇପଡ଼ିବାରୁ ତାକୁ ତୋଳି ନେବାରେ କୁମାରୀଙ୍କୁ ବେଶି ସମୟ ଲାଗିଲା । ଏହି ଅବସରରେ ଜୟନ୍ତ ଲକ୍ଷ୍ୟସ୍ଥଳରେ ମାଣିକ୍ୟଖମ୍ବଠାରେ ଆଗେ ପହଞ୍ଚିଗଲେ । ଜୟନ୍ତ ବିଜୟୀ ହେବାରୁ ସମସ୍ତେ ଆନନ୍ଦିତ ହେଲେ । ଊଷା-ଜୟନ୍ତଙ୍କ ବିବାହ ଆୟୋଜନ ହେଲା । ହସ୍ତଗ୍ରନ୍ଥି ପଡ଼ିବା ସମୟରେ ଦୁହିଁଙ୍କର ହଠାତ୍ ମୃତ୍ୟୁ ହେଲା ।

ଏହି ହୃଦୟବିଦାରକ ଦୃଶ୍ୟ ଦେଖି ରାଜା ମୂର୍ଚ୍ଛିତ ହୋଇ-ପଡ଼ିଲେ । ଏହି ଅବସ୍ଥାରେ ସେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ସ୍ୱୟଂ କାଳୀ ତାଙ୍କ ଅଗ୍ରତେ ଉଭା ହୋଇ କିପରି ଶାପରୁ ଊଷା ଜୟନ୍ତଙ୍କ ଜନ୍ମ ଓ ମୃତ୍ୟୁ ହୋଇଥିବା କହି ଏ ଦୁହିଁଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ବର୍ଣ୍ଣନା କଲେ । ଥରେ ପଞ୍ଚଲିଙ୍ଗ ପର୍ବତରେ ଚତୁର୍ଦ୍ଦଶୀ ରାତିରେ ସ୍ୱର୍ଗର ଅପସରା ତିଳୋତ୍ତମା ପାର୍ବତୀ ବେଶରେ ଓ ଗନ୍ଧର୍ବ ଚିତ୍ରରଥ ଶିବ ବେଶରେ ତାଣ୍ଡବନୃତ୍ୟ କରୁଥିଲେ । ଏହି ଉତ୍ସବ ଦେଖିବା ପାଇଁ କୈଳାସ ଶିଖରରୁ ଦେବୀ କାଳୀ ଯାଉଥିଲେ । ତାଙ୍କର ବିକଟ ରୂପ ଦେଖି ଦେବଦେବୀମାନେ ହସିଲେ । ଚିତ୍ରରଥ ଓ

ତିଳୋତ୍ତମା ମଧ୍ୟ 'ନିଜ ମର୍ଯ୍ୟାଦା ଲଙ୍ଘି' ହାସ୍ୟରୋଳରେ ଯୋଗ-ଦେଲେ । କୋପରେ କାଳୀ ସେହିକ୍ଷଣି ଅଭିଶାପ ଦେଲେ । "ତୁମ୍ଭେ ଯେଣୁ ରୂପଗର୍ବରେ ସ୍ୱର୍ଗ କଳୁଷିତ କଲ, ତେଣୁ ସର୍ବେ ମର୍ତ୍ତ୍ୟକୁ ଯାଇ ମର୍ତ୍ତ୍ୟରୂପ ଧାରଣକର"ବୋଲି ଦେବୀ ଆଜ୍ଞା ଦେଲେ । ଏହି ଦାରୁଣ ଅଭିଶାପରୁ ମୁକ୍ତି ପାଇବା ମାନସରେ ଦୋଷ ସ୍ୱୀକାର କରି ତିଳୋତ୍ତମା ପ୍ରମୁଖ ଦେବୀଙ୍କୁ ପ୍ରାର୍ଥନା କରିବାରୁ ଦେବୀ ଶାପମୋଚନର ଉପାୟ ନିର୍ଦ୍ଦେଶ କଲେ । ଗନ୍ଧର୍ବମାନେ ମର୍ତ୍ତ୍ୟ ରାଜକୁମାର ହୋଇ ଜନ୍ମ ହେବେ ଏବଂ ସେମାନେ ତିଳୋତ୍ତମାର ମର୍ତ୍ତ୍ୟ ଜନ୍ମ- ସ୍ଥାନରେ ପ୍ରାଣ ତେଜିବେ । ସର୍ବଶେଷରେ ଚିତ୍ରରଥ ମଧ୍ୟ ଶାପମୁକ୍ତ ହେବେ । "ହସ୍ତ ଧରାଧରି ହୋଇ ବେନି ହେଲେ ଶାପରେ ଯୁକ୍ତ, ହସ୍ତ ସ୍ପର୍ଶ ମାତ୍ରେ ମର୍ତ୍ତ୍ୟେ ବେନି ହେବେ ଶାପରୁ ମୁକ୍ତ" ଏହା କହି ଦେବୀ ଅନ୍ତର୍ଦ୍ଧାନ ହେଲେ । ଦେବୀଙ୍କ ଶାପ ଓ ଶାପମୋଚନ କାର୍ଯ୍ୟରେ ଫଳିଲା । ଉଷା ଓ ଜୟନ୍ତଙ୍କ ଶବକୁ ପୂର୍ବ ପରି ରାଜପୁରୁଷ ପରୀକ୍ଷାର୍ଥୀମାନଙ୍କ ଚିତାସ୍ଥଳରେ ସତ୍କାର କରାଗଲା । ରାଜା ଆଜ୍ଞାରେ ଉଷା-ଜୟନ୍ତଙ୍କ ସମାଧିସ୍ଥଳରେ ଏକ ମଣ୍ଡପ ନିର୍ମିତ ହେଲା । ଏହି ମଣ୍ଡପଟି ଉଷାମଣ୍ଡପ ନାମରେ କେଉଁକାଳରୁ ପରିଚିତ ହୋଇ ଆସୁଅଛି ଏବଂ ଉଷା-ଜୟନ୍ତର କରୁଣ କାହାଣୀକୁ ସ୍ମରଣ କରାଇ ଦେଉଛି ।

**ଜୟନ୍ତ**— ଜୟନ୍ତ ବୀର, ରାଜପୁତ୍ର, ଶାପଗ୍ରସ୍ତ ଗନ୍ଧର୍ବ । ସେ ବଳରେ ଶକ୍ତିଧରଙ୍କୁ ଲାବଣ୍ୟରେ କନ୍ଦର୍ପଙ୍କୁ ଜିଣିଥିଲେ । ଶସ୍ତ୍ର ଓ ଶାସ୍ତ୍ରରେ ଅପୂର୍ବ ବିଚକ୍ଷଣତା ଲାଭ କରିଥିଲେ । କୁଳରେ, ରୂପରେ, ବଳରେ, ବିଦ୍ୟାରେ ସେ ଉଚ୍ଚସ୍ଥାନ ଲାଭ କରିଥିଲେ । ମୃଗୟା-ବ୍ୟସନରେ ଏହି ବୀର ଯୁବକ ନିରନ୍ତେ ନିମଗ୍ନ ରହୁଥିଲେ । ଏହି ମୃଗୟାବ୍ୟସନର ଉପଯୋଗିତା କାବ୍ୟଟିରେ ସ୍ପଷ୍ଟ ହୋଇଛି ।

ନାୟକ ଓ ନାୟିକା ଉଭୟେ ମୃଗୟାପ୍ରେମୀ ଥିବାରୁ ଦୁହିଁଙ୍କର ପରିଚୟଲାଭର ସୂତ୍ରରୂପେ କବି ଏହାର ଅବତାରଣା କରିଛନ୍ତି । ଜୟନ୍ତର ମୃଗୟାନୈପୁଣ୍ୟ ଓ ଶସ୍ତ୍ରକ୍ଷେପ କୌଶଳ ନାୟିକା ଊଷାର ପ୍ରାଣରକ୍ଷାର କାରଣ ହୋଇଥିବାରୁ ପରିଚୟ-ପୂର୍ବରୁ ନାୟିକା ମନରେ ନାୟକ ପ୍ରତି କୃତଜ୍ଞତା ଓ ସ୍ନେହଭାବ ପ୍ରକାଶ ପାଇଛି । ମୃତ୍ୟୁମୁଖରୁ ବିପନ୍ନକୁ ରକ୍ଷା କରି ଜୟନ୍ତ ତାର ଅସ୍ତ୍ରବିଦ୍ୟା ଓ ମୃଗୟାବ୍ୟସନର ସାର୍ଥକତା ପ୍ରତିପାଦନ କରି ନିଜର ଚରିତ୍ରକୁ ଉଜ୍ଜ୍ୱଳ କରିଛି । ବିପନ୍ନ କାର୍ତ୍ତିକେୟବାହନ ମୟୂରକୁ ମୃଗୟା-ବିନୋଦୀର ଶରାଘାତରୁ ରକ୍ଷାକରି ଜୟନ୍ତ ବୀରତ୍ୱ ସହ କାରୁଣ୍ୟ ଓ ହୃଦୟବତ୍ତାର ପରିଚୟ ଦେଇ ସମ୍ମାନ ଲାଭ କରିଛି ଏବଂ ଦେବଙ୍କ-ଠାରୁ ବରପ୍ରାପ୍ତ ହୋଇଛି । ଏହି ବରହିଁ ତାଙ୍କ ଊଷାପ୍ରାପ୍ତିର ପ୍ରଧାନ ଉପାୟ ହୋଇଛି । ଅସ୍ତ୍ରବିଦ୍ୟା ତାଙ୍କ ଜୀବନର ପ୍ରଧାନ ଘଟଣାରେ ବୃହତ୍ତମ ଅଂଶ ଗ୍ରହଣ କରିଛି ।

ଶାସ୍ତ୍ର କ୍ଷେତ୍ରରେ ନାୟକଙ୍କର ବିଚକ୍ଷଣତାର ଉଲ୍ଲେଖ ମାତ୍ର କବି କରିଛନ୍ତି ; ଏହାର ଉପଯୋଗିତା ଅର୍ଥ ବା ଗଳ୍ପରେ ତା'ର ବିଶେଷ ଅଂଶ ନଥିବା ସ୍ପଷ୍ଟ ।

ଊଷାର ସ୍ୱୟମ୍ବରବାର୍ତ୍ତା ଜୟନ୍ତ କାର୍ତ୍ତିକେୟଙ୍କଠାରୁ ବରଲାଭ କରିବା ପରେ ଶୁଣିପାରିଥିଲେ । ଏହି ବର ଊଷାପ୍ରାପ୍ତିରେ ପ୍ରଧାନ ଉପାୟ ହୋଇଥିବାରୁ କବି ବରପ୍ରାପ୍ତି ପ୍ରସଙ୍ଗ ପୂର୍ବରୁ ବର୍ଣ୍ଣନା କରିଛନ୍ତି ଏବଂ ଜୟନ୍ତକୁ ଊଷା-ପ୍ରାପ୍ତି ରୂପକ ଦୁରୂହ ବ୍ୟାପାରରେ ଜୟୀ ହେବା ପାଇଁ ସର୍ବତୋଭାବେ ଗଠନକରି ଉପସ୍ଥାପିତ କରିଅଛନ୍ତି । ସୌନ୍ଦର୍ଯ୍ୟ, ବୀର୍ଯ୍ୟ, ବିଦ୍ୟା ସଙ୍ଗେ ଦୈବୀବର ଅନୁକୂଳ ଭାବରେ କାର୍ଯ୍ୟ କରି ଜୟନ୍ତକୁ ଯଶସ୍ୱୀ କରାଇ ଅଛି । କିନ୍ତୁ, ଊଷାପ୍ରାପ୍ତି ପ୍ରସଙ୍ଗରେ ଦୈବବରର ପ୍ରଭାବ ଅତ୍ୟଧିକ ସ୍ଥାନ ଲାଭ କରିଥିବାରୁ

କେବଳ ଏହାଦ୍ୱାରହିଁ ଜୟନ୍ତ ସଫଳକାମ ହୋଇଥିବା ଜଣାପାଇଛି । ଜୟନ୍ତର ଶୌର୍ଯ୍ୟ ବୀର୍ଯ୍ୟର ପ୍ରାଧାନ୍ୟ ଏକାନ୍ତ ଭାବରେ ପ୍ରକାଶ ପାଇ ନଥିବାରୁ ଏହି କ୍ଷେତ୍ରରେ ତାର ଶୌର୍ଯ୍ୟବୀର୍ଯ୍ୟର ଗୌଣତ୍ୱ ପ୍ରକଟିତ ହୋଇଛି । ଉଷାପ୍ରାପ୍ତିରେ ଜୟନ୍ତ ଏକାକୀ ସ୍ୱଶକ୍ତିଦ୍ୱାରା ଉଷାକୁ ପରାଜିତ କରି ପାରିନାହାନ୍ତି ।

ଜୟନ୍ତ ପିତୃଭକ୍ତ ଥିବା ଜଣାଯାଏ । କାର୍ତ୍ତିକେୟଙ୍କଠାରୁ ବର ପାଇବା ପରେ ଉଷା ସ୍ୱୟମ୍ବରର ବୃତ୍ତାନ୍ତ ଶ୍ରବଣ କରି 'ନିଜ କରଗତ ପରାୟେ ମଣିଲା ସ୍ୱର୍ଗନଶୁଣି ।' ଏହି ଅବସ୍ଥାରେ ସେ ସ୍ୱୟମ୍ବରକୁ ଯିବା ଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ "ବୈଷ୍ଟ ଶଙ୍କା" ଯୋଗୁଁ ପିତା ତାଙ୍କୁ ବାରଣ କଲେ । ପିତାଙ୍କ ଶିରୋଧାର୍ଯ୍ୟ କରି ସେ ଶିଷ୍ଟକାଳ ଭିତରେ ସ୍ୱୟମ୍ବରରେ ଯୋଗ ଦେଇନାହାନ୍ତି ।

ମୃଗୟା ନିମିତ୍ତ ବନବିହାର ସମୟରେ ନାୟିକାଙ୍କୁ ଜୟନ୍ତ ପ୍ରଥମେ ଦେଖିଥିଲେ; ଅପରିଚିତା ସୁନ୍ଦରୀ ଯୁବତୀକୁ ସଖୀମେଳରେ ଦେଖି "ବିସ୍ମୟ ଜଳରେ ବୁଡ଼ିଯାଇଥିଲେ ଏବଂ ନାୟିକାର ଅପୂର୍ବ ରୂପ ଲାବଣ୍ୟର ପ୍ରଶଂସା କରିଥିଲେ । ଏହି ରମଣୀ ନିରୁ ରାଜଜେମା ହେବା ଅନୁମାନ କରି "ଏ-ରୂପର ଯୋଗ୍ୟ ଅଛି ବିନା ସେ ଦାରୁଣ ପଣ" ବୋଲି କହିଥିଲେ । ପ୍ରଥମ ଦର୍ଶନରେ ସୁନ୍ଦରୀ ଉଷା ପ୍ରତି ଜୟନ୍ତର ସମ୍ମାନ-ସ୍ନେହ-ବୀଜ ଅଙ୍କୁରିତ ହୋଇଥିଲା ଏବଂ ସ୍ୱୟମ୍ବରରେ ଯୋଗ ଦେବା ପାଇଁ ତାଙ୍କୁ ଉତ୍ସାହିତ କରିଥିଲା । ଉଷାଙ୍କ ପିତାଙ୍କୁ ନିଜ ପରିଚୟ ଦେବା ବେଳକୁ ଜୟନ୍ତର ଅବସ୍ଥା ଏହିପରି ଥିଲା—"ଉଷାଗତ ପ୍ରାଣ, ଉଷା ତାର ଧ୍ୟାନ, ଉଷା ସେ ଗତି" ଏବଂ ଉଷାକୁ ଲାଭ ନ କଲେ ତେବେ ପ୍ରାଣରେ ବର୍ତ୍ତି ପାରିବ ନାହିଁ ।

ଯୁବତୀ ଉଷାଙ୍କର ସୌନ୍ଦର୍ଯ୍ୟ ଉପଭୋଗ କରିବା ଅଭିଳାଷ ଯୁବକ ଜୟନ୍ତଙ୍କ ମନରେ ସ୍ଥାନ ପାଇବା ସ୍ୱାଭାବିକ ହେଲେ ମଧ୍ୟ ସେ ଉଷାଙ୍କୁ ନିଜର ଜୀବନସଙ୍ଗିନୀ ଓ ସହଧର୍ମିଣୀ କରିବା ପାଇଁ ବ୍ୟାକୁଳ ; ତାଙ୍କୁ 'ଶୟନେ ସ୍ୟନ୍ଦନେ, ବିଜୟେ, ଶଙ୍କଟେ, ଯୋଗ୍ୟ ସଙ୍ଗିନୀ'' କରିବା ପାଇଁ ବଦ୍ଧପରିକର । 'ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍' । ବୀରାଙ୍ଗନା ଉଷା ସ୍ୱ ଗୁଣଦ୍ୱାରା ବୀରଜୟନ୍ତର ମନକୁ ହରଣ କରିଥିବାରୁ ଜୟନ୍ତ ତାର ପ୍ରେମରେ ''ଉନ୍ମତ୍ତ'' ହୋଇ ପଡ଼ିଥିଲେ । ଉଷାଙ୍କ ପ୍ରତି ଜୟନ୍ତର ଅଭିଳାଷ ଓ ଲକ୍ଷ୍ୟ ଦେହାତୀତ ଥିବାରୁ ସର୍ବତୋଭାବେ ଶୀଳତାପୂର୍ଣ୍ଣ ହୋଇଛି ।

ବୀର ଜୟନ୍ତ ଅତ୍ୟନ୍ତ ଭଦ୍ର ଥିଲେ । ପିତାମାତା, ଦେବଦେବୀ, ଗୁରୁଜନ ପ୍ରଭୃତିଙ୍କ ପ୍ରତି ତାଙ୍କର ବିନୟ ଓ ଭଦ୍ର ବ୍ୟବହାର ଏହାର ନିଦର୍ଶନ ।

**ଉଷା**—କବି ଉଷାଙ୍କୁ ଜଣେ ଉଚ୍ଚକୁଳସମ୍ଭୂତା, ଶିକ୍ଷିତା, ବୀରା, ପରମାସୁନ୍ଦରୀ ନାରୀ ରୂପେ ଚିତ୍ରଣ କରିଛନ୍ତି । ସେ ପିତା-ମାତାଙ୍କର ଏକମାତ୍ର ସନ୍ତତି ଥିବାରୁ ଅତି ସ୍ନେହ ଓ ଆଦରର ପାତ୍ର ହୋଇଥିଲେ ମଧ୍ୟ ଏହି ପରିବେଷ୍ଟନୀ ଭିତରେ କେବଳ ''କୋମଳାଙ୍ଗୀ'' ହେବା ହିଁ ତାଙ୍କ ପକ୍ଷରେ ସମ୍ଭବ ଥିଲା । କିନ୍ତୁ ସେ କୋମଳାଙ୍ଗୀ, ଆଦରର ଦୁଲଣୀ ହେବା ସଙ୍ଗେ ସଙ୍ଗେ ପଣ୍ଡିତା, ବୀରାଙ୍ଗନା ଓ ସାହସିନୀ ମଧ୍ୟ ଥିଲେ । ଅପୂର୍ବରୂପସମ୍ଭାର-ଅଧିକାରିଣୀ ଉଷାଙ୍କୁ ମୃଗୟାକୁଶଳା ରୂପରେ ମଧ୍ୟ ଚିତ୍ରଣ କରି କବି ତାଙ୍କୁ ଏକ ବିଶିଷ୍ଟ ଶ୍ରେଣୀର ନାୟିକାଶ୍ରେଣୀ କରିପାରିଛନ୍ତି । ଶାପଭ୍ରଷ୍ଟା ତିଳୋତ୍ତମାର ମର୍ତ୍ତ୍ୟଲୀଳା ନିମନ୍ତେ ମାନବୀ ଜନ୍ମଗ୍ରହଣରେ କବି ଉଚ୍ଚ-ଶ୍ରେଣୀ ଓ କ୍ଷତ୍ରିୟ ବଂଶର ଅବତାରଣା କରି ସାମାଜିକ ଦୃଷ୍ଟିରେ ସ୍ତରମର୍ଯ୍ୟାଦା ରକ୍ଷା କରିବା ପାଇଁ ଚେଷ୍ଟିତ ଥିବା ଜଣାପଡ଼ୁଛି ।

"ଜନନେତ୍ରରେ ଲାବଣ୍ୟମଞ୍ଜୁଳା ରୂପମଞ୍ଜୁଷା" ଉଷା ବାଲ୍ୟାବସ୍ଥାରୁ "ମୃଗୟା କୌଶଳ" ଲକ୍ଷ୍ୟ କରିବାରେ ମନ ନିବିଷ୍ଟ କରି "ସାହସ, ସାଧ୍ୱସ, ସେହ, ମାୟା" ପ୍ରଭୃତି ଚାରି ଲକ୍ଷ୍ୟ କରୁଥିବାରୁ "ମୃଗୟା-ଦୁଃଖ"କୁ ସେ "ଗୃହସୁଖ" ଅପେକ୍ଷା ଶ୍ଳାଘ୍ୟ ମନେ କଲେ । ବୟସର ବୃଦ୍ଧି ସଙ୍ଗେ "ଯୁବତୀ-ସୁଲଭ ସୌନ୍ଦର୍ଯ୍ୟ" "ପ୍ରଖର ଶୌର୍ଯ୍ୟ" ସଙ୍ଗେ ମିଶ୍ରିତ ହେବାରୁ ଉଷା "ରୁଦ୍ର ସୁନ୍ଦର" ରୂପ ଧାରଣ କଲେ । କବି ଉଷାଙ୍କର "ପ୍ରଖର ଶୌର୍ଯ୍ୟ"କୁ ସମର୍ଥନ ଓ ପ୍ରଶଂସା କରିଥିବା ସ୍ପଷ୍ଟ । ଉଷାର ବନ ବିହାର ଓ ମୃଗୟାବିନୋଦ ସ୍ୱୟମ୍ବର-ପଣର ମୁଖ୍ୟ ବିଷୟ—"ସଂସାରେ ତା ସଙ୍ଗେ ଗତିବେଗେ କେହି ନଥିଲେ ସରି"ର କାରଣ; ଏହି ଶକ୍ତିକୁ ଉଷା "ପଶୁଙ୍କୁ ଗୋଡ଼ାଇ ଦ୍ରୁତଚରଣେ" ଅଭ୍ୟାସରୁ ଲାଭ କରିଥିଲେ । ଏହି ମୃଗୟାଯୋଗୁଁ ଜୟନ୍ତର ନାମ ସହିତ ସେ ପରିଚିତ ହୋଇଥିଲେ ଏବଂ ଜୟନ୍ତ ମଧ୍ୟ ତାଙ୍କର ଜୀବନରକ୍ଷା କରିବାର ଅବକାଶ ପାଇଥିଲେ ଏବଂ ତାଙ୍କ "ପ୍ରେମରେ ଉନ୍ମତ୍ତ" ହୋଇଥିଲେ । ଉଷାଙ୍କର ବନବିହାର ଓ ମୃଗୟା ତାଙ୍କର ଜୀବନ-ସଙ୍ଗୀ ନିର୍ବାଚନରେ ସହାୟକ ହୋଇଥିଲା ।

ରଙ୍ଗସ୍ଥଳରେ ଜୟନ୍ତଙ୍କୁ ଦେଖି ରାଜବାଳା ସ୍ତମ୍ଭିତ ହୋଇ ଗଲେ ଏବଂ ତାଙ୍କ ମନରେ ଜୟନ୍ତ ପ୍ରତି ପ୍ରଗାଢ଼ ଅନୁରାଗ ସ୍ୱତଃ ଜାଗ୍ରତ ହେଲା । ପୂର୍ବରେ ସେ "ପ୍ରଣୟ ପ୍ରସଙ୍ଗ"କୁ ମନରୁ ଦୂର କରିଥିଲେ । ଏବେ ଜୟନ୍ତ ଦର୍ଶନ ପରେ ତାଙ୍କର "ଅଙ୍କୁରିଲା ହୃଦୟେ ଉଦ୍ଦାମ-ପ୍ରେମ ଅଙ୍କୁର ।" ଉଷାର ଏହି ସମୟର ମାନସିକ ଭାବରାଶି ଓ ଦୈହିକ ଅବସ୍ଥା କବି ସଯତ୍ନ ସ୍ୱାଭାବିକ ଭାବରେ ବର୍ଣ୍ଣନା କରି ନାୟିକର ଏକ ଉଚ୍ଚକୋଟୀର ଚିତ୍ର ପ୍ରଦାନ

କରିଛନ୍ତି; ମାତ ସ୍ତ୍ରୀବନା କମ୍ଭା ଅନଙ୍ଗ ତାଡ଼ନା ତାଙ୍କ ହୃଦୟରେ ସ୍ଥାନ ପାଇନାହିଁ ।

ଉଷା ହର୍ଷ ବିଷାଦପୂର୍ଣ୍ଣ ହୃଦୟରେ ହୃଡ଼ରେ ଉତ୍କଣ୍ଠକାର୍ଯ୍ୟ ହେଲେ ଜୟନ୍ତର ମୃତ୍ୟୁର ଚିତ୍ର ଅଙ୍କନ କରି ଅସ୍ଥିର ହେବା ହେବା ସଙ୍ଗେ ସଙ୍ଗେ ପରୋପକାରୀ ଓ ଜୀବନରକ୍ଷକ ପ୍ରତି କୃତଜ୍ଞତା ପ୍ରକାଶ କରିବାରେ ହେଳା କରିନାହାନ୍ତି ।

ଆହା କାଲି ପ୍ରାଣ ବଞ୍ଚାଇଲା ବନେ ମୋର ଯେ ଜନ
ଧିକ ଶତାଧିକ ମୋ ପାଇଁ ଆଜ ସେ ଦେବ ଜୀବନ ।

ଉଷାର ଉନ୍ନତ ମାର୍ଜିତ ରୁଚି ହୃଦୟବତ୍ତାର ଓ ମହାନ୍ ଚରିତ୍ରର ପରିଚୟ ଏଥିରୁ ସ୍ପଷ୍ଟ ହେଉଛି ।

ହୃଦୟର ଆବେଗରେ ପ୍ରେମୋନ୍ମତ୍ତା ଉଷା ପଣକୁ ଧିକ୍କାର କରିଛନ୍ତି ଏବଂ ପଣ ନଥିଲେ ସେ ଯେ ଜୟନ୍ତଙ୍କୁ ଆଦରେ ଗଳାର ହାର କରିଥାନ୍ତେ ଏହା ବ୍ୟକ୍ତ କରିଛନ୍ତି । ଜୟନ୍ତର ମୃତ୍ୟୁ ସଙ୍ଗେ ତା ନିଜର ମୃତ୍ୟୁ ହେବା ସଂକଳ୍ପ କରି ଉଷା ନିଜର ହୃଦୟ ଦେବତା ପ୍ରତି ପ୍ରଗାଢ଼ ପ୍ରେମର ପରିଚୟ ଦେଇ ଏକପ୍ରକାର ଆଦର୍ଶ ସ୍ଥାପନ କରନ୍ତି । ଉଷା ଓ ଜୟନ୍ତ ଜାତସ୍ମର ନହେଲେ ମଧ୍ୟ କବି ଘଟନା ପ୍ରବାହକୁ ପୂର୍ବକଳ୍ପିତ ଲକ୍ଷ୍ୟ ପ୍ରତି ଟାଣି ନେଉଥିବାରୁ ଏପରି ପ୍ରେମ ଓ ସଂକଳ୍ପର ଅବତାରଣା କରିଥିବା ସ୍ୱାଭାବିକ । କାରଣ, ଚିତ୍ରରଥ ଓ ତିଲୋତ୍ତମାଙ୍କ ସମ୍ପର୍କ ଅତୁଟ ରହିଛି, ଉଭୟେ ଏକ ସଙ୍ଗରେ ଶାପଗ୍ରସ୍ତ ହୋଇଅଛନ୍ତି ଏବଂ ଏକ ସଙ୍ଗରେ ଶାପମୁକ୍ତ ହୋଇଛନ୍ତି ।

ଜୟନ୍ତ ସ୍ୱୟମ୍ବରରେ ପ୍ରାର୍ଥୀ ହେବାବେଳେ ଉଷାଙ୍କର କାର୍ଯ୍ୟକଳାପ ତାଙ୍କ ଚରିତ୍ରକୁ ନ୍ୟୁନ କରି ଦେଇଛି । ଯେଉଁ ହୃଡ଼ରେ ଉଷା ଅଟଳ ରହିବାରୁ ବହୁ ଯୁବକ ପ୍ରାଣ ହରାଇଛନ୍ତି

ସେଥିରେ ସେ ଜୟନ୍ତଙ୍କ ବେଳକୁ ପ୍ରତିଜ୍ଞାପାଳନରେ ଶିଥିଳ ହୋଇ ଯାଇଛନ୍ତି । ସ୍ୱର୍ଣ୍ଣକମଳର ଲୋଭରେ ସେ ନିଜ କର୍ତ୍ତବ୍ୟରେ. ହେଳା କରିଛନ୍ତି ; ଏହାଦ୍ୱାରା ସେ ନାରୀଜାତିର ତଥାକଥିତ ଅଳଙ୍କାର-ପ୍ରିୟତା ଅପବାଦର ଏକ ଦୃଷ୍ଟାନ୍ତ ହୋଇପଡ଼ିଛନ୍ତି । ପୁଣି, ଏହାଦ୍ୱାରା ପଣର ପବିତ୍ରତା ଓ କଠୋରତାର ମର୍ଯ୍ୟାଦାରେ ହାନି ଘଟିଛି ।

ପଣରେ ପରାଜୟ ଲାଭ କରି ଉଷା ନିଜକୁ ଭାଗ୍ୟବାନ ମନେ କରିଥିବା ସ୍ୱାଭାବିକ; କାରଣ, ସେ ଜୟନ୍ତଙ୍କୁ ମନେ ମନେ ନିଜର ପତିରୂପେ ବରଣ କରିସାରିଥିଲେ । ଜୟନ୍ତ ପରାସ୍ତ ହୋଇଥିଲେ ଉଷା ତାଙ୍କ ଚିତାନଳରେ ଝାସ ଦେବା ପାଇଁ ସଂକଳ୍ପ ମଧ୍ୟ କରିଥିଲେ । "ପ୍ରେମ ଐନ୍ଦ୍ରଜାଳିକ"ର ଅଦ୍ଭୁତ କୌଶଳ କିଣ ବା ଘଟାଇ ନ ପାରେ ? "ଜୟଠାରୁ ତାର ପରାଜୟ ଆଜ ପ୍ରିୟ ଅଧିକ ।"

କବି ବୈବାହିକ ପରିଣତି ମୁଖ୍ୟ ଘଟନାପ୍ରବାହ ପ୍ରତି ଲକ୍ଷ୍ୟ ରଖିଥିବାରୁ ନାୟିକା କିମ୍ବା ନାୟକର ଜୀବନର ଅନ୍ୟାନ୍ୟ ବିଭାବ ପ୍ରତି ଧ୍ୟାନ ଦେଇନାହାନ୍ତି । ଏହି କାରଣରୁ ଘଟନା ସମର୍ଥିତ ବିଭିନ୍ନ ଦିଗରୁ ଚରିତ୍ର ପ୍ରକାଶର ଅବକାଶ ଏହି କାବ୍ୟରେ ମିଳିବା ସମ୍ଭବ ହୋଇନାହିଁ ।

**ସ୍ଥାନ ବର୍ଣ୍ଣନା :**—ଉଷା କାବ୍ୟରେ ଆଖ୍ୟାନ ଭାଗ ସଙ୍ଗେ ଉତ୍କଳର ଉତ୍ତର-ପୂର୍ବ ଅଞ୍ଚଳର ବହୁ ବିଶିଷ୍ଟ ସ୍ଥାନର ବର୍ଣ୍ଣନା ଭାଗ ତୁଳନା କଲେ ସ୍ଥାନ-ବର୍ଣ୍ଣନାର ବିସ୍ତୃତି ଓ ପ୍ରାଧାନ୍ୟ ନ୍ୟୂନ ଥିବା ଜଣାଯାଏ ନାହିଁ । ସ୍ଥାନ ବର୍ଣ୍ଣନାରେ ମାଦକତା ଓ ସୂକ୍ଷ୍ମଦୃଷ୍ଟି ଏତେ ବେଶି ପରିମାଣରେ ପ୍ରକାଶ ପାଇଛି ଯେ ଏହି ଭାଗଟିର ପ୍ରାଧାନ୍ୟକୁ ଉପେକ୍ଷା କରି ହୁଏ ନାହିଁ ଏବଂ ମନେହୁଏ, କାବ୍ୟର

ଆଖ୍ୟାନ ଅଙ୍ଗ ସହିତ ଏହାର ସ୍ୱର-ସାମ୍ୟ ରକ୍ଷା କରାଯାଇ ପାରି ନଥିବାରୁ କାବ୍ୟର ଆଖ୍ୟାନ ଅଙ୍ଗ କେତେକ ପରିମାଣରେ ନଷ୍ଟ ହୋଇପଡ଼ିଛି ।

କବି ମୟୂରଭଞ୍ଜ, ନୀଳଗିରି, ବାଲେଶ୍ୱର ସଦର ଓ ଜିଲ୍ଲାର ବହୁ ପ୍ରସିଦ୍ଧ ସ୍ଥାନର ପ୍ରାଧାନ୍ୟର ଉଲ୍ଲେଖ କରିଛନ୍ତି ଏବଂ ଏହା ସଙ୍ଗେ ସଙ୍ଗେ ପ୍ରୟୋଜନାନୁଯାୟୀ ପୌରାଣିକ ଓ ଐତିହାସିକ କିମ୍ବଦନ୍ତୀର ଅବତାରଣା କରି ଚିତ୍ରଗୁଡ଼ିକ ଆକର୍ଷଣଶକ୍ତିସମ୍ପନ୍ନ କରିପାରିଛନ୍ତି । ମୟୂରଭଞ୍ଜର ନାମକରଣ ସମ୍ବନ୍ଧରେ କବି କାର୍ତ୍ତିକେୟଙ୍କ ମହେନ୍ଦ୍ରଗିରି (କବିଙ୍କ ବର୍ଣ୍ଣନାରେ ତାହା ବାଲେଶ୍ୱର ଓ ମୟୂରଭଞ୍ଜର ପଶ୍ଚିମାଞ୍ଚଳର ପର୍ବତମାଳା) ପରିଦର୍ଶନ ଓ ତାଙ୍କ ବାହନ ମୟୂରର ବିପତ୍ତି, ବିପତ୍ତିରୁ ତାକୁ ହେମପୁରର ରାଜା ବାହନପତିଙ୍କ କୁମାର ଜୟନ୍ତଙ୍କ ରକ୍ଷା, କାର୍ତ୍ତିକେୟଙ୍କ ସନ୍ତୋଷ ଓ ଜୟନ୍ତଙ୍କୁ ବରଦାନ, କାର୍ତ୍ତିକେୟ ସ୍ୱସ୍ଥାନକୁ ବାହନ ଉପରେ ବସି ଶୂନ୍ୟରେ ଉଡ଼ିଯିବାବେଳେ ବାହନର ପକ୍ଷୀଟିଏ ତଳେ ପଡ଼ିଯିବାରୁ ତାକୁ ଜୟନ୍ତ ନେଇ ପିତାଙ୍କୁ ଦେବା, ଏହି ପକ୍ଷୀକୁ ରାଜା ମୁକୁଟରେ ଭୂଷା ରୂପେ ପିନ୍ଧିବାରୁ ସେହିଦିନୁ ହେମପୁର ରାଜ୍ୟର ନାମ ମୟୂରଭଞ୍ଜ ହେବା ଏବଂ ସେହି ରାଜ୍ୟରେ 'ମୟୂରବଧ ନିଷେଧ' ହେବା ପ୍ରସଙ୍ଗ କବି କୌଶଳପୂର୍ଣ୍ଣ ଭାବରେ ଅବତାରଣା କରିଛନ୍ତି । ମୟୂରଭଞ୍ଜର ରାଜକୁମରଙ୍କୁ କାବ୍ୟର ନାୟକ କରିଥିବାରୁ ମୟୂରଭଞ୍ଜର ନାମୋତ୍ପତ୍ତିର ବିବରଣ ଦେବାପାଇଁ କବି ଅବସର ପାଇଛନ୍ତି । ସେହିପରି ଉଷାକୁ ବାଲେଶ୍ୱର ନଗରର ଅଂଶ ବିଶେଷ ନୂଆପୁରର ରାଜାଙ୍କ ରାଜଜେମା କରିଥିବାରୁ ବାଲେଶ୍ୱର ଓ ତନ୍ନିକଟବର୍ତ୍ତୀ ବହୁ ପ୍ରସିଦ୍ଧ ସ୍ଥାନର ସ୍ଥୂଳ ବିବରଣ ସୂଚନାରେ ଦେଇଛନ୍ତି । ମାଣିକ୍ୟଖମ୍ବର କିମ୍ବଦନ୍ତୀକୁ କବି ଚାତୁର୍ଯ୍ୟ-

ପୂର୍ଣ୍ଣ ଭାବରେ ବ୍ୟବହାର କରି ସ୍ଥାନର ବିଶେଷତ୍ୱ ପ୍ରତିପାଦନ କରିବାରେ ସମର୍ଥ ହୋଇଛନ୍ତି । ସ୍ୱଳ୍ପ ଅବକାଶରେ କବି ଉତ୍କଳର ବହୁ ବିଶିଷ୍ଟ ସ୍ଥାନ ଓ ରାଜବଂଶର ଉଲ୍ଲେଖ କରି ଓଡ଼ିଶାର ଏକ କ୍ଷୀଣ ଅଥଚ ସ୍ପଷ୍ଟ ଚିତ୍ର ଦେଇଛନ୍ତି । ଅବଶ୍ୟ ଏଥିରୁ ପ୍ରାକୃତିକ ଓଡ଼ିଶାର ବିସ୍ତୃତିର ପୂର୍ଣ୍ଣ ଚିତ୍ର ମିଳୁ ନଥିଲେ ମଧ୍ୟ କେତେକାଂଶର ସ୍ପଷ୍ଟ ପରିଚୟ ମିଳୁଛି । କବି ଦକ୍ଷିଣ ଓଡ଼ିଶାର ଜୟପୁରାଦି ରାଜ୍ୟ, ଉତ୍ତର ଓଡ଼ିଶାର ମେଦିନୀପୁର, ସିଂହଭୂମି ଆଦି ରାଜ୍ୟ, ପଶ୍ଚିମ ଓଡ଼ିଶାର ମଧ୍ୟ ବହୁ ରାଜ୍ୟର ନାମୋଲ୍ଲେଖ କରି ନଥିବାରୁ ଏହି ବିବରଣୀଟି ପୂର୍ଣ୍ଣାଙ୍ଗ ନଥିବା ସ୍ପଷ୍ଟ ହେଉଥିଲେ ମଧ୍ୟ କବିଙ୍କ ଆବଶ୍ୟକତା ଦୃଷ୍ଟିରେ ଏହା ତ୍ରୁଟିରୂପେ ବିବେଚିତ ହୋଇ ନପାରେ । କବି ଓଡ଼ିଶା ବାହାରେ ଭାରତର ଅନ୍ୟ କୌଣସି ପ୍ରଦେଶର ସ୍ଥାନର ଉଲ୍ଲେଖ କରି ନାହାନ୍ତି ।

**ପ୍ରାକୃତିକ ବର୍ଣ୍ଣନା :**—ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ କବି ପ୍ରାଚୀନ କବିମାନଙ୍କ ତୁଲ୍ୟ ଉପମାବହୁଳ, କବିତ୍ୱପୂର୍ଣ୍ଣ ଚିତ୍ର ଦେଇ ପାରିନଥିଲେ ମଧ୍ୟ ଦୃଶ୍ୟଗୁଡ଼ିକ ସ୍ୱାଭାବିକ ଶୋଭାରେ ମନକୁ ମୁଗ୍ଧ କରୁଛି ।

ରେମୁଣା ନିକଟସ୍ଥ ସପ୍ତସ୍ରୋତଶିରସ୍ଥ ମହାରଣ୍ୟର ବର୍ଣ୍ଣନାରେ କବିଙ୍କ ସିଦ୍ଧଲେଖନୀର ରଚନା ଅମର ହୋଇଛି ; ଚିତ୍ରଟି ଜୀବନ୍ତ ଓ ଅତି ରମଣୀୟ ହୋଇଛି । 'ଝିଲ୍ଲି-ଝଙ୍କାରିତ' ଏହି ମହାରଣ୍ୟ ନାନା 'ବନସ୍ପତି-ବ୍ରତତୀମାନେ' ସଦା ସୁଶୀତଳ ଥିଲା । ଏହି ମହାଘୋର ଅରଣ୍ୟରେ ପ୍ରବେଶ କରିବା ପାଇଁ କାକ ସୁଦ୍ଧା ଭୟ କରୁଥିଲା । ଅଶନ, ଶିଂଶୁପା, କକୁଦ ଆଦି ଗହନ ବୃକ୍ଷମାନଙ୍କରେ ସ୍ଥଳୀଟି ଗହଳ ଥିବାରୁ ଅତି ଅନ୍ଧକାର ଦେଖାଯାଉଥିଲା ଏବଂ 'କୃଷ୍ଣପକ୍ଷ ଅନ୍ଧକାରପାକ' 'ପୁଞ୍ଜିତ' ହୋଇଥିଲା ପରି ମନେ

ହେଉଥିଲା । ଠାବେ ଠାବେ ସଜଳ-ଜଳୀ ସରୋଜରେ ଅଳଂକୃତ ହୋଇ ଶୋଭାପାଉଥିଲା । ଅଦୂରରେ ନଳବନାକୀର୍ଣ୍ଣ ବିସ୍ତୀର୍ଣ୍ଣ ସର । ଏହି ସରର ଶୋଭା ଓ ବନର ଶୋଭାକୁ କବି ଅଳ୍ପ ସାର୍ଥକ ପଦରେ ବର୍ଣ୍ଣନା କରି ଜୀବନ୍ତ କରିଛନ୍ତି ଏବଂ ନାୟକ ଓ ନାୟିକାର ମୃଗୟା-ଉପଯୋଗୀ କରିବା ପାଇଁ ଚେଷ୍ଟା କରି କୃତକାର୍ଯ୍ୟ ହୋଇଛନ୍ତି । ଏହି ମହାରଣ୍ୟର ବିଶେଷତ୍ୱ ଉଭୟଙ୍କୁ ଆକର୍ଷଣ କରି ପାରିଛି ।

ଉଷାକାଳର ସୁନ୍ଦର ଚିତ୍ରଟିଏ କବି ଦେଇପାରିଛନ୍ତି । 'ଦେବୀ ବିଶ୍ୱ-ହେ୍ୟାତିମୀ' 'ଉଷା' ସାଗରଶୟନ ପରିହାର କରି ନଭ ଓ ମେଦିନୀକୁ ପ୍ରବାଳ ପାଟଳ ଆଲୋକରେ ରଞ୍ଜିତ କଲେ । କୋକବଧୂ ସଙ୍ଗେ କମଳନୀ ଉଷାର ବନ୍ଦନା କଲା । ସମୁଜ୍ଜ୍ୱଳ ବେଶରେ ଗୌରିକରେ ହିଗାଙ୍ଗନାମାନେ ଶୋଭା ପାଇଲେ, ପ୍ରାଚୀତରୁଣୀ ନାନାଅଙ୍ଗରାଗରେ ସୁରଞ୍ଜିତ ହେଲେ । ଶୈଳମୟୀ ବାରୁଣୀ ଚତୁର୍ଦ୍ଦିଗ ବନ ଶୋଭା ବିକଶିଲେ । ଶ୍ୟାମଳ ଭୂଧରଗଣ ଉଷାରକ୍ତାଂଶୁକ ରଞ୍ଜିତ ହୋଇ କି ସୁନ୍ଦର ରୂପ ଧାରଣ କଲେ !

ଲଳିତ ମାର୍ଜିତ ପଦାବଳୀ ଓ ସୁନ୍ଦର ସରସ ଉପମାର ସଂଖ୍ୟା ଅଳ୍ପ ହେଲେ ମଧ୍ୟ ଚିତ୍ରଟି ଅତୀବ ରମଣୀୟ ହୋଇଛି ।

ମଧ୍ୟାହ୍ନ ସମୟରେ ମୃଗୟା-ବନ ଶୋଭାର ସୁନ୍ଦର ଚିତ୍ରଟିଏ ଅଳ୍ପସଂଖ୍ୟକ ପଦରେ କବି ଫୁଟାଇ ପାରିଛନ୍ତି । ଉଷା ଓ ଜୟନ୍ତର ପ୍ରଥମ ପରିଚୟର ସ୍ଥଳକୁ ଲକ୍ଷ୍ୟ ସାଧନ ଉଦ୍ଦେଶ୍ୟରେ କାଳୋପ-ଯୋଗୀ ଓ ସ୍ଥଳୋପଯୋଗୀ କରି ପାରିଛନ୍ତି । ମୃଗୟା ଉଦ୍ଦେଶ୍ୟରେ ନୃପଜେମା ଉତ୍ସୁକରେ ସରସୀ କୂଳେ ବସି ବନପଶୁଙ୍କ ଆଗମନକୁ ଲକ୍ଷ୍ୟ କରୁଥିଲା । ମଧ୍ୟାହ୍ନର ରୌଦ୍ରତାପ, ବନ୍ୟଶୂକରଙ୍କ ଜଳ-ପଙ୍କଲେଭ, ପ୍ରଭୃତି ବିଷୟର ଅବତାରଣା ଆଖ୍ୟାନର ସମୟକାଳଶୀଳ ଗତିର ଅନୁକୂଳ ହୋଇଛି । କବି ଏହିଠାରେ ପ୍ରକୃତିଦେବୀଙ୍କୁ

ଜୀବନଦାନ କରିଛନ୍ତି; ପ୍ରାଣୀକୁଳ ସମଧର୍ମୀ କରିଛନ୍ତି, ଏହାପରର "ବାସର ଯୌବନ ଶୋଷା"ରୁ ଏହା ସୂଚିତ ହେଉଛି ।

**ରୂପବର୍ଣ୍ଣନା :**—କାବ୍ୟଟିରେ ଉଷାର ଯୌବନଶୋଭା ଓ ମୃଗୟା ବିନୋଦନ ସମୟର ତାର ଶୋଭାର ଅତି ରମଣୀୟ ଚିତ୍ରଟିଏ କବି ଦେଇପାରିଛନ୍ତି । କବି ଲାବଣ୍ୟମୟୀ ଉଷାକୁ ମର୍ତ୍ତ୍ୟ-ଲୋକରେ ଅତୁଳନୀୟ କରିବା ଲକ୍ଷ୍ୟରେ ବହୁ ପ୍ରଶଂସା କରିଛନ୍ତି । ଛଇଳା ଯୌବନସୀମା ଛୁଇଁବାରୁ ତାର ରୂପଗରିମା ଉପମା ସୃଷ୍ଟିକୁ ବୁଡ଼ାଇ ଦେଲା । ମର୍ତ୍ତ୍ୟଲୋକରେ ତା ସମାନ ମହିଳା ନାହାନ୍ତି; ସ୍ୱର୍ଗର ଶଚୀ ଦେବୀ ଅବା ତାର ସମକକ୍ଷ ହେଲେ ହୋଇ ପାରନ୍ତି; ସିନ୍ଧୁଦୁଲଣୀ ଅମଳକମଳାନନା ଲୀଳା-ଅରବିନ୍ଦଧାରଣୀ ଲକ୍ଷ୍ମୀ ବା ସମକକ୍ଷ ହୋଇ ପାରନ୍ତି ।

କବି ମୃଗୟାବିନୋଦିନୀ ଉଷାର ରୂପବର୍ଣ୍ଣନା ଅତି ଚମତ୍କାର ଭାବରେ କରିଛନ୍ତି ; ଉଷାର ସେ ମୁଗ୍ଧ-ସୁନ୍ଦରରୂପର ଚିତ୍ରଟି ଚକ୍ଷୁ ସମ୍ମୁଖରେ ଦଣ୍ଡାୟମାନ ହୋଇଯାଉଛି, ଏହିଥିରେହିଁ କବିଙ୍କର କବିତ୍ୱ ସାର୍ଥକତା ଲାଭକରିଛି ।

ସଖୀ ମେଳରେ ଅପୂର୍ବ ଲାବଣ୍ୟମୟୀ ଉଷା "କନକବଲ୍ଲୀ ମଧ୍ୟେ କି ବିହରେ ସ୍ଥିର ହ୍ଲାଦିନୀ, ତାରକାମାନଙ୍କ ମେଳରେ କିଅବା ରୋହିଣୀ" ସଦୃଶ ଦେଖାଯାଉଥିଲା । ଉଷାର ଆନିତମ୍ବଲମ୍ବୀ କେଶ-ଗୁଚ୍ଛ ପୃଷ୍ଠଦେଶକୁ ଶୋଭୁଛି ; ବେଣୀକୁ ଦେଖି ନୀଳଭୁଜଙ୍ଗର ଭ୍ରମ ହେଉଛି । ସ୍ୱର୍ଣ୍ଣସାରସନେ କୃଶୋଦରୀର କୃଶକଟି ଜଡ଼ିତ ହୋଇଛି । ଲଳିତ ସଞ୍ଚ ଘଞ୍ଚ ସ୍ତନ-କଳ କବଚରେ ଆବୃତ ହୋଇଛି । ଆକର୍ଣ୍ଣ-ବିସ୍ତାରି ନେତ୍ରର ଭାବତରଙ୍ଗ ଉଠୁଛି ; ଭ୍ରୂଲତା ଭ୍ରୂଳରେ ହିବିତ ହେଲା ପରି ଦିଶୁଛି; କି ଅବା ଏ କାମଦେବଙ୍କ ଶାରଙ୍ଗ ।

କବି ଉଷା ସୁନ୍ଦରୀଙ୍କୁ ଜଗତଯୋଷାଙ୍କ ଖୋଷାଭୂଷା କରିଛନ୍ତି ଏବଂ ତାହାର ଶୋଭା ଦେଖଣାହାରୀଙ୍କ ମନକୁ ହେଳେ ହରଣ କରିନେଉଛି ।

କୁଣ୍ଡଳ, କବଚ, କୁସୁମ, କଟିମେଖଳା, ବସ୍ତ୍ର ପ୍ରଭୃତି ଅଳ୍ପ କେତେକ ଭୂଷଣରେ ଉଷା ମଣ୍ଡିତ ହୋଇଥିଲେ ମଧ୍ୟ ଚରିତ୍ରଟି କମନୀୟ ହୋଇଛି । କବି ବିବିଧ ଅଳଙ୍କାର ଦ୍ୱାରା ଉଷାକୁ ଭାରାକ୍ରାନ୍ତ କରି ନାହାନ୍ତି; ତାର ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ସ୍ୱାଭାବିକ ଭାବରେ ଦେଖିବାପାଇଁ ସୁଯୋଗ ଦେଇଛନ୍ତି ।

ଉଷାର "ଆନିତମ୍ବଲମ୍ବୀ କେଶଗୁଚ୍ଛ"କୁ "ନୀଳଭୁଜଙ୍ଗୀ", 'ଭ୍ରୂଲତା'କୁ "କାମସାରଙ୍ଗ" ସହିତ ତୁଳନା କରି କବି ତାକୁ "ଜଗତଯୋଷାଙ୍କ ଖୋଷାଭୂଷା ରୂପେ ଚିତ୍ରିତ କରି ଠିଆ କରାଇଛନ୍ତି । ଏହି ଚରିତ୍ରଟି ପ୍ରାଚୀନ କବିମାନଙ୍କର ବର୍ଣ୍ଣନାର ଅନୁରୂପ ହୋଇଛି ।

ଜୟନ୍ତ-ଉଷାଙ୍କ ବିବାହକାଳୀନ ବେଶଭୂଷାର ବର୍ଣ୍ଣନା ନଥିବାରୁ କାବ୍ୟ-ରସାସ୍ୱାଦନରେ କିଛି ଅଭାବ ରହିଯିବାର ଧାରଣା ମନରେ ଜାଗ୍ରତ ହେଉଛି ।

ଜୟନ୍ତର ରୂପବର୍ଣ୍ଣନା ସେତେ ବିସ୍ତୃତ ହୋଇନାହିଁ । କାବ୍ୟରେ ଅନ୍ୟାନ୍ୟ ପୁରୁଷ ଓ ସ୍ତ୍ରୀମାନଙ୍କର ରୂପବର୍ଣ୍ଣନା ବିଶେଷ ସ୍ଥାନ ପାଇନାହିଁ ।

**ନିୟତି**—କବି କାବ୍ୟର ବିଷୟବସ୍ତୁରେ ନିୟତିର ଆବଶ୍ୟକତା ବିଶେଷ ଭାବରେ ଅନୁଭବ କରିଛନ୍ତି । **ଘଟନା**-ପ୍ରବାହକୁ ନିୟନ୍ତ୍ରଣ କରିବାଠାରୁ ଆରମ୍ଭ କରି ଦୁଃଖରେ ଶାନ୍ତ୍ୱନା ଦେବା ପର୍ଯ୍ୟନ୍ତ ବହୁ ବିଷୟରେ ଏହା ବ୍ୟବହୃତ ହୋଇଛି । ଜନ୍ମ ମୃତ୍ୟୁ ଆଦି ସଂସାରର ଯାବତ ଘଟଣା "କାଳ ନିୟନ୍ତ୍ରିତ-ନିୟତି-ହାରରେ ଗ୍ରଥିତ ।" ନିୟତି-ଫଳରୁ ଉଷା ଓ ଜୟନ୍ତର

ମର୍ତ୍ତ୍ୟଧାମରେ ଜନ୍ମ ହେଲା ଏବଂ ଉଷା ସ୍ୱପ୍ନମ୍ବରକୁ ଯେତେ ନୃପ-ସନ୍ତାନ ଆସିଥିଲେ ସମସ୍ତେ ନିୟତିର ଅଲଂଘ୍ୟ ଶାସନ ବଶରୁ ମୃତ୍ୟୁ ଲଭିଲେ ।

କବି ଏକାଧିକ ସ୍ଥାନରେ ନିୟତିର ଅଲଂଘ୍ୟଶାସନ ବିଷୟ ଅବତାରଣା କରିଥିବାରୁ ଏଥିରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିବା ଅନୁମାନ କରାଯାଏ ।

ରୂପ, ଗୁଣ ବଳେ ନରକୁଳ ଧନ୍ୟ ଥିଲେ ସକଳେ
ମାତ୍ର ରୂପଗୁଣ ଫଳେ କି ଲଙ୍ଘିବ ଲେଖନ ଛଳେ ?
ବନ୍ଦୀ ହୋଇ ଦୈବବିଧିନକୁ କେ କରିବ ଆନ
ମହା ବଳିଠାରୁ ବଳୀ ପୁଣି ଦୈବବିଧାନ ।

**ମନସ୍ତାତ୍ତ୍ୱିକ ବିଶ୍ଳେଷଣ**—'ଉଷା'ରେ ମାନସିକ ଚିନ୍ତା-ଧାରାର ଅତି ସୁନ୍ଦର ଭାବରେ ପ୍ରତିଫଳିତ ହୋଇଛି । ସ୍ୱପ୍ନମ୍ବରର ପୂର୍ବ ରାତରେ ମହାଚିନ୍ତାକୁଳ ହୋଇ ଜୟନ୍ତ କାଳ କାଟିବାକୁ ଲଗିଲା । "ମଣିଲଭ ହେବ, କିବା ପଡ଼ିବ ମୁଣ୍ଡେ ଅଶନି । ଭାଗ୍ୟେଥିଲେ ତାଙ୍କ ପାଇଁ ସେ ମଦାଳସା ସଖୀ ହେବ, ନହେଲେ, ପୂର୍ବରାଜସୁତ-ମାନଙ୍କ ଦଶାକୁ ଭଜିବେ । ଉଷା ବିହୁନେ ଜୀବନ ବିଫଳ ହେବ । ଏପରି ହୀନ ଜୀବନଠାରୁ ମୃତ୍ୟୁ ସହସ୍ର ଗୁଣେ ଶ୍ରେୟସ୍କର ।" ତେବେ ଭାଗ୍ୟ ଭାବନାହିଁ ତାଙ୍କ ମନକୁ ଶକ୍ତିଦାନ କରିଛି,' ଏବଂ ସେ ସାହସ ଧରିବା ପାଇଁ ସଂକଳ୍ପ କରିଛନ୍ତି । ସେହି ରାତରେ ଉଷା ଚିନ୍ତାରେ ନିଦ୍ରା ଯାଇ ନଥିବା କବି ଲେଖିଥିଲେ ମଧ ତାର ମାନସିକ ଅବ-ସ୍ଥାର ବିଶ୍ଳେଷଣ କରି ନାହାନ୍ତି ।

ମାନସିକ ବିଶ୍ଳେଷଣ ବିସ୍ତୃତ ନହେଲେ ମଧ ସମୟୋପଯୋଗୀ ଓ ସଂଗତ ହୋଇଛି ।

ଜୟନ୍ତଙ୍କୁ ରଙ୍ଗ ସ୍ଥଳରେ ଦେଖି ଉଷାର ମନ ପ୍ରଥମେ ଉଦ୍ଦାମ ପ୍ରେମଜନିତ ହର୍ଷରେ ପୂର୍ଣ୍ଣ ହୋଇଗଲା । ଅମଳ କପୋଳ ଗ୍ଭଲ-ପାଟଳେ ସୁରଞ୍ଜିତ ହେଲା । ଏହା ସୁଖକର ଓ ଶୁଭକର ମାନସିକ ଚିନ୍ତାର ଲକ୍ଷଣ । କିନ୍ତୁ ପର ମୂହୂର୍ତ୍ତରେ ଉଷାର ମନରେ ବିଷାଦର ଛାୟା ଖେଳିଗଲା । ଅପୂର୍ବ ଶୋଭାକୁ ସ୍ମରଣ କରି ସ୍ୱପ୍ନସ୍ୱରବିପଫଳରେ ତାଙ୍କର ଦୁର୍ଦ୍ଦଶାର ଚିତ୍ର ଉଷାର ମାନସିକ ଚକ୍ଷୁ ସମ୍ମୁଖରେ ଦେଖା-ଦେଲା । ସେ ବିଷାଦରେ ହୃଦୟଦେବତାର ଜୀବନର ବିଶିଷ୍ଟତା ସ୍ମରଣ କରି ନିଜର ପଣକୁ ଧିକ୍କାର କରିଥିଲେ । ଉଷା ଚିନ୍ତା କଲେ, "ମୋ ଭ୍ଭର ତରୁଣୀ ପାଇଁ ସେ ଏତେ ବାଇ କାହିଁକି ହେଲେ ? ଏତେ ଶ୍ଲାଘ୍ୟ ପ୍ରାଣ-ବୟ-ରୂପ ହେଲେ ହରାଇ ଦେବେ ।" ଉଷାଙ୍କ ମନରେ ଉପକାରୀ ପ୍ରତି କୃତଜ୍ଞତାର ଭାବନାଟି ମଧ୍ୟ ଜାଗ୍ରତ ହୋଇଛି । ପ୍ରେମ ଓ କୃତଜ୍ଞତାର ସୁନ୍ଦର ସମନ୍ୱୟ ଏହି ଚିନ୍ତା-ଧାରାରେ ପ୍ରକଟିତ ହୋଇ କାବ୍ୟଟିର ଗୌରବକୁ ବୃଦ୍ଧି କରିଛି ।



# ଦ୍ୱାବିଂଶ ପରିଚ୍ଛେଦ

## ଚିଲିକା

'ଚିଲିକା' ଏକ ଖଣ୍ଡକାବ୍ୟ । ନାୟକ-ନାୟିକା ସମ୍ପର୍କୀୟ ବିଷୟବସ୍ତୁ ଏଥିରେ ନାହିଁ । କେବଳ ଉତ୍କଳୀୟ ପ୍ରାକୃତିକ ଦୃଶ୍ୟର ଏକ ଅଂଶର ବର୍ଣ୍ଣନା ଏହାର ବିଷୟବସ୍ତୁ । ପ୍ରକୃତି, ବିଶେଷତଃ ଉତ୍କଳୀୟ ପ୍ରକୃତି, ପ୍ରତି କବିଙ୍କର ଏକାନ୍ତ ଶ୍ରଦ୍ଧା ଓ ଭକ୍ତି ହିଁ ଏଥିରେ ଜୀବନ୍ତ ଭାବରେ ପ୍ରକାଶ ପାଇଛି । ସାହିତ୍ୟପ୍ରେମୀମାନେ ଏହାର ଅପୂର୍ବ କାବ୍ୟରସ ଆସ୍ୱାଦନ କରି ଅପାର ଆନନ୍ଦ ଲାଭ କରୁଛନ୍ତି ।

୧୮୯୨ରେ ଏହି କ୍ଷୁଦ୍ର ଖଣ୍ଡକାବ୍ୟଟି ରଚିତ ହୋଇଥିଲା ଏବଂ ମୟୂରଭଞ୍ଜର ମହାରାଜା ସ୍ୱର୍ଗତ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବଙ୍କ ଆନୁକୂଲ୍ୟରେ ପ୍ରକାଶିତ "ଉତ୍କଳ ପ୍ରଭା" ନାମକ ପତ୍ରିକାରେ ପ୍ରଥମେ ଧାରାବାହିକରୂପେ ପ୍ରକାଶିତ ହେଉଥିଲା । ଏହା ପୂର୍ବରୁ କବି ପାର୍ବତୀ, ଉଷା, ନନ୍ଦକେଶରୀ ପ୍ରଭୃତି କାବ୍ୟ-କବିତା ରଚନା କରି ସାରିଥିଲେ ।

ଚିଲିକାର ପରିଚୟ ପ୍ରଦାନ, ଇଉରୋପୀୟ ଦୃଶ୍ୟମାନଙ୍କ ସହିତ ଚିଲିକାର ଦୃଶ୍ୟର ତୁଳନା, ବିବିଧ ପକ୍ଷୀକୁଳର ବର୍ଣ୍ଣନା, ତୀରଭୂମିର ସୁଷମା, ଚିଲିକାରେ ପତିତ ହେଉଥିବା ନଦୀମାନଙ୍କର ବର୍ଣ୍ଣନା, ଚିଲିକାର ଐତିହାସିକ ପ୍ରାଧାନ୍ୟ ଓ ପ୍ରାଚୀନତା, ଚିଲିକା ତୀରରେ ଶରତ୍ ଋତୁରେ ସନ୍ଧ୍ୟା ଦୃଶ୍ୟ, ଜନ୍ମଭୂମି ଉତ୍କଳର ଦୁଃଖରେ ଦୁଃଖୀ ହୋଇ କବିଙ୍କ ଆଶାନିରାଶାର ବାଣୀ—ଏହି କେତେକ ପ୍ରସଙ୍ଗ କବିଙ୍କ ଅମର ଲେଖନୀରେ ଜୀବନ୍ତ ହୋଇଛି । ଏହି ବର୍ଣ୍ଣନା ଭିତରେ କବିଙ୍କ ପାଣ୍ଡିତ୍ୟ, ସୂକ୍ଷ୍ମଦୃଷ୍ଟି, ସ୍ୱଦେଶାନୁରାଗ, ଭବିଷ୍ୟତ ଆଶା ପ୍ରଭୃତି ଅତି ସୁନ୍ଦର ଭାବରେ ପ୍ରକାଶ ଲାଭ କରିଛି । ଚିଲିକାର ଜଡ଼ ପ୍ରକୃତି ତାଙ୍କ ଅମର ମୃତସଞ୍ଜୀବନୀ ଲେଖନୀ ସ୍ପର୍ଶରେ ଜୀବନ ଲାଭ କରିଛି ।

"ଉତ୍କଳ କମଳା-ବିଳାସ ଦୀର୍ଘିକା, ମରାଳମାଳିନୀ ନୀଳାମ୍ବୁ ଚିଲିକା"ର ଅପୂର୍ବ ଶୋଭାରେ କବି ମୁଗ୍ଧ ହୋଇଛନ୍ତି, ଏବଂ ଏହି ବ୍ୟକ୍ତିଗତ ଅନୁଭୂତି ତାଙ୍କ ହୃଦୟରେ ଅପାର ଆନନ୍ଦ ଜାତ କରିବା ଫଳରେ ତାଙ୍କର ବିଦଗ୍ଧ ସ୍ୱଦେଶାନୁରକ୍ତ ସ୍ୱତଃ ଲେଖନୀ ସାହାଯ୍ୟରେ ସ୍ଫୁରିତ ହୋଇଛି । ଚିଲିକାର ନୀଳଜଳରାଶି, ମରାଳାଦି ପକ୍ଷୀକୁଳର ଲୀଳା, ପ୍ରଭୃତି ଦୃଶ୍ୟ ଦେଖି କବି ପୂର୍ଣ୍ଣପ୍ରାଣରେ ଚିଲିକାକୁ 'ଉତ୍କଳ କମଳ ବିଳାସ ଦୀର୍ଘିକା' ବୋଲି ଅଭିହିତ କରିଛନ୍ତି ଏବଂ "ପ୍ରସନ୍ନ ବଦନା ଉଜ୍ଜ୍ୱଳବରଣା ମୁଖଶ୍ରୀ ଦେଖନ୍ତି ଯହିଁ ଦିଗଙ୍ଗନା" ପଂକ୍ତି ଦ୍ୱାରା ବିଷୟବସ୍ତୁର ଗୁରୁତ୍ୱ ପ୍ରତିପାଦନ କରିଛନ୍ତି ।

କବି ଚିଲିକାର ବିଭିନ୍ନ ବିଭବର ଶୋଭା ସହିତ ଭାରତର ବିଭିନ୍ନ ସ୍ଥଳର ଶୋଭା ତୁଳନା କରିଛନ୍ତି । ବିନ୍ଧ୍ୟାଚଳ, ରାଜପୁତାନା, ହିମାଳୟ, ମହୋଦଧି ପ୍ରଭୃତିର ଶୋଭାବୈଚିତ୍ର୍ୟ ସହିତ ଚିଲିକାର ଶୋଭାକୁ ତୁଳନା କରି ଚିଲିକାକୁ ଉଚ୍ଚ ଆସନ ଦେଇଛନ୍ତି ଏବଂ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ପାଇଁ ଚିଲିକାହିଁ ପ୍ରକୃଷ୍ଟ ସ୍ଥାନ, ଏହା ପ୍ରତିପାଦନ କରିଛନ୍ତି । ଏହି ସମ୍ପର୍କରେ ସେ ଭାରତର ବିଭିନ୍ନ ସ୍ଥାନର ଶ୍ରେଷ୍ଠ ପ୍ରାକୃତିକ ଦୃଶ୍ୟର ବିଶେଷତ୍ୱ ବର୍ଣ୍ଣନା କରି ଚିଲିକା ସହିତ ତୁଳନା କରିବା ବେଳେ ଅମୃତପଦାବଳୀ ସୃଷ୍ଟି କରିଛନ୍ତି ।

ଚିଲିକା କୂଳରେ ଶରତକାଳୀନ ସନ୍ଧ୍ୟାର ବର୍ଣ୍ଣନା ଅପୂର୍ବ ରୂପ ଧାରଣ କରିଛି । ଚିଲିକାର ତାଟକିତ ନୀଳବକ୍ଷରେ ଅଗଣିତ ହଂସ ବିହାର କରୁଛନ୍ତି । ଶଶାଙ୍କଧବଳା ନିଶା, କାଶହାସମୟୀ ସ୍ୱଚ୍ଛ ସ୍ରୋତସ୍ୱିନୀ, ମାଳତୀ ବିଶଦ ନିବିଡ଼ ନିକୁଞ୍ଜ, କୁମୁଦଧବଳ ସରୋବର ପୁଞ୍ଜ-ଏମାନେ ଉଜ୍ଜ୍ୱଳ ଶରତ ଲକ୍ଷ୍ମୀଙ୍କର ପରିଜନ ସଦୃଶ । ଶରତର ସ୍ଥିରତର ପ୍ରସାଦରୁ ଶରତ ସମ୍ପଦର ଏମାନେ

ଦାୟିଦ । ପ୍ରଭୁ ଯେପରି ଶୁଭ୍ର, ପରିଜନ ମଧ୍ୟ ସେପରି ଶୁଭ୍ର; ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍ । ପରିଜନମାନେ ଦେଶେ ଦେଶେ ଭ୍ରମଣ କରି ପ୍ରଭୁର ଜୟ ବୈଜୟନ୍ତୀ ସ୍ୱରୂପ ଦେଖାଯାଉଛନ୍ତି ।

ନିଜେ ଶୁଭ୍ର, ଶୁଭ୍ରେ କରନ୍ତି ବିହାର
ଶୁଭ୍ରମୟ ସଦା ଏହାଙ୍କ ସଂସାର ।
ଶୁଭ୍ର ଶରୀରର ଜୟ ବୈଜୟନ୍ତୀ
ପ୍ରାୟେ ପନ୍ତି ବାନ୍ଧି ନଭେ ବିହରନ୍ତି ।

ବିଚିତ୍ର ଶୋଭାର ଆକାର ଚିଲିକା ମୁଗ୍ଧ କବିଙ୍କୁ ନିତ୍ୟ ନବ ନବ ରୂପରେ ଦେଖା ଦେଇ ଆନନ୍ଦ ଦାନ କରୁଛି, ଯେତେ ଦେଖୁଥିଲେ ମଧ୍ୟ ନୂଆପରି ଦିଶୁଛି ।

କେତେଥର ଦେଖିଅଛି ଏହିମାନ
ମାତ୍ର ପ୍ରତିଥର ଦିଶେ ଆନ ଆନ;
ଦୃଷ୍ଟପୂର୍ବ ହୋଇ ଅପୂର୍ବ ପ୍ରଶାନ୍ତି
ସୁନ୍ଦରପଣର ନିରନ୍ତର ରୀତି;
ସୁନ୍ଦରେ ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।

"ଶୋକ ପାସୋରା ଅପ୍ସରା ଭୁବନ"ର ଶୋଭା ବର୍ଣ୍ଣନା ଥରେ ମାତ୍ର ଦର୍ଶନ କରି ରୂପପାୟୀ ସ୍ୱାରଣି ଭକ୍ତ କିପରି ବା ସନ୍ତୋଷ ଲାଭ କରିବ ! ବଚନରେ ସେ ବା କିପରି ବର୍ଣ୍ଣନା କରି ପାରିବ ! କେବଳ ହୃଦୟ ହିଁନା ଏହାକୁ ଅନୁଭବ କରିପାରିବ ।

ବଚନ ବିଷୟ ନୁହଇ ଏ ଛବି
ହୃଦ ସେ କେବଳ ପାରେ ଅନୁଭବି ।

ଚିଲିକା ଉତ୍କଳର ଏ ଶୋକପାସୋରା ଅପସ୍ୱରା ଭୁବନ ଯେପରି ସୁନ୍ଦର ସେପରି ପବିତ୍ର ମଧ୍ୟ । ଏହି କାରଣରୁ ଏହା ଏକ

ରମଣୀୟ ତୀର୍ଥ ସ୍ଥଳ । ସୁନ୍ଦରତା ଓ ପବିତ୍ରତା ଏକ ସ୍ଥାନରେ ସମ୍ଭବ ହୋଇଥିବାରୁ ଏହାର ଗୌରବ ଅତୁଳନୀୟ ।

ପବିତ୍ର ସୁନ୍ଦର ସୁନ୍ଦର ପାବନ
ତୋଠାରେ ହୋଇଛୁ ଏହା ସଙ୍ଘଟନ ।

ରାଧାନାଥ ଚିଲିକା ସହିତ ସମ୍ପୃକ୍ତ କେତୋଟି ଉତ୍କଳର ପ୍ରାଚୀନ ଐତିହାସିକ ଘଟଣାର ଉଲ୍ଲେଖ କରି ଚିଲିକାର ଗୌରବ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଏଦେଶର ପାଠକର ହୃଦୟରେ ଦେଶାତ୍ମବୋଧର ଉଦ୍ରେକ ମଧ୍ୟ କରି ପାରିଛନ୍ତି । ଅତ୍ୟାଗ୍ରହୀ ଆକ୍ରମଣକାରୀ ରକ୍ତବାହୁ ପ୍ରତି ଚିଲିକା ସଦୟ ହୋଇନାହିଁ; ଓଡ଼ିଶାର ଗୌରବ ରକ୍ଷା ପାଇଁ ଆକ୍ରମଣକାରୀଙ୍କୁ ସ୍ୱ ଅତଳଗର୍ଭରେ ସମାଧି ରଚନା କରିଦେଇଛି । ଉତ୍କଳୀୟ ବିଜୟୀବର ପୁରୁଷୋତ୍ତମ ଦେବ ଏହି ଚିଲିକାକୂଳ ବାଟେ କାଞ୍ଚି ଅଭିଯାନରେ ଯାତ୍ରା କରିଥିଲେ । ସ୍ୱୟଂ ଜଗନ୍ନାଥ ତାଙ୍କୁ ସାହାଯ୍ୟ କରିଥିଲେ । ମାଣିକପାଟଣାର ଉତ୍ପତ୍ତିର କିମ୍ବଦନ୍ତୀକୁ କବି ବିଷୟୋପଯୋଗୀ ଅତି ରମଣୀୟ ପଦାବଳୀରେ ବର୍ଣ୍ଣନା କରି ଜୀବନ୍ତଚିତ୍ରଟିଏ ଅଙ୍କନ କରିପାରିଛନ୍ତି ।

ଏହି ଖଣ୍ଡକାବ୍ୟଟିରେ କବି ଅଳଙ୍କାରର ବିଶେଷ ପ୍ରୟୋଗ କରିନାହାନ୍ତି । ବ୍ୟଞ୍ଜନା ଓ ଅନୁପ୍ରାସର ସୁଷମ ପ୍ରୟୋଗ କାବ୍ୟଟିକୁ ଅତି ରମଣୀୟ କରିପାରିଛି ଏବଂ ଏହାର ରମଣୀୟ କାନ୍ତପଦାବଳୀ ପାଠକ ହୃଦୟରେ ସ୍ଥାୟୀ ପ୍ରଭାବ ବିସ୍ତାର କରୁଛି ।

ମୁଗ୍ଧ-କବି ନିଜର ବ୍ୟକ୍ତିଗତ ଆଶାଆକାଙ୍କ୍ଷାକୁ ଚିଲିକା ସହିତ ଯୋଡ଼ି ଥିବାରୁ କାବ୍ୟଟିର ମହତ୍ତ୍ୱ ବୃଦ୍ଧି ପାଇଛି । କବି ଚିଲିକା କୂଳରେ ଅନ୍ତିମକାଳ କଟାଇବା ପାଇଁ ମନସ୍ଥ କରିଥିଲେ ; କିନ୍ତୁ ତାହା ତା'ଙ୍କ ଭାଗ୍ୟରେ ଘଟିଲା ନାହିଁ । କବି କରୁଣଭାବରେ ତାଙ୍କର ହୃଦୟର ବେଦନାକୁ ମର୍ମସ୍ପର୍ଶୀ ଭାଷାରେ ବ୍ୟକ୍ତ କରି ପାଠକର

ସହାନୁଭୂତି ଆକର୍ଷଣ କରିପାରିଛନ୍ତି । କବିଙ୍କ ଆତ୍ମପରିଚୟ ଅଂଶଟିରେ ଅଳ୍ପ ସଂଖ୍ୟକ ପଦ ଥିଲେ ମଧ୍ୟ ଚରିତ କଳ୍ପନାର ରୂପ ବିରାଟ ହୋଇଛି ।

ଘୋର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ । × ×
କରିଥିଲି ଆଶା କରିବି ଯାପନ
ତୋ ପଶ୍ଚିମ ତୀରେ ପଶ୍ଚିମ ଜୀବନ । = ×

କିନ୍ତୁ ଭାଗ୍ୟ ଅନୁକୂଳ ନହେବାରୁ କବିଙ୍କର ଆଶା ପୂର୍ଣ୍ଣହେଲା ନାହିଁ । ଚିଲିକାଠାରେ "ବିନା ପ୍ରୟାସରେ ସୌନ୍ଦର୍ଯ୍ୟ ପିପାସା" ମେଣ୍ଟାଇବା ନିମନ୍ତେ ଆଶା ପୋଷଣ କରିଥିଲେ ଏବଂ "ଜଟିଆ" ପାହାଡ଼ ଚରଣ ତଳେ କୁଟୀର ନିର୍ମାଣ କରି ଶେଷଜୀବନ ନିକାଞ୍ଚନରେ ଯାପନ କରିବା କଳ୍ପନା ମଧ୍ୟ କରିଥିଲେ । କିନ୍ତୁ ଏହା ପୂର୍ଣ୍ଣହେଲା ନାହିଁ ତାଙ୍କର ଦୁଃଖମୟ ଜୀବନ ଦୁଃଖରେ କଟିଲା ।

ଚିର ହାହାକାର ଏ ଘୋର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ ।
ଚିରଦିନ ଦୁଃଖପ୍ରହାରେ ଜର୍ଜର
ପଞ୍ଚଶିଷ୍ୟ ମୁହିଁ ଦୁଃଖଗୁରୁଙ୍କର । ଇତ୍ୟାଦି

"ଦୁଃଖଗୁରୁଙ୍କର" ଏବଂ "ପଞ୍ଚଶିଷ୍ୟ"ର କରୁଣ-ଆବେଗ-ପୂର୍ଣ୍ଣ ପଦାବଳୀ ପାଠକ ମନରେ ଅପାର କରୁଣା ଜାଗ୍ରତ କରୁଛି ଏବଂ କବିଙ୍କ ଦୁଃଖରେ ଦୁଃଖୀ କରାଇ ଦେଉଛି । ଭବିଷ୍ୟତ ସୁଖ ଆଶା ତାଙ୍କ ମନକୁ ପ୍ରସନ୍ନ କରିପାରି ନାହିଁ । ପାରିବାରିକ ଅଶାନ୍ତି ଓ ନିଜର ଚିର ରୁଗ୍ଣାବସ୍ଥାହିଁ ଏହି ନିରାଶାର କାରଣ ବୋଲି ମନେ ହୁଏ ।

'ଚିଲିକା'ରେ କବି ନିଜ ହୃଦୟର କେତେକ ସାର ଭାବରାଜି ବ୍ୟକ୍ତ କରି ନିଜର ଏକ ସଂକ୍ଷିପ୍ତ ଚିତ୍ର ପ୍ରଦାନ କରିଛନ୍ତି । କବି

"ଦାରୁଣ ସଂସାରରୁ" ଦୂରରେ ରହିବା ପାଇଁ ଇଚ୍ଛା କରି ଚିଲିକାର "ପଶ୍ଚିମ ତୀରେ" "ପଶ୍ଚିମ ଜୀବନ ଯାପନ କରିବାକୁ ଆଶା କରିଥିଲେ । କିନ୍ତୁ ତାହା ସଫଳ ନ ହେବାରୁ ହୃଦୟରେ ହତାଶ-ଭାବ ପୋଷଣ କରିଛନ୍ତି ପୁଣି ସେହି "ଦାରୁଣ ସଂସାର" ଭିତରକୁ ବାହୁଡ଼ି ଆସୁଥିବାରୁ ଖେଦ ପ୍ରକାଶ କରିଛନ୍ତି । "ସୌନ୍ଦର୍ଯ୍ୟ ପିପାସା" ମେଣ୍ଟିବା ପାଇଁ ତ୍ରିପ୍ରୟାସର ଆବଶ୍ୟକ ହୁଏ । ଚିଲିକା କୂଳରେ ଅବସ୍ଥାନ କଲେ "ବିନାପ୍ରୟାସରେ" ତାହାଠାରେ "ସୌନ୍ଦର୍ଯ୍ୟ ପିପାସା" ମେଣ୍ଟିଯିବା ଆଶାରଖି, କବି ଚିଲିକା କୂଳରେ ବାସ କରିବାକୁ ଇଚ୍ଛା କରୁଥିଲେ । ପ୍ରାକୃତିକସୌନ୍ଦର୍ଯ୍ୟପିପାସୁ ରାଧାନାଥ ପ୍ରାକୃତିକ-ସୌନ୍ଦର୍ଯ୍ୟ-ନିକେତନ ଚିଲିକାଦ୍ୱାରା ମୁଗ୍ଧ ହୋଇ ଯାଇଥିଲେ ।

କବିଙ୍କର ଭାଗ୍ୟ "ରୁଚି ଅନୁକୂଳ" ହୋଇ ନଥିବାରୁ ସେ ଚିଲିକାର "ରମ୍ୟକୂଳ" ଆଶ୍ରା କରି ପାରିଲେ ନାହିଁ । "ଜଟିଆ" ପାହାଡ଼ର "ଚରଣ ତଳେ" 'ଆୟୁଶେଷ'କୁ ନିକାଞ୍ଚନରେ କାଟିବା ପାଇଁ ଆଶା କରିଥିଲେ । କିନ୍ତୁ ସେ ଆଶା ଆଶାରେ ରହିଲା । କବି ନିକାଞ୍ଚନପ୍ରିୟ ଓ ସୌନ୍ଦର୍ଯ୍ୟ-ପିପାସୁ ଥିବାରୁ "ଦାରୁଣ ସଂସାର" ଠାରୁ ବହୁ ଦୂରରେ ରହିବାପାଇଁ ଇଚ୍ଛା କରୁଥିଲେ, କିନ୍ତୁ "ଭାଗ୍ୟ" ତାହା କରାଇ ନଦେବାରୁ ସେ ହତାଶ ମନରେ ପୁଣି "ଦାରୁଣ ସଂସାର" ଭିତରକୁ ଫେରି ଆସିବାକୁ ବାଧ୍ୟ ହେଲେ । ଭାଗ୍ୟବାଦୀ କବି ଭାଗ୍ୟ ରୁଚି-ଅନୁକୂଳ ନହେବାରୁ ଦୁଃଖପ୍ରକାଶ କରିଛନ୍ତି ।

ସଂସାର, ସାଂସାରିକଜୀବନ ସମ୍ବନ୍ଧରେ କବି ଉଦାସୀନ ଥିବା ବ୍ୟକ୍ତ କରିଛନ୍ତି । କେତେ ଲୋକ "ଜୀବନ ମଣନ୍ତି ମହୋତ୍ସବମୟ" କିନ୍ତୁ ଅନ୍ୟ ଉପାଦାନରେ କବିଙ୍କ ଜୀବନ ଗଠିତ ଥିବାରୁ ସେ ଜୀବନକୁ ମହୋତ୍ସବମୟ ରୂପେ ମଣୁନାହାନ୍ତି । ତାଙ୍କର ଭାଗ୍ୟ

'ପାଷାଣରେ' 'ପିଷ୍ଟିତ' ହୋଇଛୁ ଏବଂ "ଚିର ହାହାକାର ଏ ଘୋର ଜୀବନ" ତାଙ୍କୁ ଦାରୁଣ କଷ୍ଟ ଦେଇଛୁ । ସେଥିପାଇଁ ସେ ଜୀବନକୁ 'ଜୀବନ' ବୋଲି ମଣୁନାହାନ୍ତି; ତାଙ୍କ ପକ୍ଷେ ଏହା "ଜୀବନ୍ତ ମରଣ ।" ଚିରଦିନ ସେ ଦୁଃଖପ୍ରହାରରେ ଜର୍ଜରିତ । ସେ ସଂସାର ଭିତରେ ଥାଇ ମଧ୍ୟ ଉଦାସୀନ ଥିଲେ । "ସଂସାରେ ଥାଇ ମୁଁ ସଦା ଉଦାସୀନ ।"

ଜୀବନର "ସୁଖଦୁଃଖ"ଭାବକୁ କବି ସ୍ୱ ଅନୁଭୂତିରୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । ସେ 'ଦୁଃଖଗୁରୁ'ଙ୍କର ପଟ୍ଟଶିଷ୍ୟ ହୋଇଛନ୍ତି ସିନା ସୁଖଗୁରୁଙ୍କଠାକୁ କେବେ ଯାଇନାହାନ୍ତି । "ଚିରଦିନ ଦୁଃଖପ୍ରହାରେ ଜର୍ଜରିତ ଜୀବନ" ତାଙ୍କର ଜ୍ଞାନଚକ୍ଷୁ ଲାଭରେ ସାହାଯ୍ୟ କରିଛୁ । 'ସୁଖ'ର "ଜ୍ଞାନଚକ୍ଷୁ ଦାନ" କରିବାର କ୍ଷମତା ନଥିବାହିଁ ସୂଚିତ ହେଉଛୁ । "ଦୁଃଖଦତ୍ତ ଜ୍ଞାନଚକ୍ଷୁ"ର ସେ ଅଧିକାରୀ ହୋଇପାରିଥିଲେ ଏବଂ ଏହି ଜ୍ଞାନଚକ୍ଷୁ ବଳରେ ଜଗତକୁ "ଦେଖିବାରେ ସତତ ଅଭ୍ୟସ୍ତ" ହୋଇପଡ଼ିଥିଲେ । କବି ତଥାକଥିତ ସାଂସାରିକ ସୁଖକୁ ଅଳୀକ ମନେ କରିଛନ୍ତି ।

ସୁଖ ବୋଲି ଯାକୁ ବୋଲଇ ସଂସାର,
କରୁଥାଇ ତାକୁ ଦୂରୁ ମୁଁ ଜୁହାର ।
ସୁଖ ରୂପେ ଯାହା ଜନନେତ୍ରେ ଦିଶେ,
ହାତେ ଆସେ ହାତୁ ପଡ଼ିବା ପାଇଁ ସେ ।
ବସ୍ତୁ ନୁହଇ ସେ ଅଟଇଟି ଧୂମ,
ଅନ୍ୟନାମ ତାର ଆକାଶ କୁସୁମ । —ଚିଲିକା

କବି ଚିଲିକା ତୀରଗୁହାରେ ପଶ୍ଚିମ ଜୀବନ ଶାନ୍ତିରେ ଯାପନ କରି ଶାନ୍ତି ଆସ୍ୱାଦନ କରୁ କରୁ "ବାଗ୍‌ଦେବୀ—ଚରଣ" "ମାଗୋଳି" ରେ ପୂଜିବା ପାଇଁ ମଧ୍ୟ ମାନସ କରିଥିଲେ । କିନ୍ତୁ "ଅଗ୍ରେ ପଡ଼ି

ଖ୍ରୀମ ଭବିଷ୍ୟ ସ୍ୱପ୍ନ” ସେହି ଆଶାକୁ ଏକ ପଲକରେ ଭୁଚାଇ ଦେଲି । ସେହି “ଖ୍ରୀମ ଭବିଷ୍ୟର ସ୍ୱପ୍ନ” ଅନ୍ଧାରରେ “ଖ୍ରୀଷଣ ନୈରାଶ୍ୟ ପ୍ରେତ”ର ବିକଟନର୍ତ୍ତନପରି ଦେଖାଗଲା । କବିଙ୍କ ମନପ୍ରାଣକୁ ନୈରାଶ୍ୟ-ପ୍ରେତ ଆକର୍ଷଣକରି ତାର ପ୍ରଭାବ ପୂର୍ଣ୍ଣଭାବରେ ପ୍ରକାଶ କଲା ; ସୁନ୍ଦର ଅସୁନ୍ଦର ଦେଖାଗଲା ; କବିଙ୍କ ମନରୁ ଶଲାକାର ସ୍ୱରୁଚିତକୁ ମୁହୂର୍ତ୍ତକ ମଧ୍ୟରେ ନୈରାଶ୍ୟ-ବିଭୀଷିକା ତଡ଼ିଦେଲା । କବିଙ୍କ ହୃଦୟକୁ ଆଶା ଓ ନିରାଶାର ପ୍ରଭାବ ଆଲୋଡ଼ିତ କରୁଥିଲା ।

“ନୈରାଶ୍ୟ ପ୍ରେତର ବିକଟ ନର୍ତ୍ତନ” ଶଲାକାର ସ୍ୱରୁଚିତକୁ ମନରୁ ନିମିଷକେ ତଡ଼ିଦେବାରୁ କବି ଶୋଭାରିନଧାନ ଉତ୍କଳର ହେୟ ଅବସ୍ଥାକୁ ସ୍ମରଣ କରି ଦୁଃଖିତ ହୋଇଛନ୍ତି ; କିନ୍ତୁ ଭବିଷ୍ୟତ ଉଜ୍ଜ୍ୱଳଥିବା ଘୋଷଣା କରିଛନ୍ତି ।

ପାହିଲାଣି ଘୋର ତାମସୀଯାମିନୀ
ଫୁଟିବ ଉତ୍କଳ-ଭାଷା-କମଳିନୀ ।

କବି ଏହି ଭବିଷ୍ୟତ ଆଶାର କାରଣ ନିର୍ଦ୍ଦେଶରେ ତତ୍‌କାଳୀନ ବାମଣ୍ଡାଧୀଶ ବାସୁଦେବ ସୁଡଳଦେବ ଓ ମୟୂରଭଞ୍ଜର ଶ୍ରୀରାମଚନ୍ଦ୍ର ଭଞ୍ଜଦେବଙ୍କର ଆବିର୍ଭାବ ଓ ସ୍ୱଦେଶପ୍ରେମର କଥା ବ୍ୟକ୍ତକରିଛନ୍ତି । କବି ଏମାନଙ୍କଠାରୁ ଉତ୍ସାହପ୍ରାପ୍ତ ହୋଇଥିବାରୁ ଏମାନଙ୍କର ନାମ ଏଠାରେ ବ୍ୟକ୍ତ କରିଥିଲେ । ଏହା ଅନେକାଂଶରେ ତତ୍‌କାଳୀନ ଓଡ଼ିଶାର ଅବସ୍ଥା ଥିଲା । ଏହି ମହାମାନ୍ୟ ବ୍ୟକ୍ତି-ବିଶେଷଙ୍କ ନାମୋଲ୍ଲେଖ ନକରି ସମ୍ପୂର୍ଣ୍ଣ ଭାବରେ ବିଦ୍ୟୋତ୍ସାହୀ ସ୍ୱଦେଶପ୍ରେମିକମାନଙ୍କୁ ଲକ୍ଷ୍ୟ କରିଥିଲେ କାବ୍ୟର ଚିରନ୍ତନ ମୂଲ୍ୟ ହ୍ରାସ ନହୋଇ ବରଂ ବର୍ଦ୍ଧିତ ହୋଇଥାଆନ୍ତା ।

---

# ତ୍ରୟୋବିଂଶ ପରିଚ୍ଛେଦ

## ପାର୍ବତୀ

**ପ୍ରଥମ ସର୍ଗ**--ନୀଳାଚଳରେ ଦୋଳମହୋତ୍ସବ ସମୟ । ସର୍ବ ପୁରବାସୀ ମହୋତ୍ସବରେ ମତ୍ତ । ବାଦ୍ୟର ଶବଦ ସିନ୍ଧୁ କୋଳାହଳକୁ ସୁଦ୍ଧା ଗ୍ରାସିଯାଉଛି । ଋତୁରାଜ ବସନ୍ତର ଆଗମନ ହେତୁ ସମସ୍ତ ପ୍ରକୃତି ଯେପରି ତା'ର ପୂଜା ପାଇଁ ଭ୍ରମର, ଆଲତ, ପୁଷ୍ପ ପ୍ରଭୃତି ଧରି ଉପସ୍ଥିତ ହୋଇଛି । ସ୍ଥାବର ଜଙ୍ଗମର ମନ ଅନଙ୍ଗର ଲୀଳାଗାର ହୋଇ ପଡ଼ିଛି ।

"ପୂରୁଷେ ଦେଖନ୍ତି ନାରୀମୟ, ନାରୀ
ପୁରୁଷମୟ ସଂସାର ।"
"ଯୁଗ୍ମେ ଯୁଗ୍ମେ ପ୍ରାଣୀ ବିହରନ୍ତି ଆଜ
କିବା ନୀର କିବା କ୍ଷୀର ।"

ନୀଳାଚଳ ଧାମରେ ମଧ୍ୟ ବସନ୍ତର ଆଗମନ ନବ ଦୃଶ୍ୟ ସୃଷ୍ଟି କରିଛି । ପୁଣି ଆଜ ଦୋଳଚଉଁରାର ଗହଳ ଲାଗିଛି । 'ଫଗୁ-ବର୍ଣ୍ଣୋଦକେ ସର୍ବାଙ୍ଗ ରଞ୍ଜିତ" ହୋଇ ଯୁବାଦଳ ବିହାର କରୁଛନ୍ତି । ରାଜପୁରର ବୃନ୍ଦାବନରେ ମହୋତ୍ସବ ଲାଗିଛି ।

କିନ୍ତୁ, ଏହି ସମୟରେ ରାଜେଶ୍ୱର ଗଙ୍ଗେଶ୍ୱର ଦେବ ନୀଳାଚଳଠାରୁ ବହୁଦୂରରେ ରହିଛନ୍ତି । ଋଷିକୁଲ୍ୟାଠାରୁ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ସମସ୍ତ ଜନପଦ "ନାନା ଉପାୟନେ" ବୀର ଗଙ୍ଗେଶ୍ୱରଙ୍କ ପାଦପୂଜା କରୁଛନ୍ତି । ଏ ବିଭବରେ ଥାଇ ମଧ୍ୟ ମହାରାଣୀଙ୍କର ମନରେ ଲେଶ ସୁଖ ନାହିଁ ; "ମହୋତ୍ସବ କ୍ଷେତ୍ରରେ ଦେହମାତ୍ର ଅଛି, ମନ ଭ୍ରମୁଅଛି କାହିଁ ।" ବୀରସିଂହ ଗଙ୍ଗେଶ୍ୱର ସୁଦୂର ଚନ୍ଦ୍ରପୁରଦୁର୍ଗକୁ ଅବରୋଧ କରି ସେଠାରେ ରହିଛନ୍ତି । ପାଞ୍ଚବର୍ଷ

ହେଲା ସମାଗତ ଯୁଦ୍ଧ ଲାଗିଥିଲେ ମଧ୍ୟ ରତ୍ନପୁର ଗଙ୍ଗେଶ୍ୱରଙ୍କ ବଶ୍ୟତା ସ୍ୱୀକାର କରନାହିଁ । "ପାଞ୍ଚବର୍ଷ ବ୍ୟାପୀ ଆହବେ ହେଲେଣି କେତେ ପ୍ରାଣୀହତ, ମାତ୍ର ରତ୍ନପତି-ଶିର ହୋଇନାହିଁ ଶତ୍ରୁ ପଦେ ଅବନତ ।" ଗଙ୍ଗେଶ୍ୱର ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରେ ନିଜେ ସେନାପତି ହୋଇ ଯୁଦ୍ଧ ଚଳାଉଛନ୍ତି ।

ଏଠାରେ ପିତାଙ୍କ ସହିତ ରାଜଜେମା କୌଶଲ୍ୟା ମଧ୍ୟ ଅବସ୍ଥାନ କରୁଥିଲେ । ସେ "ରୂପଗୁଣେ ବାଳା ଜଗତେ ଅତୁଳା" "ଜଗତମନମୋହିନୀ", ରାଜକୁମାରଙ୍କ "ଲୋଚନ-ଭ୍ରମର-ଅମଳ ନବନଳିନୀ ଥିଲେ ।" ଏପରି ତନୟା ଲାଭ କରି ରାଣୀଙ୍କ ମୁଖ ବା ମଳିନ କାହିଁକି ? "ଯାଲାଗି ଜଗତେ ଯେତେ ସୁଖ, ସେହି ଦିଏ ପୁଣି କେତେ ଦୁଃଖ ।" ରାଣୀ ସମ୍ବାଦ ପାଇଲେ ଯେ ସେନାନିବେଶରେ କୌଶଲ୍ୟା "ଗୁପ୍ତପ୍ରେମେ ପଡ଼ି ସସତ୍ତ୍ୱା"; "ଜଳେ ତୈଳବିନ୍ଦୁ ପରି ଏ" କଳଙ୍କ ଦେଶେ ଦେଶେ ବ୍ୟାପିଗଲା । ରାଜା କଠୋର ଶାସ୍ତିବିଧାନ କଲେ; ଜେମାମୁଖ ଚାହିଁବେ ନାହିଁ ବୋଲି ପ୍ରତିଜ୍ଞା କଲେ । ଜେମାର ନିବାସ ପାଇଁ ବିଜନ କାରାଭବନ ନିରୂପିତ ହେଲା । ଏହି ସମ୍ବାଦ ପାଇବା ଦିନଠାରୁ ରାଣୀ ମି୍ରୟମାଣ ହୋଇ ପଡ଼ିଥିଲେ । କୌଶଲ୍ୟାର ତତ୍ତ୍ୱ ଜାଣିବା ଆଶାରେ ତାଙ୍କ ଚିତ୍ତ ନିରନ୍ତେ ଆକୁଳ ହେଉଥିଲା । ଜଗନ୍ନାଥ ମନ୍ଦିରେ ଗରୁଡ଼ସ୍ତମ୍ଭ ନିକଟରେ ରାଣୀ ଅଧା ପଡ଼ିଲେ ।

ଦିନେ ରାଣୀ ନିଦ୍ରାବଶରେ ନଶିଥିରେ "କୌଶଲ୍ୟାର କଥା କହିବ ସେ ଆସି" ଏହି ଅଶରୀରୀ ଶୂନ୍ୟବାଣୀ ଶୁଣିଲେ । ଏ ଶୂନ୍ୟ ବାଣୀ ପରେ ରାଣୀ ଅଧା ଭାଙ୍ଗି ଦେଉଳରୁ ନିଜ ନବରକୁ ଫେରି-ଗଲେ । "ତହିଁ ଦୁହିତା ଦର୍ଶନର ନବୀନ ଆଶା" ତାଙ୍କ ହୃଦୟରେ

ଉପୁଜିଲା । ରାଣୀ ଏହି ଧ୍ୟାନରେ କେବଳ ନିମଗ୍ନ; ଅନ୍ୟକାର୍ଯ୍ୟରେ ତାଙ୍କର ମନ ନଥିଲା ।

"ବଧିରେ ଆଚରି ଦୋଳ ମହୋତ୍ସବ
ପଦ୍ମଦଳେ ଜଳ ପରି,
ସେ ଆମୋଦରତ ହୋଇଣ ବିରତ
ଥିଲେ ପାବର୍ଣ୍ଣ ସୁନ୍ଦରୀ ।"

ଦୁଇ ବର୍ଷ ପୂର୍ବେ ବୃଦ୍ଧ କଞ୍ଚୁକୀ ଯୁଦ୍ଧଭୂମିରୁ ନୀଳାଚଳକୁ ଫେରିଥିଲା । ସର୍ବୋଚ୍ଚ ରାଜପ୍ରାସାଦର ଚୂଳରେ ବସି ଯୁଦ୍ଧର ବିଜୟ ସଙ୍କେତ ଲକ୍ଷ୍ୟ କରିବା ଭାର ଏହି ବୃଦ୍ଧ ଉପରେ ନ୍ୟସ୍ତ ଥିଲା । ଦୀର୍ଘ ଦୁଇବର୍ଷ ଅପେକ୍ଷା କରି ମଧ୍ୟ ବିଜୟ ସଙ୍କେତ ନ ମିଳିବାରୁ ସ୍ଥବିର ଶ୍ରାନ୍ତ ହୋଇ ପଡ଼ିଲାଣି ; ରତ୍ନପୁର ଯୁଦ୍ଧବୃତ୍ତାନ୍ତ ଆଜି ପର୍ଯ୍ୟନ୍ତ କେହି ଜାଣିପାରିଲେ ନାହିଁ । ବୃଦ୍ଧ କଞ୍ଚୁକୀ ରାତି ଉଜାଗରି ରହି ବିଜୟ ସଙ୍କେତକୁ ଅପେକ୍ଷା କରି କ୍ଳାନ୍ତ ହୋଇ ପଡ଼ିବାରୁ ମନେ ମନେ ରାଜାଙ୍କର ଅଧର୍ମମତି, ଅଧର୍ମଗତି, ଛଳେ ବଳେ କୌଶଳେ ପରରାଷ୍ଟ୍ରଗ୍ରାସ ପ୍ରକୃତିକୁ ଧିକ୍କାର କଲେ ଏବଂ ପୁଣ୍ୟଶ୍ଳୋକ ଚୋଳ-ଗଙ୍ଗଙ୍କ ପୁତ୍ର ହୋଇ ଗଙ୍ଗେଶ୍ୱର କ୍ରୂର ହେବାରୁ ଦୁଃଖ ପ୍ରକାଶ କଲେ । ଅନିତ୍ୟ, ସ୍ୱଭାବେ କ୍ଷଣଭଙ୍ଗୁର ଯଶଲିପ୍ସାକୁ ମଦମତ୍ତ ହୋଇ ଲୋକେ ନିତ୍ୟ ବୋଲି ଜ୍ଞାନ କରିବା କେଡ଼େ ଅବିବେକୀ ପଣ !

କେହି ରହି ନାହିଁ ରହିବ ନାହିଁଟି, ଭବରଙ୍ଗ ଭୂମିତଳେ,
ସର୍ବେ ନିଜ ନିଜ, ଅଭିନୟ ସାରି, ବାହୁଡ଼ିବେ କାଳବଳେ ।"

ପୁଣ୍ୟତୀର୍ଥରେ ଯାହାର ନାମ ଅମର ବର୍ଣ୍ଣରେ ଅଙ୍କିତ ହୋଇଛି ସେ ପୁଣ୍ୟଶ୍ଳୋକ ଖାରବେଳ, ଉତ୍କଳ ଗୌରବରବି ଇନ୍ଦ୍ରଦ୍ୟୁମ୍ନ, ଯଯାତି, ଜନ୍ମେଜୟ ପ୍ରଭୃତି କେଶରୀ ବଂଶର ରାଜାମାନେ "କାଳ-ଗର୍ଭେ ଭବେ ଲୀନ ହେଲେ ।" ଏବେ ଗଙ୍ଗେଶ୍ୱର ନିଜ ନଶ୍ୱରତା

ସ୍ୱପ୍ନରେ ସୁଦ୍ଧା ସ୍ମରଣ ନକରି ଛମଧର୍ମ ବଶରେ ଅନୁକ୍ଷଣ କେବଳ ପର-ପୀଡ଼ନରେ ରତ ହୋଇଛନ୍ତି, ଦିଗ୍‌ବିଜୟ ବ୍ୟାଜରେ କେତେ ଭୂପାଳଙ୍କୁ ରଣରେ ହତ କଲେଣି, ଥୋକେ ରାଜ୍ୟ ଛାଡ଼ି ଦୂରକୁ ପଳାଇ ଗଲେଣି, ଥୋକେ ପଦାନତ ହେଲେଣି । ଗଙ୍ଗେଶ୍ୱରଙ୍କ ଦମ୍ଭ ଭରେ ଆଜି ଉତ୍କଳ କମ୍ପୁଛି । “କେତେକାଳ ଧର୍ମ ସହିବ ଏ ଅମାନ୍ତ ଦିନେ ହେବ ପ୍ରତିଫଳ ।” ପ୍ରତିଦିନ ନୀଳାଚଳରେ ଅଶୁଭ ଲକ୍ଷଣମାନ ଦେଖାଯାଉଥିବାରୁ କଞ୍ଚୁକୀର ମନରେ ଭୟ ଜାତ ହୋଇଛି । “ନିଶାନ୍ତେ ଶୁଭୁଛି ଶବଦ ଅବଳା-ରୋଦନ ଭଳି ।” ଏପରି କେତେ ଚିନ୍ତା କରୁ କରୁ ଉତ୍ତର ଦିଗରେ ସହସା ବିଜୟ ସଙ୍କେତ ବହ୍ନି ଶିଖା ପର୍ବତଶିଖରେ ଦେଖା-ଗଲା । ନୀଳାଚଳରେ ଅଲକ୍ଷଣ ଦେଖି ଲୋକଙ୍କ ମନରେ ମହାଭୀତି ଜାତ ହୋଇଥିଲା, ଏବେ ବିଜୟ ସଙ୍କେତ ଦେଖାଯିବାରୁ ତାହା ଦୂର ହେଲା ।

କଞ୍ଚୁକୀ ମହାରାଣୀଙ୍କୁ ଏହି ସମ୍ବାଦ ଜଣାଇବାକୁ ଧୀରେ ଓହ୍ଲାଉଁ ଓହ୍ଲାଉଁ ସୋପାନ ଶ୍ରେଣୀ ନିକଟସ୍ଥ ପୂର୍ବ ଉଦ୍ୟାନରେ ଅଶରୀରୀ ନାରୀ ମୂରତି ଦେଖି ଚମକିଲା ; ଦେଖୁ ଦେଖୁ ଉଦ୍ୟାନ ପ୍ରାଚୀର ଅନ୍ଧକାରରେ ଲୀନ ହୋଇଗଲା । ରାଣୀଙ୍କୁ ଭେଟି କଞ୍ଚୁକୀ ବିଜୟ ସଙ୍କେତ ଆସିଥିବା, ଯୁଦ୍ଧଭୂମିରେ ରତ୍ନପୁରରାଜା ନିହତହୋଇଥିବା, ତାଙ୍କ ଜେମା ଅନ୍ନପୂର୍ଣ୍ଣାଙ୍କୁ ରାଜା ବିବାହ କରିବା ପ୍ରସ୍ତାବ ଜଣାଇବା ସଙ୍ଗେ ସଙ୍ଗେ ଅଶରୀରୀ ନାରୀ ମୂର୍ତ୍ତି ପ୍ରସଙ୍ଗ ମଧ୍ୟ କହିଲା ।

“ଜେମାଙ୍କ ଆକାର ଜେମା ବେଶଭୂଷା
ସମସ୍ତ ଅଟଇ ଏକା”
ସେ ପ୍ରଫୁଲ୍ଲ ଭାବ ନାହିଁ ସେ ବଦନେ
କେବଳ ବିଷାଦ ରେଖା ।

ରାଣୀ ରାଜଆଗମନ ପାଇଁ ଯଥାଯୋଗ୍ୟ ଆୟୋଜନ କରିବାକୁ ଆଦେଶ ଦେଇ ସାରି ଶୟନ କରିବାକୁ ଗଲେ । "ଅଶରୀରୀ ନାରୀ ମୂର୍ତ୍ତି"ର ପ୍ରସଙ୍ଗ ତାଙ୍କ ମନରେ ବିଷାଦ ଜାତ କଲା ।

"ଆହାରେ କୌଶଲ୍ୟା, ଏହା କି ଥିଲା ତୋ ମନେ ?
ନିଜ ମୁଖେ କାଳି ଦେଇ ନେଇ କାଳି ମୋହର ବଦନେ ।
ଉତ୍କଳ ଆକାଶେ ଅମଳ ଶଶାଙ୍କ ଗଙ୍ଗେଶ୍ୱର ନରସାଇଁ
ସୁତା ହୋଇ ତାଙ୍କ ଉଜ୍ଜ୍ୱଳ ଶ୍ରୀମୁଖେ କଳଙ୍କ ଦେଲୁ ଲଗାଇ ।"

ଏପରି ରାଣୀ ଦୁହିତାର ଅପୂର୍ବଶୋଭା ସଦ୍‌ଗୁଣ ପ୍ରଭୃତି ବର୍ଣ୍ଣନା କରି ବାହୁନିଲେ । "କେଉଁ ମହାପାପୀ ନାରକୀ ତୋର ; କଲା ଏ ଘୋର ଦୁର୍ଗତି ? ତିନି ଦିନ ପରେ ନୃପଚୂଡ଼ାମଣି ବିଜେ କରିବେ ଏ ପୁରେ, ଦେଖାଇବି ଏହି ଦଗ୍‌ଧ ମୁଖ ମା ଗୋ କେମନ୍ତେ ନୃପ ଛାମୁରେ ।" ପୁଣି ଅଶରୀରୀ ନାରୀ ମୂର୍ତ୍ତି କଥା ଯାହା କଞ୍ଚୁକୀ କହିଥିଲା ସେଥିରେ ତାଙ୍କର ମନ ବିଶେଷ ଭାବରେ ଆନ୍ଦୋଳିତ ହେଲା; ବିଷମ ସଂଶୟେ ତାଙ୍କ ମନ ପଡ଼ି ସଦା ଆକୁଳ ହେଲା । "କେମାର ସ୍ୱରୂପ ଦେଖିଲା ପ୍ରହରୀ କହୁଛି ନିଜ ନୟନେ, ସତ କି ମିଛ ତା ରାତ୍ରେ ଆଜ ଜଗି ଦେଖିବି ବସି ନିର୍ଜ୍ଜନେ ।"

ପର ଦିନ ଯଥା ବିଧି ନବରରେ ଦୋଳମହୋତ୍ସବ ଅର୍ଦ୍ଧ ରାତ୍ରିରେ ଶେଷ ହେଲା । ନବର ନିସ୍ତବ୍ଧ, ନୀରବ; ଜନଶୂନ୍ୟ ପ୍ରାୟେ ହେବା ପରେ ରାଣୀ ନବରରୁ ଏକାକୀ ବାହାରି ବୃକ୍ଷବାଟିକା ଭିତରେ ମକର ଉଦ୍ୟାନରେ ବସିଲେ । ଅର୍ଦ୍ଧଯାମ କାଳ ବସିଲା ଉତ୍ତାରୁ ରାଣୀ ଅଦ୍ଭୁତରୋଦନ-ସ୍ୱନ ଶୁଣିଲେ । ଚିତ୍ତପ୍ରତି ଶ୍ରବଣ ଡେରିଲେ ।

ନିତାନ୍ତ କରୁଣ, ସେହି ଧ୍ୱନି ଶୁଣି, ପାଷାଣ ଯିବ ତରଳି ।
କିଏ କାନ୍ଦୁଅଛି, ସେ ବିକଳ ସ୍ୱର ନପାରିଲେ ବେଣ୍ଣି କଳି ।"

କିଛି କ୍ଷଣ ପରେ "ଚକିତେ ସ୍ତମ୍ଭିତେ" ରାଣୀ ଦେଖିଲେ "ମାଧବୀ ମଣ୍ଡପେ ଉଭା ହୋଇଅଛି ଅସ୍ପଷ୍ଟ ନାରୀ ମୂରତି; ଅବିକଳ ଜେମା ପରି ଦିଶୁଅଛି ରୂପ ବେଶ ଭୂଷା ଆଦି, ମାତ୍ର "ଘୋଡାଇଛି ମୁଖଚନ୍ଦ୍ରମାକୁ ବିଷାଦ-ମେଘ ଆଚ୍ଛାଦି।" "କୁହୁଡ଼ିରେ ଦୂର ଦିଶନ୍ତି ତୃଣଗୁଛେ ଯେସନ ଆକୃତିମାନ ସେହିପରି ବାମା ପାଣ୍ଡୁ ଦେହ ଛବି, ମଣ୍ଡପେ ଦିଶଇ ମ୍ଳାନ।" ରାଣୀ ପ୍ରଥମେ ଭୀତ ହୋଇ ପଡ଼ିଲେ କିନ୍ତୁ ପରେ ସାହସ ବାନ୍ଧି ମୂର୍ତ୍ତି ଅଭିମୁଖରେ ଅଗ୍ରସର ହେଲେ। ପରିଚୟ ପଚାରିବାରୁ ସେ ଛାୟା ମୂର୍ତ୍ତି ଖେଦରେ ଦୀର୍ଘନିଃଶ୍ୱାସ ଛାଡ଼ି "କଚିତଳେ ଥରେ ଲଲାଟ ପରଶି, କହେ ଗଦ୍‌ଗଦ୍ ବଚନ ଦୁଃଖିନୀ କୌଶଲ୍ୟା ଜନନୀ ଲୋତକୋର ଅଛି କି ଆଉ ଜୀବନ।" ଏହା କହି କୌଶଲ୍ୟାର ଏହି ପ୍ରେତ ମୂର୍ତ୍ତି ତାହାର "କଳଙ୍କମୟ ଜୀବନକାହାଣୀ" ବ୍ୟକ୍ତ କଲେ।

କୌଶଲ୍ୟା କହିଲେ, ରତ୍ନପୁରରେ ସେ ପିତାଙ୍କର ବିବିଧ ସେବା କରି ତାଙ୍କୁ ସନ୍ତୁଷ୍ଟ ରଖୁଥିଲେ। ପିତା ତାଙ୍କ ବିବାହ ପାଇଁ ରତ୍ନପୁର ଯୁଦ୍ଧଭୂମିକୁ ସ୍ୱୟମ୍ବର ସଭା ରୂପେ ସ୍ଥିର କରିଥିଲେ। ସ୍ୱପକ୍ଷର ରାଜାମାନଙ୍କୁ ସମ୍ବୋଧନ କରି ରାଜା ସେଠାରେ ଘୋଷଣା କରିଥିଲେ, "ସ୍ୱୟମ୍ବର ହେବା ପାଇଁ କ୍ଷତ୍ରକନ୍ୟା ଆସିଅଛି ରଣ କ୍ଷେତ୍ରେ। ଏ କନ୍ୟାକୁ ଅଙ୍କ-ଲକ୍ଷ୍ମୀ କରିବାର ଅଭିଳାଷ ଥିଲେ ମନେ, ଦେଖାଅ ବିକ୍ରମ ଅରିସଙ୍ଗେ ରଣରଙ୍ଗେ ଯୁଝି ପ୍ରାଣ ପଣେ।"

"ଏହି ଦୁର୍ଗଶିରେ ପତାକା ପୋତିବ ଶତ୍ରୁକୁ ଯେ ଯୁବା ଜିଣି,
କ୍ଷତ୍ରାକାଶେ ସେହି ଶଶାଙ୍କର ଅଙ୍କଲକ୍ଷ୍ମୀ ହେବ ଏ ରୋହିଣୀ।"

ଏ ଘୋଷଣା କରିଥିଲେ ମଧ୍ୟ ପିତାଙ୍କର ପାପ-ଆଶା ଦୁହିତା ପ୍ରତି ରହିଥିଲା। ଦିନେ ସେ ବଳାତ୍କାରେ ଦୁହିତା ଧର୍ଷଣ କଲେ। ଦୁହିତାଙ୍କୁ ମନାଇନିଜ ଅଙ୍କଲକ୍ଷ୍ମୀ କରିବାପାଇଁ ପିତା

ବହୁ ଅନୁନୟବିନୟ କରିଥିଲେ; କିନ୍ତୁ ଏଥିରେ ବ୍ୟର୍ଥକାମ ହେବାରୁ ତାଙ୍କର ମନରେ ଦାରୁଣ କ୍ରୋଧ ଜାତ ହେଲା । ନିଜ ଦୋଷକୁ ଘୋଡ଼ାଇ ରଖି ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ "ନିର୍ଜନ କାରାରେ ପୂରାଇଣ ମୋତେ ରଖିଲେ ଶିବିର ପାଶେ, ଭ୍ରଷ୍ଟାପଣ ଦେଖି ଏଦଣ୍ଡ ବହିଲେ କହିଲେ ଲୋକ ସକାଶେ ।" ନିର୍ଜନ କାରାଗାରରେ କେତେମାସ ଯିବା ପରେ ପାପଗର୍ଭର ଲକ୍ଷଣ ଜେମାଙ୍କଠାରେ ପ୍ରକାଶ ପାଇଲା ।

"ଏ ସମ୍ବାଦ ସହୁଁ ରଟିଲା ଶିବିରେ ପିତୃଦତ୍ତ ଅପବାଦ,
ସତ୍ୟ ମଣି ଲୋକେ ମୁକ୍ତକଣ୍ଠେ କଲେ ରଜାଙ୍କ ପ୍ରଶଂସାବାଦ ।"
"ସମସ୍ତଙ୍କ ନେତେ ଦୋଷୀ ହେଲି ମୁହିଁ ନୃପ କଲେ ଅପବାଦ ।"

କାରାଗାରରେ ଯଥାକାଳରେ ଜେମାଙ୍କର ଏକ ସୁତ ଜନ୍ମଲାଭ କଲା । "ଜାର ଅବୟବ ଦେଖିଲେ ନୃପତି ସେ ପୂର୍ବେ ପ୍ରତିଫଳିତ ।" ଜାରପାପଚିହ୍ନ ଘୋଡ଼ାଇବା ପାଇଁ ରଜା ଅନ୍ତରେ ଚିନ୍ତିତ ହୋଇ "ମହାପାପେ ମହାପାପ ସଂଗୋପନ" ମନରେ ସଙ୍କଳ୍ପ କରି ଶିଶୁ ସଙ୍ଗେ ଜେମାଙ୍କୁ ଗୋପନରେ ଧଉଳୀ ପର୍ବତକୁ ପଠାଇଦେଲେ । ସେଠାରେ ରଜାଙ୍କ ବିଶ୍ୱସ୍ତ ଅସ୍ତ୍ରଧାରୀମାନେ ଏ ଦୁହିଁଙ୍କୁ ନେଇ ରଖିଲେ। ଜେମାର ପାପର ପ୍ରାୟଶ୍ଚିତ ପାଇଁ ରଜା ଦଣ୍ଡ ବିଧାନ କରିଥିଲେ"

"ତହିଁ ବାରିପୂର୍ଣ୍ଣ ସଚ୍ଛିଦ୍ର ସୁବର୍ଣ୍ଣ
କଳସ ମୋ କକ୍ଷେ ଦେଇ,
ନିଶାରେ ସୈନିକେ କାନନେ ଭ୍ରମିଲେ
ଶିଶୁସଙ୍ଗେ ମୋତେ ନେଇ।
ବାର୍ତ୍ତା ଖୋଲା ହେବ ସେ ଯାଏଁ ଯେଯାଏଁ କଳସୁ ପଡ଼ିବ ନୀର"

ଏହି କାର୍ଯ୍ୟ ଶେଷ ହେବା ପରେ ସୈନିକମାନେ ମାତାଶିଶୁଙ୍କୁ ଧଉଳୀ ପର୍ବତ ଶିଖରକୁ ନେଇଗଲେ ଏବଂ

"ପର୍ବତ ତାଳୁରେ ସୁଗଭୀର ଶୁଷ୍କ କୂପେ ବେନଙ୍କୁ ପୂରାଇ
କୂପ ମୁହଁପାକ ଦେଲେ ଯେ ନୃଶଂସେ ବିଶାଳ ପାଷାଣେ ଗ୍ରୁଇ ।"

"ଏହି କୂପରେ ଶିଶୁସଙ୍ଗେ, ମାଗୋ ଏହିରୂପେ ମୋ ଜୀବନ୍ତେ ହେଲା ସମାଧି । 'ଅବଳା ଅବଧ୍ୟ' ବିଧି ହେଲା, ମାତଃ, ପରିଣତି ଏହି ଫଳେ ।" କୂପ ଭିତରକୁ ଖାପର ଛିଦ୍ର ଭିତର ବାଟେ ଅଳ୍ପଅଳ୍ପ ସୂର୍ଯ୍ୟରଶ୍ମି ପ୍ରବେଶ କରୁଥିଲା । ଜେମାର କରୁଣ ରୋଦନ ବାହାରେ କେହି ଶୁଣିପାରିଲେ ନାହିଁ । ମନବ୍ୟଥାରେ କିଛିଦିନ ପଡ଼ିରହିଲେ । ପରେ ଆଧାର ଅଭାବରୁ ଶିଶୁଟି ମରିଗଲା । ଜେମା ଦୁଃଖରେ ରହିଲେ, କିନ୍ତୁ ଉଦରଜ୍ୱାଳା ସହି ନପାରି ସ୍ୱସନ୍ତାନର ମୃତ ଦେହକୁ ଖାଇଲେ । ଏପରି କିଛି ଦିନ ପରେ ତାଙ୍କର ପ୍ରାଣ ବାୟୁ ଉଡ଼ିଗଲା ।"

ଏ ଘଟଣା ବର୍ଷକ ତଳେ ଘଟିଥିଲା । ମାତାଙ୍କୁ ସମସ୍ତ ଘଟଣା ଜଣାଇବା ପାଇଁ କୌଶଲ୍ୟାର ପ୍ରେତ ରୂପ ପ୍ରତିଦିନ ରାଜନବରକୁ ଯାଉଥିଲେ, କିନ୍ତୁ ସୁବିଧା ହୋଇନଥିଲା । ମାତା ଦୁହିତାର ଏ ମର୍ମନ୍ତୁଦ ଅବସାନର କାହାଣୀ ଅବଗତ ହୋଇ ଶୋକାକୁଳ ହୋଇପଡ଼ିଲେ । ପର ମୁହୂର୍ତ୍ତରେ ସ୍ୱାମୀଙ୍କର ଏ ଅମାନୁଷିକ କାର୍ଯ୍ୟକଳାପରେ ସେ କ୍ରୋଧାନ୍ୱିତ ହେଲେ ।

'କଷ୍ଟେମନସ୍ୱିନୀ ଉତ୍ତାରିଲା କ୍ରୋଧ
ରୋଧିଣ ଧୈର୍ଯ୍ୟ ରଜ୍ଜୁରେ
ନିଶାନ୍ତ ଅନ୍ଧାରେ ମୃଦୁ ପଦକ୍ଷେପରେ
ଫେରିଗଲେ ହଂସପୁରେ"

**ଦ୍ୱିତୀୟସର୍ଗ**—ଦୋଳପୂର୍ଣ୍ଣିମା ଦିନ । ଆଜି ବିଜୟୀ ଗଙ୍ଗେଶ୍ୱର ରଣପୁର ଜୟ ପରେ ନୀଳାଚଳକୁ ପ୍ରତ୍ୟାଗମନ କରିବେ । ପୁରବାସୀ, ରାଜପରିବାର, ପାତ୍ରମନ୍ତ୍ରୀ ପ୍ରଭୃତି ଏ ଶୁଭ

ବାସରେ ବିଜୟୀ ରାଜାଙ୍କୁ ଯଥୋଚିତ ସମ୍ବର୍ଦ୍ଧନା କରିବା ନିମନ୍ତେ ଉଦ୍‌ଗ୍ରୀବ ହୋଇ ରହିଁ ବସିଛନ୍ତି ।

"ମହାହର୍ଷଭରେ ଉନ୍ମତ୍ତ ସରବେ
ସ୍ଥବିର ଯୁବା ବାଳକ,
ମର୍ତ୍ତ୍ୟ ବଇକୁଣ୍ଠ ନାମ ଶ୍ରୀକ୍ଷେତ୍ରର
ହୋଇଅଛୁ କାର୍ଯ୍ୟେ ସାର୍ଥକ ।"

ଦିନ ଛଅ ଘଡ଼ିଠାରେ ହସ୍ତୀଦନ୍ତ ଶିବିକାରେ ଚନ୍ଦ୍ରପୁର ଜେମା ଅନ୍ନପୂର୍ଣ୍ଣା ନଗରରେ ପ୍ରବେଶ କଲେ । ନୀଳାଚଳର ଅଦୂରବର୍ତ୍ତୀ ଚନ୍ଦ୍ରଭାଗା ନଦୀ ତୀରରେ ଗଙ୍ଗେଶ୍ୱର ଉପସ୍ଥିତ ହୋଇ ସାରିଥିଲେ । "ବିଜେ ହେବେ ପ୍ରଦୋଷେ" ବୋଲି ପ୍ରହରୀ କହିଲେ । ଅନ୍ନପୂର୍ଣ୍ଣା ସସମ୍ମାନରେ ରାଜନବର ଭିତରକୁ ଗଲେ । ମହାଦେବୀ ପାର୍ବତୀ ପ୍ରଭୃତି ତାଙ୍କୁ ପାଛୋଟିନେଲେ । କିଛିକ୍ଷଣ ପରେ ତାଙ୍କ ଆଗରେ ଅନ୍ନପୂର୍ଣ୍ଣା ନିଜର ଜୀବନ କାହାଣୀ ବର୍ଣ୍ଣନା କଲେ । ସେ ଚନ୍ଦ୍ରପୁରାଧି-ପତିଙ୍କର ଏକମାତ୍ର ସନ୍ତତି ଜନ୍ମ ହେବାମାତ୍ରେ ମାତାଙ୍କ ମୃତ୍ୟୁ ହେବାରୁ ପିତା ତାଙ୍କୁ ବହୁ ଯତ୍ନରେ ପାଳିଥିଲେ । ବିବାହ ବୟସ ହେବାରୁ ପିତା ଜେମାଙ୍କୁ ସତ୍ପାତ୍ରରେ ଦାନକରି ଜାମାତାଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରିଦେବା ସ୍ଥିର କରିଥିଲେ ; ନିଜେ ଉଦାସୀ ହେବା ମଧ୍ୟ ମନ କରିଥିଲେ । ଗଙ୍ଗେଶ୍ୱର ଚନ୍ଦ୍ରପୁର ଆକ୍ରମଣ କରିବାରୁ ରାଜା ଯୁଦ୍ଧ ଏଡ଼ାଇବା ପାଇଁ ସ୍ଥିର ଗଙ୍ଗେଶ୍ୱରଙ୍କ ପୁତ୍ର 'ଏକଜାତି'ଙ୍କ ସହିତ ନିଜଦୁହିତା ଅନ୍ନପୂର୍ଣ୍ଣାର ବିବାହ ପ୍ରସ୍ତାବ କଲେ । କିନ୍ତୁ ଗଙ୍ଗେଶ୍ୱର ଏଥିରେ ଅସମ୍ମତ ହେଲେ ଏବଂ ବିନା ସର୍ତ୍ତରେ ଆତ୍ମସମର୍ପଣ କରିବାକୁ ଦାବୀ କଲେ । "କୋପବିକମ୍ପିତ ସ୍ୱରରେ ପ୍ରତିଧ୍ୱନି, କହିଲେ ତହୁଁ ହୁଙ୍କାରି; ଆସନ୍ନ ମୃତ୍ୟୁର ନିଜ ବୁଦ୍ଧି ଯିନା, ଦଅଇ ତା'ର ଉଗାରି !" ଚନ୍ଦ୍ରପୁର ରାଜା ଯେଉଁ ପ୍ରସ୍ତାବ ପତ୍ର ଦେଇଥିଲେ ତାଙ୍କୁ ଲକ୍ଷ୍ୟକରି ଗଙ୍ଗେଶ୍ୱର କହିଲେ

"ଏ ଲେଖର ପ୍ରତିଲେଖ ଦେବ ମୁହିଁ, ବେଗେ ରତ୍ନପୁରେ ପଶି;
ଲେଖମୀ ତାହାର ଏବ୍ବ ଅସି ତୋର ରାଜରକ୍ତ ହେବ ମସୀ !"

ରାଜକୁମାରମାନଙ୍କୁ ସମ୍ବୋଧନ କରି କହିଲେ, ରାଜା ଯେ ଏ ଗଡ଼ ଜୟ କରିବ ତା ହସ୍ତରେ ପୁରବାଳୀକ ଦେବେ । ଗଙ୍ଗେଶ୍ୱର କ୍ରୋଧରେ ରତ୍ନପୁର ଦୁର୍ଗ ଆକ୍ରମଣ କରିବାରୁ ରତ୍ନାପୁରାଧିପତି ଗଡ଼ଦ୍ୱାର ବନ୍ଦ କଲେ । ଗଡ଼ ବହୁଦିନ ଅବରୁଦ୍ଧ ହେବାରୁ ଅନାହାର ଦେଖାଗଲା; ବହୁ ଲୋକ ମଲେ । ସବୁ ରାଜକୁମାର ଏକାବେଳକେ ଗଡ଼ ଆକ୍ରମଣ କରିବାରୁ ଏ ଅବସ୍ଥା ହେଲା ।

"ଭୈରବ ଭୈରବୀ ଭୋଜଭୂମି ପ୍ରାଏ ହଶିଲା ସଂଗ୍ରାମସ୍ଥଳୀ ।"

କବି ଏ ପର୍ଯ୍ୟନ୍ତ ଲେଖିଛନ୍ତି । କାବ୍ୟଟି ଅସମ୍ପୂର୍ଣ୍ଣ ରହିଲା । ପରେ କବିଙ୍କ ଟିପାଖାତାରୁ ଗଦ୍ୟରେ ଲେଖା ଅବଶିଷ୍ଟାଂଶ ପ୍ରକାଶ ପାଇଛି ।

ରତ୍ନପୁର ଅଭିଯାନ ସମୟରେ ହିନେ ପାରିଧି କରିବା ଉଦ୍ଦେଶ୍ୟରେ ଏକଜାତ ବନମଧ୍ୟରେ ପ୍ରବେଶ କରିଥିଲେ । ଅନ୍ନପୂର୍ଣ୍ଣା ସେଠାରେ ସଖୀସହ ବେହରଣ କରୁଥିଲେ । ଦୁହିଁଙ୍କ ଭେଟ ହୋଇଥିଲା । ଅନ୍ନପୂର୍ଣ୍ଣା ଏକଜାତଙ୍କ ପ୍ରତି ଆକୃଷ୍ଟ ହୋଇ-ଥିଲେ ।

ରତ୍ନପୁର ବିଜୟ ପରେ ଗଙ୍ଗେଶ୍ୱର ଅନ୍ନପୂର୍ଣ୍ଣାଙ୍କୁ ନିଜେ ବିବାହ କରିବାକୁ ସ୍ଥିର କଲେ । ଅନ୍ନପୂର୍ଣ୍ଣା ଚନ୍ଦ୍ରବଧୂ ହେବା ପରିବର୍ତ୍ତେ ରାଣୀ ହେବା ନିଶ୍ଚିତ ହେଲା ।

ଅନ୍ନପୂର୍ଣ୍ଣାଙ୍କଠାରୁ ପାର୍ବତୀ ଏସବୁ କରୁଣ ବୃତ୍ତାନ୍ତ ଓ ରାଜାଙ୍କ ନୃଶଂସ ଚରିତ ବିଷୟ ଶୁଣିବାରୁ ଦୁଃଖିତ ହେଲେ; ରାଜାଙ୍କ ପ୍ରତି ତାଙ୍କ ମନରେ ଘୃଣା ପ୍ରତିଶୋଧ ଭାବ ଜାତ ହେଲା । ରାଜା ପ୍ରଦୋଷରେ ମାଳାଚଳରେ ପ୍ରବେଶ ହେଲେ । ମହାଦେବୀ ପାର୍ବତୀ

ତାଙ୍କୁ ରାଜନଗର ମଧ୍ୟସ୍ଥ ମଣ୍ଡପରେ ସମ୍ବର୍ଦ୍ଧନା କରିବା ବେଳେ ତାଙ୍କୁ ଖଣ୍ଡାରେ ଭୁଷିଦେଇ ମାରିଦେଲେ ଏବଂ ନିଜେ କୂପ ଭିତରକୁ ଡେଇଁ ପଡ଼ି ପ୍ରାଣ ତ୍ୟାଗକଲେ । ଅନ୍ନପୂର୍ଣ୍ଣା ବିଷ ଖାଇ ଆତ୍ମହତ୍ୟା କଲେ ।

ପାର୍ବତୀ କାବ୍ୟ ଅସମ୍ପୂର୍ଣ୍ଣ ରହିବାର କାରଣ ସ୍ୱରୂପ କବିଙ୍କପୁତ୍ର ଶଶିଭୂଷଣ ରାୟ ଯେଉଁ କୈଫିୟତ ପ୍ରଦାନ କରିଛନ୍ତି ତାହା "ରାଧାନାଥ ଗ୍ରନ୍ଥାବଳୀ"ରେ ସ୍ଥାନ ପାଇଛି । "ମୋହର ପଞ୍ଚଦଶ ବର୍ଷ ବୟସ ସମୟରେ ପରମାରାଧ୍ୟ ପିତୃଦେବ ପାର୍ବତୀ କାବ୍ୟ ରଚନା କରିଥିଲେ । କଠୋର ଦୁର୍ବିପାକ ବଶରୁ ସେହି ସମୟରେ ମୋହର ପୀଡ଼ା ପ୍ରବଳତର ହୋଇଥିଲା । ସେହି ଦୁଃଖ ତାହାଙ୍କୁ ପାର୍ବତୀ ରଚନାରୁ ବିରତ କରିଥିବା ବିଷୟ ସ୍ଥାନାନ୍ତରରେ କଥିତ ହୋଇଥିଲା । ଯେତିକ କବିତାକାରରେ ଥିଲା ତାହା ପୂର୍ବରୁ ମୁଦ୍ରିତ ହୋଇଅଛି । ସେହି ଦୁଃଖକୁ ସ୍ମରଣୀୟ କରିବା ପାଇଁ ପାର୍ବତୀକୁ ଅସମ୍ପୂର୍ଣ୍ଣ ରଖିଥିଲେହେଁ ଏହାର ଉତ୍ତରାର୍ଦ୍ଧ ଗଦ୍ୟାକାରରେ ଲେଖି ରଖିଥିଲେ । ତାହାଙ୍କର ସ୍ୱର୍ଗାରୋହଣ ପୂର୍ବରୁ ଉତ୍କଳର ବହୁସଂଖ୍ୟକ ବନ୍ଧୁଙ୍କ ଅନୁରୋଧ କ୍ରମେ ତାହାକୁ କବିତାକାରରେ ସାଙ୍ଗ କରିବାର ଅଭିଳାଷ ଥିଲା । ମାତ୍ର ଦାରୁଣ ବିଧି ବାମ ହେବାରୁ ତାଙ୍କର ସେ ଅଭିଳାଷ ପୂର୍ଣ୍ଣହୋଇ ପାରିଲା ନାହିଁ । ସେହି ଗଦ୍ୟ କାବ୍ୟାଂଶ ବର୍ତ୍ତମାନ ଅବିକଳ ପ୍ରଦତ୍ତ ହେଲା । ଶ୍ରୀ ଶଶିଭୂଷଣ ରାୟ ।"

ଆଲୋଚନା :—ପାର୍ବତୀ କାବ୍ୟରେ ପାତ୍ରପାତ୍ରୀଙ୍କ ସଂଖ୍ୟା ଅଳ୍ପ । ଗଙ୍ଗେଶ୍ୱର ଚନ୍ଦ୍ରପୁର ରାଜା, ରାଜକୁମାର ଏକଜାତ, କଞ୍ଚୁକୀ, ପ୍ରହରୀ ପ୍ରଭୃତି ପୁରୁଷ ; ଓ ପାର୍ବତୀ, କୌଶଲ୍ୟାର ପ୍ରେତ, ଅନ୍ନପୂର୍ଣ୍ଣା, ରାଣୀମାନେ ପ୍ରଭୃତି ସ୍ତ୍ରୀ କାବ୍ୟରେ ସ୍ଥାନ ପାଇଛନ୍ତି । ଏମାନଙ୍କ ଭିତରେ ଗଙ୍ଗେଶ୍ୱର, କୌଶଲ୍ୟା, ପାର୍ବତୀ, ଚନ୍ଦ୍ରପୁର ରାଜା, ଅନ୍ନପୂର୍ଣ୍ଣା, କଞ୍ଚୁକୀ ପ୍ରଧାନ ।

ଗଙ୍ଗେଶ୍ୱର ଦେବ ଉତ୍କଳାଧିପତି ; ପିତା ଚୋଡ଼ଗଙ୍ଗଦେବଙ୍କ ପରେ ସିଂହାସନ ଆରୋହଣ କରିଛନ୍ତି । ଯୁବରାଜ ଏକଜାତ ଗଙ୍ଗେଶ୍ୱରଙ୍କ ଉତ୍ତରାଧିକାରୀ । ଗଙ୍ଗେଶ୍ୱର ଦେବ ଓ ତାଙ୍କ ପିତା ଚୋଡ଼ଗଙ୍ଗଦେବ ଉତ୍କଳାଧିପତି ବୋଲି ଖ୍ୟାତ ଥିଲେ ମଧ୍ୟ ସମଗ୍ର ପ୍ରାକୃତିକ ଉତ୍କଳ ଗଙ୍ଗେଶ୍ୱରଙ୍କ ରାଜତ୍ୱାଧୀନ ନଥିଲା ଏବଂ ଉତ୍ତରାଞ୍ଚଳରେ ମୟୂରଭଞ୍ଜ ଅଞ୍ଚଳରେ ଅବସ୍ଥିତ ରମ୍ୟପୁର ରାଜ୍ୟ ଗଙ୍ଗବଂଶ-ରାଜାଙ୍କର ବଶତା ସ୍ୱୀକାର କରି ନଥିବା ରାଧାନାଥଙ୍କ ପାର୍ବଣୀ କାବ୍ୟରୁ ଜଣାପାଏ । କିନ୍ତୁ ଇତିହାସଦ୍ୱାରା ଏହା ସମର୍ଥିତ ନୁହେଁ; ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ତ୍ରିକଳିଙ୍ଗାଧିପତି ବା ଉତ୍କଳାଧିପତି ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନରେ ଥିଲା । ତଥ୍ୟର ଐତିହାସିକତା ସମ୍ବନ୍ଧରେ କବିଙ୍କୁ ଦାୟୀ କରିବା अନୁଚିତ, ସେ ତାଙ୍କ କଳ୍ପନାବିଳାସର ଦାସ । ଏଠାରେ ଗଙ୍ଗେଶ୍ୱରଙ୍କୁ ଜଣେ ଦିଗବିଜୟୀରାଜା ଓ ରମ୍ୟପୁରକୁ ଏକ ପଡ଼ୋଶୀ ସ୍ୱାଧୀନ ରାଜ୍ୟ ରୂପେ ଗ୍ରହଣ କଲେ କାବ୍ୟବିଷୟବସ୍ତୁର ମର୍ମ ହୃଦୟଙ୍ଗମ କରିବାରେ ଓ କାବ୍ୟରସ ଆସ୍ୱାଦନ କରିବାରେ ଯଥେଷ୍ଟ ହେବ ।

ଚୋଡ଼ଗଙ୍ଗଦେବ ଦକ୍ଷିଣ କଳିଙ୍ଗରେ ରାଜତ୍ୱ କରୁଥିଲେ । ସମ୍ଭବତଃ ସେ ଖ୍ରୀ ୧୧୧୨ ପରେ ଓଡ଼ିଶା ଜୟକରି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କଲେ । କଟକର ବିଡ଼ାନାସୀ ଗ୍ରାମରେ ( ବର୍ତ୍ତମାନର ବାରବାଟୀ ଦୁର୍ଗ ) ରାଜଧାନୀ ସ୍ଥାପନ କରିଥିଲେ । ଏହି ରାଜଧାନୀର ନାମ "ଅଭିନବ ବାରାଣସୀ" ବୋଲି ତାମ୍ରଫଳକ, ପ୍ରସ୍ତରଲିପିମାନଙ୍କରୁ ଜଣାପାଏ । ଏହାଙ୍କ ପରେ ଏହାଙ୍କ ପୁତ୍ର କାମାର୍ଣ୍ଣବ ଦେବ ରାଜତ୍ୱ କଲେ । ଏହି କାମାର୍ଣ୍ଣବ ଗଙ୍ଗେଶ୍ୱର ନାମରେ ମଧ୍ୟ ପରିଚିତ ଥିଲେ । ଏ ରାଜାଙ୍କ

ପରେ ଏହାଙ୍କ ଭ୍ରାତା ରାଘବଦେବ ରାଜା ହେଲେ । କାମାର୍ଣ୍ଣବ କାମଦେବ ଓ ଏକଜଟା କାମଦେବ ନାମରେ ମଧ୍ୟ ପରିଚିତ ଥିଲେ ।

ଓଡ଼ିଶାରେ ଗଙ୍ଗରାଜତ୍ୱ ପ୍ରତିଷ୍ଠିତ ହେବାବେଳକୁ ଭୁବନେଶ୍ୱର ନିକଟସ୍ଥ ଶିଶୁପାଳଗଡ଼ ଏକ ପ୍ରଧାନ ଦୁର୍ଗ ଥିଲା । ଶିଶୁପାଳଗଡ଼କୁ ଗଙ୍ଗବଂଶ ରାଜାମାନେ ସୁଦୃଢ଼ କରି ଉଚ୍ଚକୋଟିର ସ୍କନ୍ଧାବାରର ଉପଯୁକ୍ତ ସମ୍ମାନ ଦାନ କରିଥିଲେ । ଏହିଗଡ଼ ନିକଟରେ ଧଉଳୀ ପର୍ବତ ଓ ବିଖ୍ୟାତ କୌଶଲ୍ୟାଗାଙ୍ଗ ପୁଷ୍କରିଣୀ ଅବସ୍ଥିତ । ଧଉଳୀ-ପର୍ବତର ପାଦଦେଶରେ ଖୋଦିତ ଏହି ପୁଷ୍କରିଣୀଟି ପୂର୍ବେ ଦୈର୍ଘ୍ୟ ଓ ପ୍ରସ୍ଥରେ ପ୍ରାୟ ଦୁଇମାଇଲ ଥିଲା । ଏହି ଚାରି ବର୍ଗମାଇଲ ବିସ୍ତୃତ ଗଭୀର ପୁଷ୍କରିଣୀର ମଧ୍ୟସ୍ଥାନରେ ଏକ ଦ୍ୱୀପାକାର ସ୍ଥାନ ଉପରେ ସମୀରଣ ସେବନ ନିମିତ୍ତ ଏକ କ୍ଷୁଦ୍ର ଅଟ୍ଟାଳିକା ନିର୍ମିତ ହୋଇଥିଲା ।

ପ୍ରାୟ ଆଠଶହ ବର୍ଷ ପୂର୍ବର ଘଟଣାକୁ କବି ଆଶ୍ରୟକରି କାବ୍ୟ ରଚନା କରିଛନ୍ତି । "କୌଶଲ୍ୟା ଗାଙ୍ଗ" ନାମ ସହିତ ଜଡ଼ିତ ଥିବା ଏକ ବିଭିନ୍ନ କିମ୍ବଦନ୍ତୀକୁ ଗ୍ରହଣ କରି କବି ସ୍ୱକଳ୍ପନା ବଳରେ ତାହାକୁ କାବ୍ୟକଥାବସ୍ତୁ ବଳରେ ରୂପ ଦାନ କରିଛନ୍ତି । ଏକାଧିକ କିମ୍ବଦନ୍ତୀ ବିଦ୍ୟମାନ ଥିଲେ ମଧ୍ୟ କବି ଏହି ବିଭିନ୍ନ କିମ୍ବଦନ୍ତୀକୁ ଗ୍ରହଣ କରିଛନ୍ତି ।

କୌଶଲ୍ୟା କାମାର୍ଣ୍ଣବ ବା ଗଙ୍ଗେଶ୍ୱରଙ୍କ ପ୍ରିୟତମା କନ୍ୟା ଥିଲେ । ତାଙ୍କର ଅକାଳ ମୃତ୍ୟୁରେ ବ୍ୟଥିତ ହୋଇ ପିତା ପୁଷ୍କରିଣୀଟି ସ୍ମୃତି ସ୍ୱରୂପ ଖୋଳାଇଥିଲେ ଏବଂ ପିତା କନ୍ୟା ଉଭୟଙ୍କ ନାମ ରକ୍ଷାର୍ଥେ "କୌଶଲ୍ୟାଗାଙ୍ଗ" ନାମକରଣ କଲେ । ଏହି କିମ୍ବଦନ୍ତୀର ମର୍ମ କବିଙ୍କ ପ୍ରଦତ୍ତ କଥାବସ୍ତୁର ସମ୍ପୂର୍ଣ୍ଣ ବିପରୀତ । ଏଥିରେ କନ୍ୟା ସହିତ ପିତାଙ୍କ ପାପପ୍ରଣୟର ସୂଚନା ନାହିଁ ଉଭୟଙ୍କ ଚରିତ୍ର ଉଜ୍ଜ୍ୱଳ ।

କେତେକେ କହନ୍ତି, କୌଶଲ୍ୟା ଗଙ୍ଗେଶ୍ୱରଙ୍କ ପ୍ରିୟତମା ରାଣୀ । ଉଭୟଙ୍କ ନାମରକ୍ଷାର୍ଥ ଏହି ପୁଷ୍କରିଣୀଟି ରାଜା ଖୋଳାଇଥିଲେ । ଏହା ସହିତ ମଧ୍ୟ କବିଙ୍କ କଥାବସ୍ତୁର ମେଳ ନାହିଁ ।

ଛିଦ୍ର ମାଠିଆରେ ପାଣି ପୂରେଇ ଚଳାଇବା ସହିତ ଯୁକ୍ତଥିବା ଦଣ୍ଡର ରୀତିକୁ କବି ରଚନାରେ ସ୍ଥାନ ଦେଇ ଏବଂ କଥାବସ୍ତୁର "ଅମର୍ଯ୍ୟାଦା" ପ୍ରସଙ୍ଗର ବର୍ଣ୍ଣନା ପଲ୍ଲବିତ କରି ସ୍ଥାନ ଦେଇଥିବାରୁ କବିଙ୍କ ରଚନାର ଲକ୍ଷ୍ୟ ସାଧିତ ହୋଇଛି—ପ୍ରସଙ୍ଗଟି ବିଶେଷ ଭାବରେ ବିଭତ୍ସ ଓ କରୁଣରସାପ୍ଲୁତ ହୋଇପଡ଼ିଛି ।

ଗଙ୍ଗେଶ୍ୱର ବିଶାଳ ଉତ୍କଳ ଭୂଖଣ୍ଡର ଅଧୀଶ୍ୱର; ପିତାଙ୍କର ଯାବଙ୍ଖୀୟ ଗୌରବ ତାଙ୍କୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ସମ୍ମାନିତ କରୁଛି । ସେ ଦିଗ୍‌ବିଜୟୀ, ଶାସକ । ଦିଗ୍‌ବିଜୟରେ ଅମାନୁଷିକ 'ପରରାଜ୍ୟ ଲୁଣ୍ଠନ', 'ନରରକ୍ତପାତ' ଅବଶ୍ୟମ୍ଭାବୀ; ଏହାକୁ ଦାର୍ଶନିକ ଦୃଷ୍ଟିରୁ ଦେଖି ରାଜଚରିତ୍ର ନିରୂପଣ କରିବା ଅନୁଚିତ; କାରଣ, ଏହା ଅଧର୍ମ ଥିବା ଧର୍ମଶାସ୍ତ୍ରର ମତ ନୁହେଁ । ପୁଣି, ରାଜାର ରାଜଚକ୍ରବର୍ତ୍ତୀ ହେବା ଲାଳସା ଅନୁଚିତ ନୁହେଁ, କି ପାପ ନୁହେଁ । ଗଙ୍ଗେଶ୍ୱର ସ୍ୱରାଷ୍ଟ୍ରର ସୀମାବୃଦ୍ଧି ନିମନ୍ତେ ରତ୍ନପୁର ଆକ୍ରମଣ କରିବା ମଧ୍ୟ ଅସଙ୍ଗତ ନୁହେଁ, ଯେହେତୁ ଏହା ପ୍ରାକୃତିକ ଉତ୍କଳର ଏକ ଅଂଶବିଶେଷ । ରତ୍ନପୁରର ସ୍ୱାଧୀନତା ପ୍ରତି ପରୋକ୍ଷରେ ପଡ଼ୋଶୀ ପ୍ରତାପୀ ବଙ୍ଗ ନରପତିଙ୍କ ସାହାଯ୍ୟ ଥିବା ଆଶଙ୍କା ଉତ୍କଳାଧିପତିଙ୍କ ମନରେ ଯଦି ଜାତ ହୋଇଥାଏ ତାହାହେଲେ ମଧ୍ୟ ଅନୁଚିତ ହେବନାହିଁ । ଅବଶ୍ୟ ଏହାର ସୂଚନା କାବ୍ୟର କୌଣସିଠାରେ ନାହିଁ । କଞ୍ଚୁକୀର ଦାର୍ଶନିକ ମତ ସ୍ୱତନ୍ତ୍ର ଅବସ୍ଥିତିରେ ଉଚ୍ଚକୋଟୀର ବିବେଚିତ ହେବା ସମ୍ଭାବନା ଥିଲେ ମଧ୍ୟ ଗଙ୍ଗେଶ୍ୱରଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ ଏହା ମିଥ୍ୟାସ୍ୱରୂପ ପ୍ରଯୁଜ୍ୟ ହୋଇନପାରେ ।

ଅଧର୍ମରେ ମତି ରାଜାଙ୍କର ସଦା ଅଧର୍ମରେ ସଦା ଗତି
ବିଶାଳ ସାମ୍ରାଜ୍ୟ ଲଭି ନ ତୁଟିଲା ଲୋଭ ପରରାଜ୍ୟ ପ୍ରତି ।
ସ୍ୱଧର୍ମ ତାଙ୍କର ପରବସ୍ତୁ-ଗ୍ରାସ ବଳେ ଛଳେ କଉଶଳେ ।
ପ୍ରବଳ ଲାଳସା ମାତି ଆଚରଣ ଦାରୁଣ ମାତି ଦୁର୍ବଳେ ।
ପୁଣ୍ୟଶ୍ଳୋକ-ଚୋଡ଼ଗଙ୍ଗର ଅଙ୍ଗଜ ହୋଇ ହେଲେ ଏଡ଼େ କ୍ରୂର
ମଦେ ମତ୍ତ ହୋଇ ନିତ୍ୟ ମଣନ୍ତି ଯା ସ୍ୱଭାବେ କ୍ଷଣଭଙ୍ଗୁର ।

କବି କଞ୍ଚୁକୀ ମୁଖରେ ଯୁଦ୍ଧର ବିଭୀଷିକା ସମ୍ପର୍କରେ ଯେଉଁ ଚିତ୍ର ଦେଇଛନ୍ତି ତାହା ଅତି ଜୀବନ୍ତ ହୋଇଛି ଏବଂ ଦାର୍ଶନିକ ଦୃଷ୍ଟିଭଙ୍ଗୀ ମଧ୍ୟ ଉଚ୍ଚକୋଟିର ହୋଇଛି । ଗଙ୍ଗେଶ୍ୱରଙ୍କ ଦିଗ୍‌ବିଜୟର ବିଭୀଷିକା ତାଙ୍କ ପିତାଙ୍କ ଦିଗ୍‌ବିଜୟର ବିଭୀଷିକା ଅପେକ୍ଷା ଅଳ୍ପ ଥିବା କଳ୍ପନା କରାଯାଇପାରେନାହିଁ । ଚୋଡ଼ଗଙ୍ଗ ମଧ୍ୟ ଉତ୍କଳ ଆକ୍ରମଣ କରି ଅକାରଣ ରକ୍ତପାତରେ ଦାୟୀ ହୋଇଥିଲେ । ଗଙ୍ଗେଶ୍ୱର ପିତାଙ୍କ ପଦାଙ୍କ ଅନୁସରଣ କରି ରାଜ୍ୟର ସୀମା ବିସ୍ତାର କରି ସମଗ୍ର ଉତ୍କଳକୁ ଏକ ଶାସନାଧୀନରେ ଆଣିବାପାଇଁ ଯେଉଁ ଉଦ୍ୟମ କରିଥିଲେ ତାହା ବିନା ରକ୍ତପାତରେ ସମ୍ଭବ ହୋଇ ପାରି ନ ଥାଆନ୍ତା ।

ଦିଗ୍‌ବିଜୟ ସହିତ ସଂଯୁକ୍ତ 'କ୍ରୂରତା' ଚୋଡ଼ଗଙ୍ଗ ଓ ଗଙ୍ଗେଶ୍ୱର ଉଭୟଙ୍କ ପ୍ରତି ପ୍ରଯୋଜ୍ୟ ହେଲେ ମଧ୍ୟ କେବଳ ଏଥିପାଇଁ ଉଭୟେ ହେୟ ନୁହନ୍ତି ।

କାବ୍ୟର ଚିତ୍ରଣ ଅନୁସାରେ ଗଙ୍ଗେଶ୍ୱରଙ୍କ ବ୍ୟକ୍ତିଗତ ଜୀବନରେ 'କ୍ରୂରତା' ଯେ ତାଙ୍କ ସମଗ୍ର ଜୀବନକୁ କଳଙ୍କିତ କରିଛି ଏଥିରେ ସନ୍ଦେହ ନାହିଁ ।

ପିତା ହୋଇ କନ୍ୟା ପ୍ରତି ପାପାଚରଣ କରିବା ଯେ କି ଜଘନ୍ୟ, ଅମାନୁଷିକତା ଓ ବର୍ବରତା ତାହା ବର୍ଣ୍ଣନା କରାଯାଇ

ପାରିବ ନାହିଁ । ପୁଣି, ନିଜ ପାପକୁ ଘୋଡ଼ାଇ ରଖିବା ପାଇଁ କନ୍ୟାର ଅସଚ୍ଚରିତ୍ର ପ୍ରଚାର କରିବା ସଙ୍ଗେ ସଙ୍ଗେ ତାଙ୍କ ପ୍ରତି କଠୋର ରାଜକୀୟ ଶାସ୍ତି ବିଧାନ କାର୍ଯ୍ୟ କ୍ରୂରତା, କପଟତା ଓ ପାପର ମାତ୍ରାକୁ ବହୁଗୁଣରେ ବର୍ଦ୍ଧିତ କରିଛି; ଗଙ୍ଗେଶ୍ୱରଙ୍କ ଚରିତ୍ରକୁ ଏକାବେଳକେ କଳଙ୍କକାଳିମା-ସାଗରରେ ବୁଡ଼ାଇ ଦେଇଛି । ଏଭଳି ପାପୀ କପଟୀ ପିତାର ଦୃଷ୍ଟାନ୍ତ ସଂସାରର ଇତିହାସରେ ବିରଳ । କାବ୍ୟର ଗଙ୍ଗେଶ୍ୱରଙ୍କ ଚରିତ୍ର ଐତିହାସିକ ବାସ୍ତବ ଗଙ୍ଗେଶ୍ୱରଙ୍କ ଚରିତ୍ର ସହିତ କେତେଦୂର ମେଳ ହେଉଛି ତାହା ନିର୍ଣ୍ଣୟ କରିବା ସମ୍ଭବ ନୁହେଁ; କାରଣ, ଏ ସମ୍ପର୍କୀୟ କିମ୍ବଦନ୍ତୀସମୂହରେ ନିର୍ଦ୍ଦିଷ୍ଟ ରୂପେ କେନ୍ଦ୍ରସାରେତତ୍ତ୍ୱକୁ ସମର୍ଥନ କଲି ଭଳି ଉପାଦାନ ଯଥେଷ୍ଟ-ପରିମାଣରେ ନାହିଁ । ଅବଶ୍ୟ, କବିଙ୍କ ଗଙ୍ଗେଶ୍ୱରଙ୍କ ଚରିତ୍ର ସ୍ପଷ୍ଟ ଦେଖାଯାଉଛି, ତାଙ୍କର ଘୃଣ୍ୟ ମୂର୍ତ୍ତିଟି ପାଠକର ସମକ୍ଷରେ ଦଣ୍ଡାୟମାନ ହେଲି ଭଳି ଲାଗୁଛି ଏବଂ ପାଠକ ନିଜେ ପାଷଣ୍ଡଙ୍କ ଖଣ୍ଡାଧରି ପାପୀକୁ ହତ୍ୟା କରିବା ପାଇଁ କୁଣ୍ଠିତ ହେଉନଥିବା ଚେତନା ଜାଗ୍ରତ ହେଉଛି । ଏହିଠାରେହିଁ କବିଙ୍କ ଲେଖନୀ ସାର୍ଥକତା ଲଭ କରିଛି ।

ଘୃଣ୍ୟ ଚରିତ୍ର ପ୍ରତି ସମ୍ୟକ-ଘୃଣା ଜାତ କରାଇବା ଦିଗରେ କବି କାବ୍ୟର ଆରମ୍ଭରୁ ଯତ୍ନ କରିଛନ୍ତି । କାଞ୍ଚୁକୀମୁଖରେ ଗଙ୍ଗେଶ୍ୱରଙ୍କ ଦିଗ୍‌ବିଜୟ ନ୍ୟାୟାନୁମୋଦିତ ନଥିବା କୁହାଇଛନ୍ତି । ଗଙ୍ଗେଶ୍ୱର ପୁଣ୍ୟଶ୍ଳୋକ ରାଜା ଚୋଡ଼ଗଙ୍ଗଙ୍କ ପୁତ୍ର ହୋଇ ପରରାଜ୍ୟଗ୍ରାସ ରୂପକ ଘୃଣ୍ୟକାର୍ଯ୍ୟ ଓ ଯୁଦ୍ଧ ରୂପକ କ୍ରୂର କାର୍ଯ୍ୟ କରିଛନ୍ତି ବୋଲି ମଧ୍ୟ କାଞ୍ଚୁକୀ ବ୍ୟକ୍ତ କରିଛନ୍ତି । ଏଥିରେ ଏ ଘୃଣା ଓ ପ୍ରତିଶୋଧ ଭାବ କ୍ରମେ ବୃଦ୍ଧି ପାଇଛି ଏବଂ ଘଟଣାପ୍ରବାହର ପ୍ରତ୍ୟେକ ସ୍ତରରେ ବର୍ଦ୍ଧିତ ହୋଇଛି । ଗଙ୍ଗେଶ୍ୱରଙ୍କ ଚରିତ୍ର ଶେଷ ପର୍ଯ୍ୟନ୍ତ କାଳିମାମୟ ରହିଛି;

ତାଙ୍କର ପ୍ରତ୍ୟେକ କଥା, ପ୍ରତ୍ୟେକ କାର୍ଯ୍ୟର ପଶ୍ଚାତରେ ଜଘନ୍ୟ ଚରିତ୍ରର ଛାପ ଥିବା ଜଣାଯାଉଛି ; ଏଭଳି ଚରିତ୍ର ପ୍ରତି ହତ୍ୟା କେବଳ ଉପଯୁକ୍ତ ଦଣ୍ଡ ବୋଲି ମନରେ ଧାରଣା ହେଉଛି । ପାର୍ବତୀ ଏହି କାର୍ଯ୍ୟଟି ସାଧିତ କରିଥିବାରୁ ପତିହନ୍ତା ଦୋଷରେ ତାଙ୍କୁ ଅଭିଯୁକ୍ତ କରିବା ପାଇଁ ପାଠକର ମନ ବଳୁନାହିଁ । ଏହା କବିଙ୍କ ଲେଖନୀର ବାହାଦୁରୀ ।

**ପାର୍ବତୀ**—ପାର୍ବତୀଙ୍କ ଚରିତ୍ରକୁ କବି ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିଛନ୍ତି । ମାତାର ଯାବତୀୟ ସ୍ନେହ, ମମତା, ତ୍ୟାଗ, ଆଶା ଆକାଙ୍‌କ୍ଷାଦି ସଦ୍‌ଗୁଣ ତାଙ୍କଠାରେ ଏକତ୍ରିତ ହୋଇଥିଲା । ସେ ମହାଦେବୀ ବା ପାଟମହାଦେବୀ ; ପଦୋଚିତ ଶୀଳତା ତାଙ୍କ ଚରିତ୍ରର ଭୂଷଣ । ଅଶେଷ ମନସ୍ତାପରେ ମଧ ପାର୍ବତୀ ବାହ୍ୟ କିମ୍ବା ଆଭ୍ୟନ୍ତର କୌଣସି ବ୍ୟବହାରରେ ତାଙ୍କର ମାନସିକ ଅବସ୍ଥାର ପ୍ରଭାବ ପକାଇ କାର୍ଯ୍ୟ କିମ୍ବା କଥାପ୍ରବାହର ଗତିକୁ ପରିବର୍ତ୍ତିତ କରିନାହାନ୍ତି । ପୃଥ୍ୱୀ ପରି ସେ ସବୁ ଦୁଃଖକୁ ଗର୍ଭରେ ପୂରେଇ ରଖିଛନ୍ତି । ଦୁଃଖରେ ସେ କାତର ହୋଇଥିଲେ ମଧ ଦୁଃଖ ଛାୟା କେବଳ ତାଙ୍କର ମୁଖମଣ୍ଡଳରେ ପ୍ରକାଶ ପାଇଛି ସିନା ସ୍ୱବାହ୍ୟ କାର୍ଯ୍ୟରେ ତାହା ପ୍ରତିଫଳିତ ହୋଇନାହିଁ । ଏକେ ନୀଳାଚଳ କ୍ଷେତ୍ର, ସେଥିରେ ପୁଣି ଦୋଳ ଉତ୍ସବ ; ଏ ମହୋତ୍ସବ ମଧ ମହାଦେବୀଙ୍କ ଉପରେ ସ୍ୱ ଉତ୍‌ଫୁଲ୍ଲ ଭାବର ପ୍ରଭାବ ପକାଇ ପାରିନାହିଁ ।

ଏ ବିଭବେ ଥାଇ ମହାରାଣୀଙ୍କର ମନେ ନାହିଁ ସୁଖ ଲେଶ,
କି କୌଶଳେ କଲା ଶୋକ-କୀଟ ଏହି କୁସୁମବନେ ପ୍ରବେଶ ।
ମହୋତ୍ସବ କ୍ଷେତ୍ରେ ଦେହ ମାତ୍ର ଅଛି, ମନ ଭ୍ରମୁଅଛି କାହିଁ,
ସେଗୀହାସ୍ୟ ପରି ହର୍ଷ ଦେବୀଙ୍କର ହୃଦପୁଁ ଆସଇ ନାହିଁ ।

ଉତ୍କଳର ରାଜଜେମା କୌଶଲ୍ୟା ସୁଶିକ୍ଷିତା;ପରମ ରୂପବତୀ । ସେ ପିତା ଗଙ୍ଗେଶ୍ୱରଙ୍କ ସହିତ ରତ୍ନପୁର-ଅଭିଯାନରେ ଯାଇ ବହୁକାଳ ହୋଇଯାଇଥିଲେ ମଧ୍ୟ ମାତାଙ୍କଠାକୁ ଫେରିନାହାନ୍ତି । କୌଶଲ୍ୟା ଗୁପ୍ତପ୍ରେମରେ ପଡ଼ି ଯେଜାନବାସରେ ସସତ୍ତ୍ୱା ହେଲେ, ଏହି କଳଙ୍କ ଦେଶେ ଦେଶେ ବ୍ୟାପିଗଲା । ପୁଣି, ରାଜା ଜେମାମୁଖ ଚାହିଁବେ ନାହିଁ ବୋଲି ପ୍ରତିଜ୍ଞା କଲେ । ଜେମା ପାଇଁ ନିର୍ଜ୍ଜନ କାରାବାସ ନିରୂପିତ ହେଲା । ଜେମା କାରାଗାରରୁ ନିରୁଦ୍ଦେଶ ହେଲେ ଏବଂ ବହୁ ଅନ୍ୱେଷଣ ପରେ ମଧ୍ୟ କୌଣସି ସମ୍ବାଦ ନମିଳିବାରୁ ରାଜା ଏଥିରୁ କ୍ଷାନ୍ତ ହେଲେ । ଏହି ଖବର ରାଣୀଙ୍କ-ଠାରେ ପହଞ୍ଚିବା ଦିନୁଁ ସେ ମ୍ରିୟମାଣ ହୋଇପଡ଼ିଲେ, ଏବଂ ସେ ଏବେ "ଅତୁଳ ବିଭବେ ଥାଇ ଜୀବନକୁ କରୁଛନ୍ତି ତୁଚ୍ଛ ଜ୍ଞାନ ।"

ମୃତ୍‌ପାକ ପ୍ରାୟେ ଗୁପତେ ତପତେ
ଜଳୁଅଛି ମର୍ମସ୍ଥଳ
ଧୈର୍ଯ୍ୟଶୀଳା ଧୈର୍ଯ୍ୟ ଆବରି ସେ ଭାବ
ବାହ୍ୟେ ଦିଶନ୍ତି ଶୀତଳ ।

ତଥାପି ତାଙ୍କର ମଜ-ସରୋଜ ବଦନ ଶୋକରେ ଫିକା ପଡ଼ିଯାଇଛି, କୋମଳ କପୋଳରେ ଦାରୁଣ କଷ୍ଟ ନିଜ ମୁଦ୍ରିକାକୁ ମାରିଦେଇଛି ।

ଦୁହିତାର ସମ୍ବାଦ ଜାଣିବା ପାଇଁ ସବୁବେଳେ ତାଙ୍କ-ଚିତ୍ତ ଆକୁଳ ହେଉଥିଲା । ଏହି ସମୟର ତାଙ୍କର ଅବସ୍ଥା ଦ୍ୱନ୍ଦ୍ୱ ଭିତରେ ଗତି କରୁଥିଲା ; ଏକେତ ଦୁହିତାର ଅବସ୍ଥା—"କାହିଁ ଭ୍ରମୁଅଛି, ଦୁଃଖେ ସେ ଦୁଃଖିନୀ"; ଦୁଇରେ, ସେ କୁଳକଳଙ୍କିନୀ । ନିରୁଦ୍ଦିଷ୍ଟ କୁଳକଳଙ୍କିନୀ କନ୍ୟାର ଏହି ଦୁର୍ଦ୍ଦଶା ଗର୍ଭଧାରିଣୀ ମାତାର ମର୍ମ୍ମବିଦାରି ହେଉଥିଲା ।

ଧର୍ମପରାୟଣା ପାର୍ବତୀ ଏ କ୍ଷେତ୍ରରେ ଭଗବାନଙ୍କ ଆଶ୍ରୟ ନେବା ଛଡ଼ା ଅନ୍ୟ ଗତି ଦେଖିନାହାନ୍ତି ; ପ୍ରତିଦିନ ଜଗନ୍ନାଥ ମନ୍ଦିରର ନିବେଦନ ସ୍ଥାନ ଗରୁଡ଼ସ୍ତମ୍ଭ ନିକଟରେ ପ୍ରଭୁଙ୍କୁ ନିଜ ଦୁଃଖ ଜଣାଇଛନ୍ତି । ଦୁଃଖିନୀ ମାତା, ଦୁଃଖିନୀ ମହାଦେବୀ, ଦୁଃଖିନୀ ଭକ୍ତର ଆର୍ତ୍ତନାଦରେ ପ୍ରଭୁଙ୍କ ଆସନ ଟଳମଳ ହୋଇଛି । ସେ ଅଶରୀରୀ ବାଣୀ ଶୁଣାଇଛନ୍ତି । ଏହି ବାଣୀ ଯୋଗୁଁ ରାଣୀଙ୍କର "ଉପୁଜିଲା ଚିତ୍ତେ ଦୁହିତାଦର୍ଶନ ଆଶା ହୃଦୟେ ନବୀନ ।" ଏହା ପ୍ରସ୍ତାବରେ କନ୍ୟାଦର୍ଶନ-ଆଶାରେ ଧ୍ୟାନ ରଖି "ଅନ୍ୟ କର୍ମେ ଦେବୀ ହୋଇଥିଲେ ଉଦାସୀନ ।" ଉଦାସୀନ ହେଲେ ମଧ୍ୟ ସେ ବିଧି ଆଚରଣରେ ହେଳା କରି ନାହାନ୍ତି, ମହାଦେବୀର କାର୍ଯ୍ୟ ପରିଚାଳନା କରିଛନ୍ତି,—'ବିଧିରେ ଆଚରି ଦୋଳ ମହୋତ୍ସବ, ପଦ୍ମଦଳେ ଜଳପରି । "ସେ ଆମୋଦେ ରତ ନହୋଇ ବିରତ" ଥିଲେ ।

ପାର୍ବତୀ କଞ୍ଚୁକୀଠାରୁ ନଅର ଭିତରେ କୌଶଲ୍ୟା ପ୍ରେତରୂପରେ ବିଚରଣ କରୁଥିବା ସମ୍ବାଦ ଶୁଣିବା ପୂର୍ବରୁ ଦୁହିତାର ମୃତ୍ୟୁ ସମ୍ବନ୍ଧରେ ନିଶ୍ଚିତ ନଥିଲେ । ଦୁହିତାର ଦୋଷ ସମ୍ବନ୍ଧରେ ମାତାର ମନରେ ସନ୍ଦେହ ନଥିଲେ ମଧ୍ୟ ସବିଶେଷ ଘଟନା ଜାଣିବାପାଇଁ ତାଙ୍କର ମନ ବ୍ୟଗ୍ର ଥିଲା ।

"ଆହାରେ କୌଶଲ୍ୟା" କହିଲେ ସୁନ୍ଦରୀ,
ଏହା କି ଥିଲା ତୋ ମନେ ?
ନିଜମୁଖେ କାଳି, ଦେଇ ସେହି କାଳି
ଦେଲୁ ମୋହର ବଦନେ ।"

"ଉଜ୍ଜଳ ଆକାଶେ ଗଗନରସାଇଁ ଅମଳ ଶଶାଙ୍କ ସଦୃଶ,
ସୂତା ହୋଇ ତାଙ୍କ ଉଜ୍ଜ୍ୱଳ ଶ୍ରୀମୁଖରେ କଳଙ୍କ ଲଗାଇ ଦେଲୁ"

ବୋଲି ମାତା ଦୁଃଖ ପ୍ରକାଶ କଲେ । ଏଥିରୁ ସ୍ପଷ୍ଟ ହେଉଛି,ଦୁହିତାର ଦୋଷକୁ ମାତା ସମର୍ଥନ କରି ନାହାନ୍ତି, ବରଂ, ପିତାମାତା ଓ ବଂଶର ଉଜ୍ଜ୍ୱଳ ମୁଖରେ କାଳି ବୋଳି ଦେଇଥିବାରୁ ସେ ଅତି ଦୁଃଖିତ ହୋଇଛନ୍ତି । ଏ ପର୍ଯ୍ୟନ୍ତ କନ୍ୟା କୌଶଲ୍ୟା ପ୍ରତି ମାତୃ ହୃଦୟରୁ କୋମଳ ଭାବ ଲେପ ପାଇ ନଥିଲେ ମଧ୍ୟ ଏଥିରେ ଲୋକାପବାଦ ପ୍ରଧାନ ସ୍ଥାନ ଅଧିକାର କରିଛି ।

ରତ୍ନପୁର-ବିଜୟ ଉଦନ୍ତ ନୀଳାଚଳରେ ପହଞ୍ଚିବା ପରେ ଦୋଳ-ଉତ୍ସବ ସହିତ ବିଜୟୀବୀର ଗଙ୍ଗେଶ୍ୱରଙ୍କ ସମ୍ବର୍ଦ୍ଧନାର ଆୟୋଜନ କରିବା ପାଇଁ ନିଜେ ମହାରାଣୀ ଆଦେଶ ଦେଇଥିଲେ । ଦୁହିତାର ଦୁଃଖକାହାଣୀ ସମ୍ବର୍ଦ୍ଧନା ଆୟୋଜନ-ବ୍ୟବସ୍ଥାରେ କୌଣସି ପ୍ରଭାବ ପକାଇଥିବା ଜଣାପାଉନାହିଁ; ପାର୍ବତୀ ନିର୍ବିକାର-ଚିତ୍ତରେ ଉଦାସୀ ପରି କାର୍ଯ୍ୟ କରିଯାଇଛନ୍ତି ।

ସେହି ସମୟରେ କଞ୍ଚୁକୀଠାରୁ କୌଶଲ୍ୟାର ପ୍ରେତରୂପ ପ୍ରସଙ୍ଗ ଶ୍ରବଣ କରି ଏହା ସତ୍ୟ କି ମିଥ୍ୟା ପରୀକ୍ଷା କରି ଜାଣିବା ପାଇଁ ପାର୍ବତୀ ବ୍ୟଗ୍ର ହେଲେ । ସେ ଠାକୁରଙ୍କ ଆଜ୍ଞା ସ୍ମରଣ କରି ଦୁହିତାର ଏହି ପ୍ରେତରୂପଠାରୁ ତାହାର ନିଜ କାହାଣୀ ଶୁଣିବା ପାଇଁ ରାତିରେ ନିର୍ଜ୍ଜନରେ ଜଗି ବସିଲେ,

"ତୁମାର ସ୍ୱରୂପ ଦେଖିଲି ପ୍ରହରୀ କହୁଛି ନିଜ ନୟନେ,
ସତ କି ମିଛ ତା ରହି ଆଜ ଜଗି, ଦେଖିବି ବସି ନିର୍ଜ୍ଜନେ ।"

ପାର୍ବତୀଙ୍କ ବାସ୍ତବ ଦୃଷ୍ଟିକୋଣ "ଏ ଅଦ୍ଭୁତ କଥା ନିଜେ ନ ଦେଖିଲେ କେମନ୍ତେ ବା ହେବ ପ୍ରତେ" ଏହି ଭାବ ଜାଗ୍ରତ କରାଇଥିଲା । କୌଶଲ୍ୟାର ପ୍ରେତରୂପ ମୁଖରୁ ତାର କରୁଣ କାହାଣୀ ଶୁଣିବା ପରେ ମାତାର "ହୃଦ-ଯନ୍ତ୍ରେ ଧୈର୍ଯ୍ୟ ତନ୍ତ୍ରୀ"

ଭୁଟିଗଲା । ସେ କ୍ରନ୍ଦନ କରି ଭାବିଲେ, "କି କରିବି ? ଏହା କେମନ୍ତେ ସମ୍ଭବ ? ହୃଦ ତ ଯାଉଛି ଫାଟି ।" ଭାବନା-ତରଙ୍ଗର ତାଡ଼ନାରେ ସେ ଅସ୍ଥିର ହୋଇପଡ଼ିଲେ ।

"ଏହା କହୁଁ କହୁଁ ଶୋକାବେଗେ ରୁଦ୍ଧ ହୋଇଗଲା କଣ୍ଠସ୍ୱର ।
କୋପେ ନେହୁଁ ଅଗ୍ନିକଣା ନିଃସରିଲା ସ୍ଫୁରିଲା ରଙ୍ଗ ଅଧର ।"

ମହାରାଣୀ ମନସ୍ୱିନୀ ; ସେ ଧୈର୍ଯ୍ୟ ହରାଇ ନଥିଲେ, "ଉତ୍ତରଳ କ୍ରୋଧକୁ ଧୈର୍ଯ୍ୟ ରଜ୍ଜୁରେ ବାନ୍ଧି" ଦେଲେ । ରାଜାଙ୍କ ପ୍ରତି ଘୃଣା-ଅଗ୍ନି ଅନ୍ତରରେ ପ୍ରଜ୍ଜ୍ୱଳିତ ହେବାକୁ ଲାଗିଲା ।

ପରଦିନ—ପୂର୍ଣ୍ଣିମା ବିଜୟୀ ଗଙ୍ଗେଶ୍ୱର ନୀଳାଚଳରେ ପହଞ୍ଚିବା ପୂର୍ବରୁ ରତ୍ନପୁରଜେମା ଅନ୍ନପୂର୍ଣ୍ଣା ରାଜନବରରେ ପ୍ରବେଶ କଲେ । ତାଙ୍କଠାରୁ ପାର୍ବତୀ ତାଙ୍କର ଦୁଃଖ-କାହାଣୀ ଶୁଣିବାରୁ ରାଜାଙ୍କ ପ୍ରତି ଘୃଣା ବିଶେଷ ଭାବରେ ବୃଦ୍ଧି ପାଇଲା । ଯେ ସ୍ୱପୁତ୍ର-ବଧୂ ହୁଅନ୍ତା ତାକୁ ପୁଣି ସେ ନିଜର ଅଙ୍କଶାୟିନୀ କରିବେ ! ହିତାହିତଜ୍ଞାନ ଶୂନ୍ୟ, ନିଷ୍ଠୁର, ପାପୀ, ଦୁହିତାହନ୍ତା ପ୍ରତି ଶାସ୍ତି ବିଧାନ କିଏ କରିବ ? ରାଣୀ ନିଜେ ସ୍ୱହସ୍ତରେ ସେ ଭାର ନେଲେ । ସମ୍ବର୍ଦ୍ଧନାର ସୁଯୋଗରେ ନିଜେ ସ୍ୱହସ୍ତରେ ସ୍ୱାମୀଙ୍କ ହୃଦୟରେ ଖଡ୍ଗ ବିଦ୍ଧ କରି ପ୍ରତିଶୋଧ ନେଲେ । ପାପୀ ପ୍ରାଣ ଦେଇ ଦଣ୍ଡ ପାଇଲା ।

ପାର୍ବତୀଙ୍କ ସ୍ୱାମୀହତ୍ୟା, ଆତ୍ମହତ୍ୟା ଘଟଣାଚକ୍ରରେ ସମର୍ଥନ-ଯୋଗ୍ୟ ହୋଇଛି ; ଏହା ଛଡ଼ା ଅନ୍ୟ ସହଜ ସ୍ପୃହଣୀୟ ଉପାୟ ଆଉ କଣ ହୋଇପାରେ ? ଦୁହିତାର ଶୋଚନୀୟ ଜୀବନାବସାନ ପରେ ସେ ବଞ୍ଚିରହିବା ଇଚ୍ଛା କରିନଥିଲେ ; ସ୍ୱାମୀଙ୍କ ପ୍ରତି ସ୍ୱାଭାବିକ ଘୃଣା ଅତ୍ୟଧିକ ମାତ୍ରାରେ ବୃଦ୍ଧି ପାଇବାରୁ ସେ

ପ୍ରତିଶୋଧ ଓ ଦଣ୍ଡର ବ୍ୟବସ୍ଥା କରିବା ପାଇଁ କେବଳ ଅପେକ୍ଷା କରି ରହିଥିଲେ । ପିତା ହସ୍ତରେ ଦୁହିତା ଓ ଭାର୍ଯ୍ୟା ହସ୍ତରେ ସ୍ୱାମୀର ମୃତ୍ୟୁ କେବଳ ଆତ୍ମହତ୍ୟାରେ ଶେଷ ହେବାରୁ ରାଣୀ ସ୍ୱୟଂ ପରବର୍ତ୍ତୀ ଲୋକାପବାଦ ଭୋଗ କରିବାରୁ ରକ୍ଷା ପାଇଲେ ।

ପାର୍ବତୀଙ୍କ କରୁଣ ରୋଦନ ତାଙ୍କର ସ୍ନେହପୂର୍ଣ୍ଣ ମାତୃହୃଦୟର ପରିଚୟ ଦେଉଛି । ସେ ଏ ଅଦ୍ଭୁତ, ଶୋଚନୀୟ ପାପକାଣ୍ଡର ପରିଣତିରେ ଏତେ ବିଚଳିତ ହୋଇପଡ଼ିଛନ୍ତି ଯେ ସେ ଭଗବାନଙ୍କୁ ଡାକିଛନ୍ତି; ଏବଂ ଅତି ଦୁଃଖରେ କହିଛନ୍ତି :

"ଏ ବିଷମ କଥା ଏ ସଂସାରେ କେହି ଶୁଣି ନାହିଁ କେଉଁକାଳେ ।
ମାତା ହୋଇ ଏହା ଶୁଣିବାର ଏକା ଲେଖାଥିଲା ମୋର ଭାଲେ ।"

ନିଜଭାଗ୍ୟକୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ପାର୍ବତୀ ଦୁହିତାର ଭାଗ୍ୟରେ ଏପରି ପିତା ଏବଂ ତାଙ୍କ ଭାଗ୍ୟରେ ଏପରି ପତି ସୃଷ୍ଟି କରି କାହିଁକି ବା ଲେଖିଲେ, ଏବଂ ଏହା ତାଙ୍କର "କେଉଁ ଦୁଷ୍କୃତିର ପ୍ରାୟଶ୍ଚିତ୍ତ ?" ବୋଲି ଦୁଃଖ କରିଛନ୍ତି ; ଭାଗ୍ୟଦାତାକୁ ନିନ୍ଦା କରିଛନ୍ତି । ରାଜା ହୋଇ ଏଡ଼େ 'ପାଷଣ୍ଡ' ପୁଣି ଜନ୍ମ ହୁଅନ୍ତି ! ପୁଣି କି ଘଟଣା ! "ଧର୍ମରକ୍ଷା ଲାଗି ଏ ପୁଣି ଧରନ୍ତି ଭୂମଣ୍ଡଳେ ରାଜଦଣ୍ଡ ।" ବିଧାତାଙ୍କୁ ଦୋଷ ଦେଇ ସେ କହିଛନ୍ତି—

"ଜଗତେ ସତ୍କାର ଲଭନ୍ତି ଏ ପୁଣି,
ଧନେ ପ୍ରାଣେ ଜନେ ନାଶି ।
ତୁମ୍ଭେ ପୁଣି ଦିଅ, ଏହାଙ୍କର ପଟେ
ଅଜାଡ଼ି ସୌଭାଗ୍ୟରାଶି ।"

ରଙ୍ଗେଶ୍ୱରଙ୍କ ରାଜପଣ ଓ ଗୌରବକୁ ଧିକ୍କାର କରି ଜଗତରେ ରାଜା ଅସତ୍‌କାର୍ଯ୍ୟ କରୁଥିବା ଓ ଅସତ୍ କାର୍ଯ୍ୟ ନିନ୍ଦିତ ନହୋଇ ଯଶଲାଭ କରୁଥିବାରୁ ଦୁଃଖ ପ୍ରକାଶ କରିଛନ୍ତି । ପାର୍ବତୀ ମନୋବେଦନାରେ ଏପରି କହିଥିବାହିଁ ଅନୁମାନ ହୁଏ, ଏହି ସମୟକୁ ତାଙ୍କର ମନର ଅବସ୍ଥା ଅତ୍ୟନ୍ତ ତିକ୍ତ ହୋଇଯାଇଥିଲା । ଏହି କାରଣରୁ ସେ ଏହିସବୁ ଧିକ୍କାର ସହିତ ଦେବଦେବୀମାନଙ୍କୁ ସମ୍ବୋଧନ କରି "କେଉଁ ଦୋଷେ ମୋର କୌଶଲ୍ୟାର ଦୁଃଖ ତୁମ୍ଭରେ ନହେଲା ଘେନା ?" ବୋଲି ପଚାରିଛନ୍ତି, ଏବଂ ପ୍ରଭୁମାନଙ୍କ ସଦ୍‌ପ୍ରଭାବ ଓ ଶକ୍ତିରେ ସେ ସତତ ଯେପରି ଆଉ ବିଶ୍ୱାସ ରଖି ପାରିନାହାନ୍ତି; ଗ୍ରହନକ୍ଷତ୍ରଙ୍କୁ ରାଣୀ ସମ୍ବୋଧନ କରି କହୁଛନ୍ତି—"ଏ ପାପର ଛାଇ ପଡ଼ି ନଥିଲା କି ତୁମ୍ଭ ଜ୍ୟୋତିର୍ମୟ ରଥେ :"

"ଅଥବା କରୁଛି ତୁମ୍ଭରେ ତୁମ୍ଭର ବୃଥା ମୁହିଁ ଏ ବିଳାପ,
ତୁମ୍ଭ କ୍ଷୋଭ ଜାତ କରିନପାରଇ ମର୍ତ୍ତ୍ୟଲୋକ ପାପତାପ ।"

ପ୍ରଭୁ ଭଗବାନଙ୍କୁ ଡାକି କହୁଛନ୍ତି—"ତୁମ୍ଭ ହସ୍ତେ ଚକ୍ର ଥାଉଁ ଚନ୍ଦ୍ରମା ଗ୍ରାସିଲା ଏ ପାପରାହୁ ।" ପୁଣି, ପ୍ରଭୁଙ୍କ ଶକ୍ତିକୁ ସନ୍ଦେହ କରି କହିଛନ୍ତି—

"ଆରତର ମାହା କେତେ ହେଲେ ନାଥ,
ଟଳେ କୃପାସିଂହାସନ
ଫେରାଇଫେଡ଼ିବା ପାଇଁ ଆଜ୍ଞା ହେଉ
ଶ୍ରୀମୁଖୁଁ ପ୍ରତିବଚନ ।"

ପାର୍ବତୀ ଜଗନ୍ନାଥଙ୍କ ଭକ୍ତ, ପୂର୍ଣ୍ଣ ଈଶ୍ୱରବିଶ୍ୱାସୀ; ହେଲେହେଁ ଏ ଅକଥନୀୟ ଦୁର୍ବିପାକରେ ସେ ମ୍ରିୟମାଣ ହୋଇଯାଇଛନ୍ତି; କିଏ ବା ନ ହେବ ?

ପାର୍ବତୀ ରାଣୀ, ଐଶ୍ୱର୍ଯ୍ୟଶାଳିନୀ, ମାତା; ସବୁ କ୍ଷେତ୍ରରେ ସେ ଉପଯୁକ୍ତ ବ୍ୟବହାର କରି ମାନମର୍ଯ୍ୟାଦା ରକ୍ଷା କରିଛନ୍ତି । କବି ଏ ଅପୂର୍ବ ଚରିତ୍ର ସୃଷ୍ଟି କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

**କୌଶଲ୍ୟା** – କୌଶଲ୍ୟା ରାଜନନ୍ଦିନୀ ; ରାଜପରିବାରସୁଲଭ ଯାବତୀୟ ସୁଖସୁବିଧା ଭୋଗ କରି ସେ ଐଶ୍ୱର୍ଯ୍ୟରେ ଜୀବନଯାପନ କରିଛନ୍ତି । ପିତାଙ୍କ ସ୍ନେହାଧିକ୍ୟରୁ ସେ ଚନ୍ଦ୍ରପୁର ଅଭିଯାନରେ ପିତାଙ୍କ ଶିବିରରେ ଅବସ୍ଥାନ କରିଛନ୍ତି । "ଏକମାତ୍ର ପୁଷ୍ପ ଅଛନ୍ତି ସେହି ଶିବିର କଣ୍ଟକବନେ ।"

କୌଶଲ୍ୟା ରୂପ, ଗୁଣରେ ଜଗତରେ ଅତୁଳା । ସେ ଜଗତମନମୋହିନୀ ଥିଲେ । ରାଜକୁମାରମାନଙ୍କ "ଲୋଚନ-ଭ୍ରମର-ଅମଳ ନବ-ନଳିନୀ" ମଧ୍ୟ ଥିଲେ । ଚନ୍ଦ୍ରପୁର ଗଡ଼ ଦୀର୍ଘ ଅବରୋଧ ପରେ ମଧ୍ୟ ଅପରାଜେୟ ରହିବାରୁ ରାଜାପିତା ଏହି ଜଗତମୋହିନୀ କନ୍ୟାକୁ ଏ ଅଭିଯାନର ଜୟ ନିମନ୍ତେ ବ୍ୟବହାର କରିଛନ୍ତି । ଗଙ୍ଗେଶ୍ୱର ରାଜକୁମାରମାନଙ୍କୁ ସମ୍ବୋଧନ କରି ଦୁର୍ଗ-ଜୟର ପୁରସ୍କାର ସ୍ୱରୂପ କୌଶଲ୍ୟାପ୍ରାପ୍ତି ବୋଲି ଘୋଷଣା କରିଛନ୍ତି;

"ଏ କନ୍ୟାକୁ ଅଙ୍କଲକ୍ଷ୍ମୀ କରିବାର ଅଭିଳାଷ ଥିଲେ ମନେ,
ଦେଖାଅ ବିକ୍ରମ ଅରିସଙ୍ଗେ ରଣ-ରଙ୍ଗେ ଯୁଝି ପ୍ରାଣପଣେ ।

ଏହି ଦୁର୍ଗଶିରେ ପତାକା ପୋତିବ ଶତ୍ରୁକୁ ଯେ ଯୁବା ଜିଣି,
କ୍ଷିତାକାଶେ ସେହି ଶଶାଙ୍କର ଅଙ୍କଲକ୍ଷ୍ମୀ ହେବେ ଏ ରୋହିଣୀ ।"

ପିତାଙ୍କ ପ୍ରତିଜ୍ଞା ବଶରୁ ସ୍ୱୟମ୍ବର ଉଦ୍ଦେଶ୍ୟରେ ପିତାଙ୍କ ଶିବିରରେ ଅବସ୍ଥାନ କରୁଥିବା ବେଳେ, ପିତାଙ୍କ ସେବା ଶୁଶ୍ରୂଷା କରି ତାଙ୍କର ବିଷାଦମନକୁ ଉତ୍ଫୁଲ୍ଲ ରଖୁଥିବା ବେଳେ, ସେ ଯେ ପିତାଙ୍କର ପାପକାର୍ଯ୍ୟର ଶିକାର ହୋଇ ପଡ଼ିବେ ଏହା

କୌଶଲ୍ୟା କଳ୍ପନାରେ ସୁଦ୍ଧା ଭାବିନଥିଲେ; କେହି ମଧ୍ୟ ଏପରି ଭାବି ନପାରେ ।

କୌଶଲ୍ୟା ସପତ୍ନୀ ହେବାରୁ ଅପବାଦ ସୃଷ୍ଟି ହୋଇଗଲା । ଏଥିରେ ପିତା ଦୋଷୀ ଅଥଚ ଅପବାଦଜନ୍ମ ମୁକ୍ତି ପାଇଁ କୌଶଲ୍ୟାଙ୍କୁ ହିଁ ଦୁଃଖ ଭୋଗ କରିବାକୁ ହେଲା । ଅକଥନୀୟ, ଅମାନୁଷିକ ଅତ୍ୟାଚାର ସହ୍ୟ କରି କରି ସେ ଯେପରି ଭାବରେ ମୃତ୍ୟୁବରଣ କରିଛନ୍ତି ତାହା ଲେଖନୀରେ ବର୍ଣ୍ଣନା କରିବା ସହଜ ନୁହେଁ ; କବି ଏ କରୁଣ, ହୃଦୟବିଦାରକ ଚରିତ୍ରଟିକୁ ଅଙ୍କନ କରି ଯଶସ୍ୱୀ ହୋଇଛନ୍ତି ।

ଏହି କାବ୍ୟରେ କୌଶଲ୍ୟାଙ୍କ ଜୀବନର ଶେଷ ପରିଣତି ହୋଇ ଅତି କରୁଣ ଶୋଚନୀୟ ଭାବରେ ସଂଘଟିତ ହୋଇଥିବାରୁ କୌଶଲ୍ୟା ପାଠକର ଦୟା ଓ ସହାନୁଭୂତିର ପାତ୍ର ହୋଇଛନ୍ତି ।

ପାପାଚରଣ ପରେ ଆତ୍ମହତ୍ୟା ଯେମାଙ୍କ ପକ୍ଷରେ ସ୍ପୃହଣୀୟ ପରିଣତି ହୋଇପାରିଥାଆନ୍ତା, ଏ ଦୁଃଖ କାହାଣୀ ହୁଏତ ସେହିଠାରେ ଶେଷ ହୋଇଥାଆନ୍ତା, ଅପବାଦର ଜନ୍ମଠାରେ ମୃତ୍ୟୁ ହୋଇଥାଆନ୍ତା । କବି ପାପୀକୁ ଦଣ୍ଡ ଦେବା ଅଭିପ୍ରାୟରେ ପ୍ରେତରୂପ ସର୍ଜନା କରି ରାଣୀଙ୍କ ମନରେ ରାଜାଙ୍କ ପ୍ରତି ଘୃଣାଭାବ ଜାଗ୍ରତ କରାଇଛନ୍ତି, ଏବଂ ତାଙ୍କ ହସ୍ତରେ ହତ୍ୟା କରାଇଛନ୍ତି । ଅଲୌକିକ ଶକ୍ତି ସାହାଯ୍ୟରେ ସମସ୍ୟାର ସମାଧାନ କରିବା ପାଇଁ କବି ଚେଷ୍ଟିତ ଥିବାରୁ ଘଟଣା ପ୍ରବାହରେ ଗୁରୁତ୍ୱହୀନ ଗତି ଦେଖାଦେଇଛି । ଏହାର ଫଳସ୍ୱରୂପ ଦୟା ଓ ସହାନୁଭୂତିର ପାତ୍ରୀ କୌଶଲ୍ୟାର ଚରିତ୍ର ସନ୍ଦେହମୁକ୍ତ ହୋଇ ପାରିନାହିଁ । କବି ଆରମ୍ଭରୁ କୌଶଲ୍ୟା ପ୍ରତି ପାଠକର ସଦୟ ଦୃଷ୍ଟି ଆକର୍ଷଣ କରିଥିବାରୁ ପାଠକ

କୌଶଲ୍ୟାର ଏହି ପରିଣତି ପାଇଁ ପ୍ରସ୍ତୁତ ନଥିଲେ । କବିଙ୍କ କଳ୍ପନା ଏଠାରେ ସଫଳ ହୋଇନଥିବା ସ୍ପଷ୍ଟ ହେଉଛି । କମ୍ବଦନ୍ତୀକୁ ଆଶ୍ରୟ କରି କବି ମୁଖ୍ୟ ଚରିତ୍ରର ଚିତ୍ରଣ କରିବାକୁ ଉଦ୍ୟତ ହୋଇଥିବାରୁ ପରସ୍ପରବିରୋଧୀ ଘଟଣାବଳୀ ଦେଖାଦେଇଛି ଓ ସ୍ୱବିରଣିରେ ସ୍ୱରସାମ୍ୟ ରକ୍ଷା କରି ପାରିନାହାନ୍ତି ; ପାପାଚରଣରେ ଗଙ୍ଗେଶ୍ୱର ଓ କୌଶଲ୍ୟାଙ୍କୁ ସମ-ଆସନ ପ୍ରଦାନ କରିଛନ୍ତି ।

**ଅନ୍ନପୂର୍ଣ୍ଣା**—କାବ୍ୟରେ ଅନ୍ନପୂର୍ଣ୍ଣାର ବିଶେଷ ଅଂଶ ନାହିଁ । କେବଳ ଗଙ୍ଗେଶ୍ୱରଙ୍କ କଳଙ୍କଚରିତ୍ରର ଅନ୍ୟ ଏକ ଘଟଣାର ପ୍ରମାଣ ସ୍ୱରୂପ ତାଙ୍କୁ କବି ସର୍ଜନା କରିଛନ୍ତି । ସେ ମାତୃହୀନ ରାଜକୁମାରୀ, ପିତାଙ୍କ ସ୍ନେହରେ ଲାଳିତାପାଳିତା, ପିତାଙ୍କର ନୟନର ମଣି । ଦୁହିତାକୁ ସତ୍‌ପାତ୍ରରେ ଦାନ କରି ପିତା ଉଦାସୀ ହେବାକୁ ସଂକଳ୍ପ କରିଥିଲେ । ସତ୍‌ପାତ୍ର ପରିବର୍ତ୍ତେ ଜଣେ ନିଷ୍ଠୁର ହୃଦୟ ପାପୀ ହସ୍ତରେ ସେ ପଡ଼ିଲେ । ଏହା ତାଙ୍କର କାର୍ଯ୍ୟକଳାପର ଫଳ ନୁହେଁ । ରତ୍ନପୁରଗଡ଼ ବିନାଯୁଦ୍ଧରେ ଗଙ୍ଗେଶ୍ୱରଙ୍କ ହସ୍ତଗତ ହୋଇଥାଆନ୍ତା, ଯଦି ଗଙ୍ଗେଶ୍ୱର ରତ୍ନପୁରରାଜାଙ୍କ ସଙ୍ଗତ ପ୍ରସ୍ତାବରେ ରାଜି ହୋଇଥାଆନ୍ତେ । ଏହି ରାଜିନାମା ସମ୍ପାଦିତ ହୋଇପାରି-ଥିଲେ ଅନ୍ନପୂର୍ଣ୍ଣା ଉତ୍କଳ ଯୁବରାଜ ଏକଜାତଙ୍କ ପାଣିଗ୍ରହଣ କରିଥାଆନ୍ତେ । କିନ୍ତୁ ମଦାନ୍ଧ ଗଙ୍ଗେଶ୍ୱର ତାଙ୍କୁ ନିଜ ଅଙ୍କଶାୟିନୀ କରିବା ସଂକଳ୍ପ କରିବାରୁ ତାଙ୍କର ଜୀବନର ଶୋଚନୀୟ ଅବସାନ ଘଟିଲା ।

ଗଙ୍ଗେଶ୍ୱରଙ୍କ ପ୍ରତି ପାର୍ବଣୀଙ୍କ ଘୃଣା ଓ ପ୍ରତିଶୋଧଭାବ ବୃଦ୍ଧି କରିବାରେ ଏହି ଘଟଣାଟି ସାହାଯ୍ୟ କରିଛି; ଏହା କାବ୍ୟରେ ଏକ ଅତ୍ୟଧିକ ଅଙ୍ଗ ବୋଲିବାକୁ ହେବ ; ଏହା ନଥିଲେ କଥାବସ୍ତୁର

କୌଣସି କ୍ଷତି ହୋଇନଥାଆନ୍ତା । ଏକଜାତ ଓ ଅନ୍ନପୂର୍ଣ୍ଣାର ଆରାମବନରେ ପ୍ରଥମଦର୍ଶନାଦି ପ୍ରସଙ୍ଗ କବିଙ୍କ ଟିପାଖାତାରୁ କେବଳ ସୂଚନା ମିଳୁଛି । ଏହି ପ୍ରସଙ୍ଗଟି କାବ୍ୟରେ ପ୍ରେମରସର ସୁନ୍ଦର ଅଙ୍ଗଟିଏ ହୋଇପାରିଥାନ୍ତା । କାବ୍ୟଟି ଅସମ୍ପୂର୍ଣ୍ଣ ରହିଥିବାରୁ ପାଠକ ଏଥିରୁ ବଞ୍ଚିତ ହେଲେ ।

କାବ୍ୟର ବହୁ ବିଶିଷ୍ଟାଂଶ କଥୋପକଥନ, ସ୍ୱଗତ ବା ଅଶରୀରବାଣୀରେ କୁହାଯାଇଥିବାରୁ ବର୍ଣ୍ଣନାର ଚମତ୍କାରିତା ସ୍ପଷ୍ଟ ଭାବରେ ପ୍ରକାଶ ପାଇପାରିନାହିଁ ।

ପିତା-ଦୁହିତାର ପାପପ୍ରଣୟ ପ୍ରଣୟ କାହାଣୀ ପକ୍ଷେ ଅନୁପଯୁକ୍ତ ଓ ଅନୁଚିତ ଥିଲେ ମଧ୍ୟ କବି ନୀତି-ବ୍ୟାଖାନ ଉଦ୍ଦେଶ୍ୟରେ ଏହାକୁ ଗ୍ରହଣ କରିଥିବାରୁ ଏହି ଦିଗଟି ବିଶେଷ ଭାବେ କ୍ଷତିଗ୍ରସ୍ତ ହୋଇଛି । ଅନ୍ନପୂର୍ଣ୍ଣା ଓ ଏକଜାତଙ୍କ ପ୍ରଣୟ କାହାଣୀ ସ୍ୱତନ୍ତ୍ର କାବ୍ୟର ବିଷୟ; କବି ଏଥିରେ ଏହାର ସବିଶେଷ ବର୍ଣ୍ଣନା କରିଥିଲେ ମୂଳ ଚରିତର ଆକର୍ଷଣୀ ଶକ୍ତିରେ ବ୍ୟାଘାତ ଘଟି ଥାଆନ୍ତା ।

ଉତ୍କଳପ୍ରକୃତିଭକ୍ତ, ଜାତିପ୍ରିୟ କବି ପକ୍ଷରେ ଭାରତର ଶ୍ରେଷ୍ଠ ଧର୍ମ କ୍ଷେତ୍ର ନୀଳାଚଳ ଧାମର ସବିଶେଷ ବର୍ଣ୍ଣନା, ଜଗନ୍ନାଥଙ୍କ ମହିମା କୀର୍ତ୍ତନ ଅସ୍ୱାଭାବିକ ହୋଇନାହିଁ । ଜଗନ୍ନାଥ ଓ ତାଙ୍କ କ୍ଷେତ୍ରର ଅତୁଳ ଗୌରବ ସ୍ତୁତି, ବର୍ଣ୍ଣନାତ୍ମକ ବିବରଣ, ଆଜ୍ଞା, ତେଜ ପ୍ରକାଶ ପ୍ରଭୃତିରେ ପ୍ରକଟିତ ହୋଇଛି । ଉତ୍କଳର ବହୁ ସ୍ଥାନର ପ୍ରାକୃତିକ ଦୃଶ୍ୟ ଓ ବିଶିଷ୍ଟତା ବର୍ଣ୍ଣନା କରି କବି କାବ୍ୟଟିକୁ ଜାତିପ୍ରୀତି-ସାଗରରେ ସ୍ନାନ କରାଇଛନ୍ତି ।

ନୀଳାଚଳ ଧାମରେ ସନ୍ଧ୍ୟା, ପ୍ରଭାତ, ମହୋଦଧିରେ ଚନ୍ଦ୍ରାଲୋକର ଶୋଭା ପ୍ରକୃତିର ସୁନ୍ଦର ରୂପ ଦେଇ କବି କାବ୍ୟଟିକୁ ସରସ କରିଛନ୍ତି ।

ପ୍ରକୃତି ବର୍ଣ୍ଣନାରେ କବି କୃତିତ୍ୱ ଦେଖାଇଛନ୍ତି; ପ୍ରକୃତିର ପ୍ରଭାବ ମଧ୍ୟ ଅସ୍ୱୀକାର କରି ନାହାନ୍ତି । କିନ୍ତୁ, ଯେଉଁ ପ୍ରକୃତି ଆମ୍ଭରେ ଆନନ୍ଦ ଜାତ କରୁଛି ସେ ପୁଣି ବିପରୀତ ମାନସିକ ଅବସ୍ଥାରେ ଦୁଃଖ ଜାତ କରୁଥିବା ଓ ଅନ୍ୱିତକର ମନେ ହେଉଥିବା ବିଷୟ କବି ଏ କାବ୍ୟରେ ବ୍ୟକ୍ତ କରିନାହାନ୍ତି । ଉପେନ୍ଦ୍ରାଦି ପ୍ରାଚୀନ କବିମାନେ ଏ କ୍ଷେତ୍ରରେ ବିଶେଷ କୃତିତ୍ୱ ଅର୍ଜନ କରିଛନ୍ତି ।

ପଦଯୋଜନାରେ କବି ଚମତ୍କାର କ୍ଷମତା ପ୍ରଦର୍ଶନ କରି-ଛନ୍ତି । ରଚନାକୁ ସରସ କରିବା ନିମନ୍ତେ କବି ବହୁ କୋମଳ ରସପୂର୍ଣ୍ଣ ପଦାବଳୀ ବ୍ୟବହାର କରିଛନ୍ତି । ଉପମାର ସୁସମ ବ୍ୟବହାର ବହୁ ସ୍ଥାନରେ ହୋଇଥିବାରୁ କାବ୍ୟର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଛି ।

ରାଧାନାଥ ପାର୍ବତୀ କାବ୍ୟର ବିଷୟବସ୍ତୁ ୟୁରୋପୀୟ ପ୍ରାଚୀନ କବିମାନଙ୍କ ପ୍ରସିଦ୍ଧ କଥାରୁ, ସଂଗ୍ରହ କରିଛନ୍ତି ବୋଲି କେହି କେହି କହୁଛନ୍ତି । ଏ ସମ୍ବନ୍ଧରେ ପ୍ରସିଦ୍ଧ କବି ହୋମର୍‌ଙ୍କ 'ଇଲିଅଡ୍' କାବ୍ୟର ନାୟକ ଆଗାମେମ୍‌ନନ୍‌ଙ୍କ ଚରିତ ଉତ୍‌ଥାପିତ ହୋଇଥାଏ । ରାଜା ଟ୍ରୟଯୁଦ୍ଧରେ ବ୍ୟାପୃତ ଥିବା ବେଳେ ତାଙ୍କ ରାଣୀ କ୍ଲାଇଟେମେନ୍‌ଷ୍ଟ୍ରେ ଅନ୍ୟ ଏକ ପୁରୁଷ (ଏଜିସ୍‌ଥାସ୍)ଙ୍କ ସହିତ ପାପ ପ୍ରଣୟରେ ଲିପ୍ତ ରହିଲେ । ରାଜା ସ୍ୱଦେଶକୁ ଫେରିବା ମାତ୍ରେ ରାଣୀଙ୍କ ଉପପତି ତାଙ୍କୁ ହତ୍ୟା କଲେ ଏବଂ ନିଜେ ରାଜା ହେଲେ । ମୃତ ରାଜାଙ୍କ ଔରସରେ ରାଣୀଙ୍କ ଗର୍ଭରୁ ଅରେଷ୍ଟିସ୍ ନାମକ ଏକ ପୁତ୍ର ଜନ୍ମଲଭ

କରିଥିଲେ । ସେତେବେଳେ ସେ ଶିଶୁ । ଉପଯୁକ୍ତ ବୟସ ହେବାରୁ ସେ ପିତୃହନ୍ତାଙ୍କୁ ହତ୍ୟା କରି ପିତାଙ୍କ ସିଂହାସନ ଉଦ୍ଧାର କରିଥିଲେ ଏବଂ ନିଜେ ରାଜା ହୋଇଥିଲେ ।

ହୋମରଙ୍କ ଏହି କଥାବସ୍ତୁର ସାରାଂଶକୁ ଗ୍ରହଣ କରି ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ ଏସକାଇଲସ୍ (Aeschylus) ଆଗାମେମ୍‌ନନ୍ (Agamemnon) ନାମକ ନାଟକ ରଚନା କରିଥିଲେ । ଏଥିରେ ନାଟ୍ୟକାର ରାଣୀଙ୍କୁ ପତିହନ୍ତ୍ରୀ ଓ ଅରେଷ୍ଟିସ୍‌ଙ୍କୁ ମାତୃହନ୍ତା ରୂପେ ଚିତ୍ରଣ କରିଛନ୍ତି ।

ରାଧାନାଥଙ୍କ ପାର୍ବତୀ କାବ୍ୟର କଥାବସ୍ତୁ ସହିତ ଏହାର କିଛି ସାମ୍ୟ ଦୃଷ୍ଟିଗୋଚର ହେଉଥିଲେ ମଧ୍ୟ ବିଷୟର ଶରୀର-ଗଠନ ଓ ବିନିବେଶରେ ଏହି ସାମ୍ୟ କ୍ରମେ କ୍ଷୀଣ ଦେଖାଯାଉଛି । ମାନବ ପ୍ରକୃତି ସବୁଦିନେ ସବୁସ୍ଥାନରେ କବିଙ୍କ ଶକ୍ତି ଅନୁସାରେ ଅକ୍ଷରରେ ପ୍ରକାଶ ପାଇଛି । ଗଙ୍ଗେଶ୍ୱରଙ୍କୁ ରାଧାନାଥ ଯେପରି ଭାବରେ ଚିତ୍ରିତ କରିଛନ୍ତି, ସେପରି ଦୃଷ୍ଟାନ୍ତ, ବେଶି ନହେଲେ ମଧ୍ୟ ସ୍ଥାନେ ସ୍ଥାନେ କାଳେ କାଳେ ଦେଖାଯାଏ । ଏଥିରେ ଅନୁକରଣ, ଅନୁସରଣ ବା ହନୁକରଣର ପ୍ରାଧାନ୍ୟ କିଛି ନାହିଁ କହିଲେ ଚଳେ । ପ୍ରାଚୀନ ଉତ୍କଳର କଥାକାହାଣୀମାନଙ୍କ ମଧ୍ୟରେ 'କଲରେଇଫୁଲ' କାହାଣୀଟି ଏହାର ଉଦାହରଣ । ରାଜକୁମାର ନିଜ ଭଗିନୀକୁ ବିବାହ କରିବା ପାଇଁ ଜିଦ୍ ଧରିଛି, ପିତାମାତା ବହୁ ନିଷେଧ କରିବା ପରେ ମଧ୍ୟ ସେ ନିଜର ପ୍ରତିଜ୍ଞାକୁ ଭଙ୍ଗ କରୁନାହିଁ । ଶେଷରେ ପିତାମାତା ବାଧ୍ୟ ହୋଇ ବିବାହର ଆୟୋଜନ କରିଛନ୍ତି ବେଦିରେ ବର ହୋଇ ଭାଇ ବସିଛି । ଭଗିନୀ କନ୍ୟା ହୋଇ ଆସିବା ପାଇଁ ଅନିଚ୍ଛା ପ୍ରକାଶକରି ସ୍ନାନ ସମୟରେ ପୁଷ୍କରିଣୀରେ ବୁଡ଼ି ମରିଛି ।

# ଚତୁର୍ବିଂଶ ପରିଚ୍ଛେଦ

## ଯଯାତିକେଶରୀ

ଯଯାତିକେଶରୀ କାବ୍ୟଟି କ୍ଷୁଦ୍ର ହେଲେ ମଧ୍ୟ କବିତ୍ୱ ଦୃଷ୍ଟିରୁ ରାଧାନାଥଙ୍କ କାବ୍ୟ ଭିତରେ ଉଚ୍ଚ ସ୍ଥାନ ଅଧିକାର କରିଛି । ଶୃଙ୍ଗାର-ରସାଶ୍ରିତ ଏହି କାବ୍ୟଟିରେ ପ୍ରାଚୀନ କବିମାନଙ୍କର ଶୈଳୀ ବହୁଳାଂଶରେ ପ୍ରକାଶ ପାଇଛି । ପ୍ରେମିକପ୍ରେମିକାର ଭେଟ, ପରସ୍ପର ପ୍ରତି ଅନୁରାଗ, ବିରହ, ମିଳନ ପ୍ରଭୃତି ବ୍ୟାପାରରେ କବି ପ୍ରାଚୀନ କବିମାନଙ୍କ ପନ୍ଥା ଅନୁସରଣ କରିଛନ୍ତି । ପଦଯୋଜନା ସରସ, ମାର୍ଜିତ ହେଲେ ମଧ୍ୟ ସ୍ଥାନେ ସ୍ଥାନେ କ୍ଲିଷ୍ଟ ହୋଇଥିବାରୁ "ପଣ୍ଡିତ-ମାନେ" କେବଳ ଏହାର ମର୍ମ ହୃଦୟଙ୍ଗମ କରିବାକୁ କ୍ଷମ ହେବେ । ଆଦିରସର ବିକଟ ବିରକ୍ତିକର ପ୍ରକାଶ କାବ୍ୟରେ ବିଶେଷ ଭାବରେ ଦେଖାଯାଉନଥିଲେ ମଧ୍ୟ ଏହି ଦୋଷଟିର ବିଦ୍ୟମାନତା ନବ୍ୟଦୃଷ୍ଟିରେ କାବ୍ୟଗୌରବ ହାନିର କାରଣ ହୋଇଛି ।

ପାତ୍ରପାତ୍ରୀମାନଙ୍କର ବେଶଭୂଷା, ରୀତିନୀତି, ହାବଭାବ, ଚେଷ୍ଟାଚରିତ୍ର ପ୍ରଭୃତିର ବର୍ଣ୍ଣନାରେ ରାଧାନାଥ ପ୍ରାଚୀନ କବିମାନଙ୍କ ଶୈଳୀକୁ ଅନୁସରଣ କରିଥିବା ସ୍ପଷ୍ଟ ଦେଖାଯାଉଛି ।

ପ୍ରାକୃତିକ ଦୃଶ୍ୟ-ବର୍ଣ୍ଣନାର ବିଭବ, ଚନ୍ଦ୍ରାସାମ୍ରାଜ୍ୟର ଗମ୍ଭୀରତା, ପଦଯୋଜନାର କୌଶଳ 'ପାର୍ବତୀ' କାବ୍ୟଟିକୁ ଓଡ଼ିଆ ସାହିତ୍ୟରେ ଉଚ୍ଚସ୍ଥାନ ଦାନ କରିଛି ।

କାବ୍ୟଟି ପାଞ୍ଚଟି ସର୍ଗରେ ବିଭକ୍ତ ହୋଇଛି ଏବଂ ସବୁ ସର୍ଗ 'ବଙ୍ଗଳାଶ୍ରୀ' ରାଗରେ ରଚିତ ହୋଇଛି ।

**କଥାବସ୍ତୁ**—ମଗଧନିବାସୀ କ୍ଷତ୍ରିବଂଶଜାତ ଯଯାତି ଓ ବିମଳା ଦୁହେଁ ଯାମଳ ଭାଇଭଉଣୀ । ଦୁହେଁ ବିରଜାଙ୍କ ଭକ୍ତ । ଦୁହେଁ ମାତୃହୀନ । ସେମାନଙ୍କ ପିତା ମଗଧର ରାଜା ବିମାତାଙ୍କ କ୍ରୂର କୁମନ୍ତ୍ରଣାରେ ପଡ଼ି ଏ ଦୁହିଁଙ୍କ ପ୍ରତି ନିର୍ମମ ବ୍ୟବହାର କରିବାରୁ ଭୟରେ ଏଦୁହେଁ ମଗଧ ରାଜ୍ୟ ତ୍ୟାଗ କଲେ ଏବଂ ଶ୍ରୀକ୍ଷେତ୍ର (ବା ପୁରୀ) ଯାତ୍ରା ଉଦ୍ଦେଶ୍ୟରେ ଦକ୍ଷିଣ ଦିଗକୁ ପଳାୟନ କଲେ । ବାଟରେ ଯାଉଁ ଯାଉଁ ସେମାନେ ପବିତ୍ର ବୈତରଣୀ ନଦୀ ତଟରେ ବିଖ୍ୟାତ ବିରଜା ଠାକୁରାଣୀଙ୍କ ଆସ୍ଥାନରେ ପ୍ରବେଶ ହେଲେ ଏବଂ ଦୁହେଁ ଠାକୁରାଣୀଙ୍କ ଭକ୍ତ ଥିବାରୁ ସେଠାରେ ଅବସ୍ଥାନ କଲେ ।

ଦୁହେଁ ବାଲ୍ୟକାଳରୁ ଉଚ୍ଚଶିକ୍ଷା ଲାଭ କରିଥିଲେ । ଅସ୍ତ୍ର-ଚାଳନାରେ ମଧ୍ୟ ସିଦ୍ଧି ଲାଭ କରିଥିବାରୁ ଭ୍ରାତା ଓ ଭଗିନୀ ମୃଗୟାରେ ଅଧିକାଂଶ ସମୟ ଅତିବାହିତ କରୁଥିଲେ । ଭ୍ରାତାଙ୍କ ପରି ଭଗିନୀ ମଧ୍ୟ ପୁରୁଷବେଶରେ ପାରିଧି କରିବା ନିମନ୍ତେ ଯାଉଥିଲେ । ଦୁହେଁ "ଭାଗ୍ୟକୁ ଆଦରେ ପଢ଼ିଥିଲେ ତହିଁ ଦେବୀପାଦପଦ୍ମ ଧ୍ୟାଇ ।" ଦୁହିଁଙ୍କର ଶୋଭା ଅପୂର୍ବ ଥିଲା, "ଖେଳୁ ଥିଲା ନବ ଲାବଣ୍ୟତରଙ୍ଗ କିଶୋରୀ କିଶୋର କାୟେ" । ଦୁହେଁ "ଏକ ବୃନ୍ତେ ବେନି ପୁଷ୍ପ", "ଏକ ମୃଣାଳେ ବେନି କମଳ" ସଦୃଶ ଦେଖାଯାଉଥିଲେ ।

ସେତେବେଳେ 'ଉତ୍ତର କୋଶଳ' ବା ଉତ୍କଳର ରାଜା ଥିଲେ ହିରଣ୍ୟବର୍ମ । ମହାନଦୀ ତୀରସ୍ଥ ଚୌଦ୍ୱାର ତାଙ୍କର ରାଜଧାନୀ ଥିଲା । ଏହି ଦୁର୍ଗ ସେତେବେଳେ କପାଳେଶ ଦୁର୍ଗ ନାମରେ ପରିଚିତ ଥିଲା । ଲଳିତା "ରାଜାଙ୍କ ଏକମାତ୍ର ସୁତା" ଓ "ରୂପଗୁଣେ ଅନୁପମା" ଥିଲେ ଏବଂ ରାଜା ରାଣୀଙ୍କର "ନୟନ ପିତୁଳା" ମଧ୍ୟ ଥିଲେ ।

ଲଳିତା ସୁକୁମାର ବିଦ୍ୟା ସଙ୍ଗେ ଶସ୍ତ୍ରବିଦ୍ୟା ମଧ୍ୟ ଶିଖିଥିବାରୁ, "ମୃଗୟା ବିହାରେ ଅନୁକ୍ଷଣେ ଚେଣ୍ଡୁ ବଜାଉଣଥିଲା ମତି ।"

ଦିନେ ଲଳିତା ସଖୀମାନଙ୍କ ସଙ୍ଗରେ ବୈତରଣୀ ତୀରସ୍ଥ ବନକୁ ପାରଧି କରିବା ପାଇଁ ଯାଇଥିଲେ । ଥରେ ଦେବୀ ବିରଜାଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ । ସେଠାରେ ଯଯାତି ଠାକୁରାଣୀଙ୍କ ପାଇଁ ଫୁଲମାଳ ଗୁନ୍ଥୁଥିଲେ । ମୃଗୟାବେଶରେ "ଅପୂର୍ବ ଶୋଭା ପିନ୍ଧୁଳ" ଲଳିତାଙ୍କୁ ଦେଖି ଯଯାତି ମୁଗଧ ହୋଇଗଲେ, "ଅସମ୍ଭାଳେ ତାର ମନ ଲାଖିଗଲା ମୋହିନୀର ମୁଗ୍ଧାନନେ" । ଅଲକ୍ଷରେ ଅନଙ୍ଗ ଫୁଲଶର ବିନ୍ଧି ଯଯାତିର ହୃଦୟକୁ ଜର୍ଜର କରିଦେଲା । ଏକାଳରେ ସୁନେତ୍ରା ଲଳିତା ଯଯାତି ଆଡ଼କୁ "ଅଜ୍ଞାତରେ ଗୃହାଣୀ ତାଳ କି ଛଟାରେ ଲେଉଟାଇ ଆଣିଲେ ।" କାମକାଣ୍ଡ ସଙ୍ଗେ ସେ କଟାକ୍ଷ ଗଲା ଯଯାତି ମର୍ମେ ପଶି ।" ନବପ୍ରେମ ସ୍ରୋତଉଚ୍ଛ୍ୱାସରେ ଧୈର୍ଯ୍ୟତଟମୂଳ ଧସିପଡ଼ିଲା; ଉଭୟେ ପରସ୍ପର ଶୋଭାରେ ମୁଗ୍ଧ ହେଲେ ଏବଂ କଟାକ୍ଷ ବାନମୟରେ ପ୍ରେମସଞ୍ଚାରର ସୂଚନା ଦେଲେ । ଦର୍ଶନ ସାରି ଲଳିତା ସଖୀମାନଙ୍କ ସହ ସ୍ୱଶିବିରକୁ ଫେରି ଆସିଲେ ।

ଯଯାତି ଲଳିତା ପ୍ରତି ଆକୃଷ୍ଟ ହେବାରୁ ତାଙ୍କ ହୃଦୟରେ ନବପ୍ରେମର ସାବଲୀଳ ଅନୁଚିନ୍ତା ଜାଗ୍ରତ ହେଲା । କିନ୍ତୁ ଲଳିତାଙ୍କୁ ପାଇବା ଅସମ୍ଭବ ମନେକରି ଅତ୍ୟନ୍ତ ଦୁଃଖିତ ହେଲେ;

"ମାନ ଆହା କାହିଁ, ଅକଞ୍ଚନ ମୂର୍ତ୍ତି,
କାହିଁ ଉତ୍କଳେଶ-ସୁତା ;
ନୋହିବା କଥାକୁ ମନେ ଯୋଡ଼ି ମନ,
ଥିଲୁ ଧରୁନାହିଁ ବୃଥା"

ଆଶା ନାହିଁ, ଦୁରାଶାର ସେଉଁଥିଁ ପୀଡ଼ା ଦେଉଛୁ ! କିନ୍ତୁ ମନ ମାନୁ-ନାହିଁ । "ନୟନରଞ୍ଜନ ନବଇନ୍ଦୁକଳା"କୁ ଲୋକେ ଯେଉଁ ଭାବରେ ଦେଖନ୍ତି, "ସେହି ଭାବେ ମୁହିଁ, ଦୂରୁଁ ପ୍ରେମ-ଦୃଷ୍ଟେ ମୁଁ ଜଳିବି ଏ ରୂପରାଶି" ବୋଲି ଯଥାର୍ଥ ଚିନ୍ତା କଲେ । ଏ ଦୁରାଶାରେ ପୁଣି ଆଶାର ଜ୍ୟୋତି ସେ ଦେଖିଛନ୍ତି, "ହିନେ ହେଲେ ହେବ ଶ୍ଳାଘ୍ୟ ଅଙ୍ଗବାଳା ଶ୍ରୀଅଙ୍ଗ ସେବାରେ ଆସି ।" (ପ୍ରଥମ ସର୍ଗ)

**ଦ୍ୱିତୀୟ ସର୍ଗ**—ଲଳିତା ସଖୀମାନଙ୍କ ସଙ୍ଗେ ବୈତରଣୀ କୂଳରେ ମୃଗୟାବିନୋଦରେ ମତ୍ତ ହେଲେ । ହିନେ ଚିତ୍ରବିଚିତ୍ରାଙ୍ଗ ମୃଗଟିଏ ଦେଖି ଲଳିତା ଘୋଡ଼ାକୁ ଝଁପଟାଇ ଦେଇ ତାହା ପଛରେ ଗୋଡ଼ାଇଲେ ; ଏକାକୀ ଯାଉଁ ଯାଉଁ ସେ ନିବିଡ଼କାନନ ଭିତରେ ଉପସ୍ଥିତ ହେଲେ । ଗୋଟିଏ ତରୁମୂଳରେ ଏକ କନ୍ଦର୍ପସୁନ୍ଦର-ଯୁବା ଶୋଇଥିବା ସଚକିତରେ ଲଳିତା ଦେଖିଲେ, ଯୁବା ମୃଗୟାବେଶରେ ଥିଲେ; "ସ୍ୱଭାବେ ପୁରୁଷ ନୁହେ ସେ" ମାତ୍ର "ପୁରୁଷରୂପୀ ଅବଳା" "ଆନ କେହି ନୁହେଁ ମଗଧ-ନରେନ୍ଦ୍ର-ନନ୍ଦନା ସେହି ବିମଳା ।" ବିମଳାର ଅପୂର୍ବ ରୂପ ଦର୍ଶନକରି ରାଜକୁମାରୀର "ଛୁଟିଲା କୁମାରୀ ଦମ୍ଭ", "ସ୍ୱେଦେ ଆର୍ଦ୍ର ହୋଇ ପଦ୍ମକରତଳ, ଶରୀର ଭଜିଲା ସ୍ତମ୍ଭ ; ରାଗାଙ୍କୁରନିଭ ପୁଲକ ପଟଳେ ଟାଙ୍କୁରିଲା ଗଣ୍ଡସ୍ଥଳ" । "ନବଭାବୋଚ୍ଛାସରେ ସଘନେ ସ୍ଫୁରିଲା କିଶୋର କୁଚଯୁଗଳ ।" ଲଳିତା ଭାବିଲେ :

"ପ୍ରେମସିଂହାସନେ ଏହିପରି ଜଣେ ବସିବା ପାଇଁ ଭାଜନ,
ମର୍ତ୍ତ୍ୟମଣ୍ଡଳେ ତ ଆଜଯାଏ ଦେଖି ନଥିଲା ମୋର ନୟନ ।"

ପୁରୁଷରୂପୀ ବିମଳାଙ୍କ ରୂପରେ ଲଳିତା ମୋହିତ ହୋଇଗଲେ । ସେ ପଣ କଲେ—ଯେ

କୁମାର ଏ ଯେତେ, କରିବ ଏହାକୁ, ପ୍ରେମତରୀ କର୍ଣ୍ଣଧାର
କୁମାର ନୋହିଲେ ଲେଖାଅଛି ମୋର, ଲଲାଟେ ଚିରକୌମାର ।

ବିମଳାର ନିଦ୍ରା ଛୁଟିବାରୁ ସେ ଆଖି ମେଲି କରି ଚାହିଁଲେ, ଚାରିଚକ୍ଷୁ ମିଳନ ହେଲା । କେମାର ଉତ୍କଣ୍ଠା ବୃଦ୍ଧି ପାଇଲା । ବିମଳା ସ୍ୱ ପରିଚୟ ଦେବାରୁ ସେ ନାରୀ ଥିବା ଜାଣିପାରିଲେ । "ମୋହ ପୂର୍ବ ପୁଂସଭ୍ରମ" ଛୁଟିବାରୁ ଲଳିତାର ମର୍ମ ଦହିଦେଲା; "ବାନ୍ଧ ସ୍ମରଣର ଆସିଲା ବାହାର ମୋହ ଫନ୍ଦା ଗଲା ରହି ।" "ସ୍ତୋକ ପରିଚୟରେ "ବେନି ହୋଇଗଲେ ବେନିଙ୍କର ପ୍ରେମଦାସୀ ।" ସେଠାରେ ବିମଳା ଲଳିତାର ଅନୁରୋଧରେ ପୁରୁଷ ବେଶ ତ୍ୟାଗ କରି ନାରୀ ବେଶ ପରିଧାନ କଲେ ଏବଂ ତାଙ୍କ ସଙ୍ଗେ ଦୁର୍ଗରେ ପ୍ରବେଶ ହେଲେ ।

ତୃତୀୟ ସର୍ଗ—କପାଳେଶ ଦୁର୍ଗରେ ବିମଳା କିଛି ଦିନ ଅବସ୍ଥାନ କଲେ । ପାଟମହାଦେବୀ ପ୍ରଭୃତି ତାଙ୍କୁ ଆଦର ସମ୍ମାନ କଲେ । ପ୍ରେମାଦରରେ କେମା ନିଜ ଚଉଁରୀକି ବିମଳାଙ୍କୁ ଘେନି-ଗଲେ । ସେଠାରେ ଦୁହେଁ "ଏକ ଅଶନ ଆହ୍ଦ ମିତ ସାରି ଏକ ପର୍ଯ୍ୟଙ୍କେ" ଶୟନ କଲେ, "ପ୍ରେମଯୋଗୁଁ ଯେଣୁ ହୋଇଥିଲେ ବେନି, ବେନି ଦେହେ ଏକଦେହୀ ।" ପୁଂସଚିବଭ୍ରମ ଦୂର ହୋଇଥିଲେ ମଧ୍ୟ 'ଅନୁରାଗ' ଦୂର ହୋଇନଥିବାରୁ

"ବିମଳାକୁ ଯେମା ଫକଳ୍ପେ ପୁରୁଷ ଗଢ଼ି ନେଇ ସେହିପରି,
ଲଳିତ ସମ୍ଭୋଗ ଶ୍ରାନ୍ତମାନ ମନେ ଆଚରିଲା ଅଳ୍ପୋଦରୀ ।"

କ୍ରମେ ଲଳିତାର ପ୍ରେମୋନ୍ମାଦ ଜାତ ହେଲା । ସ୍ୱପ୍ନରେ ଚିହ୍ନପୁରୁଷ ସହ ସମ୍ଭୋଗରଚନାର ଦୃଶ୍ୟ ଦେଖି ସ୍ୱପ୍ନାନ୍ତେ ଦୁଃଖିତ ହେଉଥିଲା । "ଜାଗରଣ ଆସି ନିମିଷେ ସେ ସୁଖ ଦେଉଣଥିଲା ଫହାରି, ଦେଖୁଥିଲା ପୁଣି ବିମଳାକୁ କେମା ଯେ ନାରୀକି ସେହି ନାରୀ ।" ପ୍ରେମୋଦ୍‌ଗମ, ଓ

ବିରହର ଯାବତୀୟ ଲକ୍ଷଣ ଜେମାଠାରେ ପ୍ରକାଶ ପାଇଲା । କିଛି ଦିନ ପରେ ବିମଳା ଦୁର୍ଗତ୍ୟାଗ କରି ବିରଜାକ୍ଷେତ୍ରକୁ ଫେରିଗଲେ । ଗଲାବେଳେ ଲଳିତା ତାଙ୍କୁ କେତେକ ଅଳଙ୍କାର, ବସ୍ତ୍ର ଦେଇଥିଲେ ।

**ଚତୁର୍ଥ ସର୍ଗ**—ବନପଥରେ ଭ୍ରମି ଭ୍ରମି ତିନିଦିନ ପରେ ବିମଳା ଯଯାତିଙ୍କ କୁଟୀରରେ ପ୍ରବେଶ ହେଲେ । ତାଙ୍କର ଜେମା ସହିତ ଭେଟ, ନଗରଗମନ ପ୍ରଭୃତି ପ୍ରସଙ୍ଗ ଭ୍ରାତାଙ୍କୁ ଜଣାଇଲେ, ଏବଂ ଆଣିଥିବା ବସ୍ତ୍ରଭୂଷଣାଦି ଦେଖାଇଲେ । ଯଯାତି ବିମଳାର କଥା ଓ ଭଙ୍ଗୀରୁ ଜାଣିପାରିଲେ, ଯେ ଉତ୍କଳରାଜଜେମା ଲଳିତା ବିମଳାର ପ୍ରେମରେ ମୁଗ୍ଧା । ଯଯାତି ମନେ ମନେ ଲଳିତାଙ୍କୁ ପାଇବା ଇଚ୍ଛା କଲେ । ଉପହାର ବସ୍ତ୍ରଭୂଷଣାଦି ତାଙ୍କ ମନରେ ଆଶାର ସଞ୍ଚାର କଲା ।

"ସ୍ଥିର ମଣୁଥିଲା ଜୀବନକୁ ଯେହୁ ଏବେ ଆଶା ବାରି ଲଭି;
ଶୁଷ୍କପ୍ରାୟ ହୃଦେ ପ୍ରେମାଙ୍କୁର ତାର ଉଠିଲା ପୁଣି ପଲ୍ଲବି ।"

ସେ ଭାବିଲେ,

"ନ ଲଭି ଲଭିଛି ବଲ୍ଲଭୀର ପ୍ରେମ, ଏଥିରେ ନାହିଁ ସଂଶୟ;
ଅଜ୍ଞାତେ ଚୋରାଇ ନେଇ ମୋ ହୃଦୟ ଦେଇଛି ନିଜ ହୃଦୟ ।"

ଏପରି କେତେ ଚିନ୍ତା ତାଙ୍କ ମନରେ ଖେଳିଗଲା । ସେ ଲଳିତାଙ୍କୁ ପାଇବା ପାଇଁ ସଂକଳ୍ପ କଲେ ଏବଂ ଛଦ୍ମବେଶରେ ଜେମାଙ୍କୁ ନଗରରେ ଭେଟିବା ସ୍ଥିର କଲେ ।

"ମଲେ ପଛେ ମୁହିଁ ମରିବି ଏ କାର୍ଯ୍ୟେ ପ୍ରାଣକୁ କରିବି ଦୃଢ଼ ।"
"ଅଙ୍ଗକ୍ଷୟୁ ଅବା ଜେମା ଅଙ୍ଗସଙ୍ଗ ଲଭିବ ଲିପି ମୋହର ।"

ଏହିପରି ଚିନ୍ତାକରି ବିମଳାର ସମ୍ମତିରେ ଜେମାର ଉପହାରମାନ ସଙ୍ଗରେ ନେଇ ଯଯାତି କପାଳେଶ ଦୁର୍ଗକୁ ଗଲେ ।

ଯାତ୍ରା କାଳରେ ଦେବୀ ବିରଜାଙ୍କୁ ଯେ ପ୍ରାର୍ଥନା କରିଥିଲେ । ବାଟରେ ନାରୀବେଶ ପରିଧାନ କରି ପ୍ରଦୋଷ ସମୟରେ ସେ ଦୁର୍ଗଦ୍ୱାରେ ଉପସ୍ଥିତ ହେଲେ । ଜେମାଙ୍କ କେହି ସଖୀ ହେବେ ଭାବି ପ୍ରହରୀ ତାଙ୍କୁ ବାଟ ଛାଡ଼ି ଦେଲା । ଲଳିତା ବିସ୍ମାରିତ ନେତ୍ରେ ଅପଲକ ହୋଇ ତାଙ୍କୁ ସଖୀ ବିମଳା ବୋଲି ମଣି ସ୍ୱାଗତ କଲେ । ପୂର୍ବପରି ରାତିରେ ତାଙ୍କ ସହ ଏକତ୍ର ଭୋଜନ ଓ ଏକ ପର୍ଯ୍ୟଙ୍କରେ ଶୟନ କଲେ । ପ୍ରେମାତୁରା ଲଳିତା ଆଗରେ ଯଯାତି ମିଥ୍ୟା ଚରିତ ଅବତାରଣା କରି ନିଜେ ବିମଳା ଥିବା ଏବଂ ଉଦୟଗିରି-ଆଶ୍ରମରେ •ଅଧା ପଢ଼ି ତପସ୍ୱୀଙ୍କ ବରପ୍ରସାଦରୁ ପୁରୁଷଅଙ୍ଗ ଲାଭ କରିଥିବା ପ୍ରକାଶ କଲେ । ପ୍ରେମବିହ୍ୱଳା ଲଳିତାଙ୍କୁ ପୁଣି କହିଲେ ।

"ତୋହରି କିଙ୍କର ହେବା ଆଶାରେ ମୁଁ ଆଶ୍ରିଲି ପୁଂସ ବିଗ୍ରହ;
ପୁଂସ ହେଲି ବୋଲି ମାଗୁଛି ପଦୂରେ ଉଣା ନୋହୁ ଅନୁଗ୍ରହ ।"

ତରେ କ୍ରମେ ସେ ଭାବବିହ୍ୱଳା ପ୍ରେମୋନ୍ମାଦିନୀ ଲଳିତାଙ୍କୁ ସ୍ୱ ରୂପ ଦେଖାଇଲେ ।

"ବିସ୍ମୟ ହରଷ, ଏକ ପରେ ଏକ, ରାଜସୁତା ହୃଦେ ଆସି,
କଲେ ପ୍ରଭୃପଣ ଅବଶେଷେ ତାଙ୍କୁ ଲଜ୍ଜା ପକାଇଲା ଗ୍ରାସି ।"

ବିବେକାନୁରୋଧରେ ଉଭୟେ ଗାନ୍ଧର୍ବମତରେ "ବିବାହ" କରି ଦାମ୍ପତ୍ୟ କ୍ରୀଡ଼ା କଲେ ।

**ପଞ୍ଚମ ସର୍ଗ**—ରସିକା ରସିକ ପରସ୍ପରରେ ମିଳି ସଂଗୋପନରେ ପ୍ରେମ ସୁଖରେ ରତ ହୋଇ ହୃଷ୍ଟମନରେ କାଳ କଟାଇଥିଲେ ।

'ପରସ୍ପରେ ବଶ୍ୟ— ବିଲୋଚନପ୍ରେମ,
ସେ ସୁନ୍ଦରୀ ସେ ସୁନ୍ଦର,
ହୋଇଥିଲେ ସବୁ- ମତେ ଯେଥାଯୋଗ୍ୟ
ସହଚରୀ ସହଚର । "

ଏପରି କିଛିଦିନ କଟିଗଲା, କିନ୍ତୁ ମହାଶଙ୍କାରେ ଚିତ୍ତ ଉଭୟଙ୍କ ଆନ୍ଦୋଳିତ ହେଉଥିଲା । ଅଳ୍ପଦିନ ପରେ ସଖୀଙ୍କ ଭିତରେ ସେହି ଗୁପ୍ତ ଚରିତ ପ୍ରକଟ ହେଲା; କ୍ରମେ ତାହା ଚହଟି ଶତମୁଖ ହୋଇ ଶ୍ରୁତି-ସ୍ରୋତେ ବ୍ୟାପିଲା । ରାଜା ଏହା ଶୁଣି ସ୍ଥିରରେ କଞ୍ଚୁକୀଦ୍ୱାରା ଅନୁସନ୍ଧାନ କରି ଜନରବ ସତ୍ୟ ଥିବା ବୁଝିଲେ । ସଭାରେ ଏହା ବିଚାର ହେଲା । ରାଜା ବଧଦଣ୍ଡ ଆଜ୍ଞା କଲେ । ଯଯାତି ବୀର; ବିପଦରେ ମଧ୍ୟ ଧୈର୍ଯ୍ୟ ନହରାଇ ସେ ରାଜାଙ୍କୁ କହିଲେ,

"ମୋ ଦେବ କ୍ଷତ୍ରିୟକୁଳେ ଜାତ ମୂର୍ଦ୍ଧ୍ନି, ସଦା କ୍ଷତ୍ରଧର୍ମାଶ୍ରୟୀ
କ୍ଷତ୍ରିୟ ମରଣ ଆଜ୍ଞା ହେଉ ମତେ ଏତିକ ପାଦେ ଗୁହାରି ।"

ଯଯାତିଙ୍କ ନିବେଦନ ଅନୁସାରେ ରାଜଅସ୍ତ୍ରାଗାରରୁ ଆୟୁଧ, ବର୍ମ, ବାହନ ଦେବା ବ୍ୟବସ୍ଥା ହେଲା ଏବଂ ରାଜବାହିନୀରୁ ସପ୍ତବୀର ତାଙ୍କ ସହିତ ଯୁଦ୍ଧ କରି ତାଙ୍କୁ ନିହତ କରିବା ସ୍ଥିର ହେଲା । କିନ୍ତୁ ସଭାଜନମାନେ ନୀରବରେ ଦୁଃଖିତ ହେଲେ, "ସଭାଜନ ନେତ୍ରୁଁ ନୀରବେ ଏକାଳେ ଝରୁଥିଲା ଅଶ୍ରୁଧାର ।"

ସେହିଦିନ ରାତ୍ର ରାଜା ସ୍ୱପ୍ନ ଦେଖିଲେ, ଯେ ଏକ କରାଳରୂପ କେଶରୀ ତାଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଉଛି । ରାଜା ଏଥିରେ ଭୀତ ହୋଇ ମନେ ମନେ ଠାକୁରାଣୀଙ୍କୁ ସ୍ମରଣ କରି ଶରଣ ପଶିଲେ । ତତ୍‌କ୍ଷଣାତ୍ କେଶରୀ ଶାନ୍ତ ହୋଇଗଲେ ଏବଂ ଦେବୀ ସିଂହଜା କେଶରୀ ପୃଷ୍ଠରେ ଉପବେଶନ କରି ରାଜାଙ୍କୁ ଯଯାତିଙ୍କ ପ୍ରକୃତ ପରିଚୟ ଦେଲେ ଏବଂ କହିଲେ, "ଯଯାତି ମୋର ଭକ୍ତ ତୁମେ ଅସମ ସମରରେ ତାଙ୍କୁ ହତ୍ୟା କରିବାକୁ ଆଦେଶ ଦେଇଛ । ଏହା ଅଧର୍ମ । ମଗଧରାଜକୁମାର ଏହି ଯଯାତି ତୁମ କନ୍ୟାର ଯୋଗ୍ୟ ବର । ତାଙ୍କ ସହିତ ଜେମାଙ୍କ ବିବାହ କର; ଜାମାତାଙ୍କ ହସ୍ତରେ ରାଜ୍ୟ ଅର୍ପଣ କରି ସୁଖରେ କାଳଯାପନ କର ।"

ରଙ୍ଗପ୍ରାଙ୍ଗଣରେ ଶସ୍ତ୍ରସଜ୍ଜିତ ସପ୍ତବୀର ମଧ୍ୟ ଉପସ୍ଥିତ ହେଲେ । ରଙ୍ଗସ୍ଥଳ ଲୋକାରଣ୍ୟ ହୋଇଗଲା । ଯଯାତି ମଧ୍ୟ ଯୋଦ୍ଧା ବେଶରେ ପ୍ରବେଶ କଲେ । ରଣ ଆରମ୍ଭ ପୂର୍ବରୁ ସପ୍ତବୀର ସମସ୍ତେ ଏକ ପ୍ରକାର ସ୍ୱପ୍ନ ପୂର୍ବରାତିରେ ଦେଖିଥିବା ରାଜାଙ୍କ ଆଗରେ କହିଲେ । ସ୍ୱପ୍ନରେ ସେମାନେ ଦେଖିଲେ ଯେ, ଦର୍ପୋଦ୍ଧତ ଉର୍ଜସ୍ୱଳ ସପ୍ତମତ୍ତ ଦନ୍ତାବଳ ଏକ ପରେ ଏକ ଯଯାତିଙ୍କୁ ଆକ୍ରମଣ କଲେ ; କିନ୍ତୁ ସେଠାରେ ଏକ ଅଦ୍ଭୁତ ଜ୍ୟୋତିଃକେଶରୀ ଉପସ୍ଥିତ ହୋଇ ଗର୍ଜି ସମସ୍ତଙ୍କୁ ତଡ଼ିଦେଲା । ସମସ୍ତେ ଏକା ସ୍ୱପ୍ନ ଦେଖିବାରୁ ସେମାନେ ଏହାକୁ ବଡ଼ ଅଦ୍ଭୁତ କଥା ମଣିଲେ । ରାଜା ମଧ୍ୟ ତାଙ୍କର ସ୍ୱପ୍ନ ବୃତ୍ତାନ୍ତ ବର୍ଣ୍ଣନା କରିବାରୁ ଯଯାତି ଠାକୁରାଣୀଙ୍କ ଭକ୍ତ ଥିବା ଓ ଠାକୁରାଣୀ ତାଙ୍କୁ ରକ୍ଷା କରୁଥିବା ଧାରଣା ସମସ୍ତଙ୍କର ହେଲା । ସ୍ୱପ୍ନରେ ଠାକୁରାଣୀ ରାଜାଙ୍କୁ ମଧ୍ୟ କହିଥିଲେ, "ଅଖିଳ ଉତ୍କଳରେ ଯଯାତି ଅନଶ୍ୱର କୀର୍ତ୍ତିରାଜ୍ୟ ସ୍ଥାପନ କରିବେ, ବୈତରଣୀ ନଦୀ ତୀରରେ ଅଧିଷ୍ଠାନ ବନରେ ଦିବ୍ୟ ନବର ରଚିବେ, ଯୁଗେ ଯୁଗେ ଉତ୍କଳୀୟେ ହର୍ଷରେ ଯଯାତିଙ୍କ ଯଶ ଗାନକରିବେ । ପୁଣି ଚକ୍ରବର୍ତ୍ତୀ ହୋଇ ଯଯାତି ବଂଶ ଏ କ୍ଷିତିକୁ ମଣ୍ଡିବେ । ନାନା ଦେବଦେବୀ ଅଧିଷ୍ଠାନରେ ଉତ୍କଳ ମର୍ତ୍ତ୍ୟବୈକୁଣ୍ଠ ହେବ ।" ସ୍ୱୟଂ ଦେବୀ ବିରଜା ଲଳିତା-ଯଯାତି ବିବାହରେ ଶକୁନ ହେବେ ବୋଲି ମଧ୍ୟ ଆଜ୍ଞା କଲେ । ଏହା ଶୁଣି ସମସ୍ତେ ଆନନ୍ଦିତ ହେଲେ ।

ରାଜା ହିରଣ୍ୟବର୍ମା କନ୍ୟା ଲଳିତାଙ୍କୁ ଯଯାତିଙ୍କ ହସ୍ତରେ ଅର୍ପଣ କରିଦେଲେ ଏବଂ ଯୌତୁକ ସ୍ୱରୂପ ତାଙ୍କ ହସ୍ତରେ ରାଜସମ୍ପଦ ନ୍ୟସ୍ତ କରି ବାନପ୍ରସ୍ଥ ଧର୍ମ ଆଶ୍ରୟ କଲେ । ଲଳିତା ଯଯାତିଙ୍କ ବିବାହ ଉତ୍ସବ ସମାରୋହରେ ସମାପ୍ତ ହେଲା । ବନ୍ଦୀମାନେ ଯଯାତିଙ୍କର ସ୍ତୁତି-ସଙ୍ଗୀତ ଗାୟନ କଲେ । ସହସା ଜନତାନୟନ ଏ ଦୃଶ୍ୟରୁ

ଅନ୍ୟ ପାଖେ ଫେରିଗଲା । ପୂର୍ବଦିଗରେ ନବୋଦିତ-ରବି ଉପରେ ଇନ୍ଦ୍ରଧନୁ ପରିବେଶ ଦେଖାଗଲା । ସୂର୍ଯ୍ୟ-ମଣ୍ଡଳ ଭିତରେ "ସେହି ପରିବେଶରେ ସ୍ୱର୍ଣ୍ଣବର୍ଣ୍ଣ କେଶରୀର" ଆବିର୍ଭାବ ହେଲା । କାନନ ନଦୀ ସ୍ୱର୍ଣ୍ଣକେଶରୀର ପ୍ରଭାରେ ଧୌତ ହୋଇ ସୁବର୍ଣ୍ଣ ଆସ୍ତରଣ ପ୍ରାପ୍ତେ ଦେଖାଦେଲେ । ପୁଣି, "ସ୍ୱର୍ଗର ସୁବର୍ଣ୍ଣବନ ଆସି ମର୍ତ୍ତ୍ୟବନରେ ମିଶିଗଲା" ପରି ବଣିଲା । କେଶରୀପୃଷ୍ଠରେ ରଙ୍ଗ ଫୁଟିଲା, ଏବଂ ରଙ୍ଗଜ୍ୟୋତିଃ ପଦ୍ମାସନ ଦେଖାଗଲା ; ସେ ଆସନରେ ଆଭାପୁଞ୍ଜ ଦେଖାଗଲା । ପ୍ରଭାର ଝଲକ ବରବଧୂଙ୍କ ଶିର ଉପରେ ଉଡ଼ି ଶୁଭର ଓ ଦେବୀ ବାହନ କେଶରୀ ଦେବୀଙ୍କର ପ୍ରସାଦର ସୂଚନା ଦେଲା । ଲୋକେ ଆନନ୍ଦରେ "ଜୟ ଜୟ ସିଂହବାହିନୀ ବିରଜେ" ଧ୍ୱନି କଲେ ; "ଯଯାତି କେଶରୀ" "ଯଯାତି କେଶରୀ" ବୋଲି ସଘନେ ଉଚ୍ଚେ ଧ୍ୱନି ମଧ୍ୟ କଲେ ।

ରାଜା ଯଯାତି ଯଥାକାଳରେ ବିମଳାଙ୍କୁ ଯୋଗ୍ୟ ରାଜସୁତ ହସ୍ତରେ ଅର୍ପଣ କଲେ, ଯଥାକାଳେ ବୈତରଣୀ ତୀରରେ ସୁରମ୍ୟ-ପୁରୀ ମଧ୍ୟ ନିର୍ମାଣ କଲେ । ଯଯାତି କେଶରୀ ସୁଖେ ଉତ୍କଳ ପାଳିଲେ ।

**ଚରିତ୍ରଚିତ୍ରଣ**:—ଯଯାତି କାବ୍ୟଟିରେ ଯଯାତି, ବିମଳା, ଲଳିତାହିଁ ପ୍ରଧାନ ଚରିତ୍ର ।

ଯଯାତି ଓ ବିମଳା ଯାମଳ ସନ୍ତାନ ; ବାଲ୍ୟରୁ ମାତୃହୀନ । ବିମାତାଙ୍କ କୁମନ୍ତ୍ରଣାରେ ପିତା ଉତ୍ପୀଡ଼ନ କରିବାରୁ ଆତ୍ମରକ୍ଷା ନିମନ୍ତେ ଉଭୟେ ଉତ୍ତରକୋଶଳକୁ ପଳାଇଗଲେ । ନୀଳାଚଳ କ୍ଷେତ୍ର ଦର୍ଶନ ମାନସରେ ଦୁହେଁ ଦକ୍ଷିଣକୁ ଯାତ୍ରା କରୁଥିଲାବେଳେ ବୈତରଣୀନଦୀ ତୀରସ୍ଥ ପବିତ୍ର ବିରଜା ପୀଠ ନିକଟରେ ବାସ କରିବାକୁ ଲାଗିଲେ । ଭାଗ୍ୟର ଅପ୍ରସନ୍ନତା ଯୋଗୁଁ ସେ ଦୁହେଁ ଅଜ୍ଞାତ ବନବାସ କଲେ ।

ମାତୃହୀନ ଦୁଃଖ, ବିମାତାର ଈର୍ଷା, ପିତାଙ୍କ ଉତ୍ପୀଡ଼ନ ସେମାନଙ୍କ ପକ୍ଷେ ଅସହନୀୟ ଓ ବିପଦପୂର୍ଣ୍ଣ ହୋଇପଡ଼ିବାରୁ ସେମାନେ ସ୍ୱଦେଶ ତ୍ୟାଗ କରି ନିରୁଦ୍ଦିଷ୍ଟ ହେଲେ । ଦୁହେଁ ଯୌବନାବସ୍ଥାରେ ଉପସ୍ଥିତ ହୋଇଥିଲେ ମଧ୍ୟ ବୟସୋଚିତ ଚିନ୍ତା ଓ ଜୀବନର ଭବିଷ୍ୟତ ସମ୍ବନ୍ଧରେ ସେମାନଙ୍କର କୌଣସି ଧାରଣା ହୋଇ ନଥିଲା ; କେବଳ ପାରିଧି ଓ ବିରଜାସେବାରେ ଦିନାତିପାତ କରୁଥିଲେ । ଦେବୀଭକ୍ତ ରାଜକୁମାର ଯେ ଦିନେ ଉତ୍କଳ ସିଂହାସନ ଲାଭ କରିବେ ଏହି ଆଶା ସେ ସ୍ୱପ୍ନରେ ସୁଦ୍ଧା କରି ନଥିବେ । ଉତ୍କଳ ସିଂହାସନ ଲାଭ ନିମନ୍ତେ କବି କଳ୍ପନା ଯଯାତିଙ୍କ ପଥକୁ ପରିଷ୍କାର ଓ ସୁଗମ କରି ଦେଇଥିଲା । ଏହା ତାଙ୍କର ଭାଗ୍ୟର ଶୁଭଦୃଷ୍ଟି ମଧ୍ୟ ବୋଲିଯାଇପାରେ । ଉତ୍କଳରାଜ ହିରଣ୍ୟବର୍ମା ଅପୁତ୍ରିକ, ଲଳିତା ଏକମାତ୍ର କନ୍ୟା । ଲଳିତା ଓ ଦେବୀ ବିରଜାହିଁ ଯଯାତିଙ୍କ ରାଜ୍ୟ-ପ୍ରାପ୍ତିର ପ୍ରଧାନ ମାଧ୍ୟମ । ଲଳିତା ସହିତ ଯଯାତିଙ୍କ ଗୁପ୍ତ ପ୍ରେମ, ରାଜାଙ୍କ ଦଣ୍ଡବିଧାନ, ଓ ଦେବୀ ବିରଜାଙ୍କ ସ୍ୱପ୍ନାଦେଶ ସବୁ ସମସ୍ୟାର ସୁସମାଧାନ ଦିଗରେ ପ୍ରଧାନ କାରଣ ହୋଇଛି ।

ଯଯାତି ନିରୁଦ୍ଦିଷ୍ଟ ଯୁବକ ହେଲେ ମଧ୍ୟ ସେ ଉତ୍କଳ ସିଂହାସନର ଅଯୋଗ୍ୟପାତ୍ର ନୁହନ୍ତି । ସେ ନିଜେ ରାଜକୁମାର ; ଉଚ୍ଚଶିକ୍ଷା ମଧ୍ୟ ଲାଭ କରିଥିଲେ । ଅସ୍ତ୍ରଚାଳନାରେ ମଧ୍ୟ ଦକ୍ଷତା ଥିବାରୁ ତାଙ୍କର ବୀରତ୍ୱର ପରୀକ୍ଷା ହୋଇନଥିଲେ ମଧ୍ୟ ମନ୍ତ୍ରୀବରଙ୍କ ସହିତ ଯୁଦ୍ଧକରି ରାଜୋଚିତ, ବୀରୋଚିତ ମରଣ ବରଣ କରିବା ନିମନ୍ତେ ତାଙ୍କ ପ୍ରାର୍ଥନାରୁ ଏହାର ସୂଚନା ମିଳୁଛି ।

ଯଯାତି ଓ ବିମଳାଙ୍କୁ ଯାମଳ ଭ୍ରାତୃଭଗିନୀ କରି କବି ଉଭୟଙ୍କ କାର୍ଯ୍ୟସିଦ୍ଧି ସହଜରେ କରାଇପାରିଛନ୍ତି । ବିମଳାର ମୃଗୟା-କାଳୀନ ବେଶ ଓ ଅପୂର୍ବ ଶୋଭା ଲଳିତାକୁ ମୁଗ୍ଧ କରିଦେଇଛି,

ଏବଂ ସେ ବିମଳାକୁ ମନେମନେ ପୁଂସ ବୋଲି କଳ୍ପନା କରି କାମ ବ୍ୟଥାରେ ଅତ୍ୟନ୍ତ ପୀଡ଼ିତ ହୋଇଛନ୍ତି । ଏହି ଅତ୍ୟଧିକ କାମ ପୀଡ଼ାହିଁ ଅସ୍ୱାଭାବିକ କାମଚେଷ୍ଟାର କାରଣ । ଛଦ୍ମବେଶୀ ଯଯାତିଙ୍କ ପ୍ରକୃତ ରୂପ ଦେଖିବା ପରେ ମଧ୍ୟ ଲଳିତା କାମାନ୍ଧ ଥିବା ଯୋଗୁଁ ପରପୁରୁଷ ସହିତ ଗୋପନ ରତିକ୍ରୀଡ଼ାରେ ମାତିଲେ । ପରବର୍ତ୍ତୀ ଘଟଣାବଳୀ ଯଯାତିଙ୍କ ପ୍ରତି ଅନୁକୂଳ ନଥିଲେ ମଧ୍ୟ ଦେବୀ ବିରଜାଙ୍କ ପ୍ରସାଦରୁ ତାଙ୍କର ଜୀବନରକ୍ଷା ହେଲା ଏବଂ ସେ ଉତ୍କଳ ସିଂହାସନ ମଧ୍ୟ ଲାଭ କରିଛନ୍ତି ।

ଯଯାତିଙ୍କ ଛଦ୍ମବେଶ, ତପସ୍ୱୀଙ୍କ ବରଦାନ ସମ୍ପର୍କୀୟ ମିଥ୍ୟା କଥନ, ଗୁପ୍ତରତିକ୍ରୀଡ଼ାଦି ବିଷୟ ସାମାଜିକ ଦୃଷ୍ଟିକୋଣରୁ ସମର୍ଥନଯୋଗ୍ୟ ନୁହେଁ । ସେ ବୀର ବୋଲି ପରିଚୟ ଦେଉଥିଲେ ମଧ୍ୟ ବୀରୋଚିତ କାର୍ଯ୍ୟ କରିନାହାନ୍ତି । କବି ପାତ୍ରୀମୁଖରେ ପୁରାଣ ଆଖ୍ୟାନମାନଙ୍କରୁ ସମର୍ଥନ-ଉଦାହରଣ ଉଦ୍ଧାର କରିଥିଲେ ମଧ୍ୟ ଯଯାତିଙ୍କ ଛଦ୍ମବେଶ, ମିଥ୍ୟାକଥନ ପ୍ରଭୃତିକୁ ସେ ସମର୍ଥନ କରିଥିବା ଜଣାଯାଉନାହିଁ । କାରଣ ସେ କହିଛନ୍ତି—"ସ୍ୱରୂପ ଯୌବନ ପ୍ରେମ ଏ ତିନହେଁ ବିବେକ ବୈରୀ ସର୍ବଥା ; ତିନହେଁ ମିଳିଲେ ବିବେକର ବେକ ମୋଡ଼ିଦେବା କିବା କଥା ।" ଯଯାତି—ଲଳିତାଙ୍କ କ୍ରୀଡ଼ାକୁ 'ସ୍ୱୈରସୁଖ' ବୋଲି ମଧ୍ୟ କବି ଅଭିହିତ କରିଛନ୍ତି । କବି ଯଯାତିଙ୍କୁ କେଶରୀବଂଶର ପ୍ରତିଷ୍ଠାତା ଓ ଉତ୍କଳର ବହୁ ଉନ୍ନତିକାରକ ରୂପେ ଚିତ୍ରଣ କରି ତାଙ୍କର ଯଶ ଗାନ କରିବା ସ୍ଥଳେ ଯଯାତିଙ୍କ ରାଜ୍ୟ-ପ୍ରାପ୍ତି ସମ୍ବନ୍ଧରେ ଯେଉଁ କାରଣ-ପ୍ରସଙ୍ଗ ଅବତାରଣା କରିଛନ୍ତି ତାହା ଯଯାତିଙ୍କ ଗୌରବ ସହିତ ସାମଞ୍ଜସ୍ୟ ରକ୍ଷା କରି ପାରୁନାହିଁ । ଉତ୍କଳରେ ଗଙ୍ଗବଂଶ ରାଜତ୍ୱର ପ୍ରତିଷ୍ଠା ସମ୍ବନ୍ଧରେ "ନନ୍ଦିକେଶ୍ୱରୀ" କାବ୍ୟରେ କବି ଯେଉଁ ଉପାଖ୍ୟାନ ଦେଇଛନ୍ତି ତାହା

କେଶରୀ ବଂଶୀୟ ଶେଷ ରାଜାଙ୍କର ଉଚ୍ଚ ପାରିବାରିକ ଓ ରାଜନୈତିକ ଗୌରବ ପ୍ରମାଣ କରୁନାହିଁ । ଉତ୍କଳରେ ବୈଷ୍ଣବ ଧର୍ମର ପ୍ରଚାର ପାଇଁ ଦେବୀ ଗଙ୍ଗାଙ୍କ ଆଜ୍ଞାରୁ ଚୋଡ଼ଗଙ୍ଗ ଉତ୍କଳ ଆକ୍ରମଣ କରିବା କବି ପ୍ରକାଶ କରିଛନ୍ତି । 'ଯଯାତିକେଶରୀ'ରେ କେଶରୀବଂଶ ରାଜତ୍ୱ ପ୍ରତିଷ୍ଠାତା ଯଯାତିଙ୍କୁ ବିରଜାଙ୍କ ଭକ୍ତ ବିରଜାଙ୍କ ଆଜ୍ଞାରେ ଉତ୍କଳେଶ ହିରଣ୍ୟବର୍ମଦେବ ତାଙ୍କ ହସ୍ତରେ ସିଂହାସନ ଅର୍ପଣ କରିଛନ୍ତି । ଏହାଦ୍ୱାରା ମଧ୍ୟ କେଶରୀବଂଶ ରାଜତ୍ୱରେ ଉତ୍କଳରେ ଶାକ୍ତଧର୍ମର ଉଜ୍ଜ୍ୱଳ ପ୍ରଚାର ହୋଇଥିବାର ସୂଚନା ମିଳୁଛି । ହିରଣ୍ୟବର୍ମ ଓ ସୁବର୍ଣ୍ଣକେଶରୀ ଉଭୟଙ୍କୁ କବି ଅପୁତ୍ରିକ ଓ ଏକମାତ୍ର କନ୍ୟାର ପିତା ସ୍ୱରୂପ ଚିତ୍ରଣ କରି ବଂଶଲୋପର ସୂଚନା ଦେଇଛନ୍ତି । ଉଭୟ କ୍ଷେତ୍ରରେ ଯୁଦ୍ଧଦ୍ୱାରା ଉତ୍କଳ ରାଜବଂଶର ରାଜତ୍ୱ ଲୋପ ହୋଇନାହିଁ; ଏକମାତ୍ର କନ୍ୟାହିଁ ଉଭୟ ହିରଣ୍ୟବର୍ମ—କେଶରୀ ଓ କେଶରୀ-ଗଙ୍ଗ ରାଜତ୍ୱର ସଂଯୋଜକରୂପେ ଚିତ୍ରିତ ହୋଇଛନ୍ତି । ଏପରି ରାଜନୈତିକ ଘଟନା ଅଦ୍ଭୁତ ନହେଲେ ମଧ୍ୟ ସ୍ୱଳ୍ପହିଁ ଦେଖାଯାଏ । ଅଧିକ ସ୍ପୃହଣୀୟ ପନ୍ଥା ଅବଲମ୍ବନ କରିଥିଲେ କାବ୍ୟର ଗୌରବ ନିଶ୍ଚିତ ଭାବରେ ବୃଦ୍ଧି ପାଇଥାଆନ୍ତା ।

ରାଧାନାଥ 'ଯଯାତିକେଶରୀ'ରେ ବିରଜା ପୀଠର ବନ, ଉଦୟଗିରି, ଉଦୟଗିରି ନିକଟସ୍ଥ ମୃଗୟା ବନ,ମହାନଦୀ ବୈତରଣୀ ପ୍ରଭୃତିର ସୁନ୍ଦର ଚିତ୍ର ପ୍ରଦାନ କରିଛନ୍ତି । ପ୍ରାକୃତିକ ଦୃଶ୍ୟର ବର୍ଣ୍ଣନାଗୁଡ଼ିକ ଜୀବନ୍ତ ହୋଇଛି, ଏଥିରୁ ବହୁ ଦୃଶ୍ୟର ବର୍ଣ୍ଣନା ରମଣୀୟ ହୋଇଛି; ଭାଷା ଓ ପ୍ରକାଶଭଙ୍ଗୀ ଦୃଷ୍ଟିରୁ ଅତି ଉଚ୍ଚ କୋଟୀର କବିତା ହୋଇପାରିଛି । ଉପମାବିମଣ୍ଡିତ ଏହି ଦୃଶ୍ୟ-ବର୍ଣ୍ଣନା ପ୍ରାଚୀନ ବିଶିଷ୍ଟ କବିମାନଙ୍କ ବର୍ଣ୍ଣନାର ଅନୁରୂପ ହୋଇଛି । ତେବେ, ଉପବନ ଓ ଉପବନ-ବିହାର ପ୍ରସଙ୍ଗରେ ଉପେନ୍ଦ୍ର,

ଯାନକୃଷ୍ଣାଦି କବିମାନେ ଯେଉଁ ଉପମା, ଉତ୍ପ୍ରେକ୍ଷା, ଶ୍ଳେଷର ତରଙ୍ଗ ଖେଳାଇଦେଇ ପାଠକ ଗ୍ରାହକଙ୍କ ମନରେ ରସସମୁଦ୍ର ସୃଷ୍ଟି କରି ପାରିଛନ୍ତି ସେ 'ଶୈଳୀର ବର୍ଣ୍ଣନା 'ଯଯାତି କେଶରୀ'ରେ ବନ ଓ ବନବିହାରରେ ନାହିଁ । ବିଭିନ୍ନ ପକ୍ଷୀ ଓ ବୃକ୍ଷଲତାର ନାମକରଣ ଓ ପ୍ରସିଦ୍ଧିର ବିବରଣ ସହିତ ଉପମାର ଯୋଗ ହୋଇଥିବାରୁ କବିଙ୍କ ରଚନା ରସମୟ ହୋଇପାରିଛି ।

ଯଯାତି ବିରଜାମନ୍ଦିରରେ ଫୁଲହାର ଗୁନ୍ଥୁଥିବା ବେଳେ ଲଳିତାର ଦୃଷ୍ଟି ତାଙ୍କ ଉପରେ ପଡ଼ିଲା ଏହି ଦୃଶ୍ୟର ବର୍ଣ୍ଣନା ଚମତ୍କାର ହୋଇଛି ; ନବ୍ୟାନୁରାଗର ପ୍ରକାଶକୁ ଅଳ୍ପପଦରେ କବି ଅତି ସୁନ୍ଦର ଭାବରେ ଚିତ୍ରଣ କରିଛନ୍ତି ।

କବି ଲଳିତାର ବେଶ ବର୍ଣ୍ଣନାରେ ଯେଉଁ ଅଳଙ୍କାରାଦି ବେଶଭୂଷାର ବ୍ୟବହାର କରିଛନ୍ତି ତାହା ପ୍ରାଚୀନକାଳରୁ ପରଂପରାକ୍ରମେ ଚଳି ଆସୁଥିବା ଦ୍ରବ୍ୟସମ୍ଭାର ବ୍ୟତୀତ ଅନ୍ୟ କିଛି ନୁହେଁ । କବି ସହସ୍ରାଧିକ ବର୍ଷ ତଳର କଥାବସ୍ତୁ ଅବତାରଣା କରିଥିବାରୁ ଏପରି ପ୍ରାଚୀନ ରୀତିର ଦ୍ରବ୍ୟ ବ୍ୟବହାର କରିବାକୁ ବାଧ୍ୟ ହୋଇଛନ୍ତି; ଆଧୁନିକ ଦ୍ରବ୍ୟାଦିର ବ୍ୟବହାର ଅସଙ୍ଗତ ହୋଇଥାଆନ୍ତା ।

କବି ଲଳିତା-ବିମଳାଙ୍କ ସ୍ନେହକାହାଣୀରେ ଯେଉଁ ଅନୁରାଗ, ବିରହାଦି ଭାବନା ବ୍ୟକ୍ତ କରିଛନ୍ତି ତାହା ପ୍ରକୃତରେ ନାୟକ-ନାୟିକାର ଭାବ । ପ୍ରାଚୀନ କବିମାନଙ୍କ ଶୈଳୀକୁ ଅନୁସରଣ କରି ରାଧାନାଥ ବିଭିନ୍ନ ଅନୁଚିନ୍ତାର ଚିତ୍ରକୁ ଅଳଙ୍କାର ଶାସ୍ତ୍ରସମ୍ମତ କରିବାକୁ ଚେଷ୍ଟା କରିଛନ୍ତି ।

ପ୍ରେମୋନ୍ମାଦିନୀ ଲଳିତାର ମନରେ ବିମଳା ସମ୍ବନ୍ଧରେ ଏକପ ଅଶନ, ଶୟନ କରିବା ବେଳେ ଯେଉଁ ଭାବନା ପ୍ରକାଶ ପାଇଛି ତାହା ନବଯୌବନା, ଅବିବାହିତା, ନବାନୁରାଗପୀଡ଼ିତ ପ୍ରେମିକା ପକ୍ଷେ କେବଳ ସମ୍ଭବ । ସେ ମନେ ମନେ ନିଜକୁ ନାୟିକା ଓ ବିମଳାକୁ ନିଜର ନାୟକ ବୋଲି କଳ୍ପନା କରି ନେଇଥିବାରୁ ଭାବତରଙ୍ଗର ରୂପ ନାୟକ-ନାୟିକାର ଭାବନାର ଅନୁରୂପ ହୋଇଛି । କିନ୍ତୁ ବିମଳା ସ୍ତ୍ରୀ ଥିବାରୁ ତାଙ୍କ ହୃଦୟରେ ନାୟକର ଭାବ ଅସମ୍ଭବ; ଏହି କାରଣରୁ ଲଳିତା ଉପଯୁକ୍ତ ଉତ୍ତର ଓ ଭାବ ପାଇପାରି-ନାହାନ୍ତି । ପୁଣି, ଏ କାବ୍ୟରେ କବି ଲଳିତାକୁ ପ୍ରାଚୀନ କବିମାନଙ୍କ ରୀତି ଅନୁଯାଇ ସ୍ୱପ୍ନ ଓ ସ୍ୱପ୍ନାନ୍ତେ ବିଳାପର ଅବତାରଣା ମଧ୍ୟ କରିଛନ୍ତି; ଏହି ପ୍ରସଙ୍ଗରେ ଉପେନ୍ଦ୍ର ଭଞ୍ଜଙ୍କ ପ୍ରସିଦ୍ଧ । ଲାବଣ୍ୟବତୀର "ଚେତି ଚତୁରୀ ଗୃହିଁଲ ନଣିନାଣେ ପାଣେ ନାହିଁ ଦିବ୍ୟ ତରୁଣ, × × × × × ଶେଯ ଲେଉଟାଇ କବରୀ ଫିଟାଇ" ଉଚ୍ଚେ ରୋଦନ କରିବା ଭାବକୁ ରାଧାନାଥ କେତେକାଂଶରେ ଅନୁସରଣ କରିଛନ୍ତି । ବିରହୋନ୍ମାଦିନୀର ବିଭିନ୍ନ ଦଶା ଓ ଅନୁଚିନ୍ତା ପ୍ରକାଶରେ ମଧ୍ୟ ରାଧାନାଥ ପ୍ରାଚୀନ କବିମାନଙ୍କୁ ଅନୁସରଣ କରିଛନ୍ତି । "ମାୟାକାନ୍ତ"ର କଳ୍ପନା ନାୟିକାର ଭାବରାଶି ପ୍ରକାଶ କରିବାରେ ଉପାୟ ସ୍ୱରୂପ ହୋଇଛି, କବିଙ୍କୁ ସୁଯୋଗ ମିଳିଛି । ଏହି ସବୁ ପ୍ରସଙ୍ଗ କବି ଚମତ୍କାର ଭାବରେ କବିତ୍ୱପୂର୍ଣ୍ଣ ପଦାବଳୀରେ ରଚନା କରିଛନ୍ତି ।

ବିମଳା ସଙ୍ଗତେ ଆଦ୍ୟ ଭେଟ କାଳେ
ଜନମିଥିଲା ଯେ ଭ୍ରମ,
ଯେଉଁ ଭ୍ରମରନ୍ଧ୍ରେ ହୃର ଫୁଲଧନୁ
ବିନ୍ଧିଲା ଜେମା ମରମ ।

ଭ୍ରମ ସଙ୍ଗେ ସେହି  ସୂତୀକ୍ଷ୍ଣ ବିଶିଖ
ହୋଇଥିଲେ ଉତ୍ଖାତ
ନିଶେଷେ ବିଶଲ୍ୟ  ନୋହି ଅନ୍ତର୍ଗତେ
ଶୁଖି ନଥିଲା ସେ ଘାତ ।
ଭସ୍ମାବୃତ ବହ୍ନି-  ପ୍ରାୟେ ଅନ୍ତଃସ୍ଥଳେ
ଲୁଚିଥିଲା ସେହି କାମ
ବିମଳାକୁ ଶଯ୍ୟା-  ସହଚରୀ ଦେଖି
ପୁଣି ତା ହେଲା ଉଦ୍ଦାମ ।
ସେ ଉଦ୍ଦାମ କାମ  ନୁହେଁ ତୃପ୍ତି କ୍ଷମ
ପାରୁଥିଲା ବାଳା ଜାଣି
ମାତ୍ର ସେ ନୈରାଶ୍ୟ  ସେହି ବାସନାର
ଧାର ଦେଉଥିଲା ଶାଣି । × ×
ବିମଳାକୁ ଜେମା  ସଂକଳ୍ପେ ପୁରୁଷ
ଗଢ଼ିନେଇ ସେହିପରି
ଲଳିତା ସଂଭୋଗ  ଶାନ୍ତିମାନ ମନେ
ଆଚରିଲା ଅଲ୍ପୋଦରୀ ।
ସେ ସଂକଳ୍ପ-ସୁଖେ  ତୃପ୍ତି କାହିଁ ସେ ତ
କେବଳ ତୃଷାବର୍ଦ୍ଧକ । × ×
ଚେତ ଚତୁରୀ ସେ  ପୁଂସରତନକୁ
ଅଣାଇଲା ନିଜେ ପାଶେ । × ଇତ୍ୟାଦି

ଏହି ପ୍ରସଙ୍ଗରେ ଲଳିତାର ମାନସିକ ଅବସ୍ଥାର ବିଶ୍ଳେଷଣ ଅତି ସୁନ୍ଦର ଓ ସୂକ୍ଷ୍ମ ହୋଇଛି । ପରସ୍ପରବିରୋଧୀ ଅବସ୍ଥା ଓ

ସବଦଳଙ୍କର ଅଧୀନ ହୋଇ ନାୟିକା ଯେପରି ମନରେ ଛଟପଟ ହେଉଛି ତାହା ସୁନ୍ଦର ରୂପ ପାଇଛି । "ଅବସ୍ଥା"କୁ ବାସ୍ତବରୂପ ଦେବାରେ କବିଙ୍କ ଯେଉଁ ଶ୍ରମ ହୁଏ, ସେଥିରେ କବି ସଫଳକାମ ହୋଇ ପାରିଛନ୍ତି; ସୁନ୍ଦର ଚିତ୍ରଟିଏ ଅଙ୍କନ କରିଛନ୍ତି । ଲଳିତା ନିଜ ଅବସ୍ଥାକୁ ବୁଝିପାରିଥିଲେ ମଧ୍ୟ ପ୍ରବୃତ୍ତି-ଗତିକୁ ରୋଧ କରିବା ଶକ୍ତି ତାଙ୍କଠାରେ ସେହି ବୟସରେ ଆଶା କରିବା ବୃଥା ।

ଅବାସ୍ତବରେ ଯେଣୁ ନିବଦ୍ଧ ମୋହର
ସ୍ୱପ୍ନ ଏକା ମୋର ଗତି । × ×
ପ୍ରେମ ତନ୍ତ୍ର ମତେ ପୁଂସରେ ପ୍ରମଦା
ପ୍ରମଦାରେ ପୁଂସରତି
ଚତୁର୍ଦ୍ଦଶ ପୁରେ ଚଳୁଅଛି ଏହି
ବିଧିର ବିଧି ଶାଶ୍ୱତ ।
ରଙ୍ଗରସେ କେବେ କୁରଙ୍ଗୀଠାରେ କି
ରମଇ କୁରଙ୍ଗ ନାରୀ ?। × ×

ନୈରାଶ୍ୟ ସାଗରରେ ନାୟିକା ବୁଡି ରହିଥିଲେ ମଧ୍ୟ ସେ ବିବେକକୁ ଏକାବେଳକେ ତ୍ୟାଗ କରିନାହାଁନ୍ତି ।

ନୈରାଶ୍ୟ ଉଷରେ ପ୍ରେମ ବୀଜ ଆହା
କି ଫଳ ହେବ ବୁଣିଲେ । × ×
ବୃଥା କାମ୍ୟା ମୁହିଁ ମନାସିଲି ମନେ
ମୃଗତୃଷ୍ଣିକାରେ ସ୍ନାନ,
ମୋହରି ଭାଗ୍ୟେ କି ଲେଖାଥିଲା ଏହା
ଲୋଡ଼ିବା ଶଶବିଷାଣ ? × ×
ନୋହିବାର ଯାହା ଏସନ ବିଷମ
ବାସନାକୁ ମନେ ପୋଷି

ନିଜେ ଦୋଷୀ ହୋଇ ଅକାରଣେ କିମ୍ପା
ବଧିକ କରୁଛୁ ଦୋଷୀ ? × ×

କବି ସୁଖାନ୍ତ ବିରହ ଓ ଦୁଃଖାନ୍ତ ବିରହର ସୁନ୍ଦର ଚିତ୍ର ଦେଇଛନ୍ତି ।

ବିରହବିଧୁରା ଲଳିତା ବିରହଦୁଃଖ କାରଣ ସ୍ୱରୂପ ତାଙ୍କ ପୂର୍ବ ସଂକଳ୍ପକୁ ଦୋଷ ଦେଇଛନ୍ତି—

ଭ୍ରମେ ପଡ଼ି ମୁହିଁ ପ୍ରେମ-ସ୍ରୋତେମନ-
ତରୀ କି ଦେଲି ଭସାଇ
ଭ୍ରମ ଛୁଟିଗଲା ମାତ୍ର ସେହି ମନ-
ତରୀ ତ ଫେରିଲା ନାହିଁ ।
ନୈରାଶ୍ୟ-ଚରାରେ ଲାଗି ରହିଲା ସେ
ବାହୁଡ଼ିବ କାହିଁ ଆଉ
ଚିରକୌମାର ଯା ମନାସିଣ ଥିଲି
ସାଧିଲି ବିଧି ସେ ଦାଉ ।

ବିରହିଣୀ ଲଳିତା ଉପରେ ଏକା ପ୍ରକୃତିର ବିପରୀତ ପ୍ରଭାବକୁ ଚିତ୍ରଣ କରି କବି ଯଶସ୍ୱୀ ହୋଇଛନ୍ତି; ପ୍ରାଚୀନ କବିମାନଙ୍କ ଭଳି ବିସ୍ତାରିତ ବର୍ଣ୍ଣନା କରିନଥିଲେ ମଧ୍ୟ ସେମାନଙ୍କ ଗୌରବ, କବିଲାଭ କରିଛନ୍ତି ।

ଶୀତଦ୍ୟୁତି- କରେ ଦ୍ୱିଗୁଣେ ଜେମାର
ବଢ଼ିଲା ହୃଦ-ତାପିତ
ତା ନେତ୍ରେ ଚନ୍ଦ୍ରମା ଦିଶିଲେ କିବା ସେ
ମନ୍ମଥ ରାଜାର ଛତ୍ର ।
ଚକୋର ଚିଁ ଚିଁ ସ୍ୱର ଶୁଣି ବାଳା
ଦ୍ୱିଗୁଣେ ହେଲା ଆକୁଳ

ଆନନ୍ଦର ଧ୍ୱନି ଉପୁଜାଏ ସିନା
ଦୁଃଖୀର ଶ୍ରବଣ ଶୂଳ ।
କାହିଁକେ ଶାନ୍ତ୍ୱନା ଲଭୁଥିଲି ଧନା
ମର୍ମଭେଦୀ ସେ ସନ୍ତାପେ
ବିରୂପୀ ଚନ୍ଦ୍ରିମା ଚନ୍ଦ୍ରି ପଠାଉଥିଲା-
ରଥାଙ୍ଗ-ବଧୂ ବିଳାପେ । × × ଇତ୍ୟାଦି ।
ନିଦ୍ରା ପରିହରି ନଳିନୀ ସୁନ୍ଦରୀ
ସୁଷମା କଲା ବିସ୍ତାର
କୁମୁଦିନୀଠାରେ ଜେମାଠାରେ ନ୍ୟସ୍ତ-
କରି ନିଜ ଦୁଃଖଭାର ।× ×

ବିରହରେ ବିଭ୍ରମ ଅବସ୍ଥା, ଦୂତପ୍ରେରଣ ଭାବ, କବି ଅଳ୍ପ ପଦରେ ସୁନ୍ଦର ରୂପରେ ବର୍ଣ୍ଣନା କରିଛନ୍ତି—

ଜଗତିରେ ଗଜ- ଦନ୍ତ-ବାତାୟନ
ବିବରେ ନିହ୍ନି ବଦନ,
ବିଭ୍ରମ-ଗୁଣି ଦେଉଥିଲି ବିମଳାର କଥା
ଉତ୍ତରସେ୍ୟ ଅନୁକ୍ଷଣେ ।
ଉତ୍ତର ପବନେ ଆଲିଙ୍ଗନ ବାଳା
କରୁଥିଲା ଭୁଜ ତୋଳି
ମାର୍ଗେ ଆସୁଁ ଆସୁଁ ବିମଳାର ଅଙ୍ଗ
ଛୁଇଁ ଆସିଅଛୁ ବୋଲି ।× ×
ଦୂତ-ଉତ୍କଳିକା କୂଳେ ଦୂତ ପଦେ କରି
ପେଷୁଥିଲି ତା ଅନ୍ତିକ
ପୟୋଦା ପଟଳୀ ଆଦି କରି ଯେତେ
ନିଃଶବ୍ଦ ପ୍ରୟାଣିକ ।× ×

**ବର୍ଣ୍ଣନାଚାତୁରୀ**—ରାଧାନାଥ 'ଯଯାତିକେଶରୀ'ରେ କବିତ୍ୱପୂର୍ଣ୍ଣଦ୍ୱାରା ପଦାବଳୀ ବନ୍ଧ ଚିତ୍ର ପ୍ରଦାନ କରିଛନ୍ତି ; ପ୍ରେମ-କାବ୍ୟର ଗୌରବକୁ ଏହି ରସମୟ ଚିତ୍ରଗୁଡ଼ିକ ବୃଦ୍ଧି କରିଛି ।

୧ । ଲଳିତାର ବେଶ-ସୌନ୍ଦର୍ଯ୍ୟ:—

ଜଗତୀ ଉପରେ ଜଗତ-ମୋହିନୀ ବସି ହେଉଥିଲା ବେଶ
ପିଠି ଲୋଟୁଥିଲା ସୁଯତ୍ନେ ଚରମେ ତରଙ୍ଗ କୁଞ୍ଚିତ କେଶ ।
କରେ ଚୂଡ଼ି ବାହୁ-ଯୁଗେ ବାଜୁବନ୍ଧ ଗ୍ରୀବାଦେଶେ ଗ୍ରୈବେୟକ
ଗୌରବ ଗଣ୍ଡ ଚୁମ୍ବି ହୀରା ଅବତଂସ କରୁଥିଲା ଜକଜକ ।
ଦିଶୁଥିଲା ଶିଶୁ ହରିଣାକ୍ଷୀ ରତ୍ନଭୂଷଣ କରି ମଞ୍ଜୁଳ
ଭୁଲ ତାର ସିନା ହୁଅନ୍ତା ଚଳିତ-ଲତାରେ ଫୁଟିଲେ ଫୁଲ ।
ନିତମ୍ବିନୀ-ଗୋଲ ପୃଥୁଳ ନିତମ୍ବେ ଶୋଭୁଥିଲା କାଞ୍ଚିଦାମ
ସ୍ଥାନ ଜାଣି ଅବା ନହୁଥିଲା ତହିଁ କାମୁକ-ଶିଞ୍ଜିନୀ କାମ !

ବାଳାର ଅଙ୍ଗ ଯଷ୍ଟି ସରଳ ସୁଢାଳ, ସୁଲଳିତ; ସତେ ଯେପରି ଅନଙ୍ଗୀ ଶିଳ୍ପୀର ଶାଣଯନ୍ତ୍ରରେ ସୁବଳିତ ହୋଇଛି । ବିମ୍ବାଧରର ମୁଖମଣ୍ଡଳ ଆସ୍ୟାବିମ୍ବ ଅସ୍ତକରେ ବିଭାସିତ ହେଉ-ଥିଲା । ଯୁବଜନ-ଉନ୍ମାଦକ ନିଜ ବିଳାସରେ ଛପିଗଲା କି !

କେଶବିନ୍ୟାସର ବିଧାନ ପ୍ରାଚୀନ କବିମାନଙ୍କ ବର୍ଣ୍ଣନାଠାରୁ ଭିନ୍ନ ନୁହେଁ ।

ପରେ ବସି ସଖୀ ଗୃନ୍ଥୁଥିଲା ବେଣୀ ଗଜଦନ୍ତ କଙ୍କତିକା
ମଞ୍ଜୁ ପାଦପଦ୍ମ ରଞ୍ଜୁଥିଲା ଅଗ୍ରେ ଲାକ୍ଷାରସେ ପ୍ରସାଧିକା ।

ଅବନୀ ରମ୍ଭାର ଉତ୍କଟ-କନକ-ରମ୍ଭା-ଚରଣର ପାହୁଡ଼କୁ ଦେଖି ରସିକର ମନ ଈର୍ଷାରେ ଦହି ହୋଇ ଯାଉଛି । କମନୀୟ ଊରୁ ସତେ ଯେପରି "ଶତ ମନୋରାଜ୍ୟ ରୂପିଣୀ ହୃଦୟେ ମନୋଜ ମନୋ-ରାଜ୍ୟ ସାକ୍ଷାଗୁରୁ ।" କର ପଦ୍ମରେ ଯୁବାମନୋ-ରାଜ୍ୟ-

ରୂପିଣୀ ରୂପସୀ ବିମଳହେମଦର୍ପଣ ଧରି କ୍ଷଣେ କ୍ଷଣେ ସ୍ୱ ପୂର୍ଣ୍ଣଚନ୍ଦ୍ରା-ନନକୁ ଦେଖୁଥିଲି ।

କମନୀୟ କୋମଳ ପଦାବଳୀରେ ବାଳାର ସୁଷମା, ବେଶ-ବିନ୍ୟାସର ଶିଳ୍ପ ମନୋମୁଗ୍ଧକର ହୋଇଛି । କବି ଅଳଙ୍କାରକୁ ବେଶଭୂଷଣରେ ବହୁଳ ବ୍ୟବହାର ନକରିଥିବାରୁ ସରଳ ସ୍ୱାଭାବିକ ସୌନ୍ଦର୍ଯ୍ୟକୁ ଆଦରସ୍ଥାନ ଦେଉଥିବା ଜଣାଯାଏ ।

୨ । ଯଯାତି-ଲଳିତାଙ୍କ ଗୋପନ ଦାମ୍ପତ୍ୟ ଲୀଳାର ବର୍ଣ୍ଣନା ଅଳ୍ପସ୍ଥାନ ଅଧିକାର କରିଛି; ଅଙ୍ଗ-କ୍ରୀଡ଼ା ତୁଳନାରେ ହୃଦୟ କ୍ରୀଡ଼ାର ସ୍ଥାନ ନ୍ୟୂନ ନୁହେଁ । ହୃଦୟ-ହୃଦୟ ମିଳନକୁ କବି ଅତି ସୁନ୍ଦର ଭାବରେ ବ୍ୟକ୍ତ କରିଛନ୍ତି—

ନିଶା ଯୋଗେ ବେନି ତନୁ ମଧ୍ୟେ ଗନ୍ଧ ନଥିଲା ମୃଣାଳ ସୂତା । × ×
ହୃଦୟରୁ ଦେହେ ମିଶାଇ ଦେବାକୁ ଯୌତୁକ କୁସୁମ ଧନୁ;
ସିଇଁ ଦେଉଥିଲା ସୂକ୍ଷ୍ମପୁଷ୍ପଶର ସୂଚୀରେ କି ବେନି ତନୁ ।
ଅଙ୍ଗଯୋଗେ କେବେ ବେନିଠାରୁ ବେନି ଛିନ୍ନହେଲେ ଏକଦଣ୍ଡ
ଲଭୁଥିଲେ ଏକ ଆରେକର ସୁଧା ସୋଦର ସୁହାଗଦଣ୍ଡ । ×
ଉଠୁଥିଲା ଯେବେ ଯେବଣ ଲଳିତ ସ୍ପୃହା ଜଣକର ମନେ
ଦର୍ପଣ ପରାୟେ ପ୍ରତିବିମ୍ବୁଥିଲା ଆନ ମନେ ତତ୍‌କ୍ଷଣେ । × ×

୩ । ଏ ଯୁବକ-ଯୁବତୀର ପ୍ରୀତି ଲକ୍ଷ୍ମୀନାରାୟଣ, ହର-ପାର୍ବତୀଙ୍କ ପ୍ରେମଠାରୁ ବଳିଗଲା । ପ୍ରେମିକଶେଖର ନାରାୟଣ ପ୍ରେମ ଯୋଗୁଁ ଲକ୍ଷ୍ମୀଙ୍କୁ ହୃଦୟରେ ରଖିଥିଲେ, ନାଥ ପ୍ରେମ ଯୋଗୁଁ ହର ପାର୍ବତୀଙ୍କୁ ସ୍ୱଦେହରେ ରଖି ଅର୍ଦ୍ଧନାରୀଶ୍ୱର ବୋଲାଇଲେ । × ×

ମାତ୍ର ଏହୁଁହେଁ ପୂର୍ବରୂପକୁ ଭୁଲି ଏକାକାର ହୋଇଗଲେ ।
ପ୍ରେମେ ଏକାକାର ହୋଇଗଲେ କରି ମହୋଦଧି ଶହୋପ୍ଳା ×

ପ୍ରେମ ରସାୟନ ଯୋଗେ ବେନି ହୋଇ ପୂର୍ବରୂପ ବିରହିତ
ହେଲେ ଅବା ସୁଧା ହରିଦ୍ରା ପରିପ୍ରେ ରାଗାକାରେ
ଆକାରିତ । × ×

(୪) କବି ପ୍ରେମିକ-ପ୍ରେମିକାର ପ୍ରେମକାହାଣୀରେ ମାନ, ଅଭିମାନ, ମିଳନ, ସୁଖ ପ୍ରଭୃତିର ଚିତ୍ର ମଧ୍ଯ ଦେଇଛନ୍ତି ।

ସୁରାତ୍ସର୍ପ୍ୟ-ଶିକ୍ଷା ଫଳରେ ସେ ଛଇଳା କେତେ ଛଇ ପ୍ରକଟ କରୁଛି । ନବୀନ ନାଗରର ମନକୁ ନାନା ରଙ୍ଗରେ ହରି ନେଉଛି । କେତେବେଳେ ବା କାତର ହୋଇ କରଯୋଡ଼ୁଛି, କେତେବେଳେ ବା ଅଭିମାନରେ ମୌନୀ ହୋଇ ବନଜ ବଦନକୁ ମୋଡ଼ୁଛି । ଏପରି ଭର୍ତ୍ସନା, ଧୃଷ୍ଟତା, ଅଳୀକ, କ୍ରୋଧ, ଲଜ୍ଜା ପ୍ରଭୃତିର ହାବଭାବ ମଧ୍ଯ ନାୟିକା ଦେଖାଉଛି ।

ଆଖି ଠାରିଠାରି ହେଉଥାନ୍ତି ବେନି ଅନ୍ୟ ସଜନୀଙ୍କ ପାଶେ
ଭୁକ୍ତ-ସୁଖ-ସ୍ମୃତି ଅପେକ୍ଷିତ ସୁଖ-ଆଶାର ସାନ୍ଦ୍ର ଉଲ୍ଲାସେ ।
ବେନିଙ୍କ ହୃଦୟେ କରୁଥାଇ କେତେ ବିଳାସ ଲାଳସା ଜାତ
ବେନିଙ୍କ ଉପରେ ବେନିଙ୍କର ସ୍ମିତ-ମଧୁର କଟାକ୍ଷପାତ ।
ପ୍ରେମ-କୂଟ-ଭାଷା ବୁଝି ନେଉଥାନ୍ତି ବେନି ବେନିଙ୍କ ନୟନୁଁ
ବୁଝିବାର ତହିଁ କି କଠିନ ଯହିଁ ଭାଷ୍ୟକାର ପୁଷ୍ପଧନୁ । ଇତ୍ୟାଦି
ଏହି ପ୍ରସଙ୍ଗର ପଦାବଳୀଗୁଡ଼ିକ ମଧୁର ରସାପ୍ଲୁତ ହୋଇ ମନକୁ ମୁଗ୍‌ଧ କରୁଛି ।

ଅସତର୍କେ କେବେ ଦେଖିଲେ ସିହାଣୀ କାନ୍ତକୁ ରାଗତରଳ
ବୋଧୁଥାଇ ତାକୁ କ୍ଷଣେ କ୍ଷଣେ କରେ ମୃଦୁ ଲୀଳା ଶତଦଳ ।
କେବେ ଅବା କାନ୍ତ ଚୁମ୍ବନଲାଳସେ ରହସ୍ୟର ବ୍ୟାଜ ଧରି
କାନ୍ତ କର୍ଣ୍ଣେ କହେ କଥା ପୁଷ୍ପକର୍ଣ୍ଣେ ମଳୟାନିଳ ଯେପରି ।
ନେତ୍ର ଯୁଗ୍ମ ପ୍ରାୟେ ଗ୍ରନ୍ଥିବଦ୍ଧପ୍ରାୟେ ବୃନ୍ତ ବେନିଙ୍କର ଶିର
ଏକରି କିଷଣେ ଆରେକ ହୁଅଇ ସମକାଳେ ବିଚଳିତ । ଇତ୍ୟାଦି

(୫) ସଖୀମେଳରେ ଲଳିତାର ଶୋଭା—ମୃଗସ୍ଥା ବନୋ-ଦ୍ୟାନରେ ଲଳିତା ସଖୀ ମେଳରେ ଥିବା ସମୟର ଚିତ୍ରଟି ଅତି ସୁନ୍ଦର ହୋଇଛି । ସୁନ୍ଦରୀ ନାୟିକାକୁ ସୁନ୍ଦରୀ ସଖୀ ମେଳ ସାଜ ଅପୂର୍ବ ସୌନ୍ଦର୍ଯ୍ୟ ସୃଷ୍ଟି କରିଛି ।

ଅପ୍‌ସରୀ ନିନ୍ଦିତ ଏ ସୁନ୍ଦରୀବୃନ୍ଦେ ଝିଟକ ହାଟକ ଗୋରୀ
ଶୋଭା ସ୍ୱର୍ଗ ପୁରନ୍ଦରୀ ପ୍ରାୟେ ରାଜେ ଉତ୍କଳରାଜ କିଶୋରୀ ।
ବିକଶି ଥିଲେହେଁ କୋଟି କୋଟି ତାରା ନିର୍ମଳ ଶାରଦ ନଭେ
ପୂନର୍ବସୁ ସଙ୍ଗେ ଆନ କେହ୍ନ କେବେ ସରି କି ପ୍ରଭା ବିଭବେ ।

(୬) ଯଯାତି ଓ ଲଳିତାର ବିରଜା ମନ୍ଦିରରେ ପ୍ରଥମ ଭେଟର ଦୃଶ୍ୟ—

ସୁନେତ୍ରା ଏକାଳେ ଯଯାତି ଆଡ଼କୁ ଅଙ୍ଗୁଳେ ତାଳ ଗୃହାଣୀ
ଫିହାରି ନେଲା ତା କି ଛଟାରେ ଖେଳଖଞ୍ଜନା ଲେଉଟି-ଆଣି ।
ତୁଳନା ଏକା ସେ ସେହ୍ନ ତାର ସିନା
ହେଲା ଯେ ଶୋଭା ସେ ବେଳେ
ହରନେତ୍ରାନଳେ ଦଗ୍‌ଧମଦନକୁ ଜୀଆଇଁଥାନ୍ତା ତା ହେଲେ ।
କାମକାଣ୍ଡ ସଙ୍ଗେ ସେ କଟାକ୍ଷ ଗଲା ଯଯାତି ମରମେ ପଶି
ନବପ୍ରେମସ୍ରୋତ ଉଚ୍ଛ୍ୱାସେ ପଡ଼ିଲା ଧୈର୍ଯ୍ୟତଟମୂଳ ଧସି ।
ତନୁ ରୋମାଞ୍ଚିଲା ସର୍ବାଙ୍ଗୁ ବହିଲା ସ୍ୱେଦନୀର ଦର ଦରେ
ନାସିକାପୁଡ଼ାରୁ ବହିଲା ସଘନେ ତପତ ଶ୍ୱାସ ପ୍ରଖରେ ।
ସ୍ତମ୍ଭିତେ ରହିଲା ଯୁବାମଣି ବାଳା ସେ କାଳ ଠାଣିକ ଯାପି
ମନୋନଦୀ ତାର ଉଚ୍ଛଳେ ସେ ଶୋଭା ସିନ୍ଧୁରେ ମିଶିଲା ଯାଇ ।

ଏ ଅପୂର୍ବ ଚିତ୍ର ଅପୂର୍ବ ଯୋଗ୍ୟ-ପଦାବଳୀ-ତୁଳିକାରେ ଅପୂର୍ବ ରସରଙ୍ଗ ସୃଷ୍ଟି କରିଛି; କବିଙ୍କ ଲେଖନୀ ଧନ୍ୟ ହୋଇଛି । ପୁଣି ଶୋଭାର ତରଙ୍ଗ—

ଆଣ୍ଠୋଇ ଆୟୁଧ ଥୋଇ ଅବନୀରେ ଓଳଗି ହେଲେ ଅବଳା
ଜୋଡ଼କତ କରି କରକୁ ଅବନୀ-ଲମ୍ବିତଲମ୍ବକୁନ୍ତଳା ।
ଶୋଭାର ତରଙ୍ଗେ ତରଙ୍ଗ ଉଠିଲା ପୁଣି ସେ ସୁନ୍ଦରୀ କୁଳେ
ଅମଳକପୋଳ ମଣିକର୍ଣ୍ଣପୂର ଏକାଳେ ଦୋଳି ମୃଦୁଳେ ।

ଏହି ଦୃଶ୍ୟର ରମଣୀୟ ଶବ୍ଦ ଓ ରମଣୀୟ ପଦାବଳୀ ଧନକୃଷ୍ଣ ଓ ଉପେନ୍ଦ୍ରଙ୍କ ବର୍ଣ୍ଣନାର ସୁଷମାକୁ ମନରେ ଜାଗ୍ରତ କରାଉଛି ।

(୭) ବିମଳା-ଲଳିତାର ପ୍ରଥମ ଭେଟ ବେଳର ବର୍ଣ୍ଣନା ମଧ୍ୟ ଅତି ସୁନ୍ଦର ହୋଇଛି—

ତକତେ ନେତ୍ର ଫେଡ଼ି ବାଳା ଅଗ୍ରତେ ଶମ୍ପାଗଉରୀ
ଉରୋଶବ୍ଦାର୍ପିତ ପରାଗ୍ୟେ ଉଜ୍ଜ୍ୱଳ-ଧରିତ୍ରୀଚମ୍ପା ଚଉଁରୀ ।
ଏକାଠି ହେବାରୁ ଗୃଶନେତ୍ର ଜେମା ହରପାରେ ପୋତିଲା ମଥା
ମଉଳଇ ମୃତପ୍ରାୟେ ପରସ୍ପର୍ଶେ ଯଥା ଲାଜକୁଳଲତା ।
ଅଯତନ-ମୁଖ-ରାଗେ ରଞ୍ଜି ଦେଲା ସେ ହରପା କଣ୍ଠ-କପୋଳ
ଲଳିତାସୁନ୍ଦରୀ ବିଭ୍ରମାଦ୍ଧ ତହିଁ ରଙ୍ଗେ ରଚିଲେ କ ଦୋଳ ।
ହରପାର ପାଟଳ ଏକଯୋଗ୍ୟ ପୂଠ ପିନା ରୂପସୁନାପ୍ରତି
ଆଭାସେ ଲଳିତା ସେ ପାଟଳେ କବା ରାଗଲତା ପୁଷ୍ପବତୀ ।
ଦରସ୍ଫୁଟ ଭାଟେ ଦେଲା ପରିଚୟ ପୁଛିବାରୁ ବୃନ୍ଦମୁହାଁ
ନଆଳୀ ବିକାଶୀ ଗୈରିବସନ୍ତକୁ ମନେ ଯଥା ଫୁଲ ଛୁଇଁ ।
ନ କହିଲା ସେ ଯା ନୀରବ ଭାଷାରେ କହିଦେଲା ସେ ସକଳ
ପ୍ରେମ ଆର୍ଦ୍ରତାର ଦରମୁକୁଳିତ ଲାଜଲୋଳ ନେତ୍ରୋତ୍ପଳ ।
ଜେମା ମୁଖଭଙ୍ଗୀ ଗୃହାଣୀ ଭାଷାରୁ ଅନୁରାଗ ଲକ୍ଷି ତାର
ଦରହାସ ଛଟା ବିକାସିଲା ଗୃହୁ ଆସ୍ୟ-ବିଟମ୍ବ ବିମଳାର ।

**ପ୍ରକୃତି ବର୍ଣ୍ଣନା**—ଏହି କାବ୍ୟରେ ରାଧାନାଥ ପ୍ରକୃତିର ବହୁ ଦୃଶ୍ୟକୁ ସୁନ୍ଦର ମନୋମୁଗ୍‌ଧକର ବାସ୍ତବ ରୂପ ଦାନକରିଛନ୍ତି ।

(୧) ବନର ଶୋଭା :—

ଏବେ ଯା ନଗରୀ ଥିଲା ଆଗେ ତାହା ମହାବନକାଞ୍ଚନ ସ୍ଥଳ
ବିହଙ୍ଗ ସଙ୍ଗୀତେ ପୂର୍ଣ୍ଣ ନାନା ଜାତି ତରୁଲତାରେ ଗହଳ ।
କଷ୍ଟଫେଡ଼୍ କଣ୍ଠ-ତାନପୂରା ତହିଁ ବାଜୁଥାଇ ଦିନଯାକ
ଦିନ ଅନ୍ତେ ପୁଣି ଧରୁଥିଲେ ତାନ ଚକ୍ରବାକୀ ଚକ୍ରବାକ ।
ଉଦଉଦଳିଆ ମାନେ ମାନେ ନଭେ ପ୍ରକାଶି ବିଚିତ୍ର ତନୁ
ରଚୁଥିଲେ ରଙ୍ଗେ ନବଜୀମୂତର ମୃଦୁ ଉର୍ମିଖଣ୍ଡନ-ଧନୁ ।
ମେଘାଗମେ ଯହିଁ ପୁଷ୍ପିତ କଦମ୍ବେ ଶିଖଣ୍ଡି ତାଣ୍ଡବରଙ୍ଗ
ଦେଖି ଆସୁଥିଲା ଭ୍ରାନ୍ତେ ଇନ୍ଦ୍ରଜାଲ ଭିଆଇଛୁ କି ଅନଙ୍ଗ ।
ସାରୀ, ଶୁଆ, ଶ୍ୟାମା, ଭୃଙ୍ଗ, ଚଷାପୁଅ, ଦୟୂହ୍ନ ପୁଣି ମୁନିଆ
ନେତ୍ରୋତ୍ସବ, କର୍ଣ୍ଣୋତ୍ସବ ବିହୁଥିଲେ ସେ ବନେ ହୋଇ କୁଣିଆ ।
ମାଳବନ-ବ୍ୟୋମ-ନକଷେ ହଳଦୀ-ବସନ୍ତ ସ୍ୱକାନ୍ତ-ସୁନା!
ମୁହୁର୍ମୁହୁ କଷ କରୁଥାଇ ବାରବାଣୀ ସୁନାଦର୍ପ ଚୂନା ଇତ୍ୟାଦି

ବନ ବର୍ଣ୍ଣନାରେ କବି ଉପମାର ସମ୍ୟକ ବ୍ୟବହାର କରିଥିଲେ ମଧ୍ୟ ତାକୁ ବିଶେଷଭାବରେ ରସାପ୍ଳୁତ କରିପାରି ନାହାନ୍ତି ।

(୨) ବନସରୋବର—

ମୃଗୀ ପଛେ ପଛେ ଏକାକିନୀ ଧାଇଁ ଦେଖିଲା ରମ୍ୟସରସୀ
ନିବିଡ଼ କାନନେ ଚୌଦିଗେ ବେଷ୍ଟିତ ମେଘମାଳେ ଯେହ୍ନେ ଶଶୀ ।
ସ୍ୱଚ୍ଛ ସୁଗଭୀର ଦୂରୁ ଆଭାସଇ ନଭଭ୍ରାନ୍ତ୍ୟେ ମାଳମାରେ
ଝଙ୍କାରିତ ଊର୍ଦ୍ଧ୍ୱ ଆକାଶେ ଉଡ୍‌ଡୀନ ମରାଳକୁଳ ଝଙ୍କାରେ ।

ତୀର ଦେଖି ପ୍ରତେ ଆସେ କି ପୁଞ୍ଜିତ ତ୍ରିଭୁବନ ପୁଣ୍ୟରାଶି
ସ୍ୱର୍ବିଭବ ଅବା ନିଭୃତେ ଥୋଇଛି ଶରତର ପୂର୍ଣ୍ଣମାସୀ ?
ଶରଦ୍ରଭ ଦ୍ରବ ରହିଛି ଗୁପତେ ହୁଅଇ·କମ୍ପା ପ୍ରତୀତ
ପୂର୍ଣ୍ଣ ଥାଇ ସୁଦ୍ଧା ଶୂନ୍ୟ ପ୍ରାୟେ ଦିଶେ ମହତର ଯଥାରୀତ ।
ତୀର ବସନର ଧଡ଼ି ପ୍ରାୟେ ଫୁଟି ରହିଛି ରମ୍ୟକମଳ
ତୀର ଭୂମି ସଦା ହରିତ ଗୃହିଁଲେ ଲୋଚନ ହୁଏ ଶୀତଳ ।
ତୀରପ୍ରାନ୍ତେ ସେହି କମଳମୀ ଷଣ୍ଡେ ଉଠିଛି ଅନ୍ତରାନ୍ତର
ମାଳ କରି ଶ୍ୱେତ କହ୍ଲାର ଲାଞ୍ଛିତ ହରିତ ପଞ୍ଚପତ୍ରର । ଇତ୍ୟାଦି
କୋମଳ ପଦାବଳୀ,ଉପମା, ଉତ୍‌ପ୍ରେକ୍ଷା, ଗମ୍ଭୀର କଳ୍ପନାର

ସମ୍ୟକ୍ ବ୍ୟବହାର କରି କବି ଚଉଟିକୁ ଅତି କବିତ୍ୱପୂର୍ଣ୍ଣ ଓ ରମଣୀୟ କରିପାରିଛନ୍ତି ।

ଉତ୍କଳ ଇତିହାସରେ ଯଯାତି କେଶରୀବଂଶର ପ୍ରତିଷ୍ଠାତା ଥିବା ଜଣାଯାଏ ନାହିଁ ; ଯଯାତିଙ୍କ ପିତା ଜନ୍ମେଜୟ ଏହାର ପ୍ରତିଷ୍ଠାତା । ଜନ୍ମେଜୟ ନିଜକୁ ସୋମବଂଶକୁଳତିଳକ, ପରମ ମହେଶ୍ୱର, ପରମ ଭଟ୍ଟାରକ, ତ୍ରିକଳିଙ୍ଗାଧିପତି ନାମରେ ତାମ୍ର-ଶାସନମାନଙ୍କରେ ପରିଚିତ କରାଇଛନ୍ତି । ଯଯାତି ପିତାଙ୍କ ସିଂହାସନ ଲାଭ କରିଥିଲେ ଏବଂ ନିଜକୁ "ମହାଶିବଗୁପ୍ତ" "ଶିବରକ୍ଷିତ" ବୋଲି ମଧ୍ୟ ତାମ୍ର ଶାସନମାନଙ୍କରେ ପରିଚିତ କରାଇଛନ୍ତି । ଚୌଦ୍ୱାରର ଦୁର୍ଗ (କପାଳେଶଦୁର୍ଗ) ଜନ୍ମେଜୟ ପ୍ରତିଷ୍ଠା କରିଥିବା ଜଣାଯାଏ । ଯଯାତି ଯାଜପୁର ନଗର ଓ ପୁରୀରେ ଜଗନ୍ନାଥ ମନ୍ଦିର, (ବର୍ତ୍ତମାନର ମନ୍ଦିର ନୁହେଁ ) ନିର୍ମାଣ କରିଥିବା ଜଣାପାଏ । ଯଯାତିଙ୍କ ପୁଅ ଲଲାଟେନ୍ଦୁକେଶରୀ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ନିର୍ମାଣ କରିଥିଲେ । ରାଧାନାଥ ଯଯାତିଙ୍କୁ ଉତ୍କଳରେ କେଶରୀବଂଶ

ରାଜତ୍ୱର ପ୍ରତିଷ୍ଠାତା କରିଛନ୍ତି; ରାଧାନାଥଙ୍କ ସମୟରେ ଯେଉଁ ଐତିହାସିକ କିମ୍ବଦନ୍ତୀ ଶୁଣାଯାଉଥିଲା, ତାହା ଏହାକୁ ସମର୍ଥନ କରୁଥିବାରୁ ସେ ଐତିହାସିକତା ସମ୍ବନ୍ଧରେ ଅଧିକ ଅନୁଶୀଳନ କରିନାହାନ୍ତି । କବି କାବ୍ୟ ଭିତରେ କେଶରୀବଂଶର ପ୍ରତିଷ୍ଠା, ଯାଜପୁର ନଗର ନିର୍ମାଣ, ଚୈଦ୍ୱାରର କପାଳେଶ ଦୁର୍ଗ ପ୍ରଭୃତି ଐତିହାସିକ ପ୍ରସଙ୍ଗର ସୂଚନା ଦେଇଛନ୍ତି ; ଇତିହାସ ଦୃଷ୍ଟିରୁ ତାଙ୍କର କେଶରୀବଂଶ ରାଜତ୍ୱ ପ୍ରତିଷ୍ଠା ସମ୍ପର୍କୀୟ ତଥ୍ୟ ଠିକ୍ ନଥିବା ସ୍ପଷ୍ଟ ।

# ପଞ୍ଚବିଂଶ ପରିଚ୍ଛେଦ

## ମହାଯାତ୍ରା

**ମହାକାବ୍ୟ**—ରାଧାନାଥଙ୍କ 'ମହାଯାତ୍ରା' କାବ୍ୟଟି ଅସମ୍ପୂର୍ଣ୍ଣ । ୭ଟି ସର୍ଗ ରଚନା କରିବା ପରେ କବି ଏହାକୁ ଅସମ୍ପୂର୍ଣ୍ଣ ରଖିଲେ ।

'ମହାଯାତ୍ରା' ଏକ ମହାକାବ୍ୟର ରୂପଧାରଣ କରି ପ୍ରଥମେ ଦେଖା ଦେଇଛି ; କିନ୍ତୁ ବପୁ ସଂଗ୍ରହ କରିବା ପରେ ପୂର୍ଣ୍ଣତା ଲାଭ କରିବା ପୂର୍ବରୁ ସ୍ଥବିର ହୋଇ ପଡ଼ିଛି, ସମ୍ପୂର୍ଣ୍ଣ ଅବୟବର ଅଭାବରୁ ଏହାର ପୂର୍ଣ୍ଣଶୋଭା ବିକଶିତ ହୋଇପାରୁନାହିଁ ।

ଅସମ୍ପୂର୍ଣ୍ଣ କାବ୍ୟର ଆଲୋଚନା ସହଜ ଓ ନିରାପଦ ନୁହେଁ ; ଏଥିରେ ଅତିରିକ୍ତ ପ୍ରଶଂସା କିମ୍ବା ନିନ୍ଦାର ଆଶଙ୍କା ଥାଏ । ଆଧୁନିକ ଉତ୍କଳର ଶ୍ରେଷ୍ଠ କବି ଏହା ରଚନା କରିଥିବାରୁ ଏବଂ ଏହାକୁ ଅସମ୍ପୂର୍ଣ୍ଣ ଅବସ୍ଥାରେ ମଧ୍ୟ ମୁଦ୍ରିତକରି ପ୍ରକାଶ କରିଥିବାରୁ ଏହାର ସମାଲୋଚନା ଆବଶ୍ୟକ ହୋଇ ପଡ଼ୁଛି ।

ବିଷୟବସ୍ତୁର ସୂଚନା ଗ୍ରନ୍ଥଟିରୁ ଅତି ଗୌରବପୂର୍ଣ୍ଣ, ଗମ୍ଭୀର, ଉପାଦେୟ ଓ ମହାକାବ୍ୟୋଚିତ ହୋଇଥିବା ସ୍ପଷ୍ଟ ହେଉଛି । ପାଣ୍ଡବ ପଞ୍ଚଭ୍ରାତା ମହାବୀର; ଅଶେଷ ଗୁଣାଳଂକୃତ ରାଜପୁରୁଷ; ସ୍ୱୟଂ ବିଷ୍ଣୁ ରୂପୀ ଶ୍ରୀକୃଷ୍ଣଙ୍କ ଅନ୍ତରଙ୍ଗ ସଖା । ଏମାନଙ୍କର ମହାପ୍ରସ୍ଥାନ ପ୍ରସଙ୍ଗ ଜଗତଗୌରବ ବ୍ୟାସଦେବଙ୍କ ମହାଭାରତରୁ ଗ୍ରହଣ କରି ରାଧାନାଥ ସ୍ୱ କବିତ୍ୱଶକ୍ତି ବଳରେ ମହାକାବ୍ୟୋଚିତ ଶୈଳୀରେ ଉପଯୁକ୍ତ ରୂପଦାନ କରିଛନ୍ତି । ଏପରି ମହତ୍ତ୍ୱଗୁଣବିଶିଷ୍ଟ ବିଷୟବସ୍ତୁକୁ ଆଶ୍ରୟ କରି 'ମହାଯାତ୍ରା' କାବ୍ୟଟି ଆରମ୍ଭ ହୋଇ-

ଥିବାରୁ ଏହା ସ୍ୱତଃ ଜନସମାଜର ଦୃଷ୍ଟି ଆକର୍ଷଣ କରି ସେମାନଙ୍କ ଉପରେ ପ୍ରଭାବ —ଆଲୋକପାତ କରିବା ସ୍ୱାଭାବିକ ।

ବ୍ୟାସଦେବଙ୍କ ମହାଭାରତର ଶେଷାଂଶରେ ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ପ୍ରସଙ୍ଗ ଅନତିଦୀର୍ଘ ହୋଇଥିଲେ ମଧ୍ୟ ବିଷୟର ଗୌରବ ଯୋଗୁଁ ଏହା ଗମ୍ଭୀର ଓ ବିଚ୍ଛ୍ୟୋତ୍ପାଦନକାରୀ ହୋଇଛି । ଏହି ବିଷୟଟି ରାଧାନାଥ ବ୍ୟାସଦେବଙ୍କଠାରୁ ଗ୍ରହଣ କରିଥିଲେ ମଧ୍ୟ ସ୍ୱ କଳ୍ପନା ବଳରେ ନୂତନ ରୂପ ଦାନ କରିଛନ୍ତି ; ଯଥେଷ୍ଟ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରି ଯଶସ୍ୱୀ ହୋଇଛନ୍ତି । କାବ୍ୟଟି ଯେ ମୌଳିକ ରଚନା ରୂପ ଧାରଣ କରିଛି, ଏଥିରେ ସନ୍ଦେହ ନାହିଁ ।

ପ୍ରାଚୀନ ଆଳଙ୍କାରିକ ମତାନୁସାରେ ବିଚାର କଲେ ଅସମ୍ପୂର୍ଣ୍ଣ ଅବସ୍ଥାରେ ମଧ୍ୟ 'ମହାଯାତ୍ରା' 'ମହାକାବ୍ୟ' ପଦ-ବାଚ୍ୟ । ମହାକାବ୍ୟର ଯେଉଁ ଲକ୍ଷଣ ଅଳଙ୍କାରଶାସ୍ତ୍ରରେ ନିର୍ଦ୍ଦେଶିତ ହୋଇଛି ସେଥିରୁ ଅଧିକାଂଶ ଏହି କାବ୍ୟାଂଶରେ ଦୃଷ୍ଟିଗୋଚର ହୁଏ ।

ଆଳଙ୍କାରିକ ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ ଏହିଗୁଡ଼ିକ ମହାକାବ୍ୟର ଲକ୍ଷଣ :—ଯଥା—

(୧) କାବ୍ୟରେ ଅନେକଗୁଡ଼ିଏ ସର୍ଗ ରହିବ ।

(୨) ସର୍ଗଗୁଡ଼ିକ ଅନତିଦୀର୍ଘ ହେବ, ଏବଂ ବିଭିନ୍ନ ବୃତ୍ତରେ ରଚିତ ହେବ ।

(୩) ସର୍ଗର ଶେଷରେ ବୃତ୍ତଭେଦ ରହିବ ।

(୪) ବିଭିନ୍ନ ସର୍ଗମାନଙ୍କରେ ବିଭିନ୍ନ ବୃତ୍ତି ବ୍ୟବହୃତ ହେବା ଉଚିତ ।

(୫) ମହାକାବ୍ୟର କଥାବସ୍ତୁ ରାମାୟଣ, ମହାଭାରତ, ପୁରାଣାଦିରେ ବର୍ଣ୍ଣିତ ବିଷୟ ବା ଘଟନା କିମ୍ବା ଐତିହାସିକ ଉପାଖ୍ୟାନକୁ ଆଶ୍ରୟ କରି ରଚିତ ହେବ ।

(୬) ପ୍ରାରମ୍ଭରେ କାର୍ଯ୍ୟସମାପ୍ତି ଓ ବିଘ୍ନବିନାଶନ ପାଇଁ ଦେବତାମାନଙ୍କ ପ୍ରତି ନମସ୍କ୍ରିୟା ବା ଆଶୀର୍ବାଦ, ବସ୍ତୁନିର୍ଦ୍ଦେଶ ରହିବ ।

(୭) କାବ୍ୟର ପ୍ରଧାନ ନାୟକ ଧୀରୋଦାତ୍ତ ହେବ ।

(୮) ପ୍ରାକୃତିକ ଦୃଶ୍ୟ, ଯଥା : ଋତୁ, ଗିରି, ଅରଣ୍ୟ, ଉଷା, ପ୍ରଦୋଷ ପ୍ରଭୃତିର ଓ ନଗରର ବର୍ଣ୍ଣନା ରହିବ ।

(୯) ବିପ୍ରଲମ୍ଭ, ବିବାହ, କୁମାରଜନ୍ମ ପ୍ରଭୃତି ସାମାଜିକ ବୃତ୍ତି ଚିତ୍ରଣ ରହିବ ।

(୧୦) ମନ୍ତ୍ରଣା, ଦୂତପ୍ରେରଣ, ସଂଗ୍ରାମ ପ୍ରଭୃତିର ବର୍ଣ୍ଣନା ।

(୧୧) ବର୍ଣ୍ଣନା ବୈଚିତ୍ର୍ୟମୟ, ଶିକ୍ଷାପ୍ରଦ ଓ ମନୋମୁଗ୍‌ଧକର ହେବ ।

ରାଧାନାଥଙ୍କ ମହାଯାତ୍ରାରେ ଲକ୍ଷଣଗୁଡ଼ିକ ପୂର୍ଣ୍ଣମାତ୍ରାରେ ଓ ପୂର୍ଣ୍ଣ ସଂଖ୍ୟାରେ ପ୍ରକାଶିତ ହେବାପାଇଁ ଅବକାଶ ନଥିଲା; ଅସମ୍ପୂର୍ଣ୍ଣ କଳେବରହିଁ ଏହାର କାରଣ ।

ମହାଯାତ୍ରାର ବିଷୟବସ୍ତୁ, ଯୁଧିଷ୍ଠିରଙ୍କ ସ୍ୱର୍ଗପ୍ରୟାଣ, ମହାଭାରତ ପୁରାଣରୁ ଗୃହୀତ । ଆର୍ଯ୍ୟଯବନ ଯୁଦ୍ଧ, ବୌଦ୍ଧଧର୍ମର ଉତ୍‌ଥାନପତନ ପ୍ରଭୃତି ଚାରି ଐତିହାସିକ ଉପାଖ୍ୟାନ ଅବଲମ୍ବନରେ ରଚିତ ହୋଇ ଏବଂ କାବ୍ୟର ଉପାଙ୍ଗ ସ୍ୱରୂପ ରହି କଳେବର ବୃଦ୍ଧି କରିଛି ।

ସତ୍ୟବ୍ରତ, ଧର୍ମରାଜ, ବିନୟାଚାର, ପରମ ପଣ୍ଡିତ, ବୀର, ରାଜଚକ୍ରବର୍ତ୍ତୀ, ଆଦର୍ଶ ରାଜା ଓ ଆଦର୍ଶମାନବ ଯୁଧିଷ୍ଠିର ଏହାର ପ୍ରଧାନ ନାୟକ । ଧୀରୋଦାତ୍ତ ନାୟକର ସବୁ ଲକ୍ଷଣ ଯୁଧିଷ୍ଠିରଙ୍କଠାରେ ଥିଲା ।

କାବ୍ୟରେ ନଦ, ନଦୀ, ସାଗର, ପର୍ବତ, ଅରଣ୍ୟ ପ୍ରଭୃତି ପ୍ରାକୃତିକ ଦୃଶ୍ୟର ମନୋମୁଗ୍‌ଧକର ବର୍ଣ୍ଣନା ରହିଛି ।

ସମାଜର ଦୋଷଗୁଣାଦି, ସୈନ୍ୟ ସମାଗମ, ଦୂତପ୍ରେରଣ, ଯୁଦ୍ଧ, ମନ୍ତ୍ରଣା, ଧର୍ମର ଉତ୍ଥାନପତନ ପ୍ରଭୃତି ସାମାଜିକ ଶିକ୍ଷଣୀୟ ବିଷୟ ମାନଙ୍କର ସୁନ୍ଦର ଓ ବୈଚିତ୍ର୍ୟମୟ ବର୍ଣ୍ଣନା ଏଥିରେ ଅଛି ।

କାବ୍ୟଟି ଅସମ୍ପୂର୍ଣ୍ଣ ଥିବାରୁ ବିପ୍ରଲମ୍ଭ, ବିବାହାଦି ଅଙ୍ଗର ବିସ୍ତୃତ ବର୍ଣ୍ଣନା ଏଥିରେ ନାହିଁ ।

ସର୍ଗ, ସର୍ଗସଂଖ୍ୟା, ବୃତ୍ତ ଦିଗରୁ ମହାଯାତ୍ରା ମଧ୍ୟ ବହୁଳାଂଶରେ ଏକ ମହାକାବ୍ୟ । ଦଣ୍ଡାଚାର୍ଯ୍ୟଙ୍କ ମତାନୁସାରେ ସର୍ଗସଂଖ୍ୟା ଅଷ୍ଟରୁ ନ୍ୟୂନ ବା ତ୍ରିଂଶତରୁ ଅଧିକ ହେବା ଉଚିତ ନୁହେଁ । ଅସମ୍ପୂର୍ଣ୍ଣ ମହାଯାତ୍ରାରେ ସାତଟି ସର୍ଗ ଦେଖାଯାଉଛି, ତେବେ ବିଷୟ ପ୍ରବାହର ଆରମ୍ଭ ଓ ଗତି ଦୃଷ୍ଟିରୁ ଦେଖିଲେ ଏହା ବହୁ ସର୍ଗରେ ରଚିତ ହୋଇଥାଆନ୍ତା ବୋଲି ଧାରଣା ହେଉଛି । ସର୍ଗଗୁଡ଼ିକ ଅନତିଦୀର୍ଘ ହୋଇଛି । ବୃତ୍ତ ସମ୍ବନ୍ଧୀୟ ନିୟମ 'ଭାଷା' କାବ୍ୟରେ ପ୍ରଯୋଜ୍ୟ ହେବା ସମ୍ଭବ ନଥିବାରୁ ଏହାର ବ୍ୟତିକ୍ରମ ଦୋଷ ନୁହେଁ । ମହାଯାତ୍ରାରେ ରାଧାନାଥ ଅମିତ୍ରାକ୍ଷର ଛନ୍ଦର ବ୍ୟବହାର କରିଛନ୍ତି; ପ୍ରତ୍ୟେକ ପଂକ୍ତିରେ ଅନୈକ୍ୟ ଦେଖାଯାଉଛି ; ଏହାକୁ ବୃତ୍ତର ବିଭିନ୍ନତା ରୂପେ ମଧ୍ୟ ଗ୍ରହଣ କରାଯାଇପାରେ । ପୁଣି, ସଂସ୍କୃତରେ ବୃତ୍ତବିଭିନ୍ନତା ବିଧି ଶ୍ରୁତିକଟୁତ୍ୱ ନିରାକରଣ ନିମିତ୍ତ ପ୍ରଚଳିତ ; 'ଭାଷା' କବିତାରେ ରାଧାନାଥ ବହୁ ଅଂଶରେ ଶ୍ରୁତିକଟୁତ୍ୱ ଦୂର କରି ପାରିଛନ୍ତି ।

ନମସ୍କ୍ରିୟା, ବସ୍ତୁନିର୍ଦ୍ଦେଶରେ ରାଧାନାଥ ପ୍ରାଚୀନ ମତକୁ ଅନୁସରଣ କରିଛନ୍ତି ।

ଜଣେ ସମାଲୋଚକ କହିଛନ୍ତି, "ଅତୃଣ ପୂର୍ଣ୍ଣାଙ୍ଗ ନ ହୋଇ ସୁଦ୍ଧା ଯେଉଁପରି ରବିରଥର ପୁରୋଭାଗରେ ଆସ୍ଥାନ ଲାଭ କରିଥାଆନ୍ତି ସେହିପରି ଖଣ୍ଡକାବ୍ୟ ହୋଇ ସୁଦ୍ଧା "ମହାଯାତ୍ରା" ଉତ୍କଳ

କାବ୍ୟଶ୍ରେଣୀର ଶୀର୍ଷସ୍ଥାନ ଅଧିକାର କରିଅଛି ।” (ଶ୍ରୀ ଜଗଦାନନ୍ଦ ମହାନ୍ତି । ରା. ଜୀ. ପୃ ୭୨୫)

ସୁସାହିତ୍ୟିକ, କବି ସ୍ୱର୍ଗତ ମଧୁସୂଦନ ରାଓଙ୍କ ମତରେ “ମହାଯାତ୍ରା ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ ।” ୟୁରୋପୀୟ ଅଳଙ୍କାରଶାସ୍ତ୍ର ମତରେ ମହାକାବ୍ୟ ବା ‘ଏପିକ୍’ର ଯେଉଁ ସଂଜ୍ଞା ନିରୂପିତ ହୋଇଛି ତଦନୁସାରେ ମଧ୍ୟ ମହାଯାତ୍ରା ଏକ ମହାକାବ୍ୟ ଥିବା ରାଓ ପ୍ରତିପାଦନ କରିଛନ୍ତି ।

‘ମହାଯାତ୍ରା’ ଆଧୁନିକ ଉତ୍କଳ ସାହିତ୍ୟର ପ୍ରଥମ ମହାକାବ୍ୟ । ଇଉରୋପୀୟମାନେ ମହାକାବ୍ୟକୁ ‘ଏପିକ୍’ ନାମରେ ଅଭିହିତ କରିଛନ୍ତି । ଇଉରୋପୀୟ ଏପିକ୍ ଏବଂ ସଂସ୍କୃତ ମହାକାବ୍ୟ ଉଭୟ ମଧ୍ୟରେ ପ୍ରଣାଳୀଗତ କିଞ୍ଚିତ ବୈଷମ୍ୟ ଥିଲେହେଁ ସେମାନଙ୍କର ଉଦ୍ଦେଶ୍ୟ ଏକ ଅଟେ । କୌଣସି ଦେବଭାବାପନ୍ନ ଉଦାରଚରିତ୍ର ମହାପୁରୁଷଙ୍କ ଏକ ମହତ୍ ଓ ମନୋହର କାର୍ଯ୍ୟ ବା ଅନୁଷ୍ଠାନ ମହାକାବ୍ୟର ପ୍ରାଣ ଅଟେ । ଅନୁଷ୍ଠାନର ଏକତ୍ୱ, ଅନୁଷ୍ଠାନର ମହତ୍ତ୍ୱ, ଅନୁଷ୍ଠାନର ଉପାଦେୟତ୍ୱ ବା ବୈଚିତ୍ର୍ୟମୟୀ ମନୋହାରିତା ଦେଖାଇ ମହାକାବ୍ୟର କବି ଆମ୍ଭମାନଙ୍କ କଳ୍ପନାର ପରିସର ବର୍ଦ୍ଧିତ କରିବା ପାଇଁ ଆମ୍ଭମାନଙ୍କ ନିକଟରେ ଧର୍ମାନୁପ୍ରାଣିତ ଆଦର୍ଶଚରିତ୍ର, ଧୀରର ଉପାଦେୟ ଆଲେଖ୍ୟ ଉପସ୍ଥାପିତ କରି ଆମ୍ଭମାନଙ୍କ ହୃଦୟରେ ବିସ୍ମୟ, ଭକ୍ତି, ଉଦାର ସହାନୁଭୂତି ପ୍ରଭୃତି ମହାଭାବମାନଙ୍କୁ ଜାଗରିତ କରନ୍ତି ଏବଂ ଆମ୍ଭମାନଙ୍କର କ୍ଷୁଦ୍ର ସଂକୀର୍ଣ୍ଣ ନୀଚକାମନାମାନଙ୍କୁ ଅପସାରିତ କରି ତତ୍ପରିବର୍ତ୍ତେ ଉଦାର ପୁଣ୍ୟସଂକଳ୍ପ ପ୍ରତିଷ୍ଠିତ କରିବା ପାଇଁ ଏକାନ୍ତ ଚେଷ୍ଟା କରନ୍ତି ।

“ପ୍ରଥମତଃ ଅନୁଷ୍ଠାନରେ ଏକତ୍ୱ ବା ଅଖଣ୍ଡତ୍ୱର ଅର୍ଥ ଏହି ଯେ, ମହାକାବ୍ୟ-ବର୍ଣ୍ଣିତ ଘଟନାଗୁଡ଼ିକ ଅନ୍ୟୋନ୍ୟାଶ୍ରିତ ହୋଇ

ଗୋଟିଏ ମାତ୍ର ଉଦ୍ଦେଶ୍ୟ ସାଧନ କରିବ । ମହାଯାତ୍ରା କାବ୍ୟର ପ୍ରକାଶିତ ଅଂଶରେ କାର୍ଯ୍ୟଗତ ଏକତ୍ୱର ବ୍ୟାଘାତକାରୀ କୌଣସି ବର୍ଣ୍ଣନା ସନ୍ନିବେଶିତ ହୋଇ ନାହିଁ ଏବଂ ମୁଁ ଆଶା କରେ, ଅବଶିଷ୍ଟ ଅଂଶରେ ମଧ୍ୟ ଦୋଷ ଲକ୍ଷିତ ହେବ ନାହିଁ । ଦ୍ୱିତୀୟତଃ, ଅନୁଷ୍ଠାନର ମହତ୍ତ୍ୱ ବୋଇଲେ ବୁଝିବାକୁ ହେବ ଯେ, କାବ୍ୟବର୍ଣ୍ଣିତ କାର୍ଯ୍ୟଟି ସାମାନ୍ୟ ବା କ୍ଷୁଦ୍ର ନହୋଇ ମହତ୍ ବା ଗୌରବଯୁକ୍ତ ଏବଂ ଲୋକପ୍ରସିଦ୍ଧ ହେବ । ମୁଁ ଏଥିପୂର୍ବେ କହିଅଛି ଯେ, ପାଣ୍ଡବମାନଙ୍କର ମହାପ୍ରସ୍ଥାନ ପରି ଅନୁଷ୍ଠାନର ମହିମା ଓ ଗୌରବ ବିଷୟରେ କାହାରି ସନ୍ଦେହ ହୋଇ ନପାରେ । ପୁଣି ପାଣ୍ଡବକୁଳଶିରୋମଣି ଯୁଧିଷ୍ଠିରଙ୍କ ଅପେକ୍ଷା ମହାକାବ୍ୟର ଉପଯୁକ୍ତ ନାୟକ ଆଉ କେଉଁଠାରେ ମିଳିବେ ? ଅତଏବ ଏହା ନିଃସଂଶୟ ଯେ, ମହାଯାତ୍ରାର ବର୍ଣ୍ଣିତ ଅନୁଷ୍ଠାନ ଏବଂ ସେହି ଅନୁଷ୍ଠାନର ମୁଖ୍ୟ-କର୍ତ୍ତା ଯୁଧିଷ୍ଠିର ପରସ୍ପରଯୋଗ୍ୟ ହୋଇ କାବ୍ୟର ଉତ୍କର୍ଷ ସୂଚନା କରୁଅଛନ୍ତି । କବି ପ୍ରକାଶିତ ଅଂଶରେ କାର୍ଯ୍ୟ ଓ ନାୟକର ଗୌରବ ସଂରକ୍ଷଣ ବିଷୟରେ ଯତ୍ନପରୋନାସ୍ତି ଚେଷ୍ଟା କରିଛନ୍ତି; ଏବଂ ଏହା ମଧ୍ୟ ଆଶା କରାଯାଏ ଯେ, ସେ ଭବିଷ୍ୟତରେ ସେହି ଗୌରବ ଅକ୍ଷୁଣ୍ଣଭାବରେ ରକ୍ଷା କରି ପାରିବେ । ତଥାପି ମୋହର ଏଠାରେ କହି ରଖିବା ଉଚିତ ଯେ, ପ୍ରକାଶିତ ଅଂଶ ମଧ୍ୟରେ କବି ଚରିତ୍ରଚିତ୍ର ବିଷୟରେ ସାଧାରଣାତିରିକ୍ତ କ୍ଷମତା ଦେଖାଇ ନାହାନ୍ତି ବା ଦେଖାଇବାର ଅବସର ପାଇ ନାହାନ୍ତି ।

"ତୃତୀୟତଃ, ଅନୁଷ୍ଠାନର ମନୋହାରିତା କହିଲେ ବୁଝିବାକୁ ହେବ ଯେ, କବି କାବ୍ୟର ଉପାଖ୍ୟାନକୁ ସରସ, ଉପାଦେୟ ଓ ମନୋହର କରିବା ନିମିତ୍ତ ନାନା ବିଚିତ୍ର, ଅଦ୍ଭୁତ ଏବଂ ସୁନ୍ଦର ବର୍ଣ୍ଣନାମାନ ନୈପୁଣ୍ୟସହକାରେ ସଂଯୋଜିତ କରିବେ । ଏ ସମ୍ବନ୍ଧରେ

ମୋର ବକ୍ତବ୍ୟ ଏହି ଯେ ମହାଯାତ୍ରାର କବି ବର୍ଣ୍ଣନାବିଷୟରେ ସର୍ବତ୍ର ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇ ଅଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତୁଲ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ।" (ମହାଯାତ୍ରାର ମୁଖବନ୍ଧ)

ମହାଯାତ୍ରା କାବ୍ୟଟି ଅସମ୍ପୂର୍ଣ୍ଣ ଥିବାରୁ ସମ୍ୟକ୍ ସମାଲୋଚନା ସମ୍ଭବ ନୁହେଁ । ବହୁ ପାତ୍ରପାତ୍ରୀଙ୍କର ନାମୋଲ୍ଲେଖ କେବଳ ହୋଇଛି । ଅଧିକାଂଶ ଉପାଖ୍ୟାନରେ ମୁଖ୍ୟପାତ୍ର ବା ନାୟକର ସମ୍ପର୍କ ନଥିବାରୁ କବି ଅଗ୍ନିଙ୍କ ମୁଖରେ ଏଗୁଡିକ ବର୍ଣ୍ଣନା କରିଛନ୍ତି ; ପୁଣି, ଏମାନଙ୍କ ଅବସ୍ଥିତିଦ୍ୱାରା କାବ୍ୟର ରସାସ୍ୱାଦନ କେତେକାଂଶରେ ବ୍ୟାହତ ହେଉଛି । ପ୍ରାକୃତିକ ଦୃଶ୍ୟ, ଆଧ୍ୟାତ୍ମିକ-ଭାବର ବିବରଣରେ ବହୁଳାଂଶରେ ମୁଖ୍ୟପାତ୍ରଙ୍କ ସମ୍ପର୍କ ରକ୍ଷା ହୋଇଥିବାରୁ ମହାକାବ୍ୟଟିର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଛି ।

କୁରୁକ୍ଷେତ୍ର ମହାଯୁଦ୍ଧରେ ମହାବୀର ପାଣ୍ଡବମାନେ କୌରବ-ମାନଙ୍କୁ ପରାଜିତ କରି ଅଖଣ୍ଡ ଭାରତ ସାମ୍ରାଜ୍ୟର ଅଧୀଶ୍ୱର ହେଲେ । ବହୁବର୍ଷ ସୁଶାସନ କରିବା ପରେ ମଧ୍ୟ ମହାରାଜ ଯୁଧିଷ୍ଠିରଙ୍କ ମାନସ-ପଟରୁ ସ୍ୱଜନହତ୍ୟାର ଗ୍ଲାନି ଅନ୍ତର୍ହିତ ହୋଇ-ନଥିଲା ; ପାଣ୍ଡବମାନେ ଶୋକ ସାଗରରେ ନିମଗ୍ନ ରହିଥିଲେ । ଶାନ୍ତିପ୍ରୟାସୀ ସ୍ୱଚ୍ଛହୃଦୟ ପାଣ୍ଡବମାନେ ମନରେ ବୈରାଗ୍ୟ ଜାତ ହେବାରୁ ବିଷୟଜଞ୍ଜାଳ ତ୍ୟାଗ କରି ସ୍ୱର୍ଗାରୋହଣ କରିବାକୁ ସଙ୍କଳ୍ପ କଲେ । ଯୁଧିଷ୍ଠିରଙ୍କ ନେତୃତ୍ୱରେ ପଞ୍ଚପାଣ୍ଡବ ଓ ଦ୍ରୌପଦୀ 'ମହାଯାତ୍ରା' ଆରମ୍ଭ କଲେ । ଏହି ପବିତ୍ର ମହାପ୍ରସ୍ଥାନ ବିଷୟ କବିବର 'ମହାଯାତ୍ରାରେ' ଅତି ଚମତ୍କାରଭାବରେ ବର୍ଣ୍ଣନା କରି ଅପୂର୍ବ ମହାକାବ୍ୟଟିଏ ରଚନା କରିଛନ୍ତି । ମହାକାବ୍ୟଟି ଅସମ୍ପୂର୍ଣ୍ଣ ହେଲେ ମଧ୍ୟ ସେହି ଅବସ୍ଥାରେ ସେ ଅପୂର୍ବ ସୌନ୍ଦର୍ଯ୍ୟ ପ୍ରକାଶ କରି

ଜନମନ ହରଣ କରିଛି । 'ମହାଯାତ୍ରା' ରାଧାନାଥଙ୍କ କାବ୍ୟମାନଙ୍କ ଭିତରେ ସର୍ବୋତ୍କୃଷ୍ଟ ।

'ମହାଯାତ୍ରା' ଅମିତ୍ରାକ୍ଷର ଛନ୍ଦରେ ରଚିତ । ସେ ସମୟରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତନ ନୂତନ କହିଲେ ଚଳେ । ବଙ୍ଗ ଦେଶର ପ୍ରସିଦ୍ଧ ମହାକବି ମାଇକେଲ ମଧୁସୂଦନ ଦତ୍ତ 'ମେଘ-ନାଦବଧ' ମହାକାବ୍ୟ ରଚନା କରି ଏକ ବଳିଷ୍ଠ ଆଦର୍ଶ ସ୍ଥାପନ କରିଗଲେ । ବଙ୍ଗରେ ତାଙ୍କ ଅନୁକରଣ କରି ଏହି ଛନ୍ଦରେ ଅନ୍ୟମାନେ କେତେକ କାବ୍ୟକବିତା ରଚନା କରିଛନ୍ତି, କିନ୍ତୁ ଭାବ, ଭାଷା ଓ ଶୈଳୀରେ ମଧୁସୂଦନ ଦତ୍ତଙ୍କ ସମକକ୍ଷ ହୋଇ ପାରି ନାହାନ୍ତି । ରାଧାନାଥଙ୍କ ଓଡ଼ିଆ ଭାଷାରେ ଓ ଅମିତ୍ରାକ୍ଷରରେ ରଚିତ ମହାଯାତ୍ରା ମହାକାବ୍ୟଟି 'ମେଘନାଦବଧ'ର ସମଆସନ ପାଇଛି, ଏଥିରେ ସନ୍ଦେହ ନାହିଁ ।

ଅମିତ୍ରାକ୍ଷର ଛନ୍ଦ ଅନୁପ୍ରାସବର୍ଜିତ ଥିବାରୁ ଏବଂ ରଚନା-ଶୈଳୀ ଓ ଛନ୍ଦର ଲକ୍ଷଣ ସହଜ ନଥିବାରୁ ସାଧାରଣତଃ ସ୍ୱଳ୍ପଶକ୍ତି-ସମ୍ପନ୍ନ କବିମାନଙ୍କ ଲେଖଣୀରୁ ଉତ୍ତମ କୃତି ମିଳେ ନାହିଁ । ରାଧାନାଥ ସହଜ ଲେଖଣୀରେ ସରସ ଓ ସାର୍ଥ ପଦଯୋଜନା ବ୍ୟବହାର କରି ଅପୂର୍ବ କୃତି ରଚନା କରିଛନ୍ତି ଏବଂ ଏହାକୁ ଜନସମାଜର ହୃଦୟଗ୍ରାହୀ କରିପାରିବାରେ ସମର୍ଥ ହୋଇଛନ୍ତି ।

**କଥାବସ୍ତୁ**—କବି "ପଙ୍କଜବାସିନୀ, ଦେବୀ ଭାରତୀ" ସାରଳାଙ୍କୁ ସମ୍ବୋଧନ-ପ୍ରଶ୍ନ ପ୍ରଶ୍ନର ଉତ୍ତର ପ୍ରାର୍ଥନା କଲେ । "ସାରଳେ, ଯେଉଁ କାଳରେ ବୀରବାର୍ତ୍ତାବହ (ଅର୍ଜ୍ଜୁନ) ମୁଖରୁ ପ୍ରଭାସରେ ଶ୍ରୀକୃଷ୍ଣଙ୍କ ଜୀବକ୍ଷୟ ଓ ତାଙ୍କର ସ୍ୱର୍ଗପ୍ରୟାଣ ବାର୍ତ୍ତା ଶ୍ରବଣ କଲେ ସେତେବେଳେ କୁରୁଚୂଡ଼ାମଣି ଯୁଧିଷ୍ଠିର କି କଲେ ତାହା କୃପାକରି କହ ।" କବି

'କୃପା' ଶବ୍ଦ ବ୍ୟବହାର କରିନାହାନ୍ତି ସିନା ଦେବୀଙ୍କୁ ନମସ୍କାର କରି ନାହାନ୍ତି। ଯଦୁବଂଶ ଧ୍ୱଂସ ବାର୍ତ୍ତା ଅର୍ଜ୍ଜୁନଙ୍କଠାରୁ ଶୁଣି ଯୁଧିଷ୍ଠିର ତାଙ୍କୁ କହିଲେ, "ଯେଉଁ ମହାପୁରୁଷ ମହାଭାରତ ମହାସମରସାଗରରେ ଆମ୍ଭମାନଙ୍କୁ କର୍ଣ୍ଣଧାର ରୂପେ ପାରକଲେ ଏବଂ ଯାହାଙ୍କର ନ୍ୟାୟବଳରେ କୋଟି କୋଟି ପ୍ରାଣୀ ଚଳୁଥିଲେ ସେ ଯେତେବେଳେ ମର୍ତ୍ତ୍ୟଧାମ ତେଜି ନିଜ ଧାମକୁ ଚାଲିଗଲେ, ଆମ୍ଭେମାନେ ଆଉ କି ସୁଖରେ ସଂସାରରେ ରହିବା ? ଆମ୍ଭର ସଂସାରର ଲୀଳାଖେଳା ସରିଲା । ସଂସାର ବିଷବୃକ୍ଷରେ ଜରଜର ହୋଇ ସାରସର୍ବସ୍ୱ ପାଶୋରି ଆୟୁଷ ସାରିଲୁ । ଏ ସଂସାରକୁ ସୁଖମୟ ବୋଲି କୁହା-ଯାଉଥିଲେ ମଧ୍ୟ ଏହା ଦୁଃଖମୟ । କୁରୁକ୍ଷେତ୍ର ଯୁଦ୍ଧରେ ସୁଯୋଧନ ହତ ହେଲେ, ଆମ୍ଭେ ଜୀବନ୍ମୃତ ହେଲୁଁ । ପୁତ୍ରମିତ୍ର-ରକ୍ତ-ସ୍ରୋତରେ ଦୁଃଖରେ ଆମେ ସନ୍ତରଣ କଲୁ । ସନ୍ତାପରେ ସିଂହାସନ ଲାଭ ହେଲା ସିନା । ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ । ମରଣ ଖଣ୍ଡଶିରୋମଣି, ତାରଗତି ବନ୍ଦକରିବାକୁ କାହାର ଶକ୍ତି ଅଛି ? ସେ ଆସି ଖୋଜିବା ଆଗରୁ ଏ ଭବର ମାୟା ତେଜି, ଗୃହ, କାଳକୁ ଖୋଜିବା ।" ଅନ୍ୟ ଭ୍ରାତାମାନେ ଏଥିରେ ପରମ ଆଗ୍ରହରେ ସମ୍ମତ ହେବାରୁ ହିମାଦ୍ରି ପ୍ରୟାଣରେ ସମସ୍ତେ ମନ ବଳାଇଲେ । ଏ ସଂକଳ୍ପ ଶୁଣି ଦ୍ରୌପଦୀ ମଧ୍ୟ ଯିବାପାଇଁ ଅନୁରୋଧ କରିବାରୁ ଯୁଧିଷ୍ଠିର ତାଙ୍କୁ ଅନୁମତି ଦେଲେ ।

ପରୀକ୍ଷିତଙ୍କୁ ରାଜସିଂହାସନରେ ବସାଇ ବୈଶ୍ୟା-ଗର୍ଭଜାତ ଶାନ୍ତ ଧୃତରାଷ୍ଟ୍ର-ସୁତ ଯୁଯୁତ୍ସୁଙ୍କୁ ପ୍ରତିନିଧିରୂପେ ନିଯୁକ୍ତ କଲେ । କୁରୁକୁଳର ଏକମାତ୍ର କୁଳାଙ୍କୁର, ଯୁଧିଷ୍ଠିରଙ୍କ ସିଂହାସନର ଉତ୍ତରାଧିକାରୀ, ପରୀକ୍ଷିତଙ୍କ ପ୍ରତି ବିଶେଷ ଦୃଷ୍ଟି ରଖିବା ପାଇଁ

ପରୀକ୍ଷିତଙ୍କ ପିତାମହୀ ସୁଭଦ୍ରାଙ୍କୁ ଯୁଧିଷ୍ଠିର କହିଲେ । ଯଥାବିଧି ଶ୍ରାଦ୍ଧବିଧି ସମାପନ କରି ଯୁଧିଷ୍ଠିର ନାନା ଦାନ କଲେ । ପରୀକ୍ଷିତଙ୍କୁ କୁଳଗୁରୁ କୃପାଚାର୍ଯ୍ୟଙ୍କ ହସ୍ତରେ ସମର୍ପଣ କରି ତାଙ୍କୁ ଧନୁର୍ବେଦ ଶିଖାଇବା ପାଇଁ ଅନୁରୋଧ କଲେ । ପରୀକ୍ଷିତଙ୍କୁ ସବୁବେଳେ ରକ୍ଷା କରିବାପାଇଁ ସେନାପତିଦଳଙ୍କୁ କହିଲେ,"ରଖିବ ଶିଶୁକୁ ନିଜ ଦେହ ଆବରଣେ; ନେତ୍ରେ ନେତ୍ର-ପତ୍ର ଯଥା ପ୍ରମାଦେ· ଶଙ୍କିତେ" । ସମସ୍ତଙ୍କୁ ସମ୍ବୋଧନ କରି, "ସାଙ୍ଗହେଲା ଆଜଠାରୁ ରାଜପଣ ମୋର" ବୋଲି ବିନୟରେ କହି ଯୁଧିଷ୍ଠିର ମେଲାଣି ମାଗିଲେ ।

ଯୁଧିଷ୍ଠିରାଦି ପାଣ୍ଡବମାନଙ୍କର ହିମାଳୟଯାତ୍ରା-ବାର୍ତ୍ତା ରାଜ୍ୟର ଚତୁର୍ଦ୍ଦିଗରେ ରଟିଗଲା । ପ୍ରଜାକୁଳ ଶୋକରେ ମୁହ୍ୟମାନ ହେଲେ । ରାଜ୍ୟରେ ବିଷାଦର ଛାୟା ଖେଳି ଯାଇଥିଲା ଏବଂ ପ୍ରଜାମାନେ ପାଣ୍ଡବଙ୍କୁ ଏ ସଂକଳ୍ପରୁ ନିବୃତ୍ତିବା ପାଇଁ କାତର ସ୍ୱରରେ ପ୍ରାର୍ଥନା କରିଥିଲେ । ସୁଚେତା ଧାର୍ମିକ ଯୁଧିଷ୍ଠିର "ଭବର ଭଙ୍ଗୁର-ଭାବ ଜାଣି ଶାଶ୍ୱତରେ ରତି" ନିବେଶିଥିବାରୁ ସହଜରେ ପ୍ରଜାଙ୍କର ମାୟା ଛୁଟିଲେ । ପଞ୍ଚ ପାଣ୍ଡବ, ଦ୍ରୌପଦୀ ଆରଣ୍ୟକ ବେଶରେ ସଜ୍ଜିତ ହୋଇ ଯାତ୍ରା ଆରମ୍ଭ କଲେ । ଅର୍ଜ୍ଜୁନ ସ୍ନେହାବଶରୁ ଗାଣ୍ଡିବ ଧନୁ ଧାରଣ କରିଥିଲେ । ଏକ ଶ୍ୱାନ ସ୍ନେହ-ବଶରୁ ଏମାନଙ୍କ ସଙ୍ଗେ ପଛରେ ଚାଲିଲା । ଲକ୍ଷ ଲକ୍ଷ ପ୍ରଜା ଓ ବନ୍ଧୁ-ଜ୍ଞାତିବର୍ଗ ବହୁଦୂର ଅଗ୍ରସର ହୋଇ ସେମାନଙ୍କୁ ବିଦାୟ ଦେଲେ । (ପ୍ରଥମ ସର୍ଗ)

ପ୍ରପଞ୍ଚର ମାୟା ତେଜି ପଞ୍ଚଭାଇ ପାଞ୍ଚାଳୀ ସହିତେ ତୀର୍ଥାଟନ ମହାବ୍ରତ ମାନସେ ମନାସି ପୂର୍ବାଞ୍ଚଳକୁ ଗତି କଲେ । "ଏକମାତ୍ର

ଧର୍ମୋନ୍ମୁଖ ହୃଦୟ ତାଙ୍କର, ଆତ୍ମା ପରମାତ୍ମା ପ୍ରତି ନିରନ୍ତେ ଧାବିତ ।” ତୀର୍ଥଯାତ୍ରୀମାନେ କ୍ଲେଶକୁ ସୁଖ ମଣି ବିଶ୍ୱାସରେ ମହାବଳୀ ହୋଇ ଅସଂଖ୍ୟ ନଦ, ନଦୀ, ମହାରଣ୍ୟ, ଗିରି କାନ୍ତାର, କନ୍ଦର ଭ୍ରମଣ କଲେ । ଅଗ୍ରେ ଜ୍ୟେଷ୍ଠ ଯୁଧିଷ୍ଠିର, ତାଙ୍କ ପଛେ ଭୀମ, ଅର୍ଜ୍ଜୁନ, ନକୁଳ, ସହଦେବ, ଦ୍ରୌପଦୀ, ଶ୍ୱାନ କ୍ରମରେ ରହି ଚାଲୁଥିଲେ । ମଥୁରା, ପ୍ରୟାଗ, ଅଯୋଧ୍ୟା, ନୈମିଷାରଣ୍ୟ, ରାଜଗିରି, କଳକତା, କାମାକ୍ଷା, ତାମ୍ରଳିପ୍ତି ଗଲେ । ପାଞ୍ଚାଳ, ଅଙ୍ଗ, ବଙ୍ଗ, ଏହିପରି ବହୁ ସ୍ଥାନ ଭ୍ରମଣ କଲେ । “ନାନା ତୀର୍ଥ ସେବି, ଶେଷେ ଆସିଣ ମିଳିଲେ ଉତ୍କଳର ପ୍ରାଚ୍ୟସୀର, ପ୍ରାଚୀର ଆକୃତି ନୀଳଫେନାକୁଳ ତୁଙ୍ଗତରଙ୍ଗ ଭଙ୍ଗୁର ନୀଳାଚଳ ତଟେ ।” ବାରିନିଧିର ଗମ୍ଭୀର ନିର୍ଘୋଷ, ଉଲ୍ଲୋଳ କଲ୍ଲୋଳ ଲୀଳା କୁତୂହଳରେ ଦେଖି ବୀରବୃନ୍ଦ ବିସ୍ମୟରେ ସ୍ତବ୍ଧ ହୋଇଗଲେ । ସହସା ତରଙ୍ଗ ଭେଦି, ସାଗର ଉଦ୍‌ଗାରି ଜ୍ୱାଳାମାଳା ବିଭୂଷିତ ଦିବ୍ୟବପୁବନ୍ତ ଅଗ୍ନିଦେବ ଏମାନଙ୍କ ଅଗ୍ରତରେ ଉଠିଲେ । ଅର୍ଜ୍ଜୁନଙ୍କୁ ଅଗ୍ନି କହିଲେ, “ମୁଁ ଅଗ୍ନିଦେବ । ପୂର୍ବେ ଏ ଧନୁକୁ ପ୍ରଚେତାଙ୍କ ଆୟୁଧାଗାରରୁ ଆଣି ମୁଁ ତୁମକୁ ଦେଇଥିଲି । ଏବେ ସେ ଧନୁର କାର୍ଯ୍ୟ ସାଙ୍ଗ ହୋଇଛି । ହେ ବୀର, ଆଉ ରହିବ କି ଲାଗି କରେ ଏହା ? ଏହା ଫେରାଇଦେବା ଉଚିତ ; “ଫିଙ୍ଗି ଦିଅ ପାରାବାରେ ତୂଣୀର ସଙ୍ଗେ ଧନୁ ।” “ସେ ଧନୁ, ସେ ତୂଣୀର ବୈରାଗ୍ୟ-ବିରୋଧୀ” ମଧ୍ୟ ଥିଲା । ଅର୍ଜ୍ଜୁନ ଅଗ୍ନିଙ୍କ କଥା ମାନି ଧନୁ ଓ ତୂଣୀର ସାଗରବକ୍ଷକୁ ଫିଙ୍ଗି ଦେଲେ । “ଉତ୍ତୁଙ୍ଗ-ତରଙ୍ଗ-ବାହୁ ନେଲେ ତା ତକ୍ଷଣେ, ବୁଡ଼ିଗଲା ଜଳେ ସେହି ଆଶ୍ରମପୂ ଧନୁ ।”

ଅଗ୍ନିଙ୍କୁ ଯୁଧିଷ୍ଠିର ନୀଳାଚଳର ପରିଚୟ ଓ ଏଠାରେ ତାଙ୍କର ଆବିର୍ଭାବର କାରଣ ପଚାରିବାରୁ ସେ କହିଲେ, “ଏହି ନୀଳାଚଳ

ଧାମ ସୃଷ୍ଟି ଦିନରୁ ଅପ୍ରସିଦ୍ଧ ଥିଲି ; ମୁଁ (ଅଗ୍ନି) ଗୁପ୍ତରେ ଭସ୍ମ ଆବରଣରେ ଥିଲି ପରି ପଡ଼ିଥିଲି । ଯେଉଁଦିନ ପ୍ରଭାସରେ ଯଦୁବଂଶ କ୍ଷୟ ହେଲା ସେ ଦିନ ନିଜକୁଳ ଏକମାତ୍ର ପ୍ରଦ୍ୟୁମ୍ନଙ୍କୁ ଜୀବିତ ଥିବା ଦେଖି ଦେବତାଙ୍କୁ ସଂହାର କରିବାପାଇଁ ଶ୍ରୀକୃଷ୍ଣ ଚକ୍ରକୁ ପେଶିଲେ । ଭୂଭାର ହରଣବ୍ରତରେ ପୁଲକିତ ହୋଇ ଶ୍ରୀକୃଷ୍ଣ ଚତୁର୍ଭୁଜରୂପ ଧାରଣ କରିଥିଲେ । ଚକ୍ର ତାଙ୍କ ହସ୍ତରୁ ଯାଇ ପ୍ରଦ୍ୟୁମ୍ନଙ୍କୁ ସଂହାର କଲେ ସିନା, ଆଉ ତାଙ୍କ ହାତକୁ ଫେରି ଆସିଲେ ନାହିଁ । ସେ ମହାତେଜ ପ୍ରକାଶ କରି ଆକାଶ ମାର୍ଗରେ ପୂର୍ବମୁଖରେ ଗତି କଲେ । ଚକ୍ରରୁ ଯେଉଁ ଅଗ୍ନି ସ୍ଫୁଲିଙ୍ଗ ବାହାରିଥିଲା ମୁଁ (ଅଗ୍ନିଦେବ) ସେ ସ୍ଫୁଲିଙ୍ଗ ମାତ୍ର । ପୂର୍ବେ ଦେବଲୋକରେ ଅଶରୀରୀ ବାଣୀ ହୋଇଥିଲା, କୃଷ୍ଣଙ୍କ କରରୁ ଆସି ଚକ୍ରବର ପଡ଼ିବ ଯେ ଠାବେ, ତହିଁ ହେବ କଳିଯୁଗେ ଭାବଗ୍ରାହୀ କେଶବର ଭାବ ଅବତାର । ପତିତପାବନବାନା ଉଡ଼ିବ ଭୂତଳେ ।" ପୁଣି, "ବିଶ୍ୱଦ୍ରୋହୀ ଦନୁଜ ଧର୍ଷଣ ସମୟରେ ତେଜଃକୁଳପତି ସୁଦର୍ଶନ ଏଠାରେ ଅବତୀର୍ଣ୍ଣ ହୋଇ ସାଗର ଗର୍ଭରେ ପ୍ରବେଶ କଲେ । ଏହି କାଳରେ ସମୁଦ୍ରର ଜଳ ଉଚ୍ଛୁଳି ହୋଇ ଖଣ୍ଡପ୍ରଳୟ ଆକାରରେ ଭୂଖଣ୍ଡକୁ ପ୍ଲାବିତ କଲା । ପାପୀ ଦନୁଜ କୁଳ ଏହି ମହାପ୍ଲାବନ ଯୋଗୁଁ ସ୍ୱରାଜ୍ୟକୁ ଫେରିଗଲେ । ଖଣ୍ଡପ୍ରଳୟର ଅବସାନ ହେବା ପରେ ଯାହା ଅବଶେଷ ରହିଗଲା ସେଥିରେ ଏକ ହ୍ରଦ ସମ୍ଭବିଲା । ଏହି ହ୍ରଦ ଚିଲିକା ଓ ସର ପାଠ ନାମରେ ଖ୍ୟାତ । ସେହି ଦିନରୁ ନୀଳାଚଳ ଚକ୍ରତୀର୍ଥ ନାମରେ ପରିଚିତ ହେଉଅଛି । ଶ୍ରୀକୃଷ୍ଣଙ୍କ ଆୟୁଧ ବର୍ତ୍ତମାନ ନୀଳାଚଳରେ ଅବସ୍ଥାନ କରିବେ । ଶ୍ରୀଚକ୍ରଙ୍କ ସ୍ତମ୍ଭରେ ଖଟଣି ନିମନ୍ତେ ଅଗ୍ନି ନୀଳାଚଳକୁ ଆସିଥିଲେ; ଏହି ହେତୁ ପାଣ୍ଡବମାନେ ତାଙ୍କୁ ଦେଖି ପାରିଲେ । ଅଗ୍ନି ପବିତ୍ର ଉତ୍କଳ ଭୂମିର ମାହାତ୍ମ୍ୟ ବର୍ଣ୍ଣନା କରି

କହିଲେ, "ଅଖିଳ-ଭାରତ-ତୀର୍ଥ-ଭ୍ରମଣ-ସୁକୃତ" ଲଭିବେ କଳରେ ଲୋକ ଏହି ସ୍ଥଳ ଭ୍ରମି ।" ଉତ୍କଳରେ ବିଷ୍ଣୁଙ୍କର ଚାରି ଆୟୁଧ— ଶଙ୍ଖ, ଚକ୍ର, ଗଦା ପଦ୍ମ ଚାରିକ୍ଷେତ୍ରରେ ବିରାଜିବେ । ବର୍ତ୍ତମାନ ସେ ଆୟୁଧମାନ ଉତ୍କଳରେ ପହଞ୍ଚିଗଲେଣି ; ମହୋଦଧି ଗର୍ଭରେ ରହିଛନ୍ତି । ଦେବଙ୍କ ଆଦେଶ ମତେ ଅଗ୍ନି ଏମାନଙ୍କୁ ଉତ୍କଳରେ ରଖିବେ । ଅଗ୍ନିଙ୍କ କଥା ଶୁଣି ଉତ୍କଳର ବିଭିନ୍ନ ତୀର୍ଥ ଦେଖିବାକୁ ପାଣ୍ଡବମାନେ ବାହାରିଲେ । "ଭବ-ମର୍ତ୍ତ୍ୟ-ବୈକୁଣ୍ଠ-ସାଇଁ" ଜଗନ୍ନାଥଙ୍କ ପାଦରେ ପ୍ରଣାମ କରି ଯାତ୍ରାକଲେ । ଅଗ୍ନିଙ୍କ ସହିତ ପାଣ୍ଡବମାନେ ମହେନ୍ଦ୍ରମାଳ ଅଭିମୁଖରେ ଚାଲିଲେ । (ଦ୍ୱିତୀୟସର୍ଗ)

ଅଗ୍ନି "ହେମ ଗୌରବପୁ ଯୁବା ଦ୍ୱିଜବେଶ" ଧାରଣ କରିଥିଲେ । ସମସ୍ତେ ବାୟୁକୋଣରେ ଯାଇ ମହେନ୍ଦ୍ର-କାନ୍ତାର ପଥରେ ପ୍ରବେଶ ହେଲେ । ମହାନଦୀ କୂଳରେ ବଡ଼ମୂଳ ଘାଟି, ସାତକୋଶିଆଗଣ୍ଡି ଦର୍ଶନ କଲେ । "ମହେନ୍ଦ୍ରର ଅଧିଷ୍ଠାନ ଦିନୁ ଏ ଶିଖରି ବୋଲାଏ ମହେନ୍ଦ୍ରନାମେ କୁଳାଚଳକୁଳେ ।" ପଶ୍ଚିମ ମୁଖରେ ଗତି କରି ତୀର୍ଥଯାତ୍ରୀମାନେ ନାନା ଦୃଶ୍ୟରାଜି ଦେଖିଲେ । ନାନା ଦେଶ, ବନ, ଜନପଦ, ତୀର୍ଥାଶ୍ରମ, ଗିରିପୂର୍ଣ୍ଣ ମହାନଦୀର ଦ୍ରୋଣୀ ଭ୍ରମଣ କରି ଦକ୍ଷିଣାପଥର ଦ୍ୱାରଦେହଳୀ ରୂପିଣୀ ମହାନଦୀ ରେବା ଓ ଶୋଣ ଏ ତିନ ନଦୀଙ୍କ ଉତ୍ପତ୍ତିସ୍ଥାନ ଅମରକଣ୍ଟକରେ ପହଞ୍ଚିଲେ । ଏଠାରୁ ଆଶ୍ରମେ ଆଶ୍ରମେ ଭ୍ରମଣ କରି ପଶ୍ଚିମ ଦିଗକୁ ଗତି କଲେ । ସାତପୁରା ପର୍ବତ, ତାପ୍ତୀନଦୀ ପ୍ରଭୃତି ଦେଖିଲେ । ତାପ୍ତୀରେ ସମସ୍ତେ ସ୍ନାନାଦିକରି ତର୍ପଣ କଲେ । ଅଗ୍ନି ପଶ୍ଚିମ ଦିଗରେ ଅବସ୍ଥିତ ସହ୍ୟାଦ୍ରି ପର୍ବତମାଳାର ମାହାତ୍ମ୍ୟ ବର୍ଣ୍ଣନା କରି ଏଠାରୁ ଗୋଦାବରୀ, କୃଷ୍ଣା ଓ କାବେରୀ ଉତ୍ପତ୍ତି ହୋଇଥିବା କହିଲେ ; ପ୍ରସଙ୍ଗକ୍ରମେ ଅଗସ୍ତି ଆଶ୍ରମ, ଋଷ୍ୟମୂକ ପର୍ବତ ପ୍ରଭୃତିର ଚରିତ ବର୍ଣ୍ଣନା ମଧ୍ୟ କଲେ ।

ତପ୍ତୀନଦୀକୂଳରୁ ଅଗ୍ନି ନିଜ ପୁରକୁ ନିଜକାର୍ଯ୍ୟରେ ଫେରିଯିବେ ବୋଲି କହିଲେ ଏବଂ ପାଣ୍ଡବମାନଙ୍କୁ ପ୍ରଭାତକାଳରେ ବାୟୁବ୍ୟ ମୁଖରେ ଏହିଠାରୁ ଦ୍ୱାରବତୀପୁରକୁ ଯିବାକୁ ନିର୍ଦ୍ଦେଶ ଦେଲେ । ଅଗ୍ନି କହିଲେ, "କାଲିଠାରୁ ଆଉ ତୁମ ସଙ୍ଗେ ଭେଟ ମୋର ନୋହିବ ମରତେ, ଦ୍ୱାପରର ଶେଷ ଆଜ; ଏହି ନିଶାଯୋଗେ ଓହ୍ଲାଇବେ ଦିନବନ୍ଦେ କଳି ଭବଧାମେ, କିଛିଦିନ କଳିରେ ଦେବ-ମାନବର ଭେଟ" । ତେବେ ଯୁଧିଷ୍ଠିର ଇଚ୍ଛା କଲେ ତାଙ୍କ ସାଙ୍ଗରେ ଯାଇ ଏହି ଗିରିଶୃଙ୍ଗରେ ଉପବେଶ କରି କୌତୁକରେ ତାଙ୍କର (ଅଗ୍ନିଙ୍କର) ଦିବ୍ୟାଲୋକ ଦ୍ୱାରା ସଂସାରରେ କଳିର ଅବତରଣ ଦେଖି ପାରିବେ ବୋଲି ଅଗ୍ନି କହିଲେ; ଯୁଧିଷ୍ଠିରଙ୍କ ଚକ୍ଷୁ-"ସତ୍ତ୍ୱଗୁଣୋଜ୍ଜ୍ୱଳ" ଥିବାରୁ ସେ କେବଳ "ସହିବ ସେ ଦିବ୍ୟ-ଜ୍ୟୋତି ।" କାଳ ବିଳମ୍ବ ନକରି ଗିରିଶୃଙ୍ଗ ଉପରକୁ ତାଙ୍କ ସଙ୍ଗେ ଯିବାପାଇଁ ଅଗ୍ନି ଯୁଧିଷ୍ଠିରଙ୍କୁ ନିର୍ଦ୍ଦେଶ ଦେଲେ । (ତୃତୀୟସର୍ଗ)

ସହ୍ୟାଦ୍ରି ଶିଖରେ ବସି ଯୁଧିଷ୍ଠିର ଅଗ୍ନି ପ୍ରଦତ୍ତ ଦିବ୍ୟାଲୋକ ଯୋଗେ ସ୍ୱପ୍ନରେ ଅଦ୍ଭୁତ ଦୃଶ୍ୟ ଦେଖିଲେ । ଆକାଶରେ ସ୍ୱର୍ଣ୍ଣ-ମେଘରେ ଝୁରୁ ଚନ୍ଦ୍ରାତପ ତଳେ ଦେବତାମାନେ ସଭା କରୁଥିଲେ । ସଭାସ୍ଥ ଦେବତାମାନେ ସର୍ବେ ଏକମନେ ଚିନ୍ତାମଗ୍ନ । ଅଗ୍ନି ଏହି ଦେବତାଙ୍କୁ ଜଣଜଣ କରି ଯୁଧିଷ୍ଠିରଙ୍କୁ ଚିହ୍ନାଇ ଦେଲେ । ଧର୍ମ, ସାହାସ, ସତ୍ୟ, ନ୍ୟାୟ, ତପଃ, କ୍ଷମା, ଶୌଚ, ତିତିକ୍ଷା, ଆର୍ଜବ ପ୍ରଭୃତି ଦେବତାମାନେ, ଦୟା, ପଦ୍ମାଳୟା, ସରସ୍ୱତୀ ପ୍ରଭୃତି ଦେବୀମାନେ ଉପସ୍ଥିତ ଥିଲେ । ସମସ୍ତେ ଏହି ସବୁଦେବ ଦେବୀ କଳି ଆଗମନ ବିଷୟରେ ମନ୍ତ୍ରଣା କରୁଛନ୍ତି; "କେ କାହିଁ ଲୁଚିବେ, କେଉଁ ବିଜନ ପ୍ରଦେଶେ ।" ଆଉ ବିଳମ୍ବ ନାହିଁ; "ବିଗଳଇ ଯେଉଁ ଶିଶ ଯିବ ସିନା ଲିଭି ଅଳ୍ପ କ୍ଷଣେ,

ଗଲେନ୍ତ ମାତ୍ରେ ରହିବ ତା ସ୍ମୃତି,"। ଏହି କ୍ରୂର କାଳର ଆକ୍ରମଣରେ "ଧର୍ମର ଏ ଉପବନ ହେବ ପରିଣତ ପାପ ମରୁଭୂମି ଏବେ, ଲକ୍ଷ୍ମୀଲୀଳାସର ଶୁଖିଯିବ" ।

ଏହା କହୁଁ କହୁଁ ନଭଃ ଭୀଷଣ ତମସେ ପୂରିଗଲା; ବିକଟାଳ କରାଳ ଆକୃତି ଉର୍ଦ୍ଧ୍ୱେ ଉଠାଇଲେ କଳି ନିଜ ଦଳ-ବଳେ ।" କଳି ନେତ୍ରଦ୍ୱୟ ମଙ୍ଗଳ ଗ୍ରହ ତୁଲ୍ୟ ଭୟାବହ, ଅମଙ୍ଗଳ ବେଦନ ଚକ୍ଷୁ । ପଛେ ପଛେ ତାଙ୍କର ଅନୁଚରବର୍ଗ ଦେଖା ଦେଶରେ ଆସୁଥିଲେ । ଏ ଅନୁଚରମାନଙ୍କ ଅଗ୍ରଣୀ ଥିଲେ "ସଦା ଧର୍ମଦ୍ରୋହୀ, ଲଳିତଲଳିତା-ଭ୍ରୂ-ଧନୁର୍ଗୁଣଧାରୀ ବିଶ୍ୱବିଜୟୀ "କାମ" । ଏହାଙ୍କ ଦଳରେ ଥିଲେ ବାରଙ୍ଗନା । ଏହାଙ୍କ ପରିଚରଦଳ ମେହ, ଉପଦଂଶ ମଧ୍ୟ ଥିଲେ । କାମଙ୍କ ପଛେ ପଛେ କ୍ରୋଧ, ହତ୍ୟା, ଲୋଭ, ମୋହ, ମଦ, ଈର୍ଷା, ମିଥ୍ୟା, କଳହ, ଆଳସ୍ୟ ପ୍ରଭୃତି ମହା ସେନାପତିମାନେ ଉପସ୍ଥିତ ହେଲେ । "ସମସ୍ତଙ୍କୁ ଦେଇ ପ୍ରଚଣ୍ଡ ବିକ୍ରମେ" କଳି ଭାରତର ଧର୍ମପୁଞ୍ଜ ଦୁର୍ଜୟ ପ୍ରତାପୀ-ମାନଙ୍କୁ ଆକ୍ରମଣ କଲେ । "ଅସ୍ତେ ବ୍ୟସ୍ତେ ଭାରତର ପୁଣ୍ୟପୁଞ୍ଜ ଯେତେ, ସଭି ଛାଡି ପଳାଇଣ ଲୁଚିଲେ କେ କାହିଁ ।" ଏ ପୁଣ୍ୟପୁଞ୍ଜଙ୍କ ପୃଷ୍ଠରକ୍ଷୀ ଏକମାତ୍ର ଧର୍ମ-ସହଚର "ସାହସ" ପଛକୁ ରହି କଳି ସୈନ୍ୟଙ୍କ ହାତେ ବନ୍ଦୀ ହେଲେ । କଳି ଆଦେଶରେ କାମ ସାହସକୁ ନିଜବଳକୁ ନେଇଗଲା । ଧର୍ମଦେବ ପଳାଇଲା ବେଳେ ନିଜ ଦିବ୍ୟ ପରିଚ୍ଛଦ "ମୌନ"କୁ ଛାଡ଼ି ଯାଇଥିଲେ, "ଶାଠ୍ୟ" ମହା ଉଲ୍ଲାସରେ ତାକୁ ପାଇଁକି ରଖିଲେ । ଏହି ଦୃଶ୍ୟ ଦେଖି ଯୁଧିଷ୍ଠିର ବିଦୀର୍ଣ୍ଣ ଅନ୍ତରରେ ଅଗ୍ନିଙ୍କୁ କହିଲେ, "ହେ ଦେବ, ବଡ଼ ବିଷମ ଏ କଥା । ଅସହ୍ୟ ଏ ଦୃଶ୍ୟ ମୋର । ପବିତ୍ରସ୍ୱରେ ତେ ବ୍ରାହ୍ମଣରେ ମନ୍ତ୍ରବଳେ କ୍ଷତ୍ରବୀର୍ଯ୍ୟ ବଳେ ସୁରକ୍ଷିତ ଆର୍ଯ୍ୟଦେଶେ ଘଟିବ ଅମାତ୍ୟ କେତେ ସତ ? ଲାଗେ

ବଡ଼ ଅସମ୍ଭବ ମୋତେ ।" ଏହା ଶୁଣି ଅଗ୍ନି ନିଜ ହବ୍ୟତେଜ ସମ୍ବରଣ କରି ଦରହାସ୍ୟରେ କହିଲେ, "ବ୍ରାହ୍ମଣକ୍ଷେତ୍ରିୟଗୃହରେ ସବ ଅଗ୍ରେ ପିନା ପଶିବ କୌଶଳେ କଳି ବଲ୍ମୀକସ୍ୱରୂପେ । ପଶିଣ ଗୁପତେ ସେହି କଳ୍ପମାଖା ଧର୍ମତରୁ ମୂଳେ, ଅଲକ୍ଷିତେ କୋରି ମୂଳ, ଅନ୍ତଃସାର ହରି ନେବ", "ଦୁରୁଁ ଯବନଙ୍କୁ ଡାକ୍ ଆଣି ତାଙ୍କ ହସ୍ତେ ଗଡ଼ାଇବ ଭୂମେ ।"

ଅଗ୍ନି ପୁଣି କହିଲେ, "ନୁହଇ ଉଚିତ ଆଉ ରହିବାର ଏବେ ବହୁଦିନ ଏ ଭାରତେ, ତୀର୍ଥାଟନ ବ୍ରତ ସାରି ବେଗେ ଯାଅ ହିମାଚଳେ" । କାରଣ, "ଧର୍ମେ ଏକତାନମତି, ଧର୍ମପକ୍ଷପାତୀ ବୀର ତୁମ୍ଭେ, ଅନାଶ୍ରିତ ଦମନେ ଅକ୍ଷମ ହୋଇ ଦହିହେବ ପିନା ଆପେ ଅନୁତାପେ ।" "ପାପର ବନ୍ୟା" ମାଡ଼ି ଆସୁଛି, "ଧର୍ମ ଅନୁଷ୍ଠାନ-ବ୍ରତେ ସହାପ୍ଟ ବିହୁନେ ସାଧୁର ଜୀବନ ହେବ ମହାବିଡ଼ମ୍ବନା ।" ଧୈର୍ଯ୍ୟ, ବୀର୍ଯ୍ୟାଦି ମହତ୍ତ୍ୱ ଲୋପ ପାଇବ; ଭାରତ କାପୁରୁଷ-ପ୍ଲାବିତ ହେବ । କଳି ଶିଷ୍ୟ କୁଷିମ୍ଭରି (ପେଟ୍ଟ) ଦ୍ୱିଜଜାତିଦୁଷ୍ଟ ଯୋଗେ ନାରଖାର ହେବ ଅଚିରେ ଏ ମହୀ" "ନାମକୁ ମାନବ ରହି ପଶୁଠାରୁ ହୀନ ହୋଇଯିବେ ଯୁଗଧର୍ମେ ଭରତମଣ୍ଡଳେ ।"

( ଚତୁର୍ଥ ସର୍ଗ )

ଉତ୍କଳରେ କଳି ପ୍ରବେଶର ଅବତାରଣ କବି କରି ମୟୂରଭଞ୍ଜ ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ କୀର୍ତ୍ତିଗାନ କରିଛନ୍ତି । କଳି ପ୍ରଥମେ ମୟୂରଭଞ୍ଜ ନବର ଭିତରେ ପ୍ରବେଶ କରିବାକୁ ଚେଷ୍ଟା କରିଥିଲା ବୋଲି କାହାଣୀ ଶୁଣିଥିବା କବି ବ୍ୟକ୍ତ କରିଛନ୍ତି "ନବରେ ଭ୍ରମରି କଳି ପଶନ୍ତେ ପ୍ରଥମେ, ଅବିରତ ଦାନବାରି ପିଚ୍ଛିଳପ୍ରାଙ୍ଗଣେ ସେ ନବରେ, ଖୁଲୁ ଖୁଲୁ ଅତି ସାବଧାନେ ଖସଡ଼ି ତା ଗୋଡ଼ ଦୁଷ୍ଟ ପଡ଼ିଲା କଚାଡ଼ି ଉଭିନେ; ବାହୁଡ଼ି ଯହୁଁ ଗଲା ଅପମାନେ ।"

ଏ କାହାଣୀ ସତ୍ୟ ଥିବା କବିଙ୍କୁ ପ୍ରତୀତ ହେଲା, କାରଣ "ଯେଣୁ ଦେଖୁଛୁ ନୟନେ, ପଣିନାହିଁ ଦୁଷ୍ଟ ଭୁମ୍ବ ହୃଦୟ କୁସୁମେ କୀଟରୂପେ ।" କୂଟନୀତି-ପ୍ରୟୋଗ ଅଗ୍ରଣୀ ମଦନ ଓ ଆଳସ୍ୟ ନାମକ କଳିର ଦୁଇ ସେନାପତି ରାଜକୁଳକୁ ଜିଣିବାରେ ବଡ଼ ପଟୁ । ସେମାନେ ଅବହେଳେ ରାଜକୁଳକୁ ଜିଣି "ଅଳ୍ପକାଳେ ଶତ ଶତ ଭୂପ ଭୂଷଣରତେ କଳି ରାଜସଭାତଳେ ବନ୍ଧାଇଲେ ଶାଢ଼ୀ ।" କିନ୍ତୁ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ଜିଣି ପାରିଲେ ନାହିଁ । କବି ମହାରାଜଙ୍କ ସୁଗୁଣଗାନ କରିଛନ୍ତି ।

କ୍ଷତ୍ରିୟ-ବ୍ରାହ୍ମଣଙ୍କ ଅବନତି କଥା ଶ୍ରବଣ କରି ଯୁଧିଷ୍ଠିର ଦୁଃଖରେ କହିଲେ, "ଭାରତରେ ଏ ଅନର୍ଥ କିପରି ଘଟିବ ତାହା ଜାଣିବାକୁ ମନ ବ୍ୟଗ୍ର ହେଉଛି । "ସୁଜଳା, ସୁଫଳା ଏ ଶସ୍ୟଶ୍ୟାମଳା ଧରା ପରହାତେ ଦେଇ ପରପଦାନତ କି ହେ ହେବେ ଆର୍ଯ୍ୟ-ସୁତେ ? ଏ ମର୍ତ୍ତ୍ୟନନ୍ଦନ, ଦେବ, ହେବ କି ହେ ସତେ ଖ୍ରୀଷ୍ଟାଣ ଦାନବଙ୍କର ବିହାର ଅଗଣା ? ଆର୍ଯ୍ୟସ୍ୱାଧୀନତା-ରବି ଅସ୍ତମିତ ହୋଇ ଭାରତ କି ପରିଣତ ହେବ ଅବଶେଷେ ଉଜ୍ଜ୍ୱଳ ଆର୍ଯ୍ୟଙ୍କର ଗୌରବ-ଶ୍ମଶାନେ ?" ଅଗ୍ନି ଉତ୍ତର ଦେଲେ, "ଘୋର, ଘଟିବ ଏକର କହିଲି ଯା, କେବେ ତାହା ନୋହିବ ଅନ୍ୟଥା । ସ୍ୱାଧୀନତା କେବଳ ଷଡ଼ରିପୁ ପ୍ରଭୁତାର ଛାୟା; ସେ ପ୍ରଭୁତା ଛାଡ଼ିଗଲେ କଳିର କୌଶଳ ବଳେ ଯିବ ସ୍ୱାଧୀନତା ।" "ଯୋଗସ୍ତ୍ର ବ୍ରାହ୍ମଣର ବାଣୀ ଆରାଧନା ଚିରବ୍ରତ" ଏବେ ସେହି ଦେବୀଙ୍କ ତିରୋଭାବରେ ବିପ୍ରମାନେ ବ୍ରହ୍ମଚର୍ଯ୍ୟ ତେଜିବେ; ଲୋଭମୋହ ଜାଲରେ ଜଡ଼ ହୋଇ ଅବିଦ୍ୟାର ସେବକ ହେବେ । "ବ୍ରାହ୍ମଣର ତପଫଳରେ ଯେଉଁ ଭାରତ ଭାରତୀର ଲୀଳାକ୍ଷେତ୍ର ହୋଇଥିଲା, ସେ ଭାରତ ଏବେ ହେବ ପରିଣତ ସେହି ବ୍ରାହ୍ମଣେ ପାପେ ଅଜ୍ଞାନଅନ୍ଧକାରମୟ ଖ୍ରୀଷ୍ଟାଣ

ଶ୍ମଶାନ ।" ମଦନ, ଆଳସ୍ୟ, ଈର୍ଷାର ଆକ୍ରମଣରେ 'କ୍ଷତ୍ରିୟକୁଳର ଦେଶରକ୍ଷାବ୍ରତ, ଦୃଢ଼ବ୍ରତଜ୍ଞତା, ସାହସ ପ୍ରଭୃତି ଲୋପ ପାଇବ । "ବହୁବର୍ଷମଣ-ଭସ୍ମ-ପ୍ରତିକାରବାର୍ତ୍ତା ଭାବିବାକୁ ନଥିବଟି ଅବସର ତିଳେ ।" ଐକ୍ୟଭାବ ଆର୍ଯ୍ୟଭୂମି ଭାରତରୁ ତିରୋହିତ ହେବ । "ଆର୍ଯ୍ୟସୁତ ଯେତେ ଆଖ୍ୟାରେ ପୃଥକ୍ ମାତ୍ର ରକ୍ତେ ସର୍ବେ ଏକା ଈର୍ଷାର କୁହୁକେ, ଆହା, ପାଶୋରି ଏକଥା ଆର୍ଯ୍ୟରକ୍ତସ୍ରୋତେ ଆର୍ଯ୍ୟପ୍ଲାବିବେ ଅବନୀ ।" ରାଜନ୍ୟ ଓ ବ୍ରାହ୍ମଣ ସମ୍ପ୍ରଦାୟର ଏ ଅଧୋଗତି ଦେଖି ଦୁର୍ବୃତ୍ତ ବୈଦେଶିକଦଳ ପଲେ ପଲେ ପଶି ଆସିବେ । ସାମ୍ୟମୈତ୍ରୀ ବୀଜମନ୍ତ୍ରରେ ଜୀବନ୍ୟାସ କରିବା ପାଇଁ କେହି ଜଣେ ହେଲେ ବାହାରିବେ ନାହିଁ ।

ଏହିପରି କେତେକାଳ ଗଲା ପରେ ଧର୍ମବୀରାଗ୍ରଣୀ ଶାକ୍ୟସିଂହଙ୍କ ଆବିର୍ଭାବ ହେବ । "ସଂସାର ମମତାପାଶ ଛେଦି ଜ୍ଞାନବଳେ ମହାଜ୍ଞାନୀ, ଭାରତର ଅଜ୍ଞାନ ଅନ୍ଧାରରେ ଜାଳିବେ ବିଜ୍ଞାନଦୀପ ।" ଏହି ବିଜ୍ଞାନଦୀପର ଆଲୋକ ଦେଶଦେଶାନ୍ତରର ଅନ୍ଧକାର ଲୋପ କରିବ । "ସାମ୍ୟମୈତ୍ରୀ ମହାମନ୍ତ୍ର ହୋଇଣ ଦୀକ୍ଷିତ ଭେଦନୀତି ପରିହରି ସୁହୃତ ବନ୍ଧନେ ବନ୍ଧହେବେ ଆର୍ଯ୍ୟଭୂମେ ଆର୍ଯ୍ୟସୁତ ଯେତେ ।" ଶାକ୍ୟସିଂହଙ୍କ ବାଣୀକୁ ଅଶୋକ ଦେଶଦେଶାନ୍ତରେ ପ୍ରଚାର କରିବେ । "ଭାରତରୁ ବିକୀର୍ଣ୍ଣ ହୋଇ ଏହି ଧର୍ମଜ୍ୟୋତି ମାତ୍ର ଲଭିଯିବ ଏହା ଅଚିରେ ଭାରତେ ।" ସ୍ୱାର୍ଥାନ୍ଧ ଦ୍ୱିଜଜାତି ଏ ଜ୍ଞାନପ୍ରଦୀପର ଶିଖାକୁ ବେଗେ ଲିଭାଇଦେବେ ।

ମହାପରାକ୍ରମୀ ବିକ୍ରମାଦିତ୍ୟ ଦ୍ୱିଜଜାତିର ପକ୍ଷ ହେବେ । "ପ୍ରଚଣ୍ଡ ବିକ୍ରମେ ରାଜଦଳ ଆକ୍ରମିଲେ ଶାକ୍ୟସିଂହଶିଷ୍ୟ ।" ଏମାନେ ବିକ୍ରମାଦିତ୍ୟଙ୍କ ଆକ୍ରମଣରେ ଛିନ୍ନ ଭିନ୍ନ ହୋଇ କେତେ ଭାରତ ତ୍ୟାଗ କରିବେ, କେତେ ନବଧର୍ମରେ ଦୀକ୍ଷିତ ହେବେ । କଳିର

ରାଜତ୍ୱ ପୁଣି ଭାରତରେ ପ୍ରତିଷ୍ଠିତ ହେବ । "ଥିଲା ଯେ ତମିରେ ସେ ତମିରେ ପୁଣି ବୁଡ଼ିବ ଭାରତ ସେ ତମିରେ, ସତ୍ୟଧର୍ମ ହୋଇ ଅସ୍ତମିତ ।" "ଦ୍ୱୀପରୂପ ମାତ୍ର ଏ ପାପପ୍ଲାବନେ କେବଳ ଗୋଟିଏ ସ୍ଥଳୀ ସମଗ୍ର ଭାରତେ", "ଧନ୍ୟରେ ଉତ୍କଳ ଭୂମି, ଏ ଘୋର ଅନ୍ଧାରେ ଭୂମି ଯେ ରଖିବାକୁ ସିନା ପୋଡ଼ିକୁ ସ୍ନେହ ଦାନେ ଗୁପତେ ଏ ଧର୍ମଦୀପ ନୀଳାଦ୍ରି କନ୍ଦରେ ।"

ପୁଣି ଅଳ୍ପ ଦିନରେ ଏହି କୁଳାଙ୍ଗାର ଆର୍ଯ୍ୟମାନେ ସ୍ୱାର୍ଥାନ୍ଧ ହୋଇ ଯବନ ସଙ୍ଗତେ ମିଶି ଏହି ଆର୍ଯ୍ୟଭୂମିରେ ଆର୍ଯ୍ୟଙ୍କୁ ହାଣିବେ । ଏହି ଆର୍ଯ୍ୟଭୂମିରେ ଠାବେ ଠାବେ ଅସଂଖ୍ୟ ଯବନ ବୁଣି ହୋଇଯିବେ । "ଅକ୍ଷମାସର୍ବସ୍ୱ, ଗ୍ରାମ୍ୟସୁଖପକ୍ଷପାତୀ, କୁଟଯୁଦ୍ଧେରତ, କୂଟରାଜତନ୍ତ୍ରେ ଚଟୁ" ଯବନମାନେ "ଧର୍ମବ୍ୟପଦେଶ"ରେ ଏ ଦେଶକୁ ଆସି ଲୁଟିବେ ; ରାଜ୍ୟବିସ୍ତାର କରିବେ, ବହୁଲୋକଙ୍କୁ ଯବନଦୀକ୍ଷାରେ ଦୀକ୍ଷିତ କରିବେ । "ସ୍ୱାଧୀନତାର ଜଳାଞ୍ଜଳି ଦେଇ ଏହି ଆର୍ଯ୍ୟଜାତି ପରମୁଖାପେକ୍ଷୀ ହୋଇ ରହିବେ ନିରନ୍ତେ । ସ୍ୱଦେଶରେ ଆର୍ଯ୍ୟମାନେ ବଞ୍ଚିତ ହେବେ । ଦୂରୁ "ଆସି ଯବନମାନେ ଐଶ୍ୱର୍ଯ୍ୟଭୋଗ କରିବେ । କାପୁରୁଷ ଆର୍ଯ୍ୟସୁତମାନେ ଗ୍ରାମ୍ୟଶ୍ୱାନ ପରି" ଯବନର ଉଚ୍ଛିଷ୍ଟ-ଲାଳସାରେ ପରସ୍ପରେ ଯୁଦ୍ଧ କରିବେ । "ଜୟପ୍ରାପ୍ତ ଭାରତକୁ ଉପରେ ଘୋଡ଼ାଇ, କ୍ରମେ ଅନ୍ତଃସାର ହରି ଅଲକ୍ଷିତେ" ଏ ସର୍ବଗ୍ରାସୀ ଏ ଯବନମାନେ ପୁଣି ବୋଲାଇବେ "ଭାରତଖଣ୍ଡର ବିଧିପ୍ରେରିତ ପ୍ରହରୀ ।"

ରବି ପାହିବାକୁ ଆଉ ଯାମ ମାତ୍ର ବାକି ଥିଲା; ଆଉ ଅବସର ନଥିବା ଜଣାଇ ଅଗ୍ନି ଲୀନ ହୋଇ ରହିଲେ । (ପଞ୍ଚମସର୍ଗ)

କବି ବାମଣ୍ଡାମଣ୍ଡଳେଶ୍ୱର ଉତ୍କଳମଣ୍ଡନ ମହାରାଜା ସୁଢ଼ଳ-ଦେବଙ୍କୁ ସମ୍ବୋଧନ କରି ଏ ଗୀତ ତାଙ୍କ "ଦିବ୍ୟ ଅବଧାନକୁ ଆସୁ" ବୋଲି ଜଣାଇଛନ୍ତି । ସୁଢ଼ଳଦେବ ଓ ତାଙ୍କ ପୁତ୍ର ସଚ୍ଚିଦା-ନନ୍ଦଙ୍କ ସଦ୍‌ଗୁଣାବଳୀ ବର୍ଣ୍ଣନା କରିଛନ୍ତି । ପୁଣି, କଥା ଆରମ୍ଭ କରିଛନ୍ତି ।

ରାଜପାଣ୍ଡବାକୁ ଏକ ଯାମ ଥିବା ସମୟରେ ଅଗ୍ନି ପରୀକ୍ଷିତଙ୍କୁ ଦିବ୍ୟାଞ୍ଜନ ଦେବେ ଏବଂ ଏହି ଦିବ୍ୟାଞ୍ଜନ ବଳରେ ତାଙ୍କ ଦୃଷ୍ଟିକୁ ପ୍ରସାରି "ଦେଶେକାଳେ ଭାବୀ ଦୃଶ୍ୟ ସଂକ୍ଷେପରେ ଦେଖାଇବେ ବୋଲି ମଧ୍ୟ କହିଲେ । ଏହି ଅନୁସାରେ ଅଦୂରର ସହ୍ୟଗିରି-ତଟରେ ବହ୍ନିଶିଖା ଜଳି ଉଠିଲା ଏବଂ ସେହି ଶିଖା ମଧ୍ୟରୁ ବନ-ଭୂମିକୁ ପ୍ରଭାରେ ଉଦ୍‌ଭାସିତ କରି ହୋମ ଆଜ୍ୟପାତ୍ର ହସ୍ତରେ ଧରି ସ୍ୱାହାଦେବୀ ବାହାରିଲେ । ଆଜ୍ୟପାତ୍ରକୁ ଅଗ୍ନିଙ୍କ ହସ୍ତରେ ଦେଇ ଦେବୀ ଅନ୍ତର୍ଦ୍ଧାନ ହେଲେ । "ସେ ଅନଳରୁ ଉଦ୍ଧୁନେଇ" ଅଗ୍ନି ଦିବ୍ୟାଞ୍ଜନ ପ୍ରସ୍ତୁତ କଲେ ଏବଂ ଯୁଧିଷ୍ଠିରଙ୍କୁ ଦେଲେ । ପୂର୍ବେ ଏହି ଅଞ୍ଜନ ଦୈପାୟନ ଋଷି ସଞ୍ଜୟଙ୍କୁ ଦେଇଥିଲେ ଏବଂ ଏହାବଳରେ ସେ ଦୂରରୁ ସମଗ୍ର କୁରୁକ୍ଷେତ୍ର ଯୁଦ୍ଧ ଦେଖି ପାରିଥିଲେ ଏବଂ ଧୃତରାଷ୍ଟ୍ରଙ୍କୁ ଆଗରେ ଦୃଶ୍ୟ ବର୍ଣ୍ଣନା କରିଥିଲେ । ଯୁଧିଷ୍ଠିର ଦେଶକାଳ-ବ୍ୟବଧାନ ଉତ୍ତୋଳନ ପଟୁ ଏହି ଅଞ୍ଜନ ସାହାଯ୍ୟରେ ଦେବଙ୍କ ଇଚ୍ଛାମତେ ଭାରତର ଭାଗ୍ୟପଟ ଦର୍ଶନ କଲେ ।

ଯୁଧିଷ୍ଠିରଙ୍କ ଅନୁରୋଧ କ୍ରମେ "ଯବନର କରଗତ ହେବ କଳିଯୁଗେ ବୀରପ୍ରସବିନୀ ହସ୍ତିନାନଗରୀ ଏବଂ ଆର୍ଯ୍ୟହର୍ମ୍ୟକ୍ଷର ଗୁହା ଯବନ-ଜମ୍ବୁକବଳେ ହେବ "ପରିଣତ"ର କାହାଣୀ-ଦୃଶ୍ୟ ଦେଖାଇଲେ । ମନ୍ତ୍ର ଉଚ୍ଚାରି ଅଗ୍ନି ଯୁଧିଷ୍ଠିରଙ୍କ ଚକ୍ଷୁରେ ଦିବ୍ୟାଞ୍ଜନ ଲଗାଇ ଦେଲେ । ଯୁଧିଷ୍ଠିର ଦେଖିଲେ, "ସ୍ଫୁରିଲା ସହସା ଅଗ୍ରେ

ଶଙ୍କରୂପ ଗୃହଚୂଡ଼ତୋରଣା ଶୋଭନା '' ଦିଲ୍ଲୀର ତୋରଣ ସମ୍ମୁଖରେ ତଜ୍ଜଦଗ୍ଧ ନାନାଜାତି ନାନା ବେଶଭୂଷାଧାରୀ ସେନା ଆସି ଉପସ୍ଥିତ ହୋଇଛନ୍ତି । ରାଜପୁତାନା, ଆଜମୀର, ଯଦୁ, ଉତ୍କଳ, ସିନ୍ଧୁ, ଭଦ୍, ବରାଠ, ମିଥିଳା, ଅଙ୍ଗ, ଚେଦୀ, ବଙ୍ଗ, ଗୌଣ୍ଡ୍ର, ନେପାଳ, ବିନ୍ଧ୍ୟ, ଉତ୍ତରପ୍ରିମୀ ପ୍ରଭୃତି ଦେଶରୁ ଏ ସୈନ୍ୟମାନେ ଆସିଛନ୍ତି । ଏ ଦୃଶ୍ୟ ସହ୍ୟଗିରି ଶିଖରୁ ଯୁଧିଷ୍ଠିର ଦେଖୁଥିଲେ । ପୁଣି, ଅଗ୍ନି-କୁଳକ୍ଷତ୍ରିୟ ବଂଶୀୟ ପୃଥୁରାଜ ଓ ଜୟଚନ୍ଦ୍ରଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା ତାହାର ଭୟାବହ କାହାଣୀ-ଦୃଶ୍ୟ ମଧ୍ୟ ଦେଖିଲେ । ଏ ଗୃହଯୁଦ୍ଧର ଭୟାବହ ଦୃଶ୍ୟ ଦେଖି ଯୁଧିଷ୍ଠିର ଦୁଃଖିତ ହେଲେ ଏବଂ ବୈରଭାବ ଥିବା ସତ୍ତ୍ୱେ ଦେଶର ଶତ୍ରୁ ବିରୁଦ୍ଧରେ କୁରୁ ଓ ପାଣ୍ଡବମାନେ କପରି ଏକତ୍ର ଯୁଦ୍ଧ କରୁଥିଲେ ତାହା ବ୍ୟକ୍ତକଲେ ।

ପ୍ରତିହାର, ପ୍ରମାରକ, ରାଠୋର, ଚୌହାନ ବଂଶର କ୍ଷତ୍ରିୟରାଜାମାନେ ଯଥାକ୍ରମେ ବଶିଷ୍ଠ, ବିଶ୍ୱାମିତ୍ର, ପରାଶର, ଭୃଗୁଙ୍କଠାରୁ ଉତ୍ପତ୍ତି ଲାଭ କରିଥିଲେ । ଏମାନେ କେତେକାଳ ଭାରତର ବିଭିନ୍ନ ସ୍ଥାନରେ ରାଜତ୍ୱ କରି ଭାରତକୁ ଯତ୍ନରେ ଯବନମାନଙ୍କ ହସ୍ତରୁ ରକ୍ଷା କରିବେ ।

ମାତ୍ର କାଳ ବହୁକାଳ ଏହା ସହ୍ୟ କରି ନ ପାରି ରାଜା ରାଜାଙ୍କ ଭିତରେ କଳହ ସୃଷ୍ଟି କରିବେ । ଚୌହାନ କୁଳରେ ଦିଲ୍ଲୀରେ କ୍ଷୀରସମୁଦ୍ରରୁ ପୀୟୂଷ ଜାତ ହେଲା ପ୍ରାୟେ ପୃଥୁ ଜନ୍ମଗ୍ରହଣ କରିବେ ଏବଂ "ସଂଗ୍ରାମେ ଅପ୍ରତିରଥ ପାର୍ଥ'' ପ୍ରାୟେ ରାଜତ୍ୱ କରି ଯଶ ଅର୍ଜିବେ । କ୍ଷୀର ସମୁଦ୍ରରୁ ଗରଳ ଜାତହେଲା ପ୍ରାୟେ କାନ୍ୟକୁବ୍ଜରେ ରାଠୋରକୁଳରେ ମନ୍ଦମତି ଜୟଚନ୍ଦ୍ର ଜନ୍ମଗ୍ରହଣ କରି ଆର୍ଯ୍ୟଭୂମି-ଦ୍ରୋହୀ ହେବେ । ପୃଥୁଙ୍କ ବିକ୍ରମ ଯଶ ଶୁଣି ଈର୍ଷାରେ ଏ ଦୁର୍ମତି ଅନୁକ୍ଷଣ ଖାରହେବ । କିନ୍ତୁ ଜୟଚନ୍ଦ୍ରଙ୍କ କନ୍ୟା "ସୁନ୍ଦରୀପଣେ ଅତୁଳାଭୂତଳେ''

ସଂଯୁକ୍ତା ପୃଥ୍ୱୀଙ୍କୁ ପ୍ରଂଶସା କରି ପ୍ରେମ କରିବେ । "ପୃଥୁଙ୍କ ଯେ ଯଶୋଗାଥା ଜାଳିବ ଯେତିକି କ୍ରୋଧ ପିତୃହୃଦେ ପ୍ରେମ ସେତିକି ସେ ପୁଣି ଜାଳିଦେବ ସମକାଳେ ଦୋହିତ୍ରହୃଦୟେ ।" କେମାରି ବିବାହ ପାଇଁ ଜୟଚନ୍ଦ୍ର ସ୍ୱୟମ୍ବର ବିଧି ଭିଆଇବେ । ଲେଖାପାଇ ଭାରତର ବିଶବିଶନ୍ତର ରାଜନ୍ୟମଣ୍ଡଳ ସେ ରାଜସୂୟକୁ ଆସିବେ । ମାତ୍ର ପୃଥୁ ନିମନ୍ତ୍ରିତ ହୋଇ ନଥିବାରୁ ଆସିବେ ନାହିଁ । "ପ୍ରତିବନ୍ଧୀ ରୂପେ ପୃଥ୍ୱୀଙ୍କର ପ୍ରତିରୂପ ଗଢ଼ାଇ କାଞ୍ଚନେ ଥୁଆଇବ ଜୟଚନ୍ଦ୍ର ରାଜ-ସଭାତଳେ ।" କିନ୍ତୁ ସଂଯୁକ୍ତା "ଉପେକ୍ଷି ସେ ସ୍ୱୟମ୍ବରେ ପିତାର ଭ୍ରୂକୁଟି ସେହି ପ୍ରତିମାର ଗଳେ ଦେବେ ବର୍ଣ୍ଣମାଳା ।" ସମସ୍ତେ ଚକିତ ହୋଇଯିବେ । ପୁଣି ଚମକ ଦେଖାଯିବ । ଅଦୂରେ ପୃଥ୍ୱୀରାଜ ସଂଗ୍ରାମ ଶିଙ୍ଗା ବଜ୍ରଘୋଷରେ ଘୋଷି ସେ ସ୍ୱୟମ୍ବର ସଭା କମ୍ପାଇବେ । ସେ ସହସା ସଭାରେ ଉପସ୍ଥିତ ହୋଇ "ଅନୁକୂଳ ବଳାତ୍କାରେ" ସଂଯୁକ୍ତାଙ୍କୁ ହରିନେଇ ଯିବେ । ଜୟଚନ୍ଦ୍ରଙ୍କ ହୃଦୟ ରୋଷାନଳରେ ଜଳିଯିବ । ସେ ବୈରନିର୍ଯ୍ୟାତରେ ପରିଣାମ ପ୍ରତି ଅନ୍ଧ ହୋଇ-ଯିବେ । ଜାମାତାଙ୍କ ନିଧନ ମନାସି "ଶରଣାର୍ଥୀ ହେବ ଯାଇ ଯବନର ପଦେ ।" ଉଭୟ ପକ୍ଷରୁ ଯୁଦ୍ଧ ହେବ ।

ପ୍ରଥମ ସମରରେ ଯବନମାନେ ପରାସ୍ତ ହୋଇ ପ୍ରାଣଭିକ୍ଷା କରି ସ୍ୱଦେଶକୁ ପଳାଇବେ । ଜୟଚନ୍ଦ୍ର ପୁନର୍ବାର ସେମାନଙ୍କୁ ନିମନ୍ତ୍ରଣ କରି ପୁଣି ଯୁଦ୍ଧର ଆୟୋଜନ କରିବେ । (୭ମ ସର୍ଗ)

ଗୃହବିବାଦରୁ ମିତ୍ର ଓ ସାମନ୍ତ ରାଜାମାନେ ଦିଲ୍ଲୀରେ ଉପସ୍ଥିତ ହୋଇଯିବା ପରେ ପୃଥ୍ୱୀରାଜ ସଂଯୁକ୍ତାଙ୍କ ସହ ହସ୍ତିନାନଗରୀରୁ ବହିର୍ଗତ ହେଲେ । ଏବଂ ସେ ବନ୍ଧୁମାନଙ୍କ ସହ ଯୁଦ୍ଧର ମନ୍ତ୍ରଣା କଲେ । ଏହି ସମୟରେ କେତେଜଣ ରାଜା ଯବନ ସହିତ ସନ୍ଧି କରିବା ଶ୍ରେୟ ବୋଲି ମତବ୍ୟକ୍ତ କଲେ । ଏଥିରେ ପୃଥ୍ୱୀରାଜ

ଅତ୍ୟନ୍ତ ଦୁଃଖିତ ହେଲେ । ପୃଥ୍ୱିଙ୍କ ପ୍ରଧାନ ପରାମର୍ଶଦାତା ଆର୍ଯ୍ୟମଣି ଅମର୍ଷୀ ବ୍ୟଥିତ ହୋଇ ସନ୍ଧିପକ୍ଷପାତୀ ରାଜାମାନଙ୍କୁ ଏକ ଉତ୍ତେଜନା-ମୟୀ ଉଦବୋଧନ ଦେଲେ । ଏହା ପରେ ସମସ୍ତେ ଦମ୍ଭରେ ଗର୍ଜି ହୁଙ୍କାର କରି ଧ୍ୱନିକଲେ "ଜୟ ପୃଥ୍ୱିରାଜ", ସମସ୍ତେ ଏକ ମେଳରେ ବୀର ଅମର୍ଷୀଙ୍କୁ ସେନାପତି ପଦରେ ବରଣ କରିବାକୁ କହିବାରୁ ପୃଥ୍ୱି ତାଙ୍କୁ ସେହି ପଦରେ ଅଭିଷିକ୍ତ କଲେ । ସଂଯୁକ୍ତା ଆରାଧନା ବିଧିସାରି ପତିଙ୍କୁ ମେଲାଣି ଦେଇ ବାହୁଡ଼ିଲେ । ରଣକ୍ଷେତ୍ର ସାକ୍ଷୀ ହୋଇ ସମରବାହିନୀ ଚାଲିଲା ।

ଯବନବାହିନୀ ସହିତ ଜୟଚନ୍ଦ୍ରଙ୍କ ବାହିନୀ ଯୁକ୍ତ ହେଲା । ଯବନବାହିନୀ ଓ ପୃଥ୍ୱୀରାଜଙ୍କ ବାହିନୀ ଚକ୍ଷୁରକ୍ଷ ହେବାରୁ ଉଭୟ ପକ୍ଷର ସୈନ୍ୟମାନେ ଭୈରବୀ ରଡ଼ ଘୋର କୋଳାହଳ ସୃଷ୍ଟିକଲେ । ଭୀଷଣ ଯୁଦ୍ଧହେଲା । ' ରକ୍ତଧାର କର୍ଦ୍ଦମାକ୍ତ କଲା ବସୁନ୍ଧରା ।" ବହୁ ଲୋକ ହତାହତ ହେଲେ । ବହୁରାଜା ମଧ୍ୟ ମୃତାହତ ହେଲେ । ଏ ଯୁଦ୍ଧରେ ଉତ୍ତରାଜ ଯଯାତି ଆର୍ଯ୍ୟପକ୍ଷୀୟ ହୋଇ ଯୁଦ୍ଧ କରୁଥିଲେ । ଅମର୍ଷୀ ଅମିତ ତେଜରେ ଯୁଦ୍ଧ କରି ଯବନ ପକ୍ଷର ବହୁ ଯୋଦ୍ଧାଙ୍କୁ ହତ୍ୟାକଲେ । ପୃଥ୍ୱୀରାଜ ମଧ୍ୟ ମହାବିକ୍ରମରେ ଯୁଦ୍ଧ କଲେ ।

ଆର୍ଯ୍ୟପକ୍ଷର ଆକ୍ରମଣରେ ଯବନବାହିନୀର ବହୁ କ୍ଷତି ହେବାରୁ ଯବନାଧିପତି ସନ୍ଧି ପାଇଁ ପ୍ରସ୍ତାବ ଦେଲେ । ଯବନରାଜାଙ୍କର ସନ୍ଧିପ୍ରସ୍ତାବ ପତ୍ରିକା ଓ ହସ୍ତରେ ଶାନ୍ତିଚିହ୍ନ ଶୁକ୍ଳ ପତାକା ଧରି ଦୂତ ପୃଥ୍ୱୀରାଜାଙ୍କ ନିକଟରେ ଉପସ୍ଥିତ ହେଲା । ଦୂତ ପୃଥ୍ୱିଙ୍କ "ଆଜ୍ଞା ଘେନି ବାହୁଡ଼ିଲା ଖରେ ।"

ଏହାପରେ ଅଗ୍ନିଙ୍କ ଇଚ୍ଛାମତେ ପଲକେ ଏ ଦୃଶ୍ୟ ଅନ୍ତର୍ହିତ ହେଲା । (ସପ୍ତମ ସର୍ଗ)

**ଆଲୋଚନା**—ରାଧାନାଥ 'ମହାଯାତ୍ରା'ର ଆରମ୍ଭରେ ଉତ୍କଳର ପ୍ରସିଦ୍ଧ ଶାରଳା ଠାକୁରାଣୀଙ୍କୁ "ପଙ୍କଜବାସିନୀ, ଦେବୀ ଉତ୍କଳ ଭାରତୀ ସାରଳେ," ବୋଲି ସମ୍ବୋଧନ କରିଛନ୍ତି ଏବଂ ଯୁଧିଷ୍ଠିର-ଅଗ୍ନି ପ୍ରସଙ୍ଗ "କୃପାବନ୍ଧ" କହିବାକୁ ଅନୁରୋଧ କରିଛନ୍ତି । କବିଙ୍କ ଉତ୍କଳ ପ୍ରୀତି ଏଥିରୁ ସ୍ପଷ୍ଟ ହେଉଛି । ଉତ୍କଳର ପ୍ରାଚୀନ ବିଖ୍ୟାତ କବିମାନେ କେହି ବା ସାରଳାଙ୍କୁ, କେହି ବା ଜଗନ୍ନାଥଙ୍କୁ ନମସ୍କାର କରି ଗ୍ରନ୍ଥ ରଚନା ଆରମ୍ଭ କରିଛନ୍ତି; ସ୍ୱଦେଶ ପ୍ରତି ସେମାନଙ୍କର ପ୍ରେମ ଏଥିରୁ ସୂଚିତ ହେଉଛି । ଧର୍ମ-ସମ୍ପ୍ରଦାୟ-ଭୁକ୍ତ କବିମାନେ ସ୍ୱ ସ୍ୱ ଇଷ୍ଟ ଦେବଙ୍କୁ ବା ଗୁରୁଙ୍କୁ ସ୍ତୁତି କରିଛନ୍ତି । ରାଧାନାଥ କୌଣସି ସମ୍ପ୍ରଦାୟ-ଭୁକ୍ତ ନଥିଲେ । ଗ୍ରନ୍ଥ ରଚନାରେ ବିଦ୍ୟାର ଦେବୀ ଶାରଳାଙ୍କୁ ପ୍ରଥମେ ସମ୍ବୋଧନ କରି ତାଙ୍କର କୃପା ପ୍ରାର୍ଥନା କରିବା ସ୍ୱାଭାବିକ ହୋଇଛି । କବି ସାରଳା (ଶାରଳା)ଙ୍କୁ ନମସ୍କାର କରିବାର ସୂଚନା ସ୍ପଷ୍ଟ ନଥିଲେ ମଧ୍ୟ "କୃପା ବହି" ପଦରେ ପ୍ରାର୍ଥନାର ଭାବ ଅଛି । ଯୁରୋପୀୟ ପ୍ରଭାବ ଏହାର କାରଣ ହେବା ସମ୍ଭବ । ୟୁରୋପୀୟ ପ୍ରାଚୀନ ମହାକବି ମିଲ୍‌ଟନ ସ୍ୱ ମହାକାବ୍ୟ "ପାରାଡାଇସ୍ ଲଷ୍ଟ"ରେ Sing heavenly Muse" ବୋଲି ସରସ୍ୱତୀଙ୍କୁ ଅନୁରୋଧ କରିଛନ୍ତି । ଦେବୀଙ୍କ ମାହାତ୍ମ୍ୟ ଓ ସ୍ତୁତିର ବିସ୍ତୃତ ବର୍ଣ୍ଣନା ନାହିଁ । ୟୁରୋପୀୟ ସଂସ୍କୃତି ପକ୍ଷେ ଏହା ଯଥେଷ୍ଟ ହେଲେ ମଧ୍ୟ ବହୁଦେବଦେବୀ ଅଧ୍ୟୁଷିତ ଭାରତରେ ଏହା ଏକ ନୂତନ ମାର୍ଗ ପ୍ରାୟ ପ୍ରତୀୟମାନ ହେବ । ବଙ୍ଗୀୟ ମହାକବି ଖ୍ରୀଷ୍ଟଧର୍ମାବଲମ୍ବୀ ମାଇକେଲ୍ ମଧୁସୂଦନ ଦତ୍ତ ମଧ୍ୟ ସ୍ୱ ମହାକାବ୍ୟ "ମେଘନାଦବଧ"ର ପ୍ରାରମ୍ଭରେ ଲେଖିଛନ୍ତି ।

"ସମ୍ମୁଖ ସମରେ ପଡ଼ି ବୀରଚୂଡ଼ାମଣି
ବୀରବାହୁ ଚଲି ଯେବେ ଗେଲା ଯମପୁରେ

ଅକାଳେ, କହ ହେ ଦେବୀ, ଅମୃତ ଭାଷିଣି,
କୋନ ବୀରବରେ ବରି ସେନାପତି ପଦେ × ×"

ବଙ୍ଗର ଅନ୍ୟ ମହାକବି "ବୃତ୍ରସଂହାର"ରେ ଏହିପରି ସଂକ୍ଷେପରେ ଦେବୀଙ୍କୁ ଅନୁରୋଧ କରିଛନ୍ତି—

"କହ, ମାତ, ଶ୍ୱେତଭୁଜେ, ସ୍ୱପ୍ନ ନନ୍ଦିନୀ
କି ହଇଲ ଅତଃପର ବୈଜୟନ୍ତ ଧାମେ ? "ଇତ୍ୟାଦି"

ରାଧାନାଥ ବସ୍ତୁନିର୍ଦ୍ଦେଶଟି ଦେବୀ-ଅନୁରୋଧ ଭିତରେ ଏକ ସ୍ଥାନରେ ଦେଇଛନ୍ତି; ଏଥିରେ ଅସଙ୍ଗତି କିଛି ନାହିଁ ।

ନମସ୍କ୍ରିୟା ଓ ବସ୍ତୁ ନିର୍ଦ୍ଦେଶରେ ରାଧାନାଥ ମିଲ୍‌ଟନ୍, ମାଇକେଲ୍ ଓ ହେମଚନ୍ଦ୍ରଙ୍କ ଅନୁରୂପ ମାର୍ଗ ଅନୁସରଣ କରିଛନ୍ତି । ନବ୍ୟରୁଚିସମ୍ମତ ହେବା ଆଶାରେ କବି ଏପରି କରିଛନ୍ତି ବୋଲି ମନେ ହୁଏ ।

ରାଧାନାଥ ସଂସ୍କୃତ ମହାଭାରତର ମହାପ୍ରସ୍ଥାନିକ ପର୍ବାନ୍ତର୍ଗତ ପାଣ୍ଡବଙ୍କ ସ୍ୱର୍ଗାରୋହଣ ବିଷୟକୁ ସ୍ଥୂଳ ଭାବରେ ଗ୍ରହଣ କରିଛନ୍ତି ଏବଂ ନିଜ ଧୀଶକ୍ତି ବଳରେ ନୂତନ ରୂପ ଦାନ କରିଛନ୍ତି । ଯଦୁବଂଶର ଧ୍ୱଂସ ଓ ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ପ୍ରସଙ୍ଗ ଅର୍ଜ୍ଜୁନ ଦ୍ୱାରକାରୁ ଫେରିବା ପରେ ତାଙ୍କଠାରୁ ଯୁଧିଷ୍ଠିର ଶୁଣିଲେ । ଏହା ବ୍ୟାସଙ୍କ ମହାଭାରତରେ ଅଛି । କବି ଏହାକୁ ଗ୍ରହଣ କରିଛନ୍ତି । ଅର୍ଜ୍ଜୁନଙ୍କ ମୁଖରେ ଏହି ପ୍ରସଙ୍ଗର ବିସ୍ତୃତ ବର୍ଣ୍ଣନା ମହାଭାରତରେ ଥିଲେ ମଧ୍ୟ ରାଧାନାଥ ସ୍ୱ କାବ୍ୟରୂପ-କଳ୍ପନ ର ଅନୁକୂଳ ପନ୍ଥା ଅବଲମ୍ବନ କରି ଅତି ସଂକ୍ଷେପରେ ତାହାର ସୂଚନାମାତ୍ର ଦେଇଛନ୍ତି । ମହାପ୍ରସ୍ଥାନର ପ୍ରସ୍ତାବଠାରୁ ଆରମ୍ଭ କରି ଯାତ୍ରା ଆରମ୍ଭ ପର୍ଯ୍ୟନ୍ତ କବି ମୂଳଗ୍ରନ୍ଥକୁ ଆଶ୍ରୟ କରିଛନ୍ତି, କିନ୍ତୁ ଭ୍ରମଣାଦି ବୃତ୍ତାନ୍ତ ମୂଳ ମହାଭାରତର ଅନୁରୂପ ନୁହେଁ ।

ପାଣ୍ଡବମାନେ ଯତିବେଶ ଧାରଣ କରି ତୀର୍ଥାଟନରେ ବାହାରିଲେ । ହସ୍ତିନାରୁ ମଥୁରା, ପ୍ରୟାଗ, ବାରଣସୀ, ସାକେତପୁରୀ ଅଯୋଧ୍ୟା, ନୈମିଷାରଣ୍ୟ, ଗୟା, ରାଜଗିରି (ରାଜଗିର),କାଳୀଘାଟ (କଲିକତା), ପ୍ରାଗ୍‌ଜ୍ୟୋତିଷପୁର (କାମାଖ୍ୟା, ଆସାମ), ତାମ୍ରଲିପ୍ତି (ତମଲୁକ), ଏବଂ ଅଙ୍ଗ,ବଙ୍ଗ ମଗଧ ବିଦେହ ପ୍ରଭୃତିଅଞ୍ଚଳର ନାନା ତୀର୍ଥ ଭ୍ରମଣ କରି ଉତ୍କଳର ନୀଳାଚଳ କ୍ଷେତ୍ରରେ ପହଞ୍ଚିଲେ । ସାରଳାଦାସ ବ୍ୟାସଦେବଙ୍କ ମହାଭାରତ କିମ୍ବା ପଦ୍ମପୁରାଣାଦି ଅନ୍ୟ କୌଣସି ପୁରାଣଗ୍ରନ୍ଥକୁ ଅବଲମ୍ବନ କରି ତୀର୍ଥ ନିର୍ଘଣ୍ଟ ନିର୍ଣ୍ଣୟ କରି-ନାହାନ୍ତି । ସ୍ୱ କଳ୍ପନା ବଳରେ ଭୌଗୋଳିକ ସଂଗତି ରକ୍ଷା କରି ତୀର୍ଥାଟନର ମାର୍ଗ ନିର୍ଣ୍ଣୟ କରିଛନ୍ତି । ଉତ୍କଳର ନୀଳଗିରି ( ପୁରୀ କ୍ଷେତ୍ର)ର ମାହାତ୍ମ୍ୟ ଓ ଉତ୍କଳର ବିଭିନ୍ନ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରିବା ପାଇଁ ସୁଯୋଗପ୍ରାପ୍ତି ଆଶାରେ ସେ ଏପରି ମାର୍ଗନିର୍ଣ୍ଣୟ କରିଛନ୍ତି । ପୁରାଣମାନଙ୍କରେ ମଧ୍ୟ ମାର୍ଗରେଖା ସମାନ ଦେଖାଯାଏ ନାହିଁ । କବି ଏ ସଂଗତିକୁ ରକ୍ଷା ନକରି କିଛି ଅସଙ୍ଗତ କାର୍ଯ୍ୟ କରି-ନାହାନ୍ତି,ବରଂ କବିତ୍ୱଶକ୍ତିର ପ୍ରକାଶ ଓ ଲକ୍ଷ୍ୟସାଧନ ଦିଗରେଏହା ବିଶେଷ ସାହାଯ୍ୟ କରିବ ଏହି କାମନାରେ ଏପରି କରିଥିବାରୁ ତାଙ୍କର ଗଭୀର କଳ୍ପନା ଓ ବୁଦ୍ଧିମତ୍ତାର ପରିଚୟ ମିଳୁଛି ।

ଅଗ୍ନିଙ୍କ ସହିତ ପାଣ୍ଡବମାନଙ୍କ ନୀଳାଚଳରେ ଭେଟ ହୋଇଥିବା ମହାଭାରତ କିମ୍ବା ଅନ୍ୟ ପୁରାଣମାନଙ୍କରେ ନାହିଁ । କବି ନୀଳାଚଳର ମାହାତ୍ମ୍ୟ ଓ ଉତ୍କଳରେ ବିଷ୍ଣୁଙ୍କ ଗୃହ ଆୟୁଧର ଅବସ୍ଥିତି ଯୋଗୁଁ ଏହି ପ୍ରଧାନ କ୍ଷେତ୍ରର ପ୍ରାଧାନ୍ୟ ପ୍ରକଟନ କରିବା ଉଦ୍ଦେଶ୍ୟରେ କବି ଅଗ୍ନିଙ୍କୁ ନୀଳାଚଳ-ମହୋଦଧି ଗର୍ଭରୁ ଆବିର୍ଭାବ କରାଇଛନ୍ତି । ପୂର୍ବେ ଖାଣ୍ଡବବନ ଦହନ କାଳରେ ଅଗ୍ନି ବରୁଣଙ୍କଠାରୁ ଗାଣ୍ଡିବଧନୁ ଓ ଅକ୍ଷୟ ତୂଣୀର ଆଣି ଅର୍ଜୁନଙ୍କୁ

ଦେଇଥିଲେ । କୁରୁକ୍ଷେତ୍ର ଯୁଦ୍ଧ ଶେଷ ପରେ ମହାପ୍ରସ୍ଥାନ ମାର୍ଗରେ ଅର୍ଜ୍ଜୁନଙ୍କଠାରୁ ଏ ଅସ୍ତ୍ର ନେଇ ବରୁଣଙ୍କ ହସ୍ତରେ ସମର୍ପଣ କରିଦେବା ପ୍ରସଙ୍ଗ ମହାଭାରତରେ ବର୍ଣ୍ଣିତ ଅଛି ଏବଂ ଏହା ଲୋହିତ୍ୟା ନିକଟରେ ସଂଘଟିତ ହୋଇଥିବା କଥିତ ଅଛି । ଅଗ୍ନିଙ୍କୁ ଅର୍ଜ୍ଜୁନ ଧନୁ ଓ ତୂଣ ଅର୍ପଣ କରିଥିଲେ ଏବଂ ଅଗ୍ନି ଲୋହିତ୍ୟା (ପୂର୍ବଭାରତ) ନିକଟସ୍ଥ ମହୋଦଧିରେ ଏହାକୁ ନିକ୍ଷେପ କରି ଦେଇଥିଲେ । ରାଧାନାଥ ଅଗ୍ନି ନୀଳାଚଳର ସମୁଦ୍ରକୂଳରେ ପାଣ୍ଡବମାନଙ୍କୁ ଭେଟିଥିବା ଲେଖିଛନ୍ତି । ଲକ୍ଷ୍ୟ ଏକ ହେଲେ ମଧ୍ୟ ଉତ୍କଳର ମାହାତ୍ମ୍ୟ କୀର୍ତ୍ତନ ଉଦ୍ଦେଶ୍ୟରଖି କବି ରାଧାନାଥ ଏ ବ୍ୟତିକ୍ରମ କରିଛନ୍ତି ଏବଂ ଏହାଦ୍ୱାରା କବିଙ୍କର ଶୈଳୀ ଦୋଷଯୁକ୍ତ ହୋଇନାହିଁ ।

"ଆଦମ ଡାମଫେର୍ଡ଼"ରୁ ଚନ୍ଦ୍ରଙ୍କ ଆବିର୍ଭାବ ସ୍କନ୍ଦପୁରାଣରେ ଥିବା ଜଣାଯାଏ । ଏ ପ୍ରସଙ୍ଗରେ ମିଲ୍‌ଟନ୍‌ଙ୍କ କେଅସ୍ (chaos) ବା 'ପ୍ରଳୟ'ର ବର୍ଣ୍ଣନା ଉଲ୍ଲେଖଯୋଗ୍ୟ । ଏମାନଙ୍କ ଭିତରେ ସାମ୍ୟର ଆଭାସ ଥିଲେ ମଧ୍ୟ ଉଭୟର ଐଶ୍ୱର୍ଯ୍ୟ ଓ ବର୍ଣ୍ଣନା ସୌନ୍ଦର୍ଯ୍ୟରେ ବହୁ ପ୍ରଭେଦ ଦେଖାଯାଏ । ଏହି ପ୍ରସଙ୍ଗରେ ରାଧାନାଥଙ୍କ ରଚନା ମନୋମୁଗ୍ଧକର ଓ କବିତ୍ୱପୂର୍ଣ୍ଣ ହୋଇଛି ।

"ଛବିଳ" ଉତ୍କଳର ପ୍ରତ୍ୟେକ ଭାଗରେ ପ୍ରକୃତିର ରମଣୀୟ ଚିତ୍ର ଥିବା ସ୍ୱରଚନାମାନଙ୍କରେ କବି ଦର୍ଶାଇ ପାରିଛନ୍ତି । ସମତଳ ଓ ମାଳ ଉଭୟ ଅଂଶ ବିଚିତ୍ର ଦୃଶ୍ୟରେ ମଣ୍ଡିତ ହୋଇଛନ୍ତି । ଭାସ୍କର୍ଯ୍ୟ-ଶିଳ୍ପ ଓ କଳା ବିଭବରେ ମଧ୍ୟ ଉଭୟ ଅଂଶ ଐଶ୍ୱର୍ଯ୍ୟବନ୍ତ । ସମତଳ ଭୂଖଣ୍ଡ ଭାସ୍କର୍ଯ୍ୟ-ଶୋଭା ଓ ମାଳଭୂଖଣ୍ଡ ପ୍ରାକୃତିକ ଶୋଭାର ଅଧିକାରୀ ହୋଇ ସମଗ୍ର ଉତ୍କଳର ଗୌରବ ବୃଦ୍ଧି କରିଛନ୍ତି । କବିଙ୍କ ମାଳଗିରି, ସମୁଦ୍ର ପ୍ରଭୃତିର ବର୍ଣ୍ଣନା ସହିତ ମାଳଭୂମିର ନଦୀ, ପର୍ବତ, ଦ୍ରୋଣୀ ପ୍ରଭୃତିର ବର୍ଣ୍ଣନାର ସହଯୋଗ

କରି କବି ଛବିଳ ଉଜ୍ଜଳରେ ସୁନ୍ଦର ରୂପଟିଏ ଦାନ କରିଛନ୍ତି । କଥାବସ୍ତୁର ଅବକାଶ ପ୍ରତି ଲକ୍ଷ୍ୟ ରଖି ପ୍ରକୃତିଚିତ୍ରଣ କରିଥିବାରୁ ଏହି ବର୍ଣ୍ଣନାଗୁଡ଼ିକ ଅଯଥା ଦୀର୍ଘ ହୋଇଥିଲେ ମଧ୍ୟ ମୂଳ ପ୍ରସଙ୍ଗର ଆକର୍ଷଣଶକ୍ତିକୁ ନଷ୍ଟ କରିପାରି ନାହିଁ । ପ୍ରକୃତି-ସୌନ୍ଦର୍ଯ୍ୟ-ଉପାସକ କବିଙ୍କର ଚରିତ୍ରବର୍ଣ୍ଣନା କର୍ତ୍ତବ୍ୟ ତାଙ୍କୁ ସଂଯମ କରିଦେଇଛି ।

ସହ୍ୟଗିରିଶିଖର ଉପରେ ଅଗ୍ନି ଯୁଧିଷ୍ଠିରଙ୍କୁ ଯେଉଁ ଦିବ୍ୟାଞ୍ଜନ ପ୍ରଦାନ କଲେ ତାହା ଭାରତର ପୁରାଣମାନଙ୍କରେ ନୂତନ ନୁହେଁ । ବ୍ୟାସଦେବ ସଞ୍ଜୟଙ୍କୁ କୁରୁକ୍ଷେତ୍ରଯୁଦ୍ଧ ଦେଖିବା ପାଇଁ ଦିବ୍ୟଦୃଷ୍ଟି ଦାନ କରିଥିଲେ ଏବଂ ଏହା ବଳରେ ସଞ୍ଜୟ ଅନ୍ଧଧୃତରାଷ୍ଟ୍ରଙ୍କୁ ଯୁଦ୍ଧ-ଘଟନା-ପ୍ରବାହର ବିବରଣୀ ପ୍ରଦାନ କରିପାରିଥିଲେ । ଏ କ୍ଷେତ୍ରରେ ଅଗ୍ନିଙ୍କ ଦିବ୍ୟାଞ୍ଜନର ବିଶେଷ କ୍ଷମତା ଥିବା ଅନୁମିତ ହୁଏ; ଏଠାରେ ଯାହା ଘଟିବ ତାହା ମଧ୍ୟ ଚିତ୍ରପଟରେ ଦୃଶ୍ୟ ପରି ଦେଖାଗଲା । ଦୈବୀ ଶକ୍ତିର ପ୍ରଭାବ ବଳରେ ଏପରି ବିଚିତ୍ର ଘଟନା ସମ୍ଭବ ହୋଇଛି ଏବଂ ଏଥିଯୋଗୁଁ କବି ସ୍ୱ ଭାବନାଚୟକୁ ରୂପ ଦେବାରେ ସୁବିଧା ଓ ସୁଯୋଗ ପାଇଛନ୍ତି । କବି ଲୋକନାଥ ବିଦ୍ୟାଧର ବା ଚଉତିଶାରେ ତ୍ରିକାଳଦର୍ଶୀ ସହଦେବଙ୍କ ମୁଖରେ କଳିର ପ୍ରଭାବ ବର୍ଣ୍ଣନା କରାଇ ଯୁଧିଷ୍ଠିରଙ୍କୁ ଶୁଣାଇ ଅଛନ୍ତି; ଯୁଧିଷ୍ଠିର ଏହା ଶ୍ରବଣ କରି ଅତ୍ୟନ୍ତ ଦୁଃଖିତ ହୋଇ ସ୍ୱର୍ଗାରୋହଣ କରିବା ସଂକଳ୍ପ କରିଛନ୍ତି । ଲୋକନାଥ ଓ ଅଚ୍ୟୁତାନନ୍ଦାଦି କବିମାନେ ସମାଜର ସାମୂହିକ ଚିତ୍ର ପ୍ରଦାନ କରିଛନ୍ତି । କିନ୍ତୁ ରାଧାନାଥ ଏ କ୍ଷେତ୍ରରେ ସୁଗୁଣ ଦୁର୍ଗୁଣମାନଙ୍କୁ ପ୍ରାଣବନ୍ତ ରୂପ ଦାନ କରି ସେମାନଙ୍କ ଅବସ୍ଥା ଓ ପ୍ରଭାବ ବର୍ଣ୍ଣନା କରିଛନ୍ତି । ବିଶେଷ ଭାବରେ ବ୍ରାହ୍ମଣ ଓ କ୍ଷତ୍ରିୟ ଜାତିର ଶୋଚମୀୟ କାର୍ଯ୍ୟକଳାପକୁ ସେ ଆର୍ଯ୍ୟଜାତିର ପତନ ପାଇଁ ଦାୟୀ କରିଛନ୍ତି । ଅବଶ୍ୟ ଏସବୁ କଳି ପ୍ରସଙ୍ଗରେ ବର୍ଣ୍ଣିତ ହୋଇଛି ।

କଳିର ଆଗମନ କାଳ ଦ୍ୱାପରଯୁଗର ଶେଷ ରାତି । ପ୍ରଭାତ ପୂର୍ବରୁ ଆଉ ଏକ ଯାମ ମାତ୍ର ରାତ୍ର ଥିବାରୁ ଋଷି ଦିବ୍ୟାଞ୍ଜନ ଦେଇ ଯୁଧିଷ୍ଠିରଙ୍କୁ କଳିର ଭବିଷ୍ୟତ କାର୍ଯ୍ୟକଳାପର ଦୃଶ୍ୟ ଦେଖିବାକୁ ସୁଯୋଗ ଦେଇଛନ୍ତି । କଳି ଆଗମନର ପୂର୍ବ ସୂଚନା ସ୍ୱରୂପ ଦେଶରେ ବହୁ ଅଶୁଭ ସକୁନ ଦେଖା ଯାଇଥିବା ବ୍ୟାସାଦି ସଂସ୍କୃତ ପୁରାଣକାରମାନେ, ଶାରଳାଦାସାଦି ଓଡ଼ିଆ କବିମାନେ ବର୍ଣ୍ଣନା କରିଛନ୍ତି । କିନ୍ତୁ ରାଧାନାଥ ଏ ପ୍ରସଙ୍ଗକୁ ତ୍ୟାଗ କରି ଥିବାରୁ କଳି-ପ୍ରଭାବର ସମ୍ପୂର୍ଣ୍ଣ ଚିତ୍ର ହୃଦୟଙ୍ଗମ କରି ହେଉନାହିଁ । କଳି ଆଗମନର ସୂଚନା, ତାହାର ଆଗମନ ଓ କୁପ୍ରଭାବର ବର୍ଣ୍ଣନା କେବଳ ସମାଜର ସମ୍ପୂର୍ଣ୍ଣ ଚିତ୍ର ଦେବାରେ କ୍ଷମ ହୋଇ-ପାରେ । ସଂସ୍କୃତ ମହାଭାରତରେ ଅଛି, କଳିର ପ୍ରଭାବ କଳି ଆଗମନ ପୂର୍ବରୁ କୁରୁ, ପାଣ୍ଡବଙ୍କ ମଧ୍ୟରେ ଓ ଯଦୁବଂଶରେ ଦେଖାଦେଇ ସାରିଥିଲା ।

ନୈଷଧ କାବ୍ୟରେ ଥିବା କଳିର ରମଣୀୟ ଚିତ୍ର ଓ ମିଲ୍‌ଟନ୍‌ଙ୍କ କାବ୍ୟରେ ଥିବା ଅନୁରୂପ ପ୍ରସଙ୍ଗର ବର୍ଣ୍ଣନାଶୈଳୀ କବିଙ୍କୁ ପ୍ରଲୋଭିତ କରିଥିବା ସମ୍ଭବ ।

ରାଧାନାଥଙ୍କ ଦେବସଭା ଚିତ୍ରିତ ପୁରାଣବର୍ଣ୍ଣିତ ଦେବସଭାଠାରୁ କେତେକାଂଶରେ ଭିନ୍ନ ଥିବା ଦେଖାଯାଏ । ସ୍ୱର୍ଗ ଦେବସଭାର ସ୍ଥାନ ଥିବା ଧାରଣାକୁ ରାଧାନାଥ ଗ୍ରହଣ କରିଥିଲେ ମଧ୍ୟ ଦେବସଭାରେ ଦେବତାମାନଙ୍କୁ ଏକ ଏକ ସଦ୍‌ଗୁଣର ମୂର୍ତ୍ତିରୂପେ କଳ୍ପନା କରିଛନ୍ତି ଏବଂ ସର୍ବଶ୍ରେଷ୍ଠ ସଦ୍‌ଗୁଣ ବା ଦେବଗୁଣ "ଧର୍ମ"କୁ ଧର୍ମରାଜ ରୂପ ଦେଇ ସଭାର ଅଧିକାରୀ କରିଛନ୍ତି । ଯୁଧିଷ୍ଠିର ମଧ୍ୟ ଧର୍ମରାଜ ନାମରେ ପରିଚିତ ହେଉଥିବାରୁ ଏହି ନାମରେ କବି ଗୁରୁତ୍ୱ ଦେଇଥିବା ଅନୁମିତ ହୁଏ । ସଦ୍‌ଗୁଣ

ଦେବମାନେ କଳି ପ୍ରଭାବରେ ବିସ୍ମୃତ ଓ ବିପର୍ଯ୍ୟସ୍ତ ହେବା ଅବଶ୍ୟମ୍ଭାବୀ ଜାଣି କିଏ କେଉଁଠାରେ ଆଶ୍ରୟ ନେବେ ବା ଲୁଚି ରହିବେ ଏହାର ଚିନ୍ତା ବା ମନ୍ତ୍ରଣା କରୁଥିବା ପ୍ରସଙ୍ଗରୁ କଳିର ସର୍ବଗ୍ରାସୀ ଶକ୍ତିର ପରିଚୟ କବି ଦେଇଛନ୍ତି ।

କଳି ପ୍ରଭାବରେ ଆର୍ଯ୍ୟ ସମାଜର ଅଧଃପତନର ଚିତ୍ର ଦେବା ପ୍ରସଙ୍ଗରେ କବି ମୁଖ୍ୟତଃ ବ୍ରାହ୍ମଣ ଓ କ୍ଷତ୍ରୀୟ ଜାତିକୁ ଏହି ଅଧୋଗତି ନିମନ୍ତେ ଦାୟୀ କରିଛନ୍ତି । ଏମାନଙ୍କର ଯେଉଁ ଚିତ୍ର କବି ପ୍ରଦାନ କରିଛନ୍ତି ତାହା ସମସାମୟିକ ସମାଜରେ ଦୃଷ୍ଟ ହେଉଥିଲା । କବି ବ୍ୟଥିତ ମନରେ ଏହା ଚିତ୍ରଣ କରିଛନ୍ତି ସିନା, କୌଣସି ସମାଜର ମନରେ ଆଘାତ ଦେବା ପାଇଁ କରିନାହାନ୍ତି ।

ଆର୍ଯ୍ୟଜାତି ଭିତରେ ପ୍ରକଟିତ ହୋଇଥିବା ଅନୈକ୍ୟ ଜାତିକୁ ଧ୍ୱଂସ ମୁଖରେ ପକାଇ ଦେଇଥିଲା । ଯୁଧିଷ୍ଠିର ଏ ଅବନତିର ଚିତ୍ର ଦେଖି ବ୍ୟଥିତ ହୋଇ "ସାମ୍ୟ ଐକ୍ୟମନ୍ତ୍ରେ ଜୀବନ୍ୟାସ ଦେଇ କରିବାକୁ କେହି କି ହେ ହୋଇବେ ପ୍ରୟାସୀ ?" ବୋଲି ଅଗ୍ନିଙ୍କୁ ପ୍ରଶ୍ନ କରିବାରୁ ଅଗ୍ନି ବୁଦ୍ଧଦେବଙ୍କ ଆବିର୍ଭାବର ପ୍ରସଙ୍ଗ ବର୍ଣ୍ଣନା କଲେ । ବୌଦ୍ଧଧର୍ମର ଉତ୍କର୍ଷ ପ୍ରତିପାଦନ କରିଥିବାରୁ କବିଙ୍କୁ ବ୍ରାହ୍ମଣ୍ୟଧର୍ମର ବିରୋଧୀ ବୋଲି କହିବା ମଧ୍ୟ ଠିକ୍ ହେବ ନାହିଁ; କାରଣ କବିଙ୍କ ବିଶ୍ଳେଷଣ ସ୍ୱଜାତିର ଆତ୍ମପରୀକ୍ଷା ଛଡ଼ା ଅନ୍ୟ କିଛି ନୁହେଁ । ବ୍ରାହ୍ମଣ ଜାତିର ଧର୍ମବଳ ସହିତ କ୍ଷତ୍ରିୟମାନଙ୍କ ବାହୁବଳ ମିଳିତ ହୋଇ ପ୍ରାଚୀନ ଆର୍ଯ୍ୟଗୌରବକୁ ବୃଦ୍ଧି କରିଥିଲା । କ୍ଷତ୍ରିୟ ଜାତି ମଧ୍ୟରେ ଅଗ୍ନିକୁଳ କ୍ଷତ୍ରିୟମାନଙ୍କ ଯଶ ଇତିହାସ ସ୍ୱୀକାର କରୁଛି, କବି ଏହାକୁ ବ୍ୟକ୍ତ କରି ପକ୍ଷପାତିତ୍ୱ ଦେଖାଇ ନାହାନ୍ତି । ରାଜାମାନଙ୍କ ଭିତରେ ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ବାମଣ୍ଡାର ରାଜା ସୁଢ଼ଳଦେବ ଓ ତାଙ୍କ ପୁତ୍ର ସଚ୍ଚିଦାନନ୍ଦ ଦେବଙ୍କ ବିଶେଷ

ଉଲ୍ଲେଖର ଆବଶ୍ୟକତା ଦେଖାଯାଉ ନାହିଁ; ଏ ଦୁଇ ପ୍ରସଙ୍ଗକୁ ସ୍ଥାନ ଦେଇ ନଥିଲେ କାବ୍ୟର ସଙ୍ଗଠନରେ କୌଣସି ବ୍ୟାଘାତ ଘଟି ନଥାଆନ୍ତା । ପୁଣି, ଏହି ପ୍ରସଙ୍ଗ ଦ୍ୱାରା କାବ୍ୟସଙ୍ଗଠନର ଶୋଭା କିମ୍ବା ଗାମ୍ଭୀର୍ଯ୍ୟ ମଧ୍ୟ ବୃଦ୍ଧି ପାଇନାହିଁ । କେବଳ ନିଜ ଉପକାରୀ ପ୍ରତି କୃତଜ୍ଞତା ଜ୍ଞାପନର ସୁଯୋଗ କବି ଏଠାରେ ନେଇଛନ୍ତି ଏବଂ ଏହାଦ୍ୱାରା କାବ୍ୟର ଗୌରବ କିଛି ଅଂଶରେ ନ୍ୟୁନ ହୋଇଯାଇଛି । ଅବଶ୍ୟ, ଏହି ପାତ୍ରମାନେ ଓଡ଼ିଶାର ଯୋଗ୍ୟସନ୍ତାନ, ଦେଶହିତୈଷୀ, ପ୍ରଶଂସାର୍ହ ଓ ଯୋଗ୍ୟ ବ୍ୟକ୍ତି ହେଲେ ମଧ୍ୟ ଏମାନଙ୍କ କାର୍ଯ୍ୟକଳାପ ସବୁ ଦିଗରେ "କଳଙ୍କରହିତ" ବୋଲି କୁହାଯାଇ ପାରିବ କି ନାହିଁ ସନ୍ଦେହ । ଏହି ପ୍ରସଙ୍ଗ ଉଲ୍ଲେଖ କରି କବି କାବ୍ୟଟିକୁ ଅଯଥା ଭାରାକ୍ରାନ୍ତ କରିଛନ୍ତି ଏବଂ ଚାଟୁକାର-ଦୋଷରେ ଦୋଷୀ ବୋଲି ସମାଲୋଚିତ ହେବାପାଇଁ ମଧ୍ୟ ଅବକାଶ ଦେଇଛନ୍ତି ।

ଖ୍ରୀ ୧୧୯୧ର ତରୈରୀଯୁଦ୍ଧର ପ୍ରସଙ୍ଗ ବର୍ଣ୍ଣନାରେ କବି ଇତିହାସସମର୍ଥିତ ପାତ୍ରପାତ୍ରୀଙ୍କୁ ଆବିର୍ଭାବ କରାଇଛନ୍ତି ଏବଂ ସେମାନଙ୍କ କ୍ରିୟାକଳାପ ଇତିହାସ ସମର୍ଥିତ ଚରିତ୍ର ସଙ୍ଗେ ମେଳ ରହିଛି । ପୃଥ୍ୱୀରାଜ, ଜୟଚନ୍ଦ୍ର, ସଂଯୁକ୍ତା, ଅମର୍ଷି, ବିଦେଶୀ ଯବନରାଜ ପ୍ରଭୃତିଙ୍କ ସେ ଇତିହାସଦ୍ୱାରା ସମର୍ଥିତ । ଭାରତର ସ୍ୱାଧୀନତା ଲୋପର କାରଣସ୍ୱରୂପ କବି ଜୟଚନ୍ଦ୍ର ଓ ତାଙ୍କ ମିତ୍ର-ବର୍ଗଙ୍କ ଅସଦ୍‌ଗୁଣକୁ ଦାୟୀ କରିଛନ୍ତି । କଳି ପ୍ରଭାବରେ ସଦ୍‌ଗୁଣାଧାର ପୃଥ୍ୱୀଙ୍କୁ ଅସଦ୍‌ଗୁଣାଧାର ଜୟଚନ୍ଦ୍ର ଓ ତାଙ୍କ ଯବନସଙ୍ଗୀମାନେ ପରାସ୍ତ କରିଛନ୍ତି,—ଧର୍ମ ପରାସ୍ତ ହୋଇଛି, ଅଧର୍ମ ବିଜୟୀ ହୋଇଛି ।

ସଂଯୁକ୍ତା-ପୃଥ୍ୱୀ ପ୍ରେମ ପ୍ରସଙ୍ଗ ଅତି ଅଳ୍ପ ସ୍ଥାନ ପାଇଥିବାରୁ କବି କଥାବସ୍ତୁର କଳେବରକୁ ବିଶେଷ ଦୀର୍ଘ କରିବା ଇଚ୍ଛା କରି

ନଥିଲେ ବୋଲି ଅନୁମାନ କରିବା ପାଇଁ ଅବକାଶ ରହିପାରେ; ତେବେ, ଗଣିତ ପ୍ରସଙ୍ଗରେ ଅତି ଦୀର୍ଘ ବର୍ଣ୍ଣନା ମଧ୍ୟ ରମଣୀୟ ହୋଇ ନଥାଆନ୍ତା ।

କଳି ଆଗମନ ପ୍ରସଙ୍ଗ ଓଡ଼ିଆ ସାହିତ୍ୟରେ ଅଭିନବ ନୁହେଁ । ଶାରଳାଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ପ୍ରଭୃତିଙ୍କ କଳିର ଆଗମନ ଓ ତାର ପ୍ରଭାବର ବର୍ଣ୍ଣନା କରିଛନ୍ତି । ବନ୍ଧୁ ମାଳିକାପ୍ରଣେତା କଳିର କୁପ୍ରଭାବକୁ ମଧ୍ୟ 'ଆଗତ ଭବିଷ୍ୟ' ବାଣୀ ସ୍ୱରୂପ ପ୍ରକାଶ କରିଛନ୍ତି । ୧୭ଶ-୧୮ଶ ଶତାବ୍ଦୀର ବିଖ୍ୟାତ ପ୍ରେମକାବ୍ୟରଚୟିତା ଲୋକନାଥ ବିଦ୍ୟାଧର "ବା" ଚଉତିଶାରେ ଯୁଧିଷ୍ଠିର ସହଦେବ ସମ୍ବାଦ ଛଳରେ କଳିର ଆଗମନକାଳୀନ ଦେଶ ଓ ସମାଜର ସୁନ୍ଦର ଚିତ୍ର ପ୍ରଦାନ କରିଛନ୍ତି । ରାଧାନାଥ ବ୍ୟାପକ ଭାବରେ ଓ ନାଟକୀୟ ଛଟାରେ ଏହି ପ୍ରସଙ୍ଗକୁ ଚିତ୍ରଣ କରି ଅଧିକ ପ୍ରାଣବନ୍ତ କରିପାରିଛନ୍ତି ।

କବି ସ୍ୱ କାବ୍ୟ ସମ୍ବନ୍ଧରେ କେତେକ ମନ୍ତବ୍ୟ ପ୍ରକାଶ କରିଛନ୍ତି; ଏହା ତାଙ୍କର ସ୍ୱଭାବସୁଲଭ ବିନୟ ଓ ସରଳତାର କେବଳ ପରିଚୟ ଦେଉଛି । ଅସମ୍ପୂର୍ଣ୍ଣ ପାର୍ବତୀ ଓ ମହାଯାତ୍ରା କାବ୍ୟମାନଙ୍କୁ ସମ୍ପୂର୍ଣ୍ଣ କରିବା ସମ୍ପର୍କରେ ବହୁ ହିତାକାଙ୍କ୍ଷୀ ବନ୍ଧୁ, ଅପରିଚିତ ଲୋକ ତାଙ୍କୁ ନିନ୍ଦା ଓ ପୁଷ୍ଟିଗର୍ଭକ ପତ୍ର ଲେଖିଛନ୍ତି । କେତେକ ବନ୍ଧୁ କୃତିଗୁଡ଼ିକର ବହୁତ ପ୍ରଶଂସା କରିଛନ୍ତି । କବିବର ବନ୍ଧୁମାନଙ୍କ ପ୍ରଶଂସାରେ ଆତ୍ମହରା ହୋଇନାହାନ୍ତି । ଅସମ୍ପୂର୍ଣ୍ଣତାର କାରଣ ସ୍ୱରୂପ ସେ ନିଜେ ଯାହା ବ୍ୟକ୍ତ କରିଛନ୍ତି ତାହା ପ୍ରଣିଧାନ ଯୋଗ୍ୟ ।

ଜଣେ ବନ୍ଧୁ "ଯଯାତି କେଶରୀ" କାବ୍ୟର ପ୍ରଶଂସା କରି ଓ ପ୍ରାଚୀନ କବିମାନଙ୍କ ସହିତ ତୁଳନା କରି ତାଙ୍କଠାକୁ ଏକ ପତ୍ର

ଦେଇଥିଲେ ; ରାଧାନାଥ ତାର ଉତ୍ତରରେ ତାଙ୍କର ସ୍ୱଭାବସୁଲଭ ନମ୍ରତା ସହକାରେ ଲେଖିଥିଲେ ଯେ, ଏଭଳି ପ୍ରଶଂସାର ଯୋଗ୍ୟ ସେ ନୁହନ୍ତି ; ପ୍ରାଚୀନ ଉତ୍କଳୀୟ କବିମାନଙ୍କ ସମାନ ହେବା ଦୂରେ ଥାଉ, ସେମାନଙ୍କର ପ୍ରତିଯୋଗିତା କରିବାର ସଙ୍କଳ୍ପ ସ୍ୱପ୍ନରେ ତାଙ୍କ ମନରେ ଉଦିତ ହୋଇ ନଥିଲା ଏବଂ ସେ କେବଳ ନିଜର ବିନୋଦନ ନିମନ୍ତେ ଅବସର ମତେ ଟିକିଏ ଟିକିଏ ଲେଖୁଥିଲେ (୩୦।୧୧।୯୫ ଭଦ୍ରକରୁ ଲେଖା ଚିଠି) । ରାଧାନାଥ "ଯଯାତି କେଶରୀ" କାବ୍ୟଟିକୁ ଦୁଇମାସରେ ଲେଖିଥିଲେ କିନ୍ତୁ ତାହା ଛପା ହେବାକୁ ପ୍ରାୟ ଦୁଇବର୍ଷ ଲାଗିଥିଲା ।

ଅବକାଶ ଅଭାବରୁ ଏବଂ ସ୍ୱାସ୍ଥ୍ୟଭଙ୍ଗ ଯୋଗୁଁ ସେ "ସାହିତ୍ୟ ଚର୍ଚ୍ଚା" ବହୁଦିନ ପରିତ୍ୟାଗ କରିଥିବା ବ୍ୟକ୍ତ କରିଥିଲେ ମଧ୍ୟ ଗ୍ରନ୍ଥ ଅଧ୍ୟୟନ ତ୍ୟାଗ କରିନଥିଲେ । "ମହାଯାତ୍ରା"ର ୫ମ ସର୍ଗ ଲେଖି ସାରିବା ପରେ ଆଉ ଅବକାଶ ନମିଳିବାରୁ ଆଉ ଅଗ୍ରସର ହୋଇ ପାରି ନଥିବା ମଧ୍ୟ ସେ ବ୍ୟକ୍ତ କରିଛନ୍ତି । ( ୭।୫।୯୩ କଟକରୁ ଚିଠି )

ଏହି ଅବସର ଯୁଟିବା ସେତେ ସହଜ ନୁହେଁ । ବିଶେଷତଃ ନିଜର ଜୀବିକା ସକାଶ ପରିଶ୍ରମ କରିବାକୁ ପଡୁଥିବା ବ୍ୟକ୍ତିଙ୍କ ପକ୍ଷରେ ଅବକାଶ ବା କାହୁଁ ମିଳିବ ? ଏହି ସତ୍ୟଟିକୁ ଲକ୍ଷ୍ୟ କରି ଏହା ସହିତ କାବ୍ୟରଚନାର ସମ୍ପର୍କ ଯେ ଘନିଷ୍ଠ ଏହି କଥା ରାଧାନାଥ ବୁଝାଇଛନ୍ତି । "ମୋ ବିବେଚନାରେ ଯେଉଁମାନଙ୍କୁ ନିଜର ଜୀବିକା ସକାଶ ପରିଶ୍ରମ କରିବାକୁ ହୁଏ, ସେପରି ଲୋକଙ୍କର କାବ୍ୟରଚନାରେ ପ୍ରବୃତ୍ତ ହେବା ଉଚିତ ନୁହେଁ । କାବ୍ୟରଚନା ଅବକାଶ ଓ ନିଶ୍ଚିନ୍ତତା ସାପେକ୍ଷ । ଆମ୍ଭମାନଙ୍କ ପରି ଲୋକଙ୍କର ସେ ବିଷୟରେ ମନ ବଳାଇବା ବାତୁଳତା ମାତ୍ର । X"(ଉପରୋକ୍ତ ଚିଠି)

"ମହାଯାତ୍ରା" ପ୍ରକାଶ ପାଇବା ପରେ ବହୁ ସାହିତ୍ୟିକ ଏ ସମ୍ବନ୍ଧରେ ଆଲୋଚନା କରିଥିଲେ, କେତେ ପ୍ରଶଂସା କଲେ ତ, କେତେ ଦୋଷ ଦେଖାଇଲେ । ଜଣେ ବନ୍ଧୁ "ମହାଯାତ୍ରା"କୁ ପ୍ରଶଂସା କରି ଖଣ୍ଡିଏ ପତ୍ର ରାଧାନାଥଙ୍କଠାକୁ ଲେଖିଥିଲେ ଏବଂ ରାଧାନାଥ ଉତ୍ତରରେ ଲେଖିଥିଲେ ଯେ, ପତ୍ରଲେଖକଙ୍କ ପରି ଓଡ଼ିଶାର ଅନ୍ୟାନ୍ୟ ଅନେକ ସାହିତ୍ୟରସିକ ମହାତ୍ମା ମଧ୍ୟ ସନ୍ତୋଷ ପ୍ରକାଶ କରିଛନ୍ତି ; ପକ୍ଷାନ୍ତରେ କେହି କେହି ପୁସ୍ତକକୁ ଆକ୍ରମଣ କରିବାକୁ ଏବଂ ସମ୍ବାଦପତ୍ରରେ କବିଙ୍କୁ ଆକ୍ଷେପ କରିବା ସକାଶେ ମଧ୍ୟ ଉଦ୍ୟତ ହୋଇଛନ୍ତି । "ସଂସାରରେ ବିଶେଷତଃ ସାହିତ୍ୟ ସଂସାରରେ ଏହା ସତତ ଘଟୁଥିବା ଦେଖାଯାଏ । ଏପରି ଆକ୍ରମଣ ସହିବାରେ ମୁଁ ଚିରଅଭ୍ୟସ୍ତ । X"(୨୦।୪।୯୨ର କଟକରୁ ଚିଠି )

---

# ଷଡବିଂଶ ପରିଚ୍ଛେଦ

## ଦରବାର

କବିବର ରାଧାନାଥଙ୍କ 'ଦରବାର'ଟି ଖ୍ରୀ ୧୮୯୭ରେ କଟକରେ ଅନୁଷ୍ଠିତ ସରକାରୀ "ଦରବାର"ର କିଛି ସମୟ ପରେ ଲିଖିତ ହୋଇଥିବା ଅନୁମିତ ହୁଏ। ଦରବାରରେ ଓଡ଼ିଶାର ସର୍ବୋଚ୍ଚ ସରକାରୀ ହାକିମ କମିସନର୍ କୁକ୍ ସାହେବ ଅଧ୍ୟକ୍ଷ ହୋଇଥିଲେ। ଖଣ୍ଡପଡ଼ାର ବିଖ୍ୟାତ ଜ୍ୟୋତିର୍ବିଦ ପଣ୍ଡିତ ସାମନ୍ତ ଚନ୍ଦ୍ରଶେଖର ସିଂହ ସଂସ୍କୃତରେ ଲିଖିତ ତାଙ୍କର ବିଖ୍ୟାତ ଜ୍ୟୋତିଷ ଗ୍ରନ୍ଥ "ସିଦ୍ଧାନ୍ତ ଦର୍ପଣ" ନିମନ୍ତେ "ମହାମହୋପାଧ୍ୟାୟ" ଉପାଧି ପ୍ରାପ୍ତ ହୋଇଥିଲେ। ବାଲେଶ୍ୱର ଜିଲ୍ଲାର ବିଖ୍ୟାତ କାଞ୍ଚିପୁରର ଜମିଦାର ଶ୍ରୀ ଗୋବିନ୍ଦବଲ୍ଲଭ ରାୟଙ୍କୁ ରାୟବାହାଦୁର ଉପାଧି ଦିଆଯାଇଥିଲା। ଏହି ଦୁଇଜଣଙ୍କୁ ସମ୍ମାନିତ କରି ଉପାଧି ପ୍ରଦାନ କରିବା ଉଦ୍ଦେଶ୍ୟରେ ଏହି ଦରବାରଟି ହୋଇଥିଲା। ଦରବାରର ସ୍ଥାନ ଥିଲା ବାରବାଟୀ ଦୁର୍ଗ ମଧ୍ୟସ୍ଥ ବିରାଟ ପ୍ରାଙ୍ଗଣ।

ଗୋବିନ୍ଦବଲ୍ଲଭ ରାୟ ରାଧାନାଥଙ୍କ ଭଗିନୀପତି ଥିଲେ। ଭଗିନୀପତିଙ୍କୁ ପରିହାସ କରିବା ଲକ୍ଷ୍ୟରେ ଏହି କବିତାଟି କବି ଲେଖିଥିବା ଜଣାଯାଏ। ଏହା ଏକ ବ୍ୟଙ୍ଗ କବିତା। ହେଲେ ମଧ୍ୟ ଏଥିର ଭାବରାଶୀ ଯୋଗୁଁ ଏହାକୁ ଏକ ସମାଜିକ ବିଶ୍ଳେଷଣାତ୍ମକ କବିତା କହିଲେ ଅତ୍ୟୁକ୍ତି ହେବନାହିଁ। କବି ଦାର୍ଶନିକତା-ଶାଣିତ ଉପଦେଶାବଳୀ ଏଥିରେ ସନ୍ନିବେଶିତ କରି ସମାଜକୁ ଉନ୍ନତ କରିବା ପାଇଁ ଚେଷ୍ଟା କରିଛନ୍ତି ; କବି ସମାଜ-ଶିକ୍ଷକର ଆସନ ଗ୍ରହଣ କରିଛନ୍ତି।

ପ୍ରଥମେ କବି କବିତାଟିର ନାମ "ବୈୟାସିକୀ ବାଣୀ" ରଖିଥିଲେ, କିନ୍ତୁ ତାଙ୍କ ପୁତ୍ର ଶଶିଭୂଷଣଙ୍କ ଅନୁରୋଧକ୍ରମେ 'ଦରବାର' ନାମ ଦେଲେ ବୋଲି ଶୁଣାଯାଏ । "ଦରବାର" ନାମରୁ ବ୍ୟଙ୍ଗର ସୂଚନା ମିଳୁନାହିଁ, କବି କେବଳ ସ୍ୱାଭାବିକ ନାମଟି ଦେଇଛନ୍ତି । କବିତାଟିରେ ବ୍ୟଙ୍ଗ ସହିତ ଅତି ମୂଲ୍ୟବାନ୍ ଭାବଗ୍ରାମ, ସାମାଜିକ ଓ ରାଜନୈତିକ ଚିତ୍ର ଥିବାରୁ କବିତାଟି କେବଳ 'ବ୍ୟଙ୍ଗାତ୍ମକ' ନୁହେଁ, ଏହାହିଁ ବୁଝାଇବା ନିମନ୍ତେ କବି ନାମପରିବର୍ତ୍ତନର ଆବଶ୍ୟକତା ଉପଲବ୍ଧି କରିଥିବେ ।

ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କ ପୂର୍ବରୁ ବହୁ ହାସ୍ୟରସର ରଚନା ଦେଖାଯାଏ । "କଳସା ଚଉତିଶା", ଶାରଳାଦାସଙ୍କ ମହାଭାରତ ଓ ବଳରାମଦାସଙ୍କ ରାମାୟଣ ପ୍ରଭୃତି ପୁରାଣ, ବ୍ରଜନାଥଙ୍କ ସମରତରଙ୍ଗ, କବିସୂର୍ଯ୍ୟ ବଳଦେବଙ୍କ ହାସ୍ୟକଲ୍ଲୋଳ, ଅସଂଖ୍ୟ ଦାଣ୍ଡିକା, ମାଳିକା ପ୍ରଭୃତିରେ ହାସ୍ୟରସ ପ୍ରକଟିତ ହୋଇଥିବା ଦେଖାଯାଏ । ସେଗୁଡ଼ିକରେ ସମସାମୟିକ ସମାଜର ବାସ୍ତବ ଚିତ୍ର ଅଙ୍କନର ସୁସ୍ପଷ୍ଟ ପ୍ରମାଣ ନଥିଲେ ମଧ୍ୟ ମାନବଚରିତ୍ରର ଦୋଷଦୁର୍ବଳତାକୁ ଅବଲମ୍ବନ କରି ସେସବୁ ରଚିତ ହୋଇଛି, ଏହା ସ୍ୱୀକାର୍ଯ୍ୟ । ଦରବାରରେ ମାନବର ଦୋଷଦୁର୍ବଳତା ସହିତ ସମସାମୟିକ ସମାଜର କୁ-ଦିଗର ଚିତ୍ର କବିବର ଚମତ୍କାର ଭାବରେ ବ୍ୟକ୍ତ କରିଛନ୍ତି ଏବଂ ଉଚ୍ଚ ଆଦର୍ଶର ଚିତ୍ର ମଧ୍ୟ ପ୍ରକାଶ କରିଛନ୍ତି । ଏହି କାରଣରୁ କବିତାଟିକୁ ଉଚ୍ଚ ଶ୍ରେଣୀର ଦାର୍ଶନିକ-କବିତା ରୂପରେ ମଧ୍ୟ ଗ୍ରହଣ କରିବା ପାଇଁ କବି ଅବକାଶ ଦେଇଛନ୍ତି ।

କବି ବ୍ୟକ୍ତିଗତ ଭାବରେ ଏଥିରେ କାହାକୁ ଆକ୍ରମଣ କରି ଉପହାସାସ୍ପଦ ଓ ଘୃଣ୍ୟ କରିବାକୁ ଚେଷ୍ଟା କରିନାହାନ୍ତି ବୋଲି କୁହାଗଲେ ମଧ୍ୟ ସାମନ୍ତଙ୍କ ଚିତ୍ରରେ ତାଙ୍କପ୍ରତି ରାଜାଙ୍କ

ଅମାନୁଷିକ ବ୍ୟବହାରର ଉଲ୍ଲେଖ ଏହା ପୂର୍ଣ୍ଣଭାବରେ ସମର୍ଥନ କରୁନାହିଁ । ପୁଣି, ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଓ ରାଜା ବାସୁଦେବ ସୁଡ଼ଳଦେବଙ୍କ ନାମକୁ ସ୍ୱତନ୍ତ୍ରଭାବରେ ଉଲ୍ଲେଖ କରିବାରୁ ଅନ୍ୟ-ମାନଙ୍କ ପ୍ରତି ତାଙ୍କର ତାଚ୍ଛଲ୍ୟଭାବ ଥିବା ମଧ୍ୟ ଅନୁମାନ କରାଯାଇ-ପାରେ । କବି ଦରବାର, ମହାଯାତ୍ରା ଓ କାବ୍ୟକବିତାମାନଙ୍କ ଉତ୍ସର୍ଗ ପତ୍ରରେ ବିଶେଷ ଭାବରେ ବିଭିନ୍ନ "ଉପକାରୀ" ରାଜାମାନଙ୍କ ପ୍ରଶସ୍ତି ଗାନ କରିଛନ୍ତି, ସେ ମଧ୍ୟ ଏହି ବ୍ୟଙ୍ଗଶରରୁ ବାଦ ପଡ଼ିଛନ୍ତି ବୋଲି ମନେ ହୁଏ ନାହିଁ । ତେବେ ତାଙ୍କର ବିଶ୍ଳେଷଣାତ୍ମକ ଶର ଓ ଉପଦେଶାବଳୀର ଗୌରବକୁ ଏହି ବ୍ୟକ୍ତିଗତ 'ଦୁର୍ବଳତା' କ୍ଷୁନ୍ନ କରିନାହିଁ ।

ଇଂରେଜ କବି ସ୍ୱିଫ୍ଟ୍ (Swift) ତାଙ୍କର "ଗଲିଭର୍ସ୍ ଟ୍ରାଭେଲସ୍" ( Gulliver's Travel's ) ବହିରେ ଇଂଲଣ୍ଡର ତତ୍କାଳୀନ ସମାଜର ବହୁ ବ୍ୟଙ୍ଗାତ୍ମକ ଶର ଦେଇଛନ୍ତି । ରାଧାନାଥଙ୍କ 'ଦରବାର' ରସଶ୍ରେଣୀ ଦୃଷ୍ଟିରୁ ଏହା ସହିତ କେତେକାଂଶରେ ତୁଳନୀୟ ।

କବି "ଉତ୍କଳର ପୂର୍ବକୀର୍ତ୍ତି ସ୍ମୃତି-ପୂତ" ବାରବାଟୀର ପୂର୍ବ ଗୌରବକୁ ସ୍ମରଣ କରାଇ ଦେଇ ପରେ ସେଠାରେ ଅନୁଷ୍ଠିତ ହେଉଥିବା "ଦରବାର"କୁ ଏକ ପ୍ରହସନ ଥିବା ଶଂସଣ କରିଛନ୍ତି । କବିବର ଆରମ୍ଭରୁ ଉତ୍କଳର ପୂର୍ବଗୌରବକୁ ସ୍ମରଣ କରାଇ ଦେଇ 'ଦରବାର' ପରି ଏକ ଜାତୀୟ-ଅବନତି-ସୂଚକ ବ୍ୟାପାର ସେଠାରେ ଅନୁଷ୍ଠିତ ହୋଇଥିବାରୁ ଦୁଃଖିତ ହୋଇଛନ୍ତି ଏବଂ ଉତ୍କଳର ପରାଧୀନ ହେବା ପରେ ଏପରି ଘଟଣା ସମ୍ଭବ ହୋଇପାରିଥିବାର ସୂଚନା ଦେଇଛନ୍ତି ।

ଉତ୍କଳର ପୂର୍ବକୀର୍ତ୍ତି-ସ୍ମୃତି ପୂତ
ବାରବାଟୀ ଆଜ ସାଜେ ସର୍ଜ୍ଜୀଭୂତ,
ଐତିହାସିକ ଏ ଦୁର୍ଗ ବାରବାଟୀ
ଶାରରକ୍ତ ପିଣ୍ଡେ ଗଢ଼ା ଯାର ମାଟି;
ବାରବାଟୀ ଯର୍ହିଁ ମନସ୍ତୃପ୍ତି ପୋତେ
ବହିଯାଏ ପ୍ରତିଲୋମେ କାଳ ସ୍ରୋତେ,
କାଳେ କେତେ ଦେଖି ଯେ ଆସିଲା
ନଶ୍ୱର ନରର ଗରମାର ଲୀଳା ।

ଏହି ଗୌରବମଣ୍ଡିତ ବାରବାଟୀ କେତେ "ନଶ୍ୱର ନରର ଗରମାର ଲୀଳା" ଦେଖି ଆସିଛି, ଏବେ ପୁଣି ବର୍ତ୍ତମାନ ଆଉ ଏକ ଲୀଳା ସେଠାରେ ଦେଖାଯାଉଛି । ବର୍ତ୍ତମାନ "ନଶ୍ୱର ନରର ଗରମାର" ନୂତନ ଲୀଳା, ସେଠାରେ ପ୍ରଦର୍ଶିତ ହେଉଥିବାରୁ ନରମାନେ ନଶ୍ୱର ବ୍ୟାପାରରେ ପୂର୍ତ୍ତି ମତ୍ତ ହେଉଥିବା ଦେଖାଯାଉଛି । କିନ୍ତୁ, ନର ଏହି ନଶ୍ୱରବ୍ୟାପାରରେ ମତ୍ତ ହୋଇ ଭୁଲିଯାଉଛି, ଏହାକୁ କାଳ ଲୁଚି ବସି ଅପେକ୍ଷା କରୁଛି ।

କାଞ୍ଚୀ ଅଭିଯାନରେ ଯେଉଁ ଦୁର୍ଗର ପ୍ରାଚୀର ବାଦ୍ୟନାଦରେ ପ୍ରତିଧ୍ୱନିତ ହେଉଥିଲା, ସେ ଆଜି ଜରାଜୀର୍ଣ୍ଣ ବେଶରେ ଏ ନରର ନଶ୍ୱରଲୀଳାର ଘଟା ଦେଖୁଛି ! ବାରବାଟୀ ନଷ୍ଟପ୍ରାୟ ଏଥିରେ କ୍ଷୁବ୍ଧ । ମରକତ, ପୁରୁଷୋତ୍ତମ ଦେବ ପ୍ରଭୃତି ପୂର୍ବ ନରପତି-ମାନେ ମଧ୍ୟ ଏବେ ବ୍ୟୋମରେ ବ୍ୟୋମଯାନରେ ଅଧିଷ୍ଠିତ ହୋଇ "ଉତ୍କଳର ଏ ଦଶା ବିପର୍ଯ୍ୟୟ" ଦେଖି ଦୁଃଖିତ ହେଉଥିବେ ; ଭାବୁଥିବେ, "କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !"

ଉତ୍କଳ ଶାଶ୍ୱତ ଶୈଳମାନେ ନଭସ୍ତଳେ ଇନ୍ଦ୍ରନୀଳ-ଶିର ଟେକି ଏ ଦୃଶ୍ୟ ଦେଖି ଦୁଃଖିତ ହେଉଥିବେ, ଭାବୁଥିବେ, "ମଣ୍ଡରମା

କାଞ୍ଚୀଜେମା ସ୍ଥାନେ ପୂଜା" ମହାନଦୀ ତୀର ଅପୂର୍ବ ଶୋଭା ସମ୍ଭାର ଧରି "ଏ ରଙ୍ଗ ନ ରହେଗି ତରଙ୍ଗ ଭଙ୍ଗେ" ରଙ୍ଗେ ପ୍ରବାହିତ ହେଉଛି । ଉତ୍କଳର ପୂର୍ବକୀର୍ତ୍ତିସ୍ମୃତି ଜଡ଼ିତ ଏ ବାରବାଟୀରେ ଏ ରଙ୍ଗଦୃଶ୍ୟ ଦେଖି ଉତ୍କଳର ପୂର୍ବ ପୁଣ୍ୟଶ୍ଳୋକ ନରପତିମାନେ, ଶାଶ୍ବତ ଶଇଳମାନେ ଓ ମହାନଦୀ ଦୁଃଖିତ ହେଉଥିବେ ।

ଉତ୍କଳର ଏହି ପୂର୍ବଗୌରବମଣ୍ଡିତ ସ୍ଥାନରେ ଏ ରଙ୍ଗଦୃଶ୍ୟ ଉତ୍କଳୀୟ ଜାତିର ଅବନତି—"କି ଥିଲା ଏ ରାଜ୍ୟ, କି ହୋଇଛି ଆଜ"—ପ୍ରମାଣିତ କରୁଛି । କବିଙ୍କ ସ୍ବଦେଶପ୍ରୀତି-ରସାଣିତ ଖେଦଭାବ-କଲ୍ଲୋଳ ଏଥିରେ ଚମତ୍କାର ଭାବରେ ପ୍ରକାଶ ପାଇଛି ।

କବି ଯାମନ୍ତଙ୍କ ପ୍ରସଙ୍ଗରେ ପୁଣି ଓଡ଼ିଶାର ପୂର୍ବଗୌରବର ସ୍ମୃତିକୁ ଜାଗରିତ କରି ଖେଦୋକ୍ତି ପ୍ରକାଶ କରିଛନ୍ତି ।

ହେ ଉତ୍କଳମାତା ଯୋଗ୍ୟତମ ସୁତ,
ତୁମ୍ଭ ଯୋଗୁଁ ଆମ୍ଭେ ସର୍ବେ ହେଲୁ ପୂତ ।
ଗୋଦାବରୀଠାରୁ ଗଙ୍ଗାଯାଏ ବ୍ୟାପି
କୀର୍ତ୍ତିମାଳା ଯାର ବିରାଜେ ଅଦ୍ୟାପି,
ଏକାମ୍ରେ କୋଣାର୍କେ ଯା କୀର୍ତ୍ତିଭାସ୍ବର
ଯୋଗ୍ୟ ପୁତ୍ର ତୁମ୍ଭେ ସେହି ଉତ୍କଳର ।
ବୋଳି ଦେଇଅଛୁ ଅଜ୍ଞାନର ମସୀ
ସେ ଉତ୍କଳେ ତୁମ୍ଭେ ଅଜ୍ଞାନ ତୁଳସୀ ।

ଉତ୍କଳର ପୂର୍ବଗୌରବ ସ୍ମୃତିକୁ କବି ପୁଣି ରାଜାମାନଙ୍କ ଅଧଃପତନ ପ୍ରସଙ୍ଗରେ ପ୍ରକାଶ କରିଛନ୍ତି—

ମନେ ନାହିଁ ତୁମ୍ଭେ କାହାର ସନ୍ତାନ
କେଉଁ ଔରସେ ତୁମେ ମିନା ଶ୍ବାନ !

ପୂର୍ବପୁରୁଷର ପ୍ରତିଷ୍ଠା ବଶାଳ
ବକ ଘର୍ଙ୍ଗି ଖାଉଥିବ କେତେକାଳ । ଇତ୍ୟାଦି ।

କବି ଉତ୍କଳର ସମସାମୟିକ ଅବନତ ଅବସ୍ଥା ଦେଖି ଅତ୍ୟନ୍ତ ମର୍ମାହତ ହୋଇଥିଲେ । ରଜା, ପ୍ରଜା, ଓକିଲ, ହାକିମ, ଧନୀ ପ୍ରଭୃତିଙ୍କ ମାନସିକ ଅବନତି ଦେଖି ସେ କାତର ହୋଇପଡ଼ିଛନ୍ତି । ପରାଧୀନତା ଅବନତି ଦେଶକୁ ତମସାଚ୍ଛନ୍ନ କରି ଦେଇଛି । ସାମନ୍ତଙ୍କୁ ଲକ୍ଷ୍ୟକରି କବି ଯଥାର୍ଥରେ କହିଛନ୍ତି—

ବୋଳି ଦେଇଅଛି ଅଜ୍ଞାନର ମସୀ,
ସେ ଉତ୍କଳେ ତୁମ୍ଭେ ଶ୍ମଶାନ-ତୁଳସୀ ।

ଦେଶରେ ଅଧର୍ମ, ମିଥ୍ୟା, ଅତ୍ୟାଚାର, ବୃଥା ଅହଙ୍କାର, ଖୋସାମଦ, ପ୍ରଭୃତି ଦୁର୍ଗୁଣ ଦେଶକୁ ଛାରଖାର କରିଦେଇଛି, ମନେ ହେଉଛି ସତେ ଯେପରି ଜଣେ ହେଲେ ଗୁଣଗ୍ରାହୀ ଆଉ ନାହିଁ । ସାମନ୍ତଙ୍କ 'ଦୁର୍ଦ୍ଦଶା' ପ୍ରସଙ୍ଗରେ କବି ମନୋବେଦନା ପ୍ରକାଶ କରି ପୁଣି କହିଛନ୍ତି ।

ଗୁଣଜ୍ଞ ଉତ୍କଳେ ଜଣେ କେହି ନାହିଁ
ଗୁଣୀନ୍ଦ୍ର ତୁମ୍ଭର ହେବ ଗୁଣଗ୍ରାହୀ । × ×

ପ୍ରାଚୀନ ଉତ୍କଳର ଗୌରବ ସ୍ମୃତିକୁ ଜାଗ୍ରତ କରି "କାଞ୍ଚୀ ଅଭିଯାନେ ଯେ ଦୁର୍ଗ ପ୍ରାଚୀର ବାଦ୍ୟନାଦେ ଦେଇଥିଲା ପ୍ରତିଗିର" ସେହି ବୀରଜାତିର ସେହି ବୀରଭୂମି ଉପରେ ଏ ଦରବାର ପରାଧୀନତାର ପ୍ରତୀକ ସ୍ୱରୂପ ଥିବା ବ୍ୟକ୍ତ କରି କବି ଦରବାରର ଦୃଶ୍ୟବର୍ଣ୍ଣନା ଆରମ୍ଭ କରିଛନ୍ତି । କାଞ୍ଚୀଅଭିଯାନେ ଯେଉଁ ଦୁର୍ଗ ବିଜୟ-ବାଦ୍ୟରେ ମୁଖରିତ ହେଉଥିଲା ବୀର ରକ୍ତପିଣ୍ଡେ ଗଢ଼ା ଯାର ମାଟି," ଯାହାର ପ୍ରାଚୀର ଏହି ବାଦ୍ୟର ପ୍ରତିଧ୍ୱନିରେ କମ୍ପିତ ହେଉଥିଲା ସେହିଠାରେ ବିଜୟୀବୀର ପୁଣ୍ୟଶ୍ଳୋକ ପୂର୍ବ

ନରପତିମାନଙ୍କ ବଂଶଧରମାନେ କି ହୀନ ପରାଧୀନ ଅବସ୍ଥାରେ ବାଜା ବଜାଇ ଆସୁଛନ୍ତି ! ରାଜାମାନଙ୍କୁ କବି ଜନ୍ମନେତା ସ୍ୱରୂପ ଗ୍ରହଣ କରିଛନ୍ତି । ସେମାନଙ୍କ ଦୁର୍ଦ୍ଦଶା ଜନସମାଜର ଅବନତ ଅବସ୍ଥାର ପ୍ରତୀକ । ହେଲେହେଁ ଜନସମାଜ ବା ପ୍ରଜାମାନେ ବିଦେଶୀଶାସକ, ରାଜାମହାରାଜା, ଦୁର୍ନୀତିପରାୟଣ ରାଜକର୍ମଚାରୀଙ୍କ ଉତ୍ପୀଡ଼ନରେ ଅନ୍ତଃସାରଶୂନ୍ୟ ହୋଇ ନିର୍ଜୀବ ପ୍ରାପ୍ତ ହୋଇ-ଯାଇଛନ୍ତି ବାସ୍ତବ ନିଖୁଣ ଚିତ୍ର ପ୍ରଦାନ କରି ଏହାର କବି ପାଠକ ମନରେ ବିଭିନ୍ନ ଭାବରାଜିର ତରଙ୍ଗ ଖେଳାଇ ଦେଉଛନ୍ତି । ପ୍ରଥମେ ରାଜାମାନଙ୍କ ଆଗମନର ବର୍ଣ୍ଣନା କରି କବି ସଙ୍ଗତ କାର୍ଯ୍ୟ କରିଛନ୍ତି ।

ଏକ ପରେ ଏକ ରାଜା ମହାରାଜା,
ଆସଇ ବଜାଇ ନାନାରଙ୍ଗେ ବାଜା ।
ଉଡ଼ଇ ପତାକା ଝଟକଇ ହାସ,
ପାଏକ କୁହାଟେ ମନେ ଲଗେ ତ୍ରାସ ।
ଆସ୍ଫନ୍ଦେ ଆସନ୍ତି ଅଶ୍ୱ ମାଳମାଳ,
ଶିସମୁଣ୍ଡ କେତେ ଆସନ୍ତି ଶୁଣ୍ଡାଳ ।

ରାଜାମାନଙ୍କର ଏ ଆଡ଼ମ୍ବରପୂର୍ଣ୍ଣ ଆଗମନ ସେମାନଙ୍କର ରାଜନୈତିକ, ନୈତିକ ଦୁର୍ଦ୍ଦଶାର ପ୍ରତୀକ ନ ହେଲେ ମଧ୍ୟ ସେମାନଙ୍କ ବାସ୍ତବ ସ୍ଥିତିର ବିପ୍ଳୁମାପୂ ଅବସ୍ଥାକୁ ବେଶି କରୁଣ କରି ଦେଉଛି ।

ରାଜାମାନଙ୍କ ଆଗମନ ପରେ ଯାନବାହନ, ଚନ୍ଦ୍ରାତପ, ତୋପଶକ, ମହାର୍ଘ ବସନଭୂଷଣ, ଆସନ, ବସାସନର ବର୍ଣ୍ଣନା କରିଛନ୍ତି । ପ୍ରହରୀମାନଙ୍କ ନୀରବ ଗର୍ବପୂର୍ଣ୍ଣ ଚହଲରୁ ମନେହେଉଛି, ସେମାନେ ପାପ୍ତୁର-ଅଷ୍ଟ-ବିଭୀଷିକା ଦେଖାଉଛନ୍ତି ! ପଦ-ଅନୁରୂପରେ ନମନ୍ତିତମାନଙ୍କର ବସନ, ଭୂଷଣ ଦେଖାଯାଉଛି । ପ୍ରତ୍ୟେକେ

ପ୍ରାଚୀନ ଗୌରବର ଚିହ୍ନ ଦେଖାଇବାକୁ ବ୍ୟାକୁଳ ଥିବାରୁ "ଜଙ୍ଗଭକ୍ଷ, କ୍ଷୟଶୀଳ ତଲବାର, ପୋଷାକ ଚୂଟିଆ ମୂଷାର ଆହାର"ର ଚିତ୍ର ସ୍ପଷ୍ଟ ଭାବରେ ଦୃଶ୍ୟ ହେଉଛି ।

କବି ସମ୍ମାନ, ପଦ, ଆସନର ନଶ୍ୱରତା ବ୍ୟକ୍ତ କରିଛନ୍ତି ଏବଂ ଏଥିପାଇଁ ଲୋକେ ବ୍ୟାକୁଳ ହେଉଥିବା ଦେଖି ଦୁଃଖ ପ୍ରକାଶ କରିଛନ୍ତି—

ଏହି ଛାର ଏହି ଅକିଞ୍ଚିତକର
ସମ୍ମାନ ସକାଶେ ଏଡ଼େ ବ୍ୟସ୍ତ ନର ।
ହା ଧିକ୍ ! ଏ ଭିକସାର ପଦପାଇଁ,
ଦେଉଛନ୍ତି ଲୋକେ ସମ୍ପଦ ଉଡ଼ାଇ ।

ଉପାଧି ଲାଳସାରୂପୀ ମହାବ୍ୟାଧି ଘୋଟିବାରୁ ଲୋକେ ମନୁଷ୍ୟତାକୁ ହୀନସେବା ପୀଠରେ ବଳି ଦେଉଛନ୍ତି । ଭଣ୍ଡତାର ପ୍ରସାର ବଢ଼ିଯାଉଛି । ମନୁଷ୍ୟର ପୂଜା ଷୋଡ଼ଶୋପଚାରରେ ହେଉଛି । ଲୋକେ ମନୁଷ୍ୟକୁ ତୋଷିବା ପାଇଁ କଷ୍ଟ ସହି ମନୁଷ୍ୟପଣରୁ ଭ୍ରଷ୍ଟ ହେଉଛନ୍ତି, 'ଉପାସ୍ୟ' ମନୁଷ୍ୟର ପୋଷାଶ୍ୱାନପରି ହେଉଛନ୍ତି । ଦେବଦେବୀ ଅର୍ଚ୍ଚନାକୁ ନ୍ୟୂନ କରି ମନୁଷ୍ୟଅର୍ଚ୍ଚନା ପାଇଁ ଲୋକେ ଉଦ୍ୟମ ରଚନା କରୁଛନ୍ତି ; ଶ୍ରୋତ୍ରିୟଙ୍କ ହସ୍ତରେ ଗୋଦାନ ଦେଇ ପୁଣ୍ୟ ଅର୍ଜ୍ଜନ କରିବା ପରିବର୍ତ୍ତେ 'ଶ୍ୱାନଦାନ'ରେ ଆନନ୍ଦ ଉପଭୋଗ କରୁଛନ୍ତି ।

ଧିକ୍ ! ଧିକ୍ ! ଆହା ! ଜାଣି ଶୁଣି ନରେ,
ଶାଶ୍ୱତକୁ ଛାଡ଼ି ଆସକ୍ତ ନଶ୍ୱରେ । × ×

ରାଜସଗରଳ ନଖଠାରୁ ଶିଖପର୍ଯ୍ୟନ୍ତ ଘାରି ଦେଇଥିବାରୁ ଏମାନେ ଅଜ୍ଞାନ ହୋଇପଡ଼ିଛନ୍ତି ଏବଂ ଫଳରେ "ଅବସ୍ତୁରେ ବସ୍ତୁଜ୍ଞାନ ହୋଇଅଛି ।"

କବି ମନୁଷ୍ୟପୂଜା ରୂପକ ଏ ଦୁର୍ଦ୍ଦଶା, ଏ ମୋହରୁ ପରିତ୍ରାଣର ଉପାୟ ଏକମାତ୍ର ଆତ୍ମତତ୍ତ୍ୱ ବୋଲି ବ୍ୟକ୍ତ କରିଛନ୍ତି । ମନୁଷ୍ୟ ପୂଜାରେ ଯେତେ କାଳ ଅତିବାହିତ ହେଉଛି, ତାହାର ପାଏ ବା ଏକ ଚତୁର୍ଥାଂଶ ଆତ୍ମତତ୍ତ୍ୱରେ ବ୍ୟୟ ହେଉଥାଆନ୍ତା ତାହାହେଲେ "ଓହ୍ଲାଇ ଆସନ୍ତା ସ୍ୱର୍ଗ ମର୍ତ୍ତ୍ୟଲୋକେ ।" କରୁଣାଧିସତ୍ତ୍ୱ-ପୀୟୂଷ ଆସ୍ୱାଦନ କରି ଲୋକେ ସ୍ୱପ୍ନରେ ଶ୍ରଦ୍ଧା ଉପାଧିକୁ ଲୋଡ଼ନ୍ତେ ନାହିଁ । ଏହାଦ୍ୱାରା ଅକ୍ଳେଶରେ ଏ ମର ଜୀବନରେ ଅମରତ୍ୱ ଲାଭ ହୋଇପାରନ୍ତା, ଏହି ମର୍ତ୍ତ୍ୟଲୋକ ଦେବତା ଓ ମାନବର ବାସସ୍ଥଳୀ ହୁଅନ୍ତା ।

କବି ଦରବାରର ମଞ୍ଚଆଡ଼କୁ ଦୃଷ୍ଟି ଦେଇ ଆସନ ପାଇଁ କଜିଆ ଲାଗିଥିବା ଲକ୍ଷ୍ୟ କରିଛନ୍ତି । ନିଜ ଅହମିକା ସଦୃଶ ଆସନର ଦାବୀ ସମସ୍ତେ କରୁଛନ୍ତି ; ନିଜ ନିଜର ବଡ଼ିମା ବ୍ୟକ୍ତ କରୁଛନ୍ତି । ରାଜା, ପୋଲିସ, ନଗରରକ୍ଷଣୀ (ମ୍ୟୁନିସିପାଲିଟି ସଦସ୍ୟ) ସଭାର ଅଗ୍ରଣୀ, ଦପ୍ତରୀ ପ୍ରଭୃତି ଏଥିରେ ରତ ରହିଛନ୍ତି ।

ଲୋଭ ହେଜେ ଯଥା ସ୍ୱମର୍ଯ୍ୟାଦା ଲାଗି
ପ୍ରତିବାଦି-ପକ୍ଷେ କହେ ଦେବା ଲାଗି ।
କେହି ଅବା ନିଜ ଦୁଃଖକୁ ଘୋଡ଼ାଇ,
ଚିତ୍ତବାସୀ ଦୁଃଖ ଗାଇ ହେଉଥାଇ ।
କହେ, "ନ୍ୟାୟ ନାହିଁ ଏହି ଦରବାରେ,
ତା ଆସନ ତୁମ୍ଭ ଆଗେ କି ବିଚାରେ ?"

ଏହି ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କର ପଦ-କାର୍ଯ୍ୟ-ମର୍ଯ୍ୟାଦାର ଅତି ସୁନ୍ଦର ଚିତ୍ରଟିଏ କବି ଅଳ୍ପ ପଦରେ ଦେଇ ବ୍ୟଙ୍ଗ କରିଛନ୍ତି । ଏମାନଙ୍କ ମଧ୍ୟରୁ ବୃଦ୍ଧମାନେ ଆସନ-କଜିଆ ଓ ବଡ଼ିମା ପ୍ରଦର୍ଶନରେ 'ବାଇ' ହୋଇଥିବାରୁ କବି ଏମାନଙ୍କ କାର୍ଯ୍ୟକୁ ବାଳକମାନଙ୍କ କ୍ରୀଡ଼ନକ ପାଇଁ କଳହ ସଙ୍ଗେ ତୁଳନା କରିଛନ୍ତି ।

ସଭାପତି (ବା କମିସନର ସାହେବ)ଙ୍କ ଗୁମ୍ଫଆ ବା ଶ୍ମଶ୍ରୁଆଙ୍କ ଚିତ୍ର ସୁନ୍ଦର ହୋଇଛି । କେତେ କେତେ ସାହେବ ଠାଣିରେ ପୋଷାକ ପିନ୍ଧି ସାହେବୀ ଢଙ୍ଗର ଅନୁକରଣ କରିଥିବାରୁ କବିଙ୍କ ଲେଖଣୀର ତାଡ଼ନା ତାଙ୍କୁ ସହ୍ୟ କରିବାକୁ ପଡ଼ୁଛି ।

ଲୋକଙ୍କର ଅହମିକା ଓ ମିଥ୍ୟା ବ୍ୟବହାରର ଛଳ କପଟ ନିଜ ନିଜ ବସନଭୂଷଣ ଓ ବ୍ୟବହାରରେ ଦସ୍ତୁମାଫ୍ ଭାବରେ ପ୍ରକାଶ ପାଇଛି ତାହା କବି ଜୀବନ୍ତ ଭାବରେ ବର୍ଣ୍ଣନା କରିଛନ୍ତି ।

(୧) ପିନ୍ଧି ନୂଆ ଚକଚକିଆ ପୋଷାକ,
ଥୋକାଏ ବଦନ୍ତି ମନେ ବଡ ଜାଁକ
ଭ୍ରମନ୍ତି ଚୌଦିଗେ ଅଙ୍ଗଭଙ୍ଗୀ କରି
ଅହମିକା ବନେ ପ୍ରଜାପତି ପରି ।
କମ୍ବା ଘନ କାଳେ ଉଠେ ବର୍ହ ତୋଳି
କେକୀ ନାଚେ ଯଥା ଦୋହଲି ଦୋହଲି ।

(୨) ସାହେବୀ ପୋଷାକ କେତୁ ଅବା ପିନ୍ଧି
ସସ୍ମିତେ କହଇ ବଙ୍କା ବଙ୍କା ବୁଦ୍ଧି ।
ଥରେ ଥରେ କାସି ସାହେବୀ ଠାଣିରେ
ପୋଛଇ ବଦନ ରୁମାଲ କାନିରେ ।
ପ୍ରକଟାଇ ପୂର୍ବ ସାହେବୀ ପଣିଆ
ଫରକଟା ଗୋଡ଼େ ହୁଏ ପୁଣି ଠିଆ । ଇତ୍ୟାଦି ।

ପ୍ରବଞ୍ଚନାପୂର୍ଣ୍ଣ ନଶ୍ୱର ଆଡ଼ମ୍ବର, ଉପାଧିବ୍ୟାଧି, ପ୍ରଭୃତିରେ ବ୍ୟଥିତ ହୋଇ ଜଣେ କେତେ 'ଅକିଞ୍ଚନ' ମୁଖରେ କବି ବହୁ ସଦୁପଦେଶ ବ୍ୟକ୍ତ କରିଛନ୍ତି । ତାଙ୍କର "ନମ୍ର" ବକ୍ତୃତାର ସାରାଂଶ ହେଲା,—

(ଅକିଞ୍ଚନ କେହୁ କହେ ହାତ ଯୋଡ଼ି),
ବୃଥା ଲାଗି କିମ୍ପା କମୋଡ଼ା କଟମାଡ଼ି
ଅଳ୍ପଦିନ ସ୍ଥିତି ପାଇଁ ଭବ ହାଟି,
ଏଥିଲାଗି କିମ୍ପା ଏତେ କଟାକଟି ।

ଏ ନଶ୍ୱର ଭବହାଟିରେ ଅଳ୍ପଦିନ ସ୍ଥିତି ପାଇଁ ଏତେ କଳିଆ, ଏତେ ଅଭିମାନର ବା କି ଆବଶ୍ୟକ ? ଅକିଞ୍ଚନ ଅସାରସଂସାରର ବାସ୍ତବ ତଥ୍ୟ ପ୍ରକାଶ କରି ନିଜ ବକ୍ତବ୍ୟକୁ ଦୃଢ଼ କରିବା ପାଇଁ ଚେଷ୍ଟା କରିଛନ୍ତି ।

ଏ ଭବସଂସାରରେ ମାନବଡ଼ କେହି ନାହିଁ । ଅହମିକାବଶରୁ ଧରାକୁ ସରା ମଣିବା ଅଜ୍ଞାନତା । ସମ୍ପଦ ବିଜୁଳି ପ୍ରାୟ, ତା'ର ବିଗ୍ରହ ବିକାଶ କେବଳ ଅଳ୍ପକ୍ଷଣ ପାଇଁ । ସୁଖ-ଦୁଃଖ ମଧ୍ୟ ଏପରି ଅସ୍ଥିର । "ସୁଖ ଝଟକେ ଯେ ଚକ୍ଷୁ ଚମକାଇ, ଦୁଃଖ-ବଜ୍ରେ ପରେ କରେ ଧରାଶାୟୀ;" ଦର୍ପ କରିଛୁ ନୁହେଁ—ବିପଦ ଝଡ଼ଟରେ ଦର୍ପ ଭୁଟିଯାଏ । ମୃତ୍ୟୁର ଶକ୍ତି ଅଲଙ୍ଘନୀୟ । ଏଥିପାଇଁ ଏତେ ଆଡ଼ମ୍ବର କାହିଁକି ?

ମର୍ତ୍ତ୍ୟେ ପଡ଼ି କାନ୍ଦି ଲୋଡ଼ି ଦୁଃଖ ଥୋଡ଼ା
ଯିବାବେଳେ ଛଅଖଣ୍ଡି କାଠ ଲୋଡ଼ା ।
ମଧ୍ୟେ କେତେ ଦିନ ମାତର କୁଣିଆ
ଏଥିପାଇଁ ପୁଣି ନ ଅଣ୍ଟେ ଦୁନିଆ !

ନଶ୍ୱର ଭବଲୀଳା, ଭବହାଟି, ଭବର କେତେଦିନିଆ କୁଣିଆ ପ୍ରଭୃତି ବିଷୟ ସୁନ୍ଦର ପଦରେ ବ୍ୟକ୍ତ ହୋଇଛି ।

ଏହି ଦରବାର କ୍ଷଣସ୍ଥାୟୀ । ଏଥିରୁ କେତେକଙ୍କୁ କେତେ ଦିନ ପରେ ଯମର ଦରବାରକୁ ଯିବାକୁ ହେବ । ସେ ଦାରୁଣ ଦରବାରକୁ ଯିବା ପାଇଁ ଗାଡ଼ି ଘୋଡ଼ା ଆବଶ୍ୟକ ହେବନାହିଁ ।

ପାଇକ ସ୍ୱରୂପେ ନାନା ରୋଗ ଆସି ନେଇଯିବେ । "ଚାଲିବ ନୁହଇ, ଓ୍ୱାରେଣ୍ଟ ଯିନା ସେ ।" କବି ଯମଦରବାରର ସୁନ୍ଦର ଚିତ୍ରଟିଏ ଦେଇଛନ୍ତି ।

ଯମଦରବାରରେ ଚପରାଶି, ହାକିମ ନଥିବେ । ମାମଲା ଲଢ଼ିବାପାଇଁ ଓକିଲ ନଥିବେ, ଥିଲେ ଯିନା ସେମାନେ "କରିଦେବେ ଯୁକ୍ତି ବଳେ ଧଳାକଳା ।" ଏଥିରେ କାନକୁହା ଖୋସାମଦ, ଲାଞ୍ଚକୋଚ, ଭୂସମ୍ପତ୍ତି, ରାଜପଣ, ଦରମା, ବିଦ୍ୟା, ବୁଦ୍ଧି, ବିଚକ୍ଷଣତା, ବ୍ୟାଜଦାନ, ପ୍ରଭୃତିର ସ୍ଥାନ ନାହିଁ ।

ଏ ଯଣ ଭୂମ୍ବର ଖ୍ୟାତି ଦୁନିଆରେ,
ପଣ୍ଡ ହେବ ଯିନା ଯମ ଦରବାରେ ।

ଯମଦରବାରର ଚିତ୍ରଗୁପ୍ତ ପଞ୍ଜିକା ଅଦ୍ଭୁତ ଧରଣର । "ବଡ଼ ଟାଣ ଭାଇ ଚିତ୍ରଗୁପ୍ତହୁଆ, ବିଚକ୍ଷଣ ତାର ପାଞ୍ଜିଅ- ପଣିଆ ।"

ଥାଉ ଆନ ଚିତ୍ତେ ଚିନ୍ତୁଥାଉ ଯାହା,
ତା ପାଞ୍ଜିରେ ଲେଖା ହୋଇଥାଏ ତାହା ।

ବ୍ରହ୍ମାଣ୍ଡରେ ତା ପରି ପଞ୍ଜିକାର ନାହିଁ ; ପୁଣି ତା ହିସାବ ଦୁନିଆ ବାହାର ।

ଏ ପଦଗୌରବ ଏତେ ଯାଜସଜ୍ଜା—
ପ୍ରତି ତାର ତଳେ ନାହିଁ ଚକ୍ଷୁଲଜ୍ଜା ।

ଚିତ୍ରଗୁପ୍ତଙ୍କୁ ଖୋସାମଦ କରି କି ଲାଞ୍ଚକୋଚ ଦେଇ ଜୟ କରି ହେବ ନାହିଁ । ସେ ବଡ଼ ତାର୍କିକ ମଧ୍ୟ । ତାର ମାନଦଣ୍ଡ ଅଦ୍ଭୁତ ପ୍ରକାରର । ତାହାର ବ୍ୟବସ୍ଥା ମଧ୍ୟ ବିଚିତ୍ର ।

ମାନଦଣ୍ଡ ତାର ଅଦ୍ଭୁତ ଭିଆଣ
ମାପେ ଯାର ସାନ ବଡ଼, ବଡ଼ ସାନ,
ଭଲ ସୁନା ବୋଲି ଗୁବେ ଯେ ବାଳିସେ
ଭେଲ ସିନା ଚନ୍ଦ୍ରଗୁପ୍ତର ନିଷିକେ !

ତାହାର କେତାକଟରେ ଭେଦଜ୍ଞାନ ନାହିଁ । ତା ନେତ୍ରରେ ଧଳା କଳା ଚର୍ମ ସମାନ । ସେ କେତେ ରଙ୍ଗରେ କେତେ ମଜା କରେ । ରାଜା ଉପରେ ପ୍ରଜାକୁ, ପଣ୍ଡିତ ଉପରେ ମୂର୍ଖକୁ, ସବାର ଉପରେ ସଇସକୁ, ସବଳ ଉପରେ ଦୁର୍ବଳକୁ ଏପରି ବହୁ ଅପ୍ରତ୍ୟାଶିତ ବିପରୀତ ବ୍ୟବହାର ବିଚିତ୍ରଭାବରେ ଦେଖାଯାଏ ।

ଏ ଚନ୍ଦ୍ରଗୁପ୍ତ ଯେତେବେଳେ ହିସାବ ମାଗିବ ସେତେବେଳେ କି ହିସାବ ଦେବ ତାହା ବେଳହୁଁ ଭାବିବା ଆବଶ୍ୟକ । କାରଣ, ତାଙ୍କୁ ଭଣ୍ଡିବାର ସହଜ ନୁହେଁ, ସେ ନିଖାରି ନିଖାରି କାଗଜ ଦେଖେ; କାହାର ଐଶ୍ୱର୍ଯ୍ୟ, ନେତୃତ୍ୱ, ପ୍ରଭୃତିର ସମ୍ମାନ ସେ ହିସାବ କରେ ନାହିଁ । ଅତଏବ,

ଦେଇଅଛ ଭୋଜେ କେତେ ମାଂସ ସୁରା
ତା ପାଇଁ କଉଡ଼ାଏ ନୋହିବ ମଜୁରା ।
ସେ ଦରବାରର ରୀତିମତି ଭିନ୍ନ
ଧର୍ମେ ବଳବାନ କର ନିଜ ଦାବୀ !

ଧର୍ମହିଁ ଏକମାତ୍ର ଶକ୍ତି; ମର୍ତ୍ତ୍ୟଅଭିମାନ ସେଠାରେ ଦୁର୍ବଳ ଥିବାରୁ ତାକୁ ବଳ ହେବାହିଁ ଉଚିତ ।

ଚତୁରପଣର ଥିଲେ ଅଭିମାନ
ମର୍ତ୍ତ୍ୟ ଅଭିମାନ ହିଅ ବଳହାନ ।

କବି ଧର୍ମ, ଜୀବନବୋଇତ, ରାଜପଣ, ପ୍ରଭୃତିର ଅସାରତା ପ୍ରତିପାଦନ କରିଛନ୍ତି ଏବଂ ସମସାମୟିକ ସମାଜରେ ଯେଉଁ

ଅମାତ୍ୟ, ଅତ୍ୟାଚାର, ବଡ଼ପଣ, ଭଣ୍ଡାମି ପ୍ରଭୃତି ତାହାର ଲକ୍ଷଣ ସବୁ ପ୍ରଦାନ କରି କଠୋର ମନ୍ତବ୍ୟ ପ୍ରକାଶ କରିଛନ୍ତି । ରାଜ ବଡ଼ିମାର ଅନିତ୍ୟତାକୁ ସମର୍ଥନ କରି ମହାବୀର ଆଲେକଜାଣ୍ଡାରଙ୍କ ଶେଷବାଣୀ ଉଦ୍ଧାର କରିଛନ୍ତି ।

ବୋଇଲେ, ଏ ପ୍ରାଣ ଗଲେ ପିଣ୍ଡ ଛାଡ଼ି
ନେବେ ମୋତେ ଯେବେ କୋକେଇରେ କାଢ଼ି ।
ଦେଇଥିବ ତହିଁ ମୋ ଶବ ଶୁଆଇ
ବେନି ପାଶେ ବେନି କରକୁ ଝୁଲାଇ ।
ଯା ଦେଖି ଜାଣିବେ ଜଗତେ ସମସ୍ତେ
ଆସିଥିଲା ଫେରିଗଲା ଶୂନ୍ୟ ହସ୍ତେ ।

କବି ଅସାରସଂସାରର କଦର୍ଯ୍ୟ ଚିତ୍ର ଦେଇ ତାର ଅନିତ୍ୟତ୍ୱ ପ୍ରତିପାଦିତ କରିଛନ୍ତି ଏବଂ 'ଧର୍ମ'ପ୍ରତି ଲୋକଙ୍କ ଦୃଷ୍ଟି ପଡ଼ୁ ବୋଲି ଆଶା ପ୍ରକାଶ କରିଛନ୍ତି । ଅନିତ୍ୟ-ଯଶଲିପ୍ସାରେ ଲିପ୍ତ ନ ରହି ସତ୍‌ମାର୍ଗରେ ଜୀବନଯାପନ କରି ଧର୍ମରେ ମତି ଦେଲେ 'ଦରବାର'ର ଆସନ କଳଆ ଆଉ ରହିବ ନାହିଁ; ଏହା ଅକଳଙ୍କିତ୍‌କର ପ୍ରଶସ୍ତିମାନ ହେବ—ଏହା ଦୃଢ଼ କଣ୍ଠରେ ବ୍ୟକ୍ତ କରିଛନ୍ତି ।

ଶୋଭଇ କି ଭାଇ ଭୂମ୍ବର ବକ୍ଷରେ
ଶାଶ୍ୱତ ହୋଇ ଏ ନମତା ନଶ୍ୱରେ
ହେବାର ଲୋଡ଼ିଛ ଯେ ସମ୍ମାନ-ପାତ୍ର
ସ୍ୱର୍ଗୀନ୍ଦୁହେଁ ତା ସ୍ୱର୍ଗୀଭାସ ମାତ୍ର ।
ସ୍ପର୍ଶମଣି ଯାର ପାଇବାର ଆଶ,
ଭେଲ ପାଇଁ କମ୍ପା ତାର ଏ ପ୍ରୟାସ ?
ସ୍ୱଜନସ୍ବେ କହୁଛି ଘେନ ମୋର ବୋଲ
ନଦୀ ମଣି ଭ୍ରମେ କମ୍ପା ନଥ ପୋଲ ?

ଶିଶୁ-ମନୋହର ବାହାରର ଝଲ
ଦେଖି କର କମ୍ପା ଶିଶୁ ପ୍ରାୟେ ଅଳ ?
କେଉଁ ବଡ଼ ତୁମ୍ଭେ କେଉଁ କ୍ଷୁଦ୍ର ପୁଣି
ଜାଣି ହୁଅ ଏହି କଜିଆରେ ଗୁଣୀ ।

ସାଂସାରିକ ଅସାର ବ୍ୟାପାରରେ ନରହେ ଲିପ୍ତ ନରହି ସାରତତ୍ତ୍ୱରେ କାଳକ୍ଷେପଣ କରିବାକୁ କବି ଲୋକଙ୍କୁ ଅନୁରୋଧ କରିଛନ୍ତି । ଭେଦଭାବ, ସାନବଡ଼ ଭାବହିଁ ଏହି ବୃଥା କଜିଆର କାରଣ । ଧର୍ମକୁ ଆଶ୍ରୟ କଲେ ଏ ଭେଦଭାବ ଅଚିରେ ଲୋପ ହେବ, ସବୁ ସମାନ ଦେଖାଯିବ ।

ନ ସଡ଼ ବଡ଼ମା-ତାମସ-ଗହ୍ୱରେ
ତୁମେ ଉଠ ଧର୍ମଶଇଳଶିଖରେ ।
ଗୃହିଁଲେ ଯେସନ ଶଇଳଶିଖରୁ
ସମହୋଶେ ମହୀସ୍ଥିତ ତୃଣତରୁ ।
ଧର୍ମନେତ୍ରେ ସାନବଡ଼ ଦୂନଆର ।
ଦୂରୁ ସବୁ ଦିଶେ ହୋଶେ ଏକାକାର ।

କବି ଏ ପ୍ରସଙ୍ଗରେ ସାମନ୍ତ ଚନ୍ଦ୍ରଶେଖର ସିଂହ ଦରବାରକୁ ଆସିଥିବା ଅନୁମାନ କରି ଏ ଅସାର ଉପାଧି ପାଇଁ ତାଙ୍କର ଆଗ୍ରହକୁ ପସନ୍ଦ କରି ନାହାନ୍ତି । ସାମନ୍ତଙ୍କ ଗୌରବ ଏ ଅନିତ୍ୟଉପାଧିର ବହୁ ଉର୍ଦ୍ଧ୍ୱରେ ଥିବା ବ୍ୟକ୍ତ କରିଛନ୍ତି । ସାମନ୍ତଙ୍କୁ ଭାରତର ଦ୍ୱିତୀୟ ଭାସ୍କରାଚାର୍ଯ୍ୟ ବୋଲି କହି ତାଙ୍କୁ ସମ୍ମାନିତ କରିଛନ୍ତି ଏବଂ ଉତ୍କଳ ତାଙ୍କଦ୍ୱାରା ଗୌରବାନ୍ୱିତ ହୋଇଥିବା କହିଛନ୍ତି । ଏ ମହାପୁରୁଷ ରାଜାଙ୍କ ଉତ୍ପୀଡ଼ନରେ ବହୁ ଦୁଃଖ ଭୋଗ କରି ଅତି ଦାରିଦ୍ର୍ୟ ଅବସ୍ଥାରେ ଜୀବନଯାପନ କରୁଥିବାରୁ ଅତ୍ୟନ୍ତ ମର୍ମାହତ

ହୋଇଛନ୍ତି । ସାମନ୍ତଙ୍କ ଗୁଣକୁ ସ୍ୱଦେଶବାସୀ ଚିହ୍ନିପାରିଲେ ନାହିଁ, ପରଦେଶୀଙ୍କଦ୍ୱାରା ତାଙ୍କର ଗୁଣ ଆଦର ହେଲା ଏବଂ ସେ ଜଗତରେ ପରିଚିତ ହେଲେ,ଏହା କବିଙ୍କ ପ୍ରାଣରେ ବିଶେଷ ଆଘାତ ଦେଇଛି । ସେ ଦୃଢ଼ସ୍ୱରରେ ବ୍ୟକ୍ତ କରିଛନ୍ତି—

ସିଦ୍ଧାନ୍ତଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ ।

କିନ୍ତୁ ସାମନ୍ତ ସେଦିନ ଦରବାରରେ ଉପସ୍ଥିତ ନଥିଲେ, ବିଳମ୍ବରେ କଟକରେ ପହଞ୍ଚିବାରୁ ଦରବାରକୁ ଗଲେ ନାହିଁ । ଏହାର କେତେଦିନ ପରେ କମିସନର ଅଫିସରେ ଏକ ସ୍ୱତନ୍ତ୍ର ଦରବାର ହୋଇ ତାଙ୍କୁ 'ମହାମହୋପାଧ୍ୟାୟ' ପଦବୀପତ୍ର କମିସନର ପ୍ରଦାନ କରିଥିଲେ ।

କବିତାଟିରେ 'କବିତ୍ୱ' ଅଂଶ ଅପେକ୍ଷା ଦାର୍ଶନିକ ତତ୍ତ୍ୱ-ଦେଇ ବିବରଣ ଅଧିକ ସ୍ଥାନ ଅଧିକାର କରିଛି । ନିଃସଙ୍ଗ ବା ଆସକ୍ତ-ରହିତ ହୋଇ ଲୋକ ଧର୍ମରେ ମନଦେଲେ ବୃଥା ଅହମିକା, କନ୍ଦଳ, ଭେଦଭାବ ପ୍ରଭୃତି ଯାବତୀୟ ଦୁର୍ଗୁଣ ଲୋପ ପାଇବ, ଇହଜନ୍ମରେ ଯମର ଦରବାରକୁ ଭୁଲିନଯାଇ ନଶ୍ୱର ବିଷୟରେ ନମାତି, ଧର୍ମାଚରଣ କଲେ ଇହ ଓ ପର କାଳ ଉଭୟ ସୁଖକର ହେବ—ଏହି ଉପଦେଶ କବି ଦେଇଛନ୍ତି ।

କବିତାଟିର ଭାଷା ମାର୍ଜିତ ହୋଇଛି । କବି କବିତ୍ୱ-ବିରୋଧୀ କେତେକ ଶବ୍ଦ-ଯୋଜନା ପ୍ରୟୋଗ କରିଛନ୍ତି । ଏହାଦ୍ୱାରା କବିତାର କୋମଳପଦାବଳୀ-ଜନିତ ମାଧୁର୍ଯ୍ୟ ମିଳୁନାହିଁ । କେତୋଟି ଉଦାହରଣ—

(୧) କାଞ୍ଚୀ ଜେମାବେଣୀ ପ୍ରଭବେଣୀ ଯୁତା ।
(୨) ବାଣ ନୃଦର୍ଶନ, ତୋରଣ ଗଠନ,
(୩) ବଧିରକ୍ଷାପ୍ରିୟ ବୈଧେୟ ବୃନ୍ଦର ।

କବିତାଟିରେ ସାଧାରଣ ପ୍ରଚଳିତ ଶବ୍ଦର ବ୍ୟବହାର ମଧ୍ୟ ଅଛି । ଯଥା—ଭେକ, ଭିଆଣ, ଜାଁକ, ସୁଆଗ, ଫୁଲପଣ, ଥୋଡ଼ା, ହାବୋଡ଼େ, ଖଇଣୀ, ଗୁମୁଆ ଇତ୍ୟାଦି ।

କବିତାଟିରେ ଭାବର ସମବିକାଶ ଲକ୍ଷିତ ହେଉଛି । କେତେକ ପ୍ରସଙ୍ଗର ଏକାଧିକ ସ୍ଥାନରେ ବର୍ଣ୍ଣନା ବିରକ୍ତିକର ବୋଧହେଉଛି, ଏହା କବିତାଟିର ସୌନ୍ଦର୍ଯ୍ୟକୁ କେତେକାଂଶରେ ନଷ୍ଟ କରୁଛି । ରାଜା, ରାଜାମାନଙ୍କ ବ୍ୟବହାର, ନଶ୍ୱରତା ପ୍ରଭୃତି କେତେକ ବିଷୟ ବାରମ୍ବାର ବ୍ୟକ୍ତ ହୋଇଛି ।

କବି 'ଦରବାର'କୁ ବ୍ୟଙ୍ଗାତ୍ମକ କବିତା ରୂପରେ ଲେଖିବା କଳ୍ପନା କରି ପ୍ରଥମ ଅଂଶରେ ବ୍ୟଙ୍ଗର ସୁନ୍ଦର ଚିତ୍ର ଦେଇଥିଲେ ମଧ୍ୟ କବିତାଟିର ଅଧିକାଂଶ ଭାଗ ଦାର୍ଶନିକ ତତ୍ତ୍ୱ, ଓ ଉପଦେଶରେ ପୂର୍ଣ୍ଣଥିବାରୁ ବ୍ୟଙ୍ଗର ଶୋଭା କେତେକାଂଶରେ କ୍ଷୁନ୍ନ ହୋଇଛି ।

ପୋଲିସ୍‌ - ଖୋସାମୋଦକାରୀ, ସାହେବୀ ପୋଷାକ ପରିହିତ ବାବୁ, ଗୁମୁଆ, ଶ୍ୱେତାଙ୍ଗ ଉଚ୍ଚକର୍ମଚାରୀଙ୍କୁ ମିଥ୍ୟା ରିପୋର୍ଟ ଦେଇ ମିଥ୍ୟା ଧାରଣା ସୃଷ୍ଟି କରିବା ଲୋକ, ରାଜାଙ୍କ ଶୋଷଣ ପ୍ରଭୃତି ବିଷୟର ସୁନ୍ଦର ଚିତ୍ର କବି ପ୍ରଦାନ କରିଛନ୍ତି । ଏସବୁ ଦୋଷ ଦୁର୍ବଳତା ବର୍ତ୍ତମାନର ସମାଜରେ ମଧ୍ୟ ଦେଖାଯାଏ ; ଏହା ଅଧଃପତିତ ମାନବସମାଜର ଦୋଷ ଦୁର୍ବଳତା ।



# ସପ୍ତତ୍ରିଂଶ ପରିଚ୍ଛେଦ

## କବି ଓ କବିତ୍ୱ

ପ୍ରାଚୀନ ଓଡ଼ିଆ କାବ୍ୟଲେଖକମାନଙ୍କ ପରି ରାଧାନାଥ ମଧ୍ୟ ସଂସ୍କୃତ ଭାଷା ଓ ସାହିତ୍ୟର ପ୍ରଭାବରୁ ମୁକ୍ତ ନୁହନ୍ତି । ସେ ସ୍ୱକାବ୍ୟମାନଙ୍କରେ ବହୁ ସ୍ଥାନରେ ସଂସ୍କୃତବହୁଳ ପଦାବଳୀ ଦେଇଛନ୍ତି । ପ୍ରାଚୀନ ଆଲଙ୍କାରିକମାନଙ୍କର ବହୁଳ ଶବ୍ଦାଳଙ୍କାର ପ୍ରୟୋଗ ରାଧାନାଥଙ୍କ କୃତିମାନଙ୍କରେ ଦେଖାଯାଉନଥିଲେ ମଧ୍ୟ ଉପମା, ଉତ୍ପ୍ରେକ୍ଷାଦି ଭାବାଳଙ୍କାରର ସୁନ୍ଦର ବ୍ୟବହାର ଦେଖାଯାଏ ।

ରାଧାନାଥ ପ୍ରାଚୀନ କବିମାନଙ୍କ ପରି ଶୃଙ୍ଗାରରସାଶ୍ରିତ କାବ୍ୟ ରଚନା କରିଥିଲେ ମଧ୍ୟ ଏହି ରସର ଉତ୍କଟ ପ୍ରକାଶକୁ ସେ ସ୍ଥାନ ଦେଇ ନାହାନ୍ତି । ଏହାଦ୍ୱାରା କାବ୍ୟଗୁଡ଼ିକ ଆଦିରସାତ୍ମକ ହୋଇଥିଲେ ମଧ୍ୟ ସୁରୁଚିସମ୍ପନ୍ନ ହୋଇଛି ।

ପ୍ରାଚୀନ କବିମାନଙ୍କ କାବ୍ୟମାନଙ୍କରେ ନାୟକ ଓ ନାୟିକାର ପୂର୍ବଜନ୍ମ ବୃତ୍ତାନ୍ତ, ମର୍ତ୍ତ୍ୟଜନ୍ମ, ରୂପବର୍ଣ୍ଣନା, ପ୍ରଥମଭେଟ, ବିରହ, ପୁନର୍ମିଳନ, ରତିକ୍ରୀଡ଼ାଦି ବିଷୟ ଓ ଋତୁ, ବନ, ନଦୀ ପର୍ବତ, ସରୋବର, ନଗର ପ୍ରଭୃତିର ବର୍ଣ୍ଣନାରେ ଭାବ ଓ ପ୍ରକାଶ ଶୈଳୀରେ ସାମ୍ୟ ଦେଖାଯାଏ । ଏ କ୍ଷେତ୍ରରେ ନୂତନତ୍ୱ ଦେଖାଯାଏ କ୍ୱଚିତ । ପୂର୍ବାଚାର୍ଯ୍ୟମାନଙ୍କ ଅଳଙ୍କାରଗ୍ରନ୍ଥସମ୍ମତ ପ୍ରଣାଳୀ ଅନୁସରଣ କରିବା ପ୍ରକୃତ କବିର କାର୍ଯ୍ୟ ବୋଲି ଲୋକଙ୍କ ଧାରଣା ଥିବାରୁ କବିମାନେ ଏହି ପନ୍ଥା ଅନୁସରଣ କରିବାକୁ ପସନ୍ଦ କରୁଥିଲେ । ପ୍ରାଚୀନ ଅଳଙ୍କାର ଗ୍ରନ୍ଥମାନଙ୍କର ପ୍ରଭାବରୁ ନବ୍ୟଯୁଗର କବିମାନେ ମୁକ୍ତ

ଥିବାରୁ ଏବଂ ସରଳ ସ୍ୱାଭାବିକ ରୀତି ଆଦରଣୀୟ ହେଉଥିବାରୁ ରାଧାନାଥ ନବ୍ୟଯୁଗରୀତିକୁ ମଧ୍ୟ ତ୍ୟାଗ କରିନାହାନ୍ତି । ନବ୍ୟଯୁଗରେ ପାଶ୍ଚାତ୍ୟ ରୀତିର ପ୍ରଭାବ ପ୍ରାୟ ଅଖଣ୍ଡ ଥିବାରୁ ବିଧି-ନିଷେଧର ପ୍ରଭାବ ଲୋପ ପାଇଛି କହିଲେ ଚଳେ । ରାଧାନାଥ ପ୍ରାଚୀନ ଓ ନବ୍ୟ ଉଭୟ ଯୁଗର ରୀତି ଅନୁସରଣ କରିଥିଲେ ମଧ୍ୟ ରମଣୀୟ କାବ୍ୟ ରଚନା କରି ନବ୍ୟରୀତିପ୍ରବାହକୁ ଶକ୍ତିଶାଳୀ କରିପାରିଛନ୍ତି ଏବଂ ଫଳରେ କବିବର ନବ୍ୟଯୁଗର ଅଗ୍ରଦୂତ ରୂପେ ପ୍ରତିଷ୍ଠା ଲଭ କରିଛନ୍ତି ।

କବିବର ରାଧାନାଥ ଉତ୍କଳ ଇତିହାସ ଓ କିମ୍ବଦନ୍ତୀରୁ କଥାବସ୍ତୁ ସଂଗ୍ରହ କରି କେତେକ କାବ୍ୟକବିତା ରଚନା କରିଛନ୍ତି । ଏଥିପୂର୍ବରୁ ଅଳ୍ପ ଓଡ଼ିଆ କବି କୃତିତ୍ୱ ସହକାରେ ଏପରି କରି-ପାରିଛନ୍ତି । ପୁରୁଷୋତ୍ତମ ଦାସଙ୍କ "କାଞ୍ଚୀକାବେରୀ", ବ୍ରଜନାଥ ବଡ଼ଜେନାଙ୍କ "ସମରତରଙ୍ଗ" ଏଠାରେ ଉଲ୍ଲେଖଯୋଗ୍ୟ ।

ରାଧାନାଥ ଛବିଳ-ଉତ୍କଳର ବିଭିନ୍ନ ସ୍ଥାନରେ ଅବସ୍ଥିତ ମନୋହର ପ୍ରାକୃତିକ ଦୃଶ୍ୟାବଳୀର ସୌନ୍ଦର୍ଯ୍ୟପୂର୍ଣ୍ଣ ସରସ ବର୍ଣ୍ଣନା କରିଛନ୍ତି । ଉତ୍କଳୀୟ ପ୍ରକୃତିର ବର୍ଣ୍ଣନା ପ୍ରାଚୀନ ଓଡ଼ିଆ କବିମାନଙ୍କ କୃତିମାନଙ୍କରେ ଅଳ୍ପ ଦେଖାଯାଏ । ଋତୁ, ବନ, ପର୍ବତ, ନଦୀ, ସରୋବର ପ୍ରଭୃତିର ଦୃଶ୍ୟ ସବୁଠାରେ ପ୍ରାୟ ଏକପ୍ରକାର ଥିବାରୁ ବିଶିଷ୍ଟ ସ୍ଥାନର ଦୃଶ୍ୟର ବର୍ଣ୍ଣନା ଦେବା ପ୍ରାଚୀନ କବିମାନେ ଆବଶ୍ୟକ ମନେ କରୁ ନଥିଲେ ; ବର୍ଣ୍ଣନା ଶୈଳୀକୁ କ୍ରମଭଙ୍ଗ-ଦୋଷ-ବର୍ଜିତ କରିବା ନିମନ୍ତେ ସେମାନେ ଆପ୍ରାଣ ଚେଷ୍ଟା କରୁଥିଲେ । ବିଶେଷତଃ କାଳ୍ପନିକ ନାୟକନାୟିକା, ଦେଶ ପ୍ରଭୃତି ନେଇ ସେମାନେ କାବ୍ୟର ସଂସାର ଗଠନ କରିଥିବାରୁ ବିଶିଷ୍ଟ ସ୍ଥାନର ଦୃଶ୍ୟବର୍ଣ୍ଣନାରେ ଧ୍ୟାନ ଦେଉନଥିଲେ । ଅବଶ୍ୟ ଶ୍ରୀକ୍ଷେତ୍ର ପରି ବିଖ୍ୟାତ ତୀର୍ଥସ୍ଥାନର

ବର୍ଣ୍ଣନା, ଜଗନ୍ନାଥଙ୍କ ବାହୁଡ଼ା ଯାତ୍ରାର ବର୍ଣ୍ଣନା, ମହୋଦଧି, ନରେନ୍ଦ୍ର ପ୍ରଭୃତିର ଉଚ୍ଚକୋଟୀର ବର୍ଣ୍ଣନା ଯାନକୃଷ୍ଣ, ଉପେନ୍ଦ୍ର, ଲୋକନାଥ ପ୍ରଭୃତି କବିମାନେ କରିଛନ୍ତି । କବି ବ୍ରଜନାଥ ବଡ଼ଜେନା ଐତିହାସିକ ଘଟନାକୁ ଭିତ୍ତିକରି ସମରତରଙ୍ଗ ରଚନା କରିଛନ୍ତି । ଏଥିରେ ସେ ପ୍ରାକୃତିକ ଓ ଅପ୍ରାକୃତିକ ଦୃଶ୍ୟର ସୁନ୍ଦର ବର୍ଣ୍ଣନା ଦେଇ ସ୍ୱ ଲେଖନୀକୁ ଅମର କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ଗୌରବ ବୃଦ୍ଧି କରିଛନ୍ତି ।

ଯୁଗେ ଯୁଗେ ଓଡ଼ିଆ କବିମାନେ ପ୍ରକୃତିର ଉପାସନା କରି ଆସିଛନ୍ତି । ଜୀବନ୍ତ ପ୍ରକୃତି ମାନବସମାଜର ସୁଖଦୁଃଖରେ ଭାଗୀ ହୋଇଛି । ମାନବହୃଦୟର ସ୍ପନ୍ଦନ ପ୍ରକୃତିଦେବୀର ହୃଦୟକୁ ସ୍ପର୍ଶ କରିଛି ।

କବି ମାର୍କଣ୍ଡଦାସ 'କେଶବ କୋଇଲି'ରେ ପୁତ୍ର ବିରହକାତରା ଯଶୋଦାଙ୍କ ମୁଖରେ ବାତ୍ସଲ୍ୟରସାତ୍ମକ ଭାବପ୍ରକାଶ ପ୍ରସଙ୍ଗରେ ମାନବଜୀବନ ଉପରେ ପ୍ରକୃତିର ପ୍ରଭାବକୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି । 'କୋଇଲି ଗଲା ପୁତ୍ର ବାହୁଡ଼ି ନଇଲା; ଗହନ ତ ବୃନ୍ଦାବନ ଶୋଭା ନ ପାଇଲା, ଲୋ କୋଇଲି ।'' ମାତାର ପୁତ୍ର-ବିଚ୍ଛେଦଜନିତ ଦୁଃଖ ସହିତ ପ୍ରକୃତିର ହାବଭାବ ମଧ୍ୟ ସମଭାବରେ ପ୍ରକାଶ ଲାଭ କରିଛି । ଯଶୋଦା ପୁତ୍ର-ବିଚ୍ଛେଦରେ ଏତେ ଆତୁର ହୋଇପଡ଼ିଲେ ଯେ ତାଙ୍କୁ ଜଣାଗଲା, ଯେପରି ଗିରିବନ ମଧ୍ୟ ତାଙ୍କ ସହିତ ସମଭାବରେ ଦୁଃଖ କରୁଛି । ଉପେନ୍ଦ୍ରାଦି କବିମାନେ ପ୍ରକୃତିର ଅତି ରମଣୀୟ ଚିତ୍ର ପ୍ରଦାନ କରି ଯଶସ୍ୱୀ ହୋଇଛନ୍ତି । ବନ, ନଦୀ, ସରୋବର, ରବି, ସନ୍ଧ୍ୟା, ପର୍ବତ ପ୍ରଭୃତିର ବର୍ଣ୍ଣନା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଅତି ଗୌରବ ସ୍ଥାନ ଅଧିକାର କରିଛି । ନାୟକ-ନାୟିକାଙ୍କ ବିରହବିଚ୍ଛେଦ ମିଳନ ପ୍ରଭୃତି ଅବସ୍ଥାର ଅନୁଚିନ୍ତା

ଉପରେ ପ୍ରକୃତିର ପ୍ରଭାବ ସ୍ପଷ୍ଟ ସୁନ୍ଦର କବିତ୍ୱପୂର୍ଣ୍ଣ ପଦାବଳୀ ରୂପ-ପ୍ରାପ୍ତ ହୋଇଛି ।

ପ୍ରକୃତି ଉପାସକ ରାଧାନାଥ ଉତ୍କଳର ପ୍ରକୃତି-ଦେବୀଙ୍କୁ ବିଶେଷ ଭାବରେ ଉପାସନା କରିଛନ୍ତି । ଏଥିରେ ତାଙ୍କର ଦେଶାତ୍ମବୋଧ ସମ୍ୟକ ଭାବରେ ପ୍ରକାଶିତ ହୋଇଛି । କବି ପ୍ରକୃତିର ଚିତ୍ର ଅଙ୍କନ କରିବା ସଙ୍ଗେସଙ୍ଗେ ଯେଉଁସବୁ ଉଚ୍ଚକୋଟିର ଭାବରାଶି ପ୍ରକାଶ କରିଛନ୍ତି ତାହା ଅତି ମୂଲ୍ୟବାନ୍ ଓ ପବିତ୍ର ହୋଇଛି । ପ୍ରକୃତି ବର୍ଣ୍ଣନା ଅବକାଶରେ ସେ ମାନବ ପ୍ରକୃତିର ଯେଉଁ ଚିତ୍ରର ଅବତାରଣା କରିଛନ୍ତି ତାହା ଅତି ମନୋହର ଓ ଉପଦେଶପୂର୍ଣ୍ଣ ହୋଇଛି । ତାଙ୍କର 'ତୁଳସୀସ୍ତବକ'ର ବର୍ଷାଋତୁ ବର୍ଣ୍ଣନା ପାଠ କଲେ ମନେ ହେଉଛି, ସତେ ଯେପରି ପ୍ରକୃତି ଦେବୀ ତାହାଙ୍କ ବିଭିନ୍ନ ରୂପ ପ୍ରକାଶରେ ଅମୂଲ୍ୟ ତତ୍ତ୍ୱରାଶିର ସୂଚନା ଦେଇଯାଇଛନ୍ତି । କବିବର ରାଧାନାଥ ପ୍ରକୃତିର ସୁପ୍ରଭାବ ଓ କୁପ୍ରଭାବକୁ ମଧ୍ୟ ବର୍ଣ୍ଣନା କରିଛନ୍ତି । ବର୍ଷାକାଳ ଯେପରି ଆନନ୍ଦଦାୟକ, ସେପରି ଦୁଃଖଦାୟକ ମଧ୍ୟ । ବର୍ଷାକାଳ ଉଦ୍‌ଭିଦର ମିତ୍ର, ସେହି ବର୍ଷା ପୁଣି ପଦ୍ମବନର ବିନାଶର କାରଣ । ବିପରୀତ ଧର୍ମର ସୂଚନା ଦେଇଥିବାରୁ ପ୍ରକୃତିଚିତ୍ରଣ ମନୋରମ ଓ ଭାବଗମ୍ଭୀର ହୋଇଛି ।

ପ୍ରକୃତିଭକ୍ତ ରାଧାନାଥଙ୍କ ସମ୍ମୁଖରେ ପ୍ରକୃତି ସର୍ବଦା ଅଭିନବ ରୂପରେ ନୃତ୍ୟ କରୁଥିଲା । ବାହ୍ୟ ପ୍ରକୃତିର ରୂପ ଅନ୍ତର ଉପରେ ପ୍ରଭାବ ବିସ୍ତାର କରୁଥିବାରୁ କବି ପ୍ରକୃତି ବର୍ଣ୍ଣନାରେ ମାନବହୃଦୟର ଭାବରାଜିକୁ ବଡ଼ ସୁନ୍ଦର ଭାବରେ ରୂପ ଦେଇ ପାରିଛନ୍ତି ।

କବିବର ଦେବୀ ବୀଣାପାଣିଙ୍କର ଶାଶ୍ୱତ ସେବକ ଥିଲେ ଏବଂ ସୁଷମାଗ୍ରାହକ ସମାଜର ଅଗ୍ରଣୀ ଥିଲେ କହିଲେ ଚଳେ । ସେ

ଘାରତର ବିଭିନ୍ନ ସ୍ଥାନ ଭ୍ରମଣ କରି ନଦ, ନଦୀ, ମରୁ, କାନନ, ପର୍ବତରେ ପ୍ରକୃତିର ବିଭିନ୍ନ ପ୍ରକାଶ ଦେଖିଥିଲେ ମଧ୍ୟ ସେଥିରେ ସେ ସୁଖଲାଭ କରିପାରି ନଥିଲେ ; ପୁଣି, ସେଥିରେ ପୂର୍ଣ୍ଣତା ନଥିଲା । ମଗ୍ନମାନଙ୍କ ମାନାମ୍ବ ଚିଲିକା ତାଙ୍କୁ ଏକାଧାରରେ ସୁଖ-ଶାନ୍ତି-ପ୍ରୀତି ଦାନ କରିଥିଲା ; ପ୍ରକୃତି-ପୂଜାରୀ ଆନନ୍ଦର ଅଧିକାରୀ ହୋଇଥିଲେ । ପ୍ରକୃତିଶୋଭାଲୁବ୍ଧକର ଶୁଦ୍ଧ ଅଭିଳାଷପୂର୍ଣ୍ଣ କରିବା ଅଦଭୁତ କ୍ଷମତା ପ୍ରକୃତିର ଥିବା କବି ସ୍ୱୀକାର କରିଛନ୍ତି । ସେ ଜୀବହୀନ ଜଡ଼ ପ୍ରକୃତିକୁ ଜୀବଦାନ କରିଛନ୍ତି । ପ୍ରକୃତିକୁ ଜୀବନର ସଙ୍ଗୀ ରୂପେ ଚିତ୍ରଣ କରିଥିବାରୁ କବିଙ୍କର ପ୍ରକୃତିଚିତ୍ରଣ ନିର୍ଜୀବ ନିରସ ନହୋଇ ପ୍ରାଣବନ୍ତ ଓ ସରସ ହୋଇଛି । ପ୍ରକୃତିକୁ ଏହିଭାବରେ ଦେଖିବାରେ ଉତ୍କଳୀୟ କବି ପରଂପରାକୁ ରାଧାନାଥ ଆନନ୍ଦରେ ଗ୍ରହଣ କରି ସ୍ୱକୃତିଦ୍ୱାରା ଏହାର ଗୌରବକୁ ବର୍ଦ୍ଧିତ କରିଛନ୍ତି ।

ରାଧାନାଥ ପ୍ରକୃତି ଚିତ୍ରଣରେ ଯଥାର୍ଥରେ ଜାତୀୟ କବି । ଚିଲିକା, ପାର୍ବତୀ, କେଦାରଗୌରୀ, ଚନ୍ଦ୍ରଭାଗାରେ ପୁରୀ ଜିଲ୍ଲାର, ନନ୍ଦିକେଶରୀ ଓ ଯଯାତିକେଶରୀରେ କଟକ ଜିଲ୍ଲାର, ଉଷାରେ ବାଲେଶ୍ୱର, ଜିଲ୍ଲାର,ମହାଯାତ୍ରାରେ ଗଡ଼ଜାତର କେତେକ ରମଣୀୟ ପ୍ରାକୃତିକ ଦୃଶ୍ୟର ଜୀବନ୍ତ ଚିତ୍ର ପ୍ରଦାନ କରି କବି ଉତ୍କଳ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଉତ୍କଳର ପ୍ରାକୃତିକ ସୌନ୍ଦର୍ଯ୍ୟର ଗୌରବ ପ୍ରକଟନ କରି ଉତ୍କଳଜନନୀର ସେବାର ନିଦର୍ଶନ ପ୍ରଦାନ କରିଛନ୍ତି ।

ଏକ ସ୍ଥଳରେ ସେ କହିଛନ୍ତି, "ମୋର ରଚନା ସହିତ ଜୀବନର କୌଣସି ସମ୍ପର୍କ ନାହିଁ । ମୁଁ କେବଳ ବହିଃସଂସାରର ପ୍ରାକୃତିକ ଦୃଶ୍ୟର ସୌନ୍ଦର୍ଯ୍ୟ ଦେଖି ବ୍ୟାପୃତ ଥିଲି । ପାର୍ବତୀୟ

ପ୍ରଦେଶରେ ପୁନଃ ପୁନଃ ପରିଭ୍ରମଣ ନିବନ୍ଧନ ପ୍ରକୃତି ସହିତ ଆଳାପ-ପରିଚୟର ମଧ୍ୟ ଯଥେଷ୍ଟ ସୁବିଧା ପାଇଥିଲି । ମୋର ଓଡ଼ିଆ କାବ୍ୟଗୁଡ଼ିକ ଉତ୍କଳୀୟ ପ୍ରକୃତିର ପ୍ରତିକୃତି କହିଲେ ମଧ୍ୟ ଚଳେ ।" (ଶ୍ରୀ ଅଖିଳଚନ୍ଦ୍ର ପାଳିତଙ୍କଠାକୁ ରାଧାନାଥଙ୍କ ଚିଠି) (ଉତ୍କଳ ସାହିତ୍ୟ ୧୩ଶ-ଭାଗ ୬ଷ୍ଠ ସଂଖ୍ୟା—"ଉତ୍କଳ କବିଗୁରୁ ୰ରାୟ ରାଧାନାଥ ରାୟ ବାହାଦୁର") ।

କବି ପ୍ରକୃତି ଦେବୀର ଉପାସକ ଥିବାରୁ ପ୍ରକୃତରେ ତାଙ୍କ କାବ୍ୟଗୁଡ଼ିକ "ଉତ୍କଳୀୟ ପକୃତିର ପ୍ରତିକୃତି" ସ୍ୱରୂପ ଦେଖାଯାଉଛି । "ପ୍ରକୃତିର ପ୍ରତିକୃତି" ଅଙ୍କନ କରି ତାକୁ ପ୍ରାଣବନ୍ତ କରିବାରେ କବି ଯେଉଁ ନୈପୁଣ୍ୟ ଦେଖାଇଛନ୍ତି ତାହା ଚରିତ୍ରଚିତ୍ରଣରେ ସେତେ ପରିମାଣରେ ଦେଖାଯାଏନାହିଁ । କବି ମାନବ ଅପେକ୍ଷା ପ୍ରକୃତିଦେବୀଙ୍କୁ ବିଶେଷ ଭାବରେ ଆଦର କରିଥିବାରୁ ଏହା ସମ୍ଭବ ହୋଇଛି । ମାନବ-ହୃଦୟର ଗମ୍ଭୀରଭାବ ନିଚୟକୁ ବିଶ୍ଳେଷଣ କରି ଚରିତ୍ରରେ ପ୍ରତିଷ୍ଠିତ କରିବାରେ ସେ ବିଶେଷ ଭାବରେ ସମର୍ଥ ହୋଇପାରି ନାହାନ୍ତି । ଏହି କାରଣରୁ ରାଧାନାଥଙ୍କ ବହୁ ନରନାରୀ ଚରିତ୍ର ପୂର୍ଣ୍ଣଭାବରେ ବିକାଶ ଲାଭ କରିପାରି ନାହିଁ । ତେବେ, ଯେଉଁ ଭାବଟି ସେ ପ୍ରଦର୍ଶନ କରିବା ପାଇଁ ଇଚ୍ଛା କରିଛନ୍ତି, ସେଥିରେ ସେ ବହୁ ଅଂଶରେ କୃତକାର୍ଯ୍ୟ ହୋଇଛନ୍ତି ।

ପୁଣି ପ୍ରକୃତିର ଉପାସକ କବି ସ୍ୱଚକ୍ଷୁରେ ପ୍ରକୃତି ଦେବୀଙ୍କୁ ଦେଖିଛନ୍ତି ଏବଂ ସେହି ରୂପକୁ ତଦ୍ରୂପ କରି ଅଙ୍କନ କରି-ପାରିଛନ୍ତି; କଳ୍ପନାର ବିଳାସ ଏଥିରେ ବିଶେଷ ସ୍ଥାନ ପାଇନାହିଁ । କବି ମାନବସମାଜର କୋଳାହଳଠାରୁ ବହୁ ଦୂରରେ ରହିବା ପାଇଁ ବ୍ୟାକୁଳ ଥିବାରୁ ସମାଜର ପୂର୍ଣ୍ଣରୂପ ଦେଖିବା ପାଇଁ

ପୂର୍ଣ୍ଣସୁଯୋଗ ପାଇନାହାନ୍ତି । ଫଳତଃ, ନରନାରୀ ଚରିତ୍ରଚିତ୍ରଣରେ ତାଙ୍କର ବିଶେଷ ନିପୁଣତା ଦେଖାଯିବା ସମ୍ଭବ ହେଉନାହିଁ ।

ନାରୀ-ରୂପ-ବର୍ଣ୍ଣନାରେ କବିଙ୍କ ଲେଖନୀ ଉତ୍କଳର ପାରଂପରିକ ବର୍ଣ୍ଣନାଠାରୁ ପୃଥକ୍ । ନାରୀରୂପ ବର୍ଣ୍ଣନାରେ କବି ବିଶେଷ ଭାବରେ ସଂଯମତା ପ୍ରକାଶ କରିଛନ୍ତି । ପ୍ରାଚୀନ କବିଙ୍କର ଆଦିରସାଶ୍ରିତ ଭାବରାଜି ଅଙ୍ଗପ୍ରତ୍ୟଙ୍ଗ ବେଶଭୂଷା ପ୍ରଭୃତି କବି ବର୍ଣ୍ଣନାରେ ପ୍ରକଟିତ ହୋଇନାହିଁ । ପ୍ରାଚୀନ କବିମାନଙ୍କର କାବ୍ୟ ଆଦିରସାଶ୍ରିତ ଥିବାରୁ ସେମାନେ ପ୍ରତ୍ୟେକ ବର୍ଣ୍ଣନାରେ ରସବିକାଶ ସହାୟକ ଭାବହିଁ ପ୍ରକାଶ କରି କାବ୍ୟକୁ ରସାପ୍ଲୁତ ଓ ସାର୍ଥକ କରିଛନ୍ତି । ପୃଥକ୍ ଶୈଳୀ ବ୍ୟବହାର କରି କାବ୍ୟବସ୍ତୁର ଯୋଜନା ନିର୍ଣ୍ଣୟ କରିଥିବାରୁ ନାରୀରୂପ ବର୍ଣ୍ଣନାରେ ରାଧାନାଥ ପରଂପରା ପଥକୁ ବହୁ ଅଂଶରେ ତ୍ୟାଗ କରିଛନ୍ତି । ତାଙ୍କର ନାରୀରୂପଗୁଡ଼ିକ ସ୍ୱାଭାବିକ ସୌନ୍ଦର୍ଯ୍ୟରେ ମନୋମୁଗ୍ଧକର ହୋଇପାରିଛନ୍ତି । ତାଙ୍କର ମଧୁର ପଦାବଳୀ ବର୍ଣ୍ଣନାକୁ ଅଧିକତର ମଧୁର କରିଦେଇଛି ।

ବ୍ୟଞ୍ଜନାବୃତ୍ତି ଓ ଆଳଙ୍କାରିକ ପ୍ରୟୋଗ-କୌଶଳ କବିଙ୍କର ପ୍ରତ୍ୟେକ କୃତିକୁ ସୌନ୍ଦର୍ଯ୍ୟଦାନ କରିଛି ଏବଂ ଭାବ ଗମ୍ଭୀରତାର ସଂମିଶ୍ରଣରେ କାବ୍ୟଗୁଡ଼ିକୁ ରସମଯ଼ କରିପାରିଛି ।

ପ୍ରାଚୀନ କବିମାନଙ୍କ ପ୍ରେମକାବ୍ୟମାନଙ୍କରେ ରସହିଁ ପ୍ରଧାନ, କାରଣ ରସହିଁ କାବ୍ୟର ଆତ୍ମା ସ୍ୱରୂପ । କାବ୍ୟକୁ ରସାପ୍ଲୁତ କରିବା ପାଇଁ ପ୍ରାଚୀନ କବିମାନେ ବିଭିନ୍ନ କୌଶଳ ପ୍ରୟୋଗ କରିଥାଆନ୍ତି । ଗୁଣସ୍ମୃତି, ମିଳନାକାଂକ୍ଷା, ଦୃଷ୍ଟି ବିନିମୟ ପ୍ରଭୃତି ବିପ୍ରଲମ୍ଭ ଶୃଙ୍ଗାର ରସର ଉଦ୍ଦୀପନା କରିଥାନ୍ତି । କେହି କେହି ସ୍ୱପ୍ନ ଓ ସ୍ୱପ୍ନାନ୍ତେ ବିଳାପର କୌଶଳ ମଧ୍ୟ ପ୍ରୟୋଗ କରି-ଥାଆନ୍ତି । ବିପ୍ରଲମ୍ଭ ଶୃଙ୍ଗାରରସ ଉଦ୍ଦୀପିତ ହୋଇ ମିଳନରେ

ଚରିତାର୍ଥ ହୋଇଥାଏ । ନାୟକ ନାୟିକାଙ୍କ ଶୃଙ୍ଗାର-ରସାଶ୍ରିତ— କାହାଣୀରେ ଗୁଣସ୍ମୃତି, ମିଳନାକାଙ୍‌କ୍ଷା, ପ୍ରଥମ ଦର୍ଶନରେ ଦୃଷ୍ଟି ବିନିମୟ, ସ୍ୱପ୍ନ ପ୍ରଭୃତି ପରି ବିରହବ୍ୟଥା, ବିରହାନୁଚିନ୍ତା ପ୍ରଭୃତି-ଦ୍ୱାରା ମଧ୍ୟ କୌଶଳ ସାହାଯ୍ୟରେ ରସର ଉଦ୍ଦୀପନ ହୋଇଥାଏ । ରାଧାନାଥ ଏ କ୍ଷେତ୍ରରେ ପ୍ରାଚୀନପନ୍ଥୀମାନଙ୍କ ମାର୍ଗକୁ ଅନୁସରଣ କରିଛନ୍ତି, 'ଯଯାତିକେଶରୀ' ଏହାର ପ୍ରମାଣ । କବିଙ୍କର ଅଧିକାଂଶ କାବ୍ୟ ଶୃଙ୍ଗାରରସାଶ୍ରିତ ଥିବାରୁ ଏହି ରସମୂଳକ ମନୋବୃତ୍ତିକୁ କବି ସମ୍ୟକ ରୂପ ଦେଇଛନ୍ତି । ଉପେନ୍ଦ୍ରାଦି ବିଶିଷ୍ଟ କବିମାନଙ୍କର କୃତିରେ ଦୃଷ୍ଟିଗୋଚର ହେଉଥିବା ଅପେକ୍ଷାକୃତ ଦୀର୍ଘ ବର୍ଣ୍ଣନା ଓ ଅଳଙ୍କାର-ବହୁଳତା ରାଧାନାଥଙ୍କ କାବ୍ୟମାନଙ୍କରେ ନଥିଲେ ମଧ୍ୟ ଏଗୁଡ଼ିକର ରୂପରେଖ ବିଦ୍ୟମାନ ରହିଛି । ପ୍ରାଚୀନ କବିମାନଙ୍କ ଉତ୍କଟ, ବିଭତ୍ସ ଶୃଙ୍ଗାରରସ ବର୍ଣ୍ଣନା ପନ୍ଥାକୁ ଯୁଗୋଚିତ, ସର୍ବଜନାଦୃତ ଶାଳୀନତା ଦୃଷ୍ଟିରେ କବି ତ୍ୟାଗ କରିଛନ୍ତି । କବିଙ୍କର ସଂଯମତା-ପୂର୍ଣ୍ଣ ବର୍ଣ୍ଣନା ଏହାକୁ ସର୍ବଜନପାଠ୍ୟ କରାଇ ପାରିଛି । କବି ଶୃଙ୍ଗାରରସ ବର୍ଣ୍ଣନା ପ୍ରସଙ୍ଗରେ ପ୍ରାଚୀନ କବିମାନଙ୍କୁ ବହୁଳାଂଶରେ ଅନୁସରଣ କରିଥିଲେ ମଧ୍ୟ ବର୍ଣ୍ଣନାରେ ସଂଯମତା ରକ୍ଷା କରି ନୂତନତ୍ୱ ଦେଖାଇ ପାରିଛନ୍ତି ।

କବି ଆଦର୍ଶବାଦ ପ୍ରତି ବିଶେଷ ଭାବରେ ଆକୃଷ୍ଟ ଥିଲେ ମଧ୍ୟ ପ୍ରାକୃତବାଦର ସାମୟିକ ପ୍ରଭାବରୁ ଏକାବେଳକେ ମୁକ୍ତ ପାଇ ନାହାନ୍ତି । "ସ୍ୱରୂପ, ଯୌବନ, ପ୍ରେମ ଏ ତିନହେଁ ବିବେକ ବୈରୀ ସର୍ବଥା"ର ବାସ୍ତବରୂପ "ଯଯାତିକେଶରୀ" ବାକ୍ୟରେ କବି ପ୍ରଦାନ କରିଛନ୍ତି । କବି ଆଦର୍ଶବାଦକୁ ଏଠାରେ ତ୍ୟକ୍ତ କରିଛନ୍ତି । ସୁଷମାର ଆକର୍ଷଣ ଶକ୍ତି, ଉଦ୍ଦାମ ଯୌବନର ମାଦକତା, ପ୍ରେମର ଅନ୍ଧତ୍ୱ ବିବେକର ମଥାକୁ "ମୋଡ଼ିଦେବା କିବା କଥା ?",

ଯଯାତି-ଲଳିତାଙ୍କ ଗୋପନ ରତିକ୍ରୀଡ଼ା ଏହାର ପ୍ରମାଣ । ଯଯାତିଙ୍କ ଚରିତ୍ର ଏ ପ୍ରସଙ୍ଗରେ ବିଶେଷ ଭାବରେ କଳଙ୍କିତ ହୋଇଛି । ଶିରପୁରୁଷର ଛଦ୍ମ ନାରୀବେଶରେ ଅବସ୍ଥାନ ଓ ଗୋପନ ପ୍ରେମ ନାରୀ ମହଲରେ ବ୍ୟବହାର ଉଚ୍ଚ ଆଦର୍ଶର ଲକ୍ଷଣ ନୁହେଁ । ରୂପଜ ମୋହ ଲଳିତା ଓ ଯଯାତିଙ୍କ ବିବେକର ମଥାକୁ ମୋଡ଼ି ଦେଇଛି; ଏହାଦ୍ୱାରା ଉଭୟଙ୍କ ଚରିତ୍ର ନ୍ୟୂନ ହୋଇଯାଇଛି । କ୍ଷତ୍ରିୟ ପକ୍ଷରେ ଗାନ୍ଧର୍ବ ବିବାହ ଏ ସମସ୍ୟାର ଏକମାତ୍ର ସମାଧାନ ହେଲେ ମଧ୍ୟ ଆଗରୁ ବ୍ୟବହାର ଆଦର୍ଶ ନାୟକ ନାୟିକାଙ୍କ ତୁଲ୍ୟ ହେବା ଉଚିତ । ଯଯାତି ଶିର ହେଲେ ମଧ୍ୟ ରୂପଜ ପ୍ରେମର ମୋହରେ ଧୃଷ୍ଟନାୟକ ତୁଲ୍ୟ କାର୍ଯ୍ୟ କରିଛନ୍ତି; ଲଳିତା ଧୃଷ୍ଟାନାୟିକାର ଲକ୍ଷଣ ଦୋଷରୁ ମୁକ୍ତ ହୋଇନାହାନ୍ତି ।

ପ୍ରାଚୀନ କବିମାନଙ୍କ ପରି ରାଧାନାଥ ମଧ୍ୟ 'ଦୈବିକ ଶକ୍ତି' ଉପାୟଦ୍ୱାରା ବହୁ ଜଟିଳ ସମସ୍ୟାର ସାଧନ କରିଛନ୍ତି । ଦୈବବାଣୀ, ସ୍ୱପ୍ନରେ ଦେବଦେବୀଙ୍କ ଆଜ୍ଞା ପ୍ରଭୃତି ତାଙ୍କର ବହୁ କାବ୍ୟରେ ଏକାଧିକ ସ୍ଥାନରେ ଦେଖାଦେଇଛି । ଏ ଦୈବବାଣୀ ଅସମ୍ଭବ ସମ୍ଭବ କରିଛି କିମ୍ବା କାର୍ଯ୍ୟର ଜଟିଳତାକୁ ସୂକ୍ଷ୍ମ ଓ ସରଳ କରି-ଦେଇଛି । 'ପାର୍ବତୀରେ' ଦୈବିକଶକ୍ତି ପାର୍ବତୀଙ୍କଠାକୁ କୌଶଲ୍ୟାର ପ୍ରେତରୂପ ଆସି ତାହାର କାହାଣୀ ନିଜମୁଖରେ ଜଣାଇବ ବୋଲି ସ୍ୱପ୍ନରେ କହିଛି । ପ୍ରେତରୂପରେ କୌଶଲ୍ୟାର ଆବିର୍ଭାବ ଏ ସମସ୍ୟାର ସମାଧାନ କରିଛି । ଦିବ୍ୟଜ୍ୟୋତିର ଆବିର୍ଭାବ ମଧ୍ୟ ପାର୍ବତୀଙ୍କୁ ପତିହତ୍ୟା କାର୍ଯ୍ୟରେ ସମର୍ଥନ ଦେଇଛି । ଉଷା, ନନ୍ଦିକେଶ୍ୱରୀ, ଯଯାତିକେଶରୀ, ମହାଯାତ୍ରା ପ୍ରଭୃତି କାବ୍ୟରେ ଏହି ଦୈବଶକ୍ତିର ପ୍ରସଙ୍ଗାଧିକ୍ୟ ଓ ପ୍ରଭାବ ସ୍ପଷ୍ଟଭାବରେ ପ୍ରତୀୟମାନ ହେଉଛି ।

ନବ୍ୟଯୁଗର ଚିନ୍ତାବିଭବ ରଞ୍ଜିତ, ହସ୍ତାଗ୍ରହ ରାଧାନାଥଙ୍କ କୃତିମାନଙ୍କରେ ସୁନ୍ଦର ଭାବରେ ପ୍ରକାଶ ପାଇଛି । ଯୁରୋପୀୟ ଚିନ୍ତାଧାରା ଓ ଜୀବନଯାତ୍ରା ପ୍ରଣାଳୀର ସୁପ୍ରଭାବ ରାଧାନାଥଙ୍କ ଜୀବନ ଓ କାବ୍ୟରେ ପଡ଼ିଛି । କୁପ୍ରଭାବକୁ ଦୂରରେ ରଖିବା ପାଇଁ ସେ ପ୍ରଗାଢ଼ ଉଦ୍ୟମ କରିଛନ୍ତି ।

ରାଧାନାଥ ମହାଯାତ୍ରା ପରି ଏକ ଉଚ୍ଚକୋଟୀର ମହାକାବ୍ୟକୁ ଅମିତ୍ରାକ୍ଷର ଛନ୍ଦରେ କୃତିତ୍ୱ ସହକାରେ ରଚନା କରିଛନ୍ତି ଏବଂ ଏ କ୍ଷେତ୍ରରେ ସେ ପ୍ରଥମ ବଳିଷ୍ଠ ପଥପ୍ରଦର୍ଶକ । ତାଙ୍କ କାବ୍ୟ କବିତାରେ ଉପଧାମିଳନ ଅନ୍ୟ ଏକ ବିଶେଷତ୍ୱ ।

କବିବର ରାଧାନାଥଙ୍କୁ କିଏ କେତେ ପ୍ରକାର ଦେଖିଛି । କବି ସ୍ୱର୍ଗୀୟ ପଦ୍ମଚରଣ ପଟ୍ଟନାୟକ ମୃଦୁ ପଦାବଳୀରେ, ତାଙ୍କର ଯେଉଁ ପ୍ରଶସ୍ତିଗାନ କରିଛନ୍ତି ତାହା ଅତି ସୁନ୍ଦର ହୋଇଛି । ତାଙ୍କୁ ପ୍ରକୃତିପ୍ରବୋଧୀ ନବୀନ ଉତ୍କଳ ସାହିତ୍ୟର ତାତ, 'କବିତାନକୁଞ୍ଜ ମତ୍ତ ପିକବର, ପତିତ ଉତ୍କଳର ସୁଯୋଗ୍ୟକୁମର, ଭାରତୀ ଦେବୀର ସଦା ସେବାକାରୀ, ଗୁଣଜ୍ଞ ସନ୍ତାନ ଜ୍ଞାନ ଅଧିକାରୀ ; ଦୟାମାୟା ପ୍ରୀତି ସୌନ୍ଦର୍ଯ୍ୟର ଖଣି, ଦୁଃଖିନୀ ଜନନୀ ଧାତ୍ରମଥାମଣି, ·ମାତୃଭୂମି ମାତୃଭାଷାର ଭୂଷଣ, ଉତ୍କଳ ମାତା ବରେଣ୍ୟ କୁମର, ଧାର୍ମିକ ପ୍ରବର ପ୍ରଭୃତି ଆଖ୍ୟା ସେ ଦେଇଛନ୍ତି । ପୁଣି ଲେଖିଛନ୍ତି—

ମାତୃଭୂମି ମାତୃଭାଷା-ପ୍ରିୟ କବି,
କେତେ ଚିତ୍ରି ଅଛି ନରନାରୀ ଛବି ।
ନରନାରୀ ଛବିଠାରୁ ମନୋହର,
କାନନ ପର୍ବତ ଅଙ୍କନ ସୁନ୍ଦର । × ×

କେତେକାଙ୍କୁ କେତେ ଯୁଗର ଶଇଳେ,
ଉଷ୍ମ ରହିଥିଲେ ଉତ୍କଳ ମହୀରେ ।
କେତେ କାଳୁ ନଦ ନଦୀ ହ୍ରଦ ସର;
ନଦୀ ପଠାବନ ନିର୍ଜନ ପ୍ରାନ୍ତର,
ପ୍ରକୃତିର କୋଳେ ରହିଥିଲେ ଶୋଇ,
କେବେ କାହା ମନ ନଥିଲେ ତ ମୋହି ।
ଅଚେତନ ବୋଲି ଲଭିଥିଲି ନାମ
କ ବଳେ ମୋହନ୍ତେ ଭବଜନ ମନ ।

ନୀରସ ପଙ୍କିଳ କଳେବର ବହି
ନିଜ ନିଜ ସ୍ଥାନେ ଥିଲେ ସିନା ରହି ।
ତବ ଆବିର୍ଭାବେ କବା ଜାଗରଣ,
କ ନବ ଜୀବନ ମଧୁର ସ୍ପନ୍ଦନ ।
ସର୍ବେ ନିଜ ପ୍ରାଣେ କଲେ ଅନୁଭବ
ବୁଝିଲେ ନିଜର ଜନମ ଗୌରବ ।"
( ମୁକୁର ୧୧ଶ ଓ ୧୨ଶ ସଂଖ୍ୟା ୨ୟ ଭାଗ )

କବି ପଦ୍ମଚରଣ ଉତ୍କଳୀୟଙ୍କର ମନୋଭାବକୁ ଯଥାର୍ଥ ରୂପ ଦେଇଛନ୍ତି ।

